


# ରଥଯାତ୍ରା



**ଶ୍ରୀ**କ୍ଷେତ୍ରର ରଥଯାତ୍ରା ନିଶ୍ଚିତ ଭାବେ ସମସ୍ତଙ୍କ ପାଇଁ ଆକର୍ଷଣର କେନ୍ଦ୍ରବିନ୍ଦୁ । ଏହାର ବୈଶିଷ୍ଟ୍ୟ ହେଉଛି ଯେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ମଧ୍ୟରେ ପୁରୀ ରଥଯାତ୍ରା ଦେଖିବା ପାଇଁ ପରିଲକ୍ଷିତ ହୋଇଥାଏ ପ୍ରବଳ ବ୍ୟାକୁଳତା । ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରା ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ହୋଇଥିଲେ ହେଁ ଅନ୍ୟାନ୍ୟ ଧର୍ମ ଓ ସଂପ୍ରଦାୟର ବ୍ୟକ୍ତିମାନଙ୍କ ମଧ୍ୟରେ ଏ ତିନି ଦିଅଁଙ୍କ ପାଇଁ ଯେଉଁ ସ୍ୱତଃପ୍ରବୃତ୍ତ ଶ୍ରଦ୍ଧା ଓ ଭକ୍ତି ପରିଲକ୍ଷିତ ହୋଇଥାଏ, ତାହାର ପ୍ରମାଣ ମିଳିଥାଏ ଶ୍ରୀକ୍ଷେତ୍ରର ରଥଯାତ୍ରାରୁ । ଲକ୍ଷ ଲକ୍ଷ ଭକ୍ତଙ୍କ ସମଭିବ୍ୟାହାରରେ ଶ୍ରୀକ୍ଷେତ୍ର ପୁରୀ ରୂପାନ୍ତରିତ ହୋଇଥାଏ ବିଶ୍ୱର ଏକ କୋଳାହଳମୟ ବିରାଟ ସହରରେ ଯେପରି । ଏକଦା ଶବର ସେବିତ ବନ ଦେବତା ଆଜି ବିଶ୍ୱରେ ସମସ୍ତଙ୍କର ଆଦରଣୀୟ ଦେବତା । ଜଗନ୍ନାଥଙ୍କ ମନ୍ଦିର ଓ ତାଙ୍କର ରଥଯାତ୍ରା ତେଣୁ ବିଶ୍ୱର ବିଭିନ୍ନ ଅଞ୍ଚଳକୁ ପରିବ୍ୟାପ୍ତ । ଅନ୍ୟ କୌଣସି ଧର୍ମର ଦେବତା ସମଗ୍ର ବିଶ୍ୱରେ ଏପରି ପ୍ରଭାବ ବିସ୍ତାର କରିଥିବା ପରି ପ୍ରତୀୟମାନ ହୁଏ ନାହିଁ । ତେଣୁ ଜଗନ୍ନାଥ କେବଳ ହିନ୍ଦୁମାନଙ୍କର ବା ଓଡ଼ିଶାର ଦେବତା ନୁହନ୍ତି, ସେ ସମଗ୍ର ବିଶ୍ୱରେ ସମସ୍ତଙ୍କ ପ୍ରୀତି ଓ ପ୍ରତୀତିର ଏକ ଅଦ୍ୱିତୀୟ ଓ ଅଦ୍‌ଭୁତ ଦେବତା ବୋଲି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ ।

ଇତିହାସର ଦୃଷ୍ଟାନ୍ତ ଦେଇ କେହି କେହି କହିଥାନ୍ତି ଯେ ଅତୀତରେ ବୌଦ୍ଧଧର୍ମାବଲମ୍ବୀମାନେ ପ୍ରତିବର୍ଷ ବୁଦ୍ଧମୂର୍ତ୍ତିଙ୍କୁ ରଥରେ ବସାଇ ନେଉଥିଲେ । ଶ୍ରୀକ୍ଷେତ୍ରର ଏ ରଥଯାତ୍ରାର ପରମ୍ପରା ବୌଦ୍ଧ ଧର୍ମାବଲମ୍ବୀଙ୍କ ରଥଯାତ୍ରାର ଅନୁସରଣ ବୋଲି ସେମାନେ କହିଥାନ୍ତି । ଏପରିକି ଶ୍ରୀଜଗନ୍ନାଥଙ୍କୁ ମଧ୍ୟ ବୁଦ୍ଧଦେବଙ୍କ ସହିତ ତୁଳନା କରାଯାଇଛି । ଜୟଦେବ ତାଙ୍କ ରଚିତ ଦଶାବତାର ସଂଗୀତରେ ବିଷ୍ଣୁଙ୍କର ଦଶଟି ଅବତାର ମଧ୍ୟରୁ ବୁଦ୍ଧଙ୍କୁ ଗୋଟିଏ ଅବତାର ଭାବେ ଗ୍ରହଣ କରିଛନ୍ତି । ଓଡ଼ିଶାର ଆଦିକବି ସାରଳା ଦାସ ତାଙ୍କ ରଚିତ ମହାଭାରତର 'ସଭାପର୍ବ'ରେ ମଧ୍ୟ ସ୍ପଷ୍ଟ ଭାବେ ବର୍ଣ୍ଣନା କରିଛନ୍ତି, 'ସଂସାର ଜନଙ୍କୁ ସେହୁ ତାରିବା ନିମନ୍ତେ । ବଉଦ୍ଧ ରୂପରେ ବିଜେ ଅଛି ଜଗନ୍ନାଥେ ।' ସେ ଯାହା ହେଉ, କାଳକ୍ରମେ ବୁଦ୍ଧଦେବ ବା ବୌଦ୍ଧ ଧର୍ମର ପ୍ରଭାବ କେବଳ ହ୍ରାସ ପାଇ ନାହିଁ, ବୌଦ୍ଧ ରଥଯାତ୍ରାର ସେ ପବିତ୍ର ପରମ୍ପରା ମଧ୍ୟ ଦୃଷ୍ଟିଗୋଚର ହୁଏ ନାହିଁ କେଉଁଠି ।

ଅତୀତରେ ସବୁଧର୍ମର ମହାନ୍ ପ୍ରଚାରକମାନେ ଭକ୍ତିଭାବ ନେଇ ଧାଇଁ ଆସିଛନ୍ତି ଜଗନ୍ନାଥ ଧାମ ପୁରୀକୁ । ବହୁ ସଂପ୍ରଦାୟରେ ବିଭକ୍ତ ହିନ୍ଦୁଧର୍ମର ବିଭିନ୍ନ ଧର୍ମଗୁରୁମାନେ ମଧ୍ୟ ଶ୍ରୀକ୍ଷେତ୍ରକୁ ନଆସି ରହିପାରିନାହାନ୍ତି ।

ଶ୍ରୀଜଗନ୍ନାଥ ତେଣୁ ସମଗ୍ର ବିଶ୍ୱରେ 'ଗଣଦେବତା'ର ଆସନରେ ମର୍ଯ୍ୟାଦିତ ହୋଇ ଶ୍ରୀକ୍ଷେତ୍ର ପୁରୀ ଓ ଓଡ଼ିଶା ପାଇଁ ଗର୍ବ ଓ ଗୌରବର କାରଣ ହୋଇଛନ୍ତି । ଯିଏ ଯେଉଁ ଧର୍ମ ବା ସଂପ୍ରଦାୟର ହେଉପଛେ, ବଡ଼ ସାନ, ଧନୀ ନିର୍ଦ୍ଧନ, ଏ ସମସ୍ତେ ତାଙ୍କ ପାଖରେ ସମାନ । ତାଙ୍କୁ ବର୍ଣ୍ଣନା କରାଯାଇଛି ବିଭିନ୍ନ ଭାବରେ । କିନ୍ତୁ ସେ ଯେପରି ଅବର୍ଣ୍ଣନୀୟ ହୋଇ ରହିଯାଇଛନ୍ତି । ତାଙ୍କର ତୁଳନା କରାଯାଇଛି ସତ, ସେ କିନ୍ତୁ ଅତୁଳନୀୟ ବୋଲି ମନେ ହୋଇଛନ୍ତି । ଅଗଣିତ ଭକ୍ତଙ୍କ ଆନନ୍ଦୋଲ୍ଲାସ, ଭାବାବେଗ ଓ ଭକ୍ତିଭାବ ଯୋଗୁଁ ଶ୍ରୀକ୍ଷେତ୍ରର ରଥଯାତ୍ରା ଏକ ଅନନ୍ୟ ପରମ୍ପରାରେ ପରିଣତ ହୋଇଛି । ସେହି ପରମ୍ପରାକୁ ଓଡ଼ିଶା ଓ ଓଡ଼ିଶା ବାହାରେ ମଧ୍ୟ ଅନୁସରଣ କରାଯାଉଛି । ଆମର ଏ ସଂଖ୍ୟାର ଆକର୍ଷଣ ହେଉଛି ଯେ ଓଡ଼ିଶାର ଅନ୍ୟ କେତେକ ସ୍ଥାନର ରଥଯାତ୍ରା ସଂକ୍ରାନ୍ତୀୟ ଲେଖାମାନ ମଧ୍ୟ ଏଥିରେ ସ୍ଥାନିତ ହୋଇପାରିଛି ।

ଅତୀତରେ 'ଉତ୍କଳ ପ୍ରସଙ୍ଗ'ର ରଥଯାତ୍ରା ବିଶେଷାଙ୍କଗୁଡ଼ିକ ପାଠକ ମହଲରେ ଆଦୃତ ହୋଇଛି । ଆନନ୍ଦର କଥା ଯେ 'ଉତ୍କଳ ପ୍ରସଙ୍ଗ' ସଂଗ୍ରହଣୀୟ ବିଶେଷାଙ୍କ ଭାବେ ପାଠକ ପାଠିକା, ଗବେଷକ ଗବେଷିକା ଓ ଲେଖକଲେଖିକାମାନଙ୍କର ହୃଦୟକୁ ସ୍ପର୍ଶ କରିପାରିଛି । ଆମେ ଦୁଃଖିତ ଯେ ସମୟାଭାବ ଓ ସୀମିତ କଳେବର ମଧ୍ୟରେ ଆମେ ବହୁ ବିଶିଷ୍ଟ ଲେଖକ ଓ ଲେଖିକାଙ୍କ ଲେଖାଗୁଡ଼ିକ ଏ ସଂଖ୍ୟାରେ ସ୍ଥାନିତ କରିପାରିଲୁ ନାହିଁ । ଏହି ବିଶେଷାଙ୍କର ପ୍ରସ୍ତୁତି ଓ ପ୍ରକାଶନରେ ଯେଉଁମାନେ ପ୍ରତ୍ୟକ୍ଷ ବା ପ୍ରରୋକ୍ଷ ଭାବେ ସହଯୋଗ କରିଛନ୍ତି, ସେ ସମସ୍ତଙ୍କୁ ଧନ୍ୟବାଦ ।

# ରାଜ୍ୟ ସରକାରଙ୍କ ପୂର୍ଣ୍ଣାଙ୍ଗ ବଜେଟ୍

ଗତ ୨୦୦୯-୧୦ ଆର୍ଥିକ ବର୍ଷ ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ଓଡ଼ିଶାର ନୂତନ ସରକାର ଗତ ଜୁନ୍ ୧୧ ତାରିଖରେ ବିଧାନସଭାରେ ଯେଉଁ ପୂର୍ଣ୍ଣାଙ୍ଗ ବଜେଟ୍ ଉପସ୍ଥାପନ କରିଛନ୍ତି, ତାହା ଅନେକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ମୋଟ ୩୫୦୦୧ କୋଟି ୪୫ ଲକ୍ଷ ଟଙ୍କାର ଏହି ପୂର୍ଣ୍ଣାଙ୍ଗ ବଜେଟ୍‌କୁ ବିଧାନସଭାରେ ସେଦିନ ଉପସ୍ଥାପନ କରି ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଘଡ଼ାଇ ତାଙ୍କ ଅଭିଭାଷଣରେ କହିଥିଲେ, 'ଏ ବଜେଟ୍ ରାଜସ୍ୱ ନିଅଣ୍ଟିଆ ହୋଇଥିବା ସତ୍ତ୍ୱେ ଏକ ସମତୁଲ ବଜେଟ୍ ।'

ଗ୍ରାମବହୁଳ ଓଡ଼ିଶାର ପ୍ରକୃତ ଉନ୍ନତି ହେଉଛି ଗ୍ରାମାଞ୍ଚଳର ଉନ୍ନତି । ଓଡ଼ିଶା ଦାରିଦ୍ର୍ୟ ଓ କ୍ଷୁଧାରୁ ମୁକ୍ତ ପାଉ ବୋଲି ଜାତିର ଜନକ ମହାତ୍ମା ଗାନ୍ଧୀ ଚାହିଁଥିଲେ । ନବେ ଦଶକରେ ବିଜୁ ବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ ଗ୍ରାମାଞ୍ଚଳର ଉନ୍ନତି ଉପରେ ତାଙ୍କର ଦୃଷ୍ଟି ନିବଦ୍ଧ ରଖିଥିଲେ । ପରବର୍ତ୍ତୀ କାଳରେ, ଏବର ନୂତନ ସରକାର, ଗ୍ରାମାଞ୍ଚଳର ଉନ୍ନତି ପ୍ରତି ସର୍ବାଧିକ ଦୃଷ୍ଟି ଦେଇ ବଜେଟ୍ ପ୍ରସ୍ତୁତି କରିଥିବା ଆନନ୍ଦର ବିଷୟ । ଏ ବଜେଟ୍‌ରେ ଶିଳ୍ପ ସହିତ କୃଷିକୁ ପ୍ରାଧାନ୍ୟ ଦିଆଯାଇଥିବା ନିଶ୍ଚୟ ବଡ଼ କଥା ।



ଗତ ବର୍ଷ ୨୦୦୮ ଫେବୃଆରୀ ୧୬ ତାରିଖରେ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଗଠିତ ସରକାର ମଧ୍ୟ ଓଡ଼ିଶାରେ ସୀମିତ ସମ୍ବଳ ଥିବା ସତ୍ତ୍ୱେ ରାଜ୍ୟର ବ୍ୟାପକ ଉନ୍ନୟନକୁ ଦୃଷ୍ଟିରେ ରଖି ୨୦୦୮-୦୯ ଆର୍ଥିକ ବର୍ଷ ପାଇଁ ବଜେଟ୍ ଉପସ୍ଥାପନ କରିଥିଲେ । ଲୋକସଭା ଓ ବିଧାନସଭାର ସାଧାରଣ ନିର୍ବାଚନ ହେବାକୁ ଥିବାରୁ ସେହି ସରକାର ପୁଣି ଥରେ ଗତ ଫେବୃଆରୀ ୧୨ରେ (୨୦୦୯) ବିଧାନସଭାରେ ଚାରିମାସିଆ କାମଚଳା ବଜେଟ୍ ଉପସ୍ଥାପିତ କରିଥିଲେ । ନିର୍ବାଚନ ପରେ ମେ' ୨୧ ତାରିଖରେ ଶ୍ରୀ ପଟ୍ଟନାୟକଙ୍କ ନେତୃତ୍ୱରେ ବିଜୁ ଜନତା ଦଳ ନିରଙ୍କୁଶ ସଂଖ୍ୟା ଗରିଷ୍ଠତା ଲାଭ କରି ତୃତୀୟ ଥର ଲାଗି ସରକାର ଗଠନର ସୁଯୋଗ ପାଇଥିବାରୁ, ଗ୍ରାମାଞ୍ଚଳର ସ୍ୱାର୍ଥ ଏହି ବଜେଟ୍‌ରେ ପ୍ରତିଫଳିତ ହୋଇଥିବା ପରି ମନେ ହୋଇଛି । ତେଣୁ ଚଳିତ ବଜେଟ୍‌ରେ ଗ୍ରାମାଞ୍ଚଳର ବିକାଶ ସମେତ କୃଷି, ଜଳସେଚନ, ସ୍ୱାସ୍ଥ୍ୟ, ଶିକ୍ଷା, ଭିତ୍ତିଭୂମି ଉନ୍ନୟନ, ଦାରିଦ୍ର୍ୟ ଦୂରୀକରଣ, ଅନୁସୂଚିତ ଜାତି ଓ ଜନଜାତିର ଛାତ୍ରଛାତ୍ରୀମାନଙ୍କ ଶିକ୍ଷା, ସମାଜର ଦୁର୍ବଳଶ୍ରେଣୀ ଲୋକଙ୍କ ସାମାଜିକ ସୁରକ୍ଷା, ଖାଦ୍ୟ ନିରାପତ୍ତା, ଭିନ୍ନକ୍ଷମ କଲ୍ୟାଣ ଓ ମହିଳା ସଶକ୍ତିକରଣ ପ୍ରଭୃତି ବିଷୟଗୁଡ଼ିକ ଉପରେ ରାଜ୍ୟ ସରକାର ଯେପରି ସର୍ବାଧିକ ଗୁରୁତ୍ୱ ଦେଇଛନ୍ତି, ତାହା ପ୍ରକୃତରେ ସ୍ୱାଗତଯୋଗ୍ୟ ପଦକ୍ଷେପ ।

ରାଜ୍ୟର ଅର୍ଥନୈତିକ ବିକାଶ ସହିତ ଜନସାଧାରଣଙ୍କୁ ସାମାଜିକ ନ୍ୟାୟ ପ୍ରଦାନ କରିବା ଓ ଏକ କ୍ଷୁଧାମୁକ୍ତ ସମାଜ ଗଠନ ପାଇଁ ଯେ ରାଜ୍ୟର ନୂତନ ସରକାର ସଂକଳ୍ପବଦ୍ଧ, ଏହି ପୂର୍ଣ୍ଣାଙ୍ଗ ବଜେଟ୍‌ରୁ ତାହାର ସ୍ପଷ୍ଟ ସୂଚନା ମିଳୁଛି । ସେଥିପାଇଁ ଅର୍ଥମନ୍ତ୍ରୀ ଏହି ବଜେଟ୍ ଉପସ୍ଥାପନ କରିବା ବେଳେ ପ୍ରକାଶ କରିଥିଲେ 'ଗରିବ ଲୋକଙ୍କ ମୁହଁରେ ହସ ଫୁଟାଇବା ସହ ରାଜ୍ୟର ସାମଗ୍ରିକ ବିକାଶ ପାଇଁ ରାଜ୍ୟ ସରକାର ସତତ ଚେଷ୍ଟିତ ।'

ପ୍ରକୃତରେ ସମାନୁପାତିକ ଭାବେ ସହରସମେତ ଗ୍ରାମର ଉନ୍ନତି ତଥା ଶିଳ୍ପ ସହିତ କୃଷିର ଉନ୍ନତି ପାଇଁ ରାଜ୍ୟ ସରକାର ଏହି ବଜେଟ୍‌ରେ ଯେପରି ବ୍ୟୟବରାଦ କରିଛନ୍ତି ତାହା ଥିଲାବାଲା (Haves) ଓ ନଥିଲାବାଲା (Have nots)ଙ୍କ ମଧ୍ୟରେ ଥିବା ତାରତମ୍ୟକୁ ଭବିଷ୍ୟତରେ ଦୂରକରି ଏକ ସମୃଦ୍ଧ ଓ ସ୍ୱାବଲମ୍ବନଶୀଳ ଓଡ଼ିଶା ଗଠନ ଦିଗରେ ଯେ ସହାୟକ ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।

ପ୍ରଫୁଲ୍ଲଚନ୍ଦ୍ର ମିଶ୍ର (signature)

# ସୂଚୀ



ପ୍ରାଚୀନ କାଳର ସ୍କନ୍ଦ ପୁରାଣ, ବାମଦେବ ସଂହିତା ଓ ସୁତ ପୁରାଣରେ ବର୍ଣ୍ଣିତ ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ ଶଙ୍ଖକ୍ଷେତ୍ର ଭାବରେ ବର୍ଣ୍ଣନା କରାଯାଇଛି ।

## ପୁରାଣ ବର୍ଣ୍ଣନା ଅନୁସାରେ ଶଙ୍ଖକ୍ଷେତ୍ରରେ ଅବସ୍ଥିତ ପ୍ରସିଦ୍ଧ ସ୍ଥାନମାନଙ୍କର ନାମ

୧. ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ
୨. ଶ୍ରୀକ୍ଷେତ୍ରେଶ୍ୱରୀ ବିମଳା
୩. ଶ୍ରୀମହାଲକ୍ଷ୍ମୀ
୪. ଉତ୍ତର ଦୁର୍ଗ
୫. ବାଟମଙ୍ଗଳା
୬. ଗରୁଡ଼ସ୍ତମ୍ଭ
୭. ଭୋଗମଣ୍ଡପ
୮. କଳ୍ପବୃକ୍ଷ
୯. ରୋହିଣୀକୁଣ୍ଡ
୧୦. ବାଟଗଣେଶ
୧୧. ଉସ୍ୱ ଗଣପତି
୧୨. ଶ୍ରୀସରସ୍ୱତୀ ଦେବୀ
୧୩. ନବଗ୍ରହ
୧୪. କୋଣାର୍କ ସୂର୍ଯ୍ୟଦେବ
୧୫. ପାଦପଦ୍ମ
୧୬. ଯଜ୍ଞବଟ
୧୭. ଅଗ୍ନେଶ୍ୱର
୧୮. ଇନ୍ଦ୍ରାଣିଦେବୀ
୧୯. କ୍ଷେତ୍ରପାଳ
୨୦. ସ୍ନାନ ଭୈରବୀ
୨୧. ମୁକ୍ତେଶ୍ୱରୀ
୨୨. ଛତ୍ରକାଳୀ
୨୩. ବାଟ ମାର୍କେଣ୍ଡେୟ
୨୪. କାତ୍ୟାୟନୀ
୨୫. ଗୋପେଶ୍ୱର
୨୬. ବେଦ କାଳୀ
୨୭. ପାତାଳେଶ୍ୱର
୨୮. ଭୁବନେଶ୍ୱରୀ
୨୯. ବୈକୁଣ୍ଠେଶ୍ୱର
୩୦. ଯାଜ୍ଞ୍ୟଶ୍ୱେରୀ
୩୧. ଈଶାନେଶ୍ୱର
୩୨. ଶୀତଳା ଦେବୀ
୩୩. ପାକଶାଳା
୩୪. ଦକ୍ଷିଣେଶ୍ୱର
୩୫. କୁଣ୍ଡଳେଶ୍ୱର
୩୬. ରାମ ଚୈତନ୍ୟ ମନ୍ଦିର
୩୭. ବରଢେି ହନୁମାନ
୩୮. ନିର୍ମାଲ୍ୟ ହନୁମାନ
୩୯. ଅଳକା ବାଟିକା
୪୦. ଚକ୍ର ନାରାୟଣ
୪୧. ରାମେଶ୍ୱର
୪୨. ଚତୁର୍ଧାମ
୪୩. କାନପଟା ହନୁମାନ
୪୪. ନିଳାଦ୍ରୀ ବିହାରୀ
୪୫. ବଢେିଶ୍ୱର
୪୬. ଶିଆଳି ଲଟା
୪୭. କୋଇଲି ବୈକୁଣ୍ଠ
୪୮. ତପସ୍ୱୀ ହନୁମାନ
୪୯. ସୁବର୍ଣ୍ଣ କୂପ
୫୦. ଆନନ୍ଦ ବଜାର
୫୧. ଦେବସ୍ନାନ ମଣ୍ଡପ
୫୨. ମେଘନାଦ ପାଚେରୀ
୫୩. ସିଂହଦ୍ୱାର (ପୂର୍ବଦ୍ୱାର)
୫୪. ଅରୁଣ ସ୍ତମ୍ଭ
୫୫. ବଡ଼ଛାଟ ମଠ
୫୬. ଛାଉଣି ମଠ
୫୭. ପଜନତା
୫୮. ପ୍ରହରୀ ହନୁମାନ
୫୯. ଦକ୍ଷିଣ ଦ୍ୱାର
୬୦. ଦୁର୍ଗାମାଧବ
୬୧. ମଙ୍ଗଳେଶ୍ୱରୀ
୬୨. ପଶ୍ଚିମ ଦ୍ୱାର
୬୩. ଉତ୍ତର ଦ୍ୱାର
୬୪. ଶ୍ରୀଲୋକନାଥ
୬୫. ରାମେଶ୍ୱର
୬୬. କାନ୍ଦୁ ନୃସିଂହ
୬୭. କାନ୍ଦୁ ଆଶ୍ରମ
୬୮. ନିକୁମ୍ଭିଲାବଟ
୬୯. ହରଚଣ୍ଡୀ
୭୦. ଚାମୁଣ୍ଡେଶ୍ୱରୀ
୭୧. ବନଦୁର୍ଗା
୭୨. ବାସେଲୀ
୭୩. କପାଳମୋଚନ
୭୪. ମଣିକର୍ଣ୍ଣିକା ତୀର୍ଥ
୭୫. ଘାଟମଙ୍ଗଳା
୭୬. ଭଗବତୀ
୭୭. ମାର୍କେଣ୍ଡେଶ୍ୱର
୭୮. ମାର୍କେଣ୍ଡେୟ ତୀର୍ଥ
୭୯. ସପ୍ତମାତୃକା
୮୦. ଅଳମ୍ବା ଦେବୀ
୮୧. ଅଠରନାଥ
୮୨. ମକରଧ୍ୱଜ ହନୁମାନ
୮୩. ଭାର୍ଗବୀ ନଦୀ
୮୪. ମୁକ୍ତାଶ୍ୱର
୮୫. ବାଟମଙ୍ଗଳା
୮୬. କପାଟେଶ୍ୱର
୮୭. ଭିଲ୍ୱେଶ୍ୱର
୮୮. ସିଦ୍ଧ ହନୁମାନ
୮୯. ଇନ୍ଦ୍ରଦ୍ୟୁମ୍ନ ତୀର୍ଥ
୯୦. ନୀଳକଣ୍ଠେଶ୍ୱର
୯୧. ଆଦି ନୃସିଂହ
୯୨. ଗୁଣ୍ଡିଚା ମଣ୍ଡପ
୯୩. ଅର୍ଦ୍ଧ ସୁଶାନି (ମାଉସୀମା)
୯୪. ମାର୍ଚ୍ଚିକା ଦେବୀ
୯୫. ଚର୍ଚ୍ଚିକା ଦେବୀ
୯୬. ଷୋଡ଼ଶ ପୁତ୍ରୀ
୯୭. ନାରାୟଣୀ
୯୮. ଅଙ୍ଗିରାଶ୍ରମ
୯୯. ଅଙ୍ଗିରାବଟ
୧୦୦. ଦକ୍ଷିଣକାଳୀ
୧୦୧. ଉଗ୍ରେଶ ଆଶ୍ରମ
୧୦୨. ଶ୍ୱେତଗଙ୍ଗା
୧୦୩. ମୁକ୍ତିଶୀଳା
୧୦୪. ଆଦିଶଙ୍କର ପୀଠ
୧୦୫. ସ୍ୱର୍ଗଦ୍ୱାର
୧୦୬. ବରାହୀ ଦେବୀ
୧୦୭. ଶ୍ୟାମାକାଳୀ
୧୦୮. ବଟ ହନୁମାନ
୧୦୯. ଚକ୍ରତୀର୍ଥ
୧୧୦. ଚକ୍ର ନାରାୟଣୀ
୧୧୧. ମହୋଦଧୀ ତୀର୍ଥ
୧୧୨. ଜଗନ୍ନାଥ ବଲ୍ଲଭ
୧୧୩. କାଶୀ ବିଶ୍ୱନାଥ
୧୧୪. ବିଶ୍ୱେଶ୍ୱରୀ
୧୧୫. ନରେନ୍ଦ୍ର ସରୋବର



# ଶ୍ରୀଜଗନ୍ନାଥାଷ୍ଟକମ୍

**କଦାଚିତ୍ କାଳିନ୍ଦୀ-ତଟବିପିନ ସଙ୍ଗୀତ କରବୋ**
**ମୁଦାଭୀରୀ-ନାରୀବଦନ-କମଳା ସ୍ୱାଦ-ମଧୁପଃ**
**ରମା-ଶମ୍ଭୁ-ର୍ବ୍ରହ୍ମାସୁରପତି ଗଣେଶାର୍ଚ୍ଚିତପଦୋ**
**ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁ ମେ । (୧)**

(ଶ୍ରୀକୃଷ୍ଣ ରୂପରେ ଯମୁନା ତଟର ବନରେ ବଂଶୀବାଦନ,
ଆନନ୍ଦେ କରିଣ ଗୋପୀ-ମୁଖପଦ୍ମୁଁ କରିଅଛ ସୁଧାପାନ ।
ରମା-ଶିବ-ବ୍ରହ୍ମା ବାସବ ଗଣେଶ ପୂଜନ୍ତି ପଦ ତୁମ୍ଭର,
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।)

**ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପୁଚ୍ଛଂ କଟିତଟେ**
**ଦୁକୂଳଂ ନେତ୍ରାନ୍ତେ ସହଚରକଟାକ୍ଷଂ ବି ଦଧତେ**
**ସଦା ଶ୍ରୀମଦ୍ ବୃନ୍ଦାବନ ବସତି ଲୀଳା-ପରିଚୟୋ**
**ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁ ମେ । (୨)**



(ବାମ ହସ୍ତେ ବଂଶୀ ଶିରେ ଶିଖିପୁଚ୍ଛ କଟିଦେଶେ ପୀତାମ୍ବର,
ସହଚର ଗଣେ କହୁଥିଲ ପ୍ରଭୁ ସଙ୍କେତରେ ନୟନର ।
ଶ୍ରୀବୃନ୍ଦାବନର ବାସ ଆଉ ଲୀଳା ଅତ୍ୟନ୍ତ ପ୍ରିୟ ତୁମ୍ଭର,
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।)

**ମହାମ୍ଭୋଧେସ୍ତୀରେ କନକ ରୁଚିରେ ନୀଳ ଶିଖରେ**
**ବସନ୍ ପ୍ରାସାଦାନ୍ତେ ସହଜ ବଳଭଦ୍ରେଣ ବଳିନା**
**ସୁଭଦ୍ରା ମଧ୍ୟସ୍ଥଃ ସକଳ ସୁରସେବାବସରଦୋ**
**ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁ ମେ । (୩)**

(ମହୋଦଧି ତୀରେ କନକ ବରନ ଶ୍ରୀନୀଳଗିରି-ଶିଖରେ,
ମନ୍ଦିରେ ବସିଛ ମହାବଳୀ ଭ୍ରାତା ବଳଭଦ୍ର ସହିତରେ ।
ମଧ୍ୟରେ ସୁଭଦ୍ରା, ସକଳ ଦେବଙ୍କୁ ଦିଅ ସେବା ଅବସର,
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।)

**କୃପାପାରାବାରଃ ସକଳଜଳଦ ଶ୍ରେଣୀରୁଚିରୋ**
**ରମାବାଣୀ ରାମଃ ସ୍ଫୁରଦମଳ ପଦ୍ମେକ୍ଷଣ ମୁଖୈଃ**
**ସୁରେନ୍ଦ୍ରୈରାରାଧ୍ୟଃ ଶ୍ରୁତି ଗଣଶିଖା ଗୀତଚରିତୋ**
**ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁ ମେ । (୪)**



(କୃପାସିନ୍ଧୁ ପ୍ରଭୁ ସଜଳ ଜଳଦ-ସମ ଶ୍ରୀଅଙ୍ଗର ବର୍ଣ୍ଣ,
ରମା-ବାଣୀ-ରତ ପ୍ରଫୁଲ୍ଲ-କମଳ-ତୁଲ୍ୟ ନୟନ ବଦନ ।
ସୁରେଶାଦି-ବନ୍ଦ୍ୟ ଉପନିଷଦଟି ଘୋଷଇ କୀର୍ତ୍ତି ତୁମ୍ଭର,
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।)

**ରଥାରୂଢ଼ୋ ଗଚ୍ଛନ୍ ପଥିମିଳିତ ଭୂଦେବପଟଳୈଃ**
**ସ୍ତୁତି ପ୍ରାଦୁର୍ଭାବଂ ପ୍ରତିପଦମୁପାକର୍ଣ୍ଣ୍ୟ ସଦୟଃ**
**ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁ ସୁତୟା**
**ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁ ମେ । (୫)**



(ରଥରେ ଆରୋହି ବଡ଼ଦାଣ୍ଡେ ପ୍ରଭୁ ଯେତେବେଳେ ତୁମ୍ଭେ ଯାଅ,
ବ୍ରାହ୍ମଣମାନଙ୍କ ସ୍ତୁତି କର୍ଣ୍ଣେ ଶୁଣି ହୁଅ ଅତ୍ୟନ୍ତ ସଦୟ ।
ଆହେ କୃପାସିନ୍ଧୁ ଜଗତର ବନ୍ଧୁ ମହାଲକ୍ଷ୍ମୀ ସଙ୍ଗତର,
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।)

**ପରଂ ବ୍ରହ୍ମାପୀଡ଼ଂଃ କୁବଳୟଦଳୋତ୍‌ଫୁଲ୍ଲ ନୟନୋ**
**ନିବାସୀ ନୀଳାଦ୍ରୌ ନିହିତ ଚରଣୋ□କ୍ରାନ୍ତ ଶିରସି**
**ରସାନନ୍ଦୀରାଧା ସରସବପୁରାଲିଙ୍ଗନସୁଖୋ**
**ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁ ମେ । (୬)**

(ନିରାକାର ବ୍ରହ୍ମ ହୋଇ ସର୍ବ ପୂଜ୍ୟ ଉତ୍ପଳ ଦଳ ନୟନ,
ନୀଳଗିରି-ବାସୀ ଅନନ୍ତଙ୍କ ଶିରେ ସ୍ଥାପିଛ ପ୍ରଭୁ ଚରଣ ।
ଶ୍ରୀରାଧା ଦେବୀଙ୍କ ପ୍ରେମ ପୂର୍ଣ୍ଣ ତନୁ ଆଲିଙ୍ଗନରେ ବିଭୋର,
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।)

**ନ ବୈ ପ୍ରାର୍ଥ୍ୟ ରାଜ୍ୟଂ ନ ଚ କନକ ମାଣିକ୍ୟ ବିଭବମ୍**
**ନ ଯାଚେ□ହଂ ରମ୍ୟାଂ ସକଳ ଜନକାମ୍ୟାଂ ବରବଧୂମ୍**
**ସଦାକାଳେ କାଳେ ପ୍ରମଥ ପତିନା ଗୀତ ରଚିତୋ**
**ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁ ମେ । (୭)**



(ମାଗେ ନାହିଁ ପ୍ରଭୁ ରାଜ୍ୟଟି ତୁମ୍ଭଙ୍କୁ ସ୍ୱର୍ଣ୍ଣ ଧନଧାନ୍ୟ ମଣି,
ମାଗେ ନାହିଁ ପ୍ରଭୁ ସର୍ବଜନକାମ୍ୟା ଅତି ସୁନ୍ଦର ରମଣୀ ।
ସଦାବେଳେ ପ୍ରଭୁ ଦେବ ମହେଶ୍ୱର ସ୍ତୁତି କରନ୍ତି ତୁମ୍ଭର,
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।)

**ହରତ୍ୱଂ ସଂସାରଂ ଦ୍ରୁତତରମସାରଂ ସୁରପତେ**
**ହରତ୍ୱଂ ପାପାନାଂ ବିତତିମପରାଂ ଯାଦବପତେ**
**ଅହୋ ଦୀନନାଥୋ ନିହିତମଚଳଂ ନିଶ୍ଚିତ ପଦମ୍**
**ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁ ମେ । (୮)**




(ଆହେ ସୁରବର ! ଶୀଘ୍ର ଦୂରକର ମୋର ଅସାର ସଂସାର,
ଆହେ ଯଦୁପତି ହର ମୋ ଝଟିତି ବିରାଟ ପାପର ଭାର ।
ଦୀନ ଅନାଥକୁ ଦେଇଥାଅ ପ୍ରଭୁ ମୋକ୍ଷ ସଂପଦ ତୁମ୍ଭର,
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।)

**ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରୟତଃ ଶୁଚିଃ**
**ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁଲୋକଂ ସ ଗଚ୍ଛତି ।**
**ଇତିଶ୍ରୀ ଶଙ୍କରାଚାର୍ଯ୍ୟ ପ୍ରଣୀତଂ**
**ଶ୍ରୀଜଗନ୍ନାଥାଷ୍ଟକମ୍ ସମ୍ପୂର୍ଣ୍ଣମ୍ ।**

(ଯେଉଁ ବ୍ୟକ୍ତି ସଂଯତ ଓ ପବିତ୍ର ମନରେ ସର୍ବଦା ଏହି ପୁଣ୍ୟଜନକ ଜଗନ୍ନାଥାଷ୍ଟକମ୍ -
ସ୍ତୋତ୍ର ପାଠ କରନ୍ତି, ସେ ସମସ୍ତ ପାପରୁ ମୁକ୍ତ ହୋଇ ବିଷ୍ଣୁ ଲୋକକୁ ଗମନ କରନ୍ତି ।)

**ଜଗନ୍ନାଥାଷ୍ଟକ ସମାପ୍ତ**

* * * *







# ପ୍ରଥମ ପ୍ରଣିପାତ

ଡକ୍ଟର ବଳରାମ ଦାସ

**ଶ୍ରୀ**ଜଗନ୍ନାଥଙ୍କ ଦର୍ଶନ କରିବା ପାଇଁ ଆସୁଥିବା ଲକ୍ଷ ଲକ୍ଷ ଶ୍ରଦ୍ଧାଳୁ ମଣିଷ ଶ୍ରୀକ୍ଷେତ୍ରରେ ପହଞ୍ଚିବା ପୂର୍ବରୁ, ଦୂରରୁ ଯେତେବେଳେ ଶ୍ରୀନୀଳଚକ୍ର ଉପରେ ଫର୍‌ଫର୍ ହେଇ ଉଡୁଥିବା ପତିତପାବନ ବାନାକୁ ଦେଖେ, ସେତେବେଳେ ତା'ର ସାରା ମନ ପ୍ରାଣ ଏକ ଅପୂର୍ବ ପ୍ରାପ୍ତିର ଶିହରଣରେ ଶିହରିତ ହୋଇଯାଏ । ତା'ର ଦୃଷ୍ଟିରେ ନୀଳଚକ୍ର ପଡ଼ିଯିବା ମାତ୍ରେ ପରମ ଭକ୍ତିରେ ସେ ଗଦ୍ ଗଦ୍ ହୋଇଉଠେ ଓ ଦୁଇ ହାତ ଯୋଡ଼ି ନୀଳଚକ୍ରକୁ ପ୍ରଣାମ କରି, ଶ୍ରୀଜଗନ୍ନାଥ ଦର୍ଶନର ପୁଣ୍ୟ ଓ ଆନନ୍ଦ ଲାଭ କରେ । ସେଥିପାଇଁ ଜଗନ୍ନାଥ ଚେତନାରେ ଶ୍ରୀନୀଳଚକ୍ରର ଭୂମିକା ଯେପରି ମହତ୍ୱପୂର୍ଣ୍ଣ ସେହିପରି ସୁଦୂର ପ୍ରସାରୀ ।

ଜଗନ୍ନାଥ ଚେତନାରେ ଅନେକ 'ନୀଳ'ର ସୁସମାବେଶ ଘଟିଛି । ଶ୍ରୀଜଗନ୍ନାଥଙ୍କ ମୂଳ ଖୋଜିବାକୁ ଯାଇ ଆମେ ବିଶ୍ୱାବସୁଙ୍କ ପାଖରେ ପହଞ୍ଚିବା ପରେ, ଜାଣୁ ଯେ ଜଗନ୍ନାଥ ଯେଉଁ ଗିରିଗୁହାରେ ସଂପୂର୍ଣ୍ଣ ଗୋପନୀୟ ଭାବରେ ଉପାସିତ ହେଉଥିଲେ ତାହା ହେଉଛି ନୀଳକନ୍ଦର । ସେଠାରେ ଜଗନ୍ନାଥ ଆଦ୍ୟ ସ୍ୱରୂପରେ 'ନୀଳମାଧବ' ନାମରେ ହିଁ ପୂଜିତ ହେଉଥିଲେ । ପରବର୍ତ୍ତୀ କାଳରେ ମଧ ତାଙ୍କ ନାମ ସହିତ ନୀଳ ଶବ୍ଦର ବ୍ୟାପକ ସଂଯୋଗ ଲକ୍ଷ୍ୟ କରାଯାଇପାରେ । ଶ୍ରୀଜଗନ୍ନାଥ ହେଉଛନ୍ତି ନୀଳାଦ୍ରି ବିହାରୀ, ନୀଳାଦ୍ରିଶ, ନୀଳାଚଳ ନାଥ, ନୀଳାଦ୍ରି କେଶରୀ ଓ ନୀଳମଣି । ତାଙ୍କ ନିବାସ ସ୍ଥଳ ପୁଣି ନୀଳଗିରି, ନୀଳାଚଳ, ନୀଳାଦ୍ରି, ନୀଳଶୈଳ ଓ ନୀଳକନ୍ଦର ରୂପରେ ମଧ ପରିଚିତ ଓ ପ୍ରସିଦ୍ଧ । ସେହି ଦୃଷ୍ଟିରୁ ତାଙ୍କର ଆୟୁଧ ଶ୍ରୀସୁଦର୍ଶନ 'ନୀଳଚକ୍ର' ନାମରେ ଶ୍ରୀମନ୍ଦିର ଚୂଡ଼ାରେ ସଂସ୍ଥାପିତ ହେବା ପ୍ରକୃତରେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ମହାପ୍ରଭୁଙ୍କର ଆୟୁଧ ସୁଦର୍ଶନ 'ନୀଳଚକ୍ର'ରେ ରୂପାନ୍ତରିତ ହେବା ନେପଥ୍ୟରେ ଯେଉଁସବୁ ପୌରାଣିକ କାହାଣୀ ରହିଛି, ସେସବୁ ମଧ୍ୟରେ ଅନେକ ବୈସାଦୃଶ୍ୟ ପରିଲକ୍ଷିତ ହୋଇଥାଏ । ଅଗ୍ନିପୁରାଣ, ମତ୍ସ୍ୟପୁରାଣ, କପିଳ ସଂହିତା, ସୁତ ସଂହିତା ପ୍ରଭୃତିରେ ନୀଳଚକ୍ରର ଉତ୍ପତ୍ତି ସଂପର୍କରେ ଭିନ୍ନ ଭିନ୍ନ ମତ ପ୍ରକାଶିତ ହୋଇଥିଲେ ମଧ ଯେଉଁ ମତଟିଦ୍ୱାରା ଶ୍ରଦ୍ଧାଳୁମାନେ ଅଧିକ ପ୍ରଭାବିତ ହୋଇଥାନ୍ତି, ତାହା ହେଉଛି ''ସୁତ ସଂହିତା''ରେ ପ୍ରକାଶିତ ସୁଦର୍ଶନଙ୍କର ନୀଳଚକ୍ର ରୂପରେ ଶ୍ରୀମନ୍ଦିର ଚୂଡ଼ାରେ ଅବସ୍ଥାନ ସଂପର୍କୀୟ ବିବରଣୀ । ସେହି ବିବରଣୀ ଅନୁସାରେ - କଳିଯୁଗରେ ମହାପ୍ରଭୁ ଶ୍ରୀଜଗନ୍ନାଥ ହସ୍ତପଦରହିତ ହୋଇ ଯେତେବେଳେ ଶ୍ରୀମନ୍ଦିରରେ ଉପାସିତ ହେଲେ ସେତେବେଳେ ସୁଦର୍ଶନଙ୍କୁ ଆଉ ଧାରଣ କଲେ ନାହିଁ । ସୁଦର୍ଶନଙ୍କ ଧାରଣା ହେଲା ଯେ ତାଙ୍କରି ଶକ୍ତି ଯୋଗୁଁ ହିଁ ମହାପ୍ରଭୁ ଥିଲେ ବଳିୟାନ । ବର୍ତ୍ତମାନ ସେ ତାଙ୍କୁ ଧାରଣ କରୁ ନାହାନ୍ତି ଅର୍ଥ ମହାପ୍ରଭୁ ଦୁର୍ବଳ ହୋଇପଡ଼ିଛନ୍ତି । ଏହି ଭାବନା ହିଁ ସୁଦର୍ଶନଙ୍କୁ ବେଶ୍ ଅହମିକାଗ୍ରସ୍ତ କରି ଦେଲା । ମହାପ୍ରଭୁ ସୁଦର୍ଶନଙ୍କର ଏହି ଅନାବଶ୍ୟକ ଅହମିକାରେ ମନେ ମନେ କ୍ଷୁବ୍‌ଧ ହେଲେ ଓ ନିଜର 'ଗର୍ବ ଗଞ୍ଜନ' ନାମର ଯଥାର୍ଥତା ପ୍ରତିପାଦନ ତଥା ସୁଦର୍ଶନଙ୍କୁ ଉଚିତ୍ ଶିକ୍ଷା ଦେବା ପାଇଁ ଏକ ଉପାୟ ଚିନ୍ତା କରି ହନୁମାନଙ୍କୁ ଡାକି ଆଣିବା ପାଇଁ ତାଙ୍କୁ ପ୍ରେରଣ କଲେ । ସୁଦର୍ଶନ କିନ୍ତୁ ଏପରି ଦୂତ ଭୂମିକା ନିର୍ବାହ ପାଇଁ ଆଦୌ ପ୍ରସ୍ତୁତ ନଥିଲେ । ଯାହାଙ୍କୁ ଧାରଣ କରିଥିବା ଯୋଗୁଁ ପ୍ରଭୁ ହେଉଛନ୍ତି ଚକ୍ରଧାରୀ, ସେଇ ଚକ୍ରକୁ ଦୂତ ଭାବରେ ହନୁମାନଙ୍କୁ ଡାକି ଆଣିବା ପାଇଁ ପ୍ରେରଣ କରିବା ଅହମିକାଗ୍ରସ୍ତ ସୁଦର୍ଶନଙ୍କୁ କ୍ରୋଧ ଜର୍ଜରିତ କରିଦେଲା । ସେ ହନୁମାନଙ୍କୁ ଯାଇ ଡାକି ଆଣିଥିଲେ ମଧ ତାଙ୍କୁ ଭିତରକୁ ନ ଛାଡ଼ି ଦେବା ପାଇଁ ମନ୍ଦିରର ଚାରୋଟି ଦ୍ୱାରକୁ ଅବରୋଧ କରି ରଖିଦେଲେ । ମହାବୀର ହନୁମାନ ମଧ ସୁଦର୍ଶନଙ୍କର ଏପରି ଅବାଞ୍ଛିତ ଅହଂଭାବର ସ୍ୱର୍ଦ୍ଧିତ ସୂଚନା ପାଇ ମନେ ମନେ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କଲେ । ପ୍ରଭୁଙ୍କ କରୁଣାରୁ ହନୁମାନଙ୍କର ଅଷ୍ଟଭୁଜ ପ୍ରକଟିତ ହେଲା । ସେ ଚାରି ଭୁଜରେ





ସୁଦର୍ଶନଙ୍କୁ ଧାରଣ କରି, ଦୁଇ ଭୁଜରେ ଶ୍ରୀଜଗନ୍ନାଥଙ୍କୁ ପ୍ରଣାମ କଲେ ଓ ଅବଶିଷ୍ଟ ଦୁଇ ଭୁଜରେ ନାମାବଳୀ ଜପ କରି ରତ୍ନ ସିଂହାସନ ନିକଟରେ ଉପସ୍ଥିତ ହେଲେ । ସେ ଖାଲି ଉପସ୍ଥିତ ହେଲେ ନାହିଁ, ସମସ୍ତ ଘଟଣା ବର୍ଣ୍ଣନା କରି ସୁଦର୍ଶନଙ୍କର ଶକ୍ତି ହ୍ରାସ ପାଇଁ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କଲେ । ହନୁମାନଙ୍କ ପ୍ରାର୍ଥନା ପୂରଣ ହେଲା । ସୁଦର୍ଶନ ତେଜରହିତ ହୋଇ ସ୍ତମ୍ଭାକାରରେ ଶ୍ରୀଜଗନ୍ନାଥଙ୍କ ବାମପାର୍ଶ୍ୱରେ ଅବସ୍ଥାପିତ ହେଲେ ।

ନିଜର ତେଜ ଓ ଶକ୍ତି ଚାଲିଯିବା ଯୋଗୁଁ ସୁଦର୍ଶନ ହେଲେ ଅତ୍ୟଧିକ ବିଷାଦଗ୍ରସ୍ତ । ସେ ବୁଝିପାରିଲେ ଯେ ଅହମିକାଗ୍ରସ୍ତ ହୋଇ ସେ ପ୍ରଭୁଙ୍କପ୍ରତି କିପରି ଅସୁନ୍ଦର ଆଚରଣ ପ୍ରଦର୍ଶନ କରିଛନ୍ତି । ଲଜ୍ଜାରେ ତାଙ୍କ ମୁଣ୍ଡ ତଳକୁ ହୋଇଗଲା । ନିଜର ଏଇ ଗର୍ବୋଦ୍ଧତ ଆଚରଣ ପାଇଁ ସେ ପ୍ରଭୁଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ । ଜଗନ୍ନାଥଙ୍କ ମୁହଁରେ ଫୁଟି ଉଠିଲା ସେହି ରହସ୍ୟମୟ ହସରୁ ଚେନାଏ । କାହା ଗର୍ବ ବା ସେ ଗଞ୍ଜନ କରି ନାହାନ୍ତି । ସେ କରୁଣା ପରବଶ ହୋଇ ନିଜର ଅତି ପ୍ରିୟ ସୁଦର୍ଶନଙ୍କୁ କ୍ଷମା କରି ଦେଲେ ଓ ତାଙ୍କର ସମ୍ମାନ ରକ୍ଷା କରିବା ପାଇଁ ନୀଳଚକ୍ର ରୂପରେ ଶ୍ରୀମନ୍ଦିର ଚୂଡ଼ାରେ ଅବସ୍ଥାପିତ କଲେ । କେବଳ ସେତିକି ନୁହେଁ, କରୁଣା ସାଗର ପ୍ରଭୁ ଏକଥା ମଧ୍ୟରେ ଜଣାଇଲେ ଯେ ଦୂରରୁ ଭକ୍ତମାନେ ନୀଳଚକ୍ରଙ୍କୁ ଦେଖି ଚତୁର୍ଦ୍ଧାମୂର୍ତ୍ତି ଦର୍ଶନର ଫଳ ଲାଭ କରିବେ । ଏହାଦ୍ୱାରା ତେଜରହିତ ହୋଇ ସୁଦ୍ଧା ସୁଦର୍ଶନଙ୍କର ବୈଶିଷ୍ଟ୍ୟ ଅକ୍ଷୁର୍ଣ୍ଣ ରହିଲା । ସେଥିପାଇଁ ଆଜି ମଧ ଭକ୍ତମାନେ ଦୂରରୁ ଶ୍ରୀମନ୍ଦିରର ଚୂଡ଼ାରେ ଶୋଭା ପାଉଥିବା ଶ୍ରୀନୀଳଚକ୍ରଙ୍କୁ ଦେଖି ଭକ୍ତିଭରା ପ୍ରଣାମ ନିବେଦନ କରନ୍ତି ସ ଚତୁର୍ଦ୍ଧାମୂର୍ତ୍ତି ଦର୍ଶନର ସନ୍ତୋଷ ତଥା ପୁଣ୍ୟ ଲାଭ କରନ୍ତି । ଶ୍ରୀମନ୍ଦିର ଚୂଡ଼ାରେ ଶ୍ରୀନୀଳଚକ୍ରଙ୍କ ଆବିର୍ଭାବର ଏକାଧିକ କାହାଣୀ ମଧ୍ୟରୁ ଏହା ଅନ୍ୟତମ ।

ସେ କରୁଣା ପରବଶ ହୋଇ ନିଜର ଅତି ପ୍ରିୟ ସୁଦର୍ଶନଙ୍କୁ କ୍ଷମା କରି ଦେଲେ ଓ ତାଙ୍କର ସମ୍ମାନ ରକ୍ଷା କରିବା ପାଇଁ ନୀଳଚକ୍ର ରୂପରେ ଶ୍ରୀମନ୍ଦିର ଚୂଡ଼ାରେ ଅବସ୍ଥାପିତ କଲେ । କେବଳ ସେତିକି ନୁହେଁ, କରୁଣା ସାଗର ପ୍ରଭୁ ଏକଥା ମଧ୍ୟରେ ଜଣାଇଲେ ଯେ ଦୂରରୁ ଭକ୍ତମାନେ ନୀଳଚକ୍ରଙ୍କୁ ଦେଖି ଚତୁର୍ଦ୍ଧାମୂର୍ତ୍ତି ଦର୍ଶନର ଫଳ ଲାଭ କରିବେ ।

କେଉଁ କାଳରୁ ଲୋକମାନଙ୍କ ମନରେ ଏଭଳି କାହାଣୀ ଦାନା ବାନ୍ଧିବାକୁ ଆରମ୍ଭ କରିଥିଲା, ତାହା କହିବା ସହଜ ନୁହେଁ । ନୀଳଚକ୍ର ସ୍ଥାପନର କାହାଣୀ ସହିତ ସାଧାରଣ ଲୋକଙ୍କର କୌଣସି ଭାବଗତ ସଂପର୍କ ନାହିଁ । ସାଧାରଣ ଭକ୍ତ ମନରେ ନୀଳାଚଳନାଥ ଓ ନୀଳଚକ୍ର ପ୍ରାୟ ଏକ ହୋଇଯାଇଛନ୍ତି । ସେମାନେ ଏ ଉଭୟଙ୍କ ମଧ୍ୟରେ କୌଣସି ବୈଷମ୍ୟ ଥିବା କଥା କଳ୍ପନା ସୁଦ୍ଧା କରିପାରନ୍ତି ନାହିଁ । ସେମାନଙ୍କ ଭାବାବେଗରେ ତେଣୁ ନୀଳଚକ୍ରଙ୍କ ଦର୍ଶନ, ଶ୍ରୀଜଗନ୍ନାଥଙ୍କ ଦର୍ଶନର ତୃପ୍ତି ଓ ସନ୍ତୋଷ ଭରି ଦେଇଥାଏ ।

ଓଡ଼ିଆ କବିଙ୍କ କଣ୍ଠରୁ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଯେତେବେଳେ ଝରିପଡ଼େ 'ନୀଳଚକ୍ରେ ହୋ ଦେଖ ଉଡୁଛି ବାନା' ସେତେବେଳେ ପ୍ରତ୍ୟେକ ଓଡ଼ିଆର ପ୍ରାଣ ଏକ ଅପୂର୍ବ ଆଧ୍ୟାତ୍ମିକ ଉଲ୍ଲାସରେ ଶିହରିତ ହୋଇଯାଏ । ମହାପ୍ରଭୁଙ୍କର ପ୍ରତୀକ ଭାବରେ ଶ୍ରୀନୀଳଚକ୍ରଙ୍କୁ ଦେଖିଲେ ତା'ର ଦୁଇହସ୍ତ କପାଳ ଛୁଏଁ ଓ ସେ ସମ୍ମୋହିତ ହୋଇଯାଏ । ଜଗନ୍ନାଥ ଚେତନାର ଏହି ସମ୍ମୋହନ ହିଁ ତା'ର ରହସ୍ୟମୟତାର ଅନବଦ୍ୟ ପ୍ରକାଶ । ଓଡ଼ିଆ ଜାତି ନୀଳଚକ୍ରଙ୍କୁ ଦର୍ଶନ କଲାମାତ୍ରେ ଯେ କେବଳ ବିହ୍ୱଳିତ ହୋଇଯାଏ ତାହା ନୁହେଁ, ତା'ରି ମଧ୍ୟରେ ସେ ଯେମିତି ଫେରିପାଏ ତା' ମନରୁ କ୍ରମଶଃ ତୁଟି ଆସୁଥିବା ଗଭୀର ଆତ୍ମବିଶ୍ୱାସ ।

ଅତୀତରେ ଓଡ଼ିଶା ବହୁ ବାର ବିଧର୍ମୀମାନଙ୍କ ଆକ୍ରମଣର ଶିକାର ହୋଇଛି । ଏ ଆକ୍ରମଣର କୁତ୍ସିତ ହସ୍ତରୁ ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥ ମଧ ରକ୍ଷା ପାଇ ନାହାନ୍ତି । ସେଥିପାଇଁ ଜଗନ୍ନାଥଙ୍କୁ ସାମୟିକ ଭାବରେ ଶ୍ରୀକ୍ଷେତ୍ର ବାହାରେ ଗୋପ୍ୟ ହେବାକୁ ପଡ଼ିଛି । ଶ୍ରୀମନ୍ଦିରରେ ସୃଷ୍ଟି ହୋଇଥିବା ସେସବୁ ଶୂନ୍ୟତା ଓଡ଼ିଶାର ଜାତୀୟ ଜୀବନରେ ମଧ ସୃଷ୍ଟି କରିଛି ଅପ୍ରମେୟ ଶୂନ୍ୟତାବୋଧ । ନିଜର ଆତ୍ମୀୟସ୍ୱଜନଙ୍କର ଦେଖା ନପାଇ ମଣିଷ ଯେମିତି ଆକୁଳ-ଅଧୀର ହୋଇଉଠେ, ଶ୍ରୀଜଗନ୍ନାଥ ପାତାଳୀ ହେବାରେ ଓଡ଼ିଆ ଜାତି ସେହିପରି ଶୂନ୍ୟତା ଅନୁଭବ କରିଛି । ହାହାକାର କରି ଉଠିଛି ତା'ର ଶୂନ୍ୟପ୍ରାଣ । କିନ୍ତୁ ସେ ଭାଙ୍ଗିପଡ଼ି ନାହିଁ । ନୀଳଚକ୍ରକୁ ଅନେଇ ସେ ତା'ର ସେଇ ଶୂନ୍ୟପ୍ରାଣରେ ସଂଚାର କରିଛି ଆଶା-ଉଦ୍ଦୀପନାର ଢେଉ । ତା'ର ଅସଜଡ଼ା ଆତ୍ମବିଶ୍ୱାସ ପୁଣିଥରେ ସଜାଡ଼ି ହୋଇଛି । ନୀଳଚକ୍ର ତା' ମନରେ ଏଇ ପ୍ରତ୍ୟୟ ସୃଷ୍ଟି କରିଛି ଯେ, ଏ ଅନ୍ଧାର ସାମୟିକ । ପ୍ରଭୁ ପୁଣି ବାହୁଡ଼ି ଆସିବେ ଶ୍ରୀମନ୍ଦିର । ଦିବ୍ୟଜ୍ୟୋତିର ଝଲକରେ ପୁଣି ଥରେ ଝଲସି ଉଠିବ ଶ୍ରୀମନ୍ଦିର ଓ କୋଟି କୋଟି ଓଡ଼ିଆଙ୍କ ପ୍ରାଣରେ ଜଳି ଉଠିବ ବିଶ୍ୱାସର ସେଇ ସୁବର୍ଣ୍ଣ ପ୍ରଦୀପ । ସେଥିପାଇଁ ଯୁଗ ଯୁଗ ଧରି ନୀଳଚକ୍ର ହିଁ ଓଡ଼ିଆ ଜାତିକୁ ଦେଇ ଆସିଛି ଆତ୍ମବିଶ୍ୱାସର ମହନୀୟ ପ୍ରେରଣା । ସମ୍ଭବତଃ ଏହି କାରଣରୁ




ଓଡ଼ିଆ ସାହିତ୍ୟର ଆଦି ପର୍ବଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ବହୁକବି ସେମାନଙ୍କ କାବ୍ୟ କବିତାରେ ନୀଳଚକ୍ର ଓ ସେଥିରେ ଫର୍‌ଫର୍ ହୋଇ ଉଡୁଥିବା ପତିତପାବନ ବାନା ସଂପର୍କରେ ବର୍ଣ୍ଣନା କରିବା ପାଇଁ ଅତ୍ୟନ୍ତ ଆଗ୍ରହୀ ହୋଇଛନ୍ତି ।

ଓଡ଼ିଆ ସାହିତ୍ୟରେ ନୀଳଚକ୍ର ପ୍ରସଙ୍ଗରେ ସର୍ବପ୍ରଥମ ବର୍ଣ୍ଣନା ଆମେ ଦେଖିବାକୁ ପାଇଥାଉଁ ଲୋକ ସାହିତ୍ୟରେ । ଲୋକ ସାହିତ୍ୟ ହିଁ ଯେକୌଣସି ସାହିତ୍ୟର ମୂଳଭିତ୍ତି । ଲିଖିତ ସାହିତ୍ୟ ସୃଷ୍ଟି ପୂର୍ବରୁ ଏହା ଲୋକମାନଙ୍କଦ୍ୱାରା ପ୍ରଚାରିତ ତଥା ପ୍ରସାରିତ ହେଉଥିବା ସାହିତ୍ୟର ମାନ୍ୟତା ଲାଭ କରିଛି । ସରଳ ପଲ୍ଲୀ ଗାଁରେ ଅପାଠୁଆ-ଅପାଠୋଇ ଲୋକ କବିମାନଙ୍କର ସୃଷ୍ଟଲୋକ ସାହିତ୍ୟରୁ ଜଣାପଡ଼ି ଥାଏ ଯେ ଥରେ ଭୀଷଣ ଝଡ଼ ହେବାରୁ ନୀଳଚକ୍ର ଦେଉଳ ଶିଖରରୁ ଛିଡ଼ି ଯାଇ ତଳେ ପଡ଼ିଯାଇ ଥିଲା ଓ ସେବକମାନେ ସମ୍ଭବତଃ ତାହା କରାଇ ନପାରିବାରୁ ଶେଷରେ ଜଗନ୍ନାଥ ତାହାକୁ ଯଥାସ୍ଥାନରେ ସଂସ୍ଥାପିତ କରିଥିଲେ ।

'ମାଇଲା ବତାସ ବଡ଼ଦେଉଳକୁ
ଛିଡ଼ିଲା ନୀଳଚକ୍ର ପଡ଼ିଲା ତଳକୁ
ଆପେ ଜଗନ୍ନାଥ ପ୍ରଭୁ ବଢ଼ିଆ ଟେକିଲେ, ଉପରକୁ ହେ ।'

ଶ୍ରୀକ୍ଷେତ୍ରର କିଛି ପୂର୍ବରୁ ତୁଳସୀ ଚଉରା ନାମକ ସ୍ଥାନରେ ପହଞ୍ଚିଗଲେ, ସେଠାରୁ ଦୃଶ୍ୟମାନ ହୋଇଥାଏ ନୀଳଚକ୍ର । କବି ବଳରାମ ଦାସଙ୍କ ରଚନାରେ ଏହାର ଏକ ସୁନ୍ଦର ଚିତ୍ର ମିଳିଥାଏ :

'ତୁଳସୀର ମାଳ ତୁଳସୀର ଚୂଳ ତୁଳସୀ ମଥାରେ ଦେଇ
ତୁଳସୀ ଚଉରା ମୂଳେ ଅନାଇଲେ ନୀଳଚକ୍ର ଦିଶୁଥାଇ ।'

କବିଙ୍କର 'ଭାବ ସମୁଦ୍ର' ପୁସ୍ତକରେ ମଧ ରହିଛି ନୀଳଚକ୍ରର ବର୍ଣ୍ଣନା :

'ଶରଣ ପଞ୍ଜର ତୋ'ର ମହିମା,
ନୀଳଚକ୍ରରେ ବାନ୍ଧିଅଛୁ ବାନା,
ହରିତୁ ଏକଥା ନକରୁ ଆନ,
ଦୋଷ ଯେ କ୍ଷମାକର ଭଗବାନ ।'

ସଂସାରରେ ଥିବା ଅଧମ ଓ ପତିତମାନଙ୍କୁ ଉଦ୍ଧାର କରିବା ପାଇଁ ନୀଳଚକ୍ର ଓ ପତିତପାବନ ବାନାର ଯେ କୌଣସି ବିକଳ୍ପ ନାହିଁ, ସେ କଥା ଉପଲବ୍ଧି କରିଛନ୍ତି ପଞ୍ଚସଖା ଯୁଗର ଅନ୍ୟତମ ବିଶିଷ୍ଟ କବି ତଥା ହରିବଂଶର ସ୍ରଷ୍ଟା ଅଚ୍ୟୁତାନନ୍ଦ ଦାସ । ତାଙ୍କ ଭାଷାରେ -

'ଅଧମ ଜନମାନଙ୍କୁ ଉଦ୍ଧରିବା ପାଇଁ,
ନୀଳଚକ୍ର ବାନା ନିରନ୍ତର ଉଡୁଥାଇ ।'

କବି ଅଚ୍ୟୁତାନନ୍ଦ ପୁଣି କବି ବଳରାମ ଦାସଙ୍କ ପରି ସ୍ୱର ମିଳାଇ ଗାଇଛନ୍ତି -

'ତୁଳସୀର ଜଟ ତୁଳସୀ ମୁକୁଟ ତୁଳସୀ ଭୂଷଣ ହୋଇ
ତୁଳସୀ ଚଉରା ପାଶେ ଅନାଇଲେ ନୀଳଚକ୍ର ଦିଶୁଥାଇ ।'

କିନ୍ତୁ କବି ଯଶୋବନ୍ତ ଦାସଙ୍କ 'ନୀଳଚକ୍ର' ସଂପର୍କୀୟ ବର୍ଣ୍ଣନା ତାଙ୍କ କାଳର ଅନ୍ୟ କବିମାନଙ୍କର ରଚନାଠାରୁ ଭିନ୍ନ । ସେ ନୀଳଚକ୍ରଠାରେ ଦାର୍ଶନିକତାର ଆରୋପ କରି ସଂପୂର୍ଣ୍ଣ ନିଜସ୍ୱ ବ୍ୟାଖ୍ୟାରେ କହିଛନ୍ତି -

'ପରମପୁରୁଷ ଦେଉଳ,
ନୀଳଚକ୍ର ଯେ ଶୂନ୍ୟଠୁଳ,
ନେତ ଯେ ବ୍ରହ୍ମା, ବିଷ୍ଣୁ, ହର
ଉଡୁଣ ଅଛି ଫର୍ ଫର୍ ।'

ପଞ୍ଚସଖା ଯୁଗର କବିମାନଙ୍କ ଚେତନାରେ ଆଧାତ୍ମିକ-ଦାର୍ଶନିକତାର ଥିଲା ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ସେଥିପାଇଁ ସେମାନେ ସ୍ୱାଭାବିକ ଭାବରେ ଅଙ୍କନ କରିଯାଇଛନ୍ତି ନିଜ ଆଧାତ୍ମିକ - ଦାର୍ଶନିକତାର ବହୁ ବିରଳ ଚିତ୍ର । ଷୋଡ଼ଶ ଶତାବ୍ଦୀର ଅନ୍ୟତମ ଭକ୍ତକବି ରଘୁ ଅରକ୍ଷିତଙ୍କ କବିତାରେ ମଧ ରହିଛି ନୀଳଚକ୍ରର ବର୍ଣ୍ଣନା । ସେ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ଆକୁଳିତ ପ୍ରାଣର ଆକାଂକ୍ଷା ଏହିପରି ପ୍ରକାଶ କରିଛନ୍ତି -

'ବାଲିରେ ପଡ଼ିଥାଇ ନୀଳଚକ୍ରକୁ ଚାହିଁ,
ପ୍ରାଣ ମୋ' ଶେଷ ହେଉଥାଉ
ବାଲିରେ ପଡ଼ିକରି ମାଂସକୁ ମିଳାଇବି
ଚକ୍ର ଉହାଡ଼େ ଥିବି ରହି ହେ ମହାପ୍ରଭୁ ।'

କେବଳ ରଘୁ ଅରକ୍ଷିତ ନୁହନ୍ତି, ଓଡ଼ିଆ ସାହିତ୍ୟର ଅନେକ କବି ନୀଳଚକ୍ରକୁ ଚାହିଁ ପ୍ରାଣ ତ୍ୟାଗ କରିବାର ବାସନା ପୋଷଣ କରିଛନ୍ତି । ଏହା ମଧ ସାଧାରଣ ଓଡ଼ିଆର ଆଜୀବନ ପିପାସା ।

ରୀତି ଯୁଗର ବରେଣ୍ୟ କବି ଉପେନ୍ଦ୍ର ଭଞ୍ଜଙ୍କର ବିଭିନ୍ନ କାବ୍ୟ କବିତାରେ ଜଗନ୍ନାଥ ଚେତନାର ପରମ ଅଭିବ୍ୟକ୍ତି ଘଟିଛି । ବିଶେଷ କରି 'ରସିକ ହୀରାବଳୀ'ରେ ନୀଳଚକ୍ରର ବର୍ଣ୍ଣନା କରିବାକୁ ଯାଇ ସେ ଯେଉଁ କାବ୍ୟିକତା ପ୍ରକାଶ କରିଛନ୍ତି ତାହା ପ୍ରକୃତରେ ଅନନ୍ୟ । ନୀଳଚକ୍ର ଉପରେ ଉଡୁଥିବା ପତିତପାବନ ବାନା





ପବନରେ ତା'ର ଅଞ୍ଚଳ ହଲାଇ-ହଲାଇ ମୁକ୍ତିର ଆନନ୍ଦ ଲାଭ କରିବା ପାଇଁ ଆହ୍ୱାନ କରୁଛି ।

ନୀଳଚକ୍ରର ବର୍ଣ୍ଣନା କରିବାକୁ ଯାଇ ମର୍ମସ୍ପର୍ଶୀ ଉଚ୍ଚାରଣ କରିଛନ୍ତି କବି ବନମାଳୀ । ଦୁଃଖ ଓ ଦାରିଦ୍ର୍ୟର ଘୋର ଉତ୍ପୀଡ଼ନ ମଧ୍ୟରେ ସୁଦ୍ଧା କବି ବନମାଳୀ କୌଣସି ଜାଗତିକ ପ୍ରାଚୁର୍ଯ୍ୟ ପାଇଁ ଅଳି କରି ନାହାନ୍ତି ତାଙ୍କ ପ୍ରାଣପ୍ରିୟ ପ୍ରଭୁ ଜଗନ୍ନାଥଙ୍କ ନିକଟରେ । ତାଙ୍କ ଅନ୍ତରରେ ବାଣୀ ଅକପଟ ଭାବରେ ପ୍ରକାଶ ପାଇଛି ଏହିପରି ଭାବରେ -

'ଦାନା କନା ପଛେ ମନା ହେଉ ମୋତେ, ନୀଳଚକ୍ର ବାନା ଚାହିଁ
ସୁଖୀ ହେଉଥିବି ଅଖିଳ ପତିହେ, ନିର୍ଦ୍ଦୟ ହୋଇବ ନାହିଁ ।'

ପତିତମାନଙ୍କୁ ଉଦ୍ଧାର କରିବା ପାଇଁ ନୀଳଚକ୍ରରେ ପତିତପାବନ ବାନା ତରଙ୍ଗିତ ହେଉଛି - ଏହି ଚେତନା ହିଁ ପ୍ରାୟ ଅଧିକାଂଶ କବିଙ୍କ ରଚନାରେ ପ୍ରକାଶିତ ହୋଇଛି । କେତେକ କବି ପୁଣି ନିଜର ଦୁର୍ଦ୍ଦଶା ସଂପର୍କରେ ପ୍ରଭୁଙ୍କୁ ଜଣାଇ, ପ୍ରତିକାର ପାଇଁ ପ୍ରାର୍ଥନା କରି ନିରାଶ ହେବାପରେ ଅଭିମାନ ଭରା କଣ୍ଠରେ ଗାଇଛନ୍ତି -

'ପତିତ ଜନଙ୍କୁ ଉଦ୍ଧାରିବା ପାଇଁ ଉଡ଼ାଇ ଅଛ ପତକା
ବାହୁ ଟେକି ତୁମେ ବସି ଚାହୁଁ ଚାହୁଁ ବିପତ୍ତି କରୁଛି ଡକା,
ମହାପ୍ରଭୁ । (ନିତ୍ୟାନନ୍ଦ)

କେବଳ ପ୍ରାଚୀନ ଅଥବା ମଧ୍ୟଯୁଗ ନୁହେଁ, ଆଧୁନିକ ଓଡ଼ିଆ ସାହିତ୍ୟରେ ମଧ୍ୟ ନୀଳଚକ୍ର ପ୍ରସଙ୍ଗରେ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଉତ୍କଳମଣି ଗୋପବନ୍ଧୁଙ୍କ ମନରେ ନୀଳଚକ୍ର ତଳେ ଅର୍ଥାତ୍ ଶ୍ରୀକ୍ଷେତ୍ରରେ ହିଁ ଶେଷ ନିଃଶ୍ୱାସ ନେବା ପାଇଁ ଏକ ଆନନ୍ଦଘନ ଆବେଗ ସୃଷ୍ଟି ହୋଇଥିବା କଥା ତାଙ୍କ କବିତାରୁ ଅନୁଭବ କରାଯାଇପାରେ -

'ନୀଳଚକ୍ର ତଳେ କେ କରିବ ବାସ
କେ ଦେଖିବ ନୀଳାଚଳେ ନିତ୍ୟରାସ
ବୋଲି ହରି ହରି ସେ ପ୍ରେମ ଭିଖାରୀ
ପରାଣ ପୁଲକେ ତେଜିବ ନିଃଶ୍ୱାସ ।'

ଏହା କେବଳ ଗୋପବନ୍ଧୁଙ୍କର ନୁହେଁ, ଜଗନ୍ନାଥ ପ୍ରାଣ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଏଇ ଇଚ୍ଛା ଅତି ସଂଗୋପନରେ ଲାଳିତ ହୋଇ ଆସିଛି କାଳ କାଳ ଧରି । ପ୍ରତି ଓଡ଼ିଆ ଏହାରି ଭିତରେ ହିଁ ଖୋଜି ପାଇଛନ୍ତି ଜୀବନର ପରମ ସାର୍ଥକତା । ସେଇ ବିଶ୍ୱାସର ପ୍ରତୀକ ନୀଳଚକ୍ର ତେଣୁ ଓଡ଼ିଆ ପ୍ରାଣରେ ଏକ ମନୋରମ ଆଧ୍ୟାତ୍ମିକ କମ୍ପନ ସୃଷ୍ଟି କରିଥାଏ । ସେଇ ବିଶ୍ୱାସ ପ୍ରାଣରେ କିପରି ଆଶ୍ୱାସନା ଜାଗ୍ରତ କରିପାରେ, ତାହା ଜଣେ ଆଧୁନିକ କବିଙ୍କ ନିମ୍ନୋକ୍ତ ଉଦ୍ଧୃତାଂଶରୁ ବୁଝିହେବ -

'ହେଉ ହେଉ ଏ ପଥର ଜୀଇଁ ରହୁ
ନୀଳାଚଳ ନୀଳ ସ୍ୱପ୍ନପୁରୀ
ପବନରେ ଫର୍ ଫର୍ ଉଡୁଥିବ
ଏହି ନେତ ପରି ।'

ଆଧୁନିକ ଯୁଗରେ ଏହିସବୁ କବିମାନଙ୍କ ବ୍ୟତୀତ ଆହୁରି ଅନେକଙ୍କ ରଚନାରେ ନୀଳଚକ୍ରର ଉଚ୍ଛ୍ୱାସିତ ବର୍ଣ୍ଣନା ଦେଖିବାକୁ ମିଳିଥାଏ । ତେବେ ପ୍ରାଚୀନ କାଳରୁ ଆଜିଯାଏଁ ପ୍ରାୟ ସବୁ କବି ନୀଳଚକ୍ର ଓ ପତିତପାବନ ବାନା କଥା ଉଲ୍ଲେଖ କଲାବେଳେ ଗୋଟିଏ କଥା ଉପରେ ମୁଖ୍ୟତଃ ଗୁରୁତ୍ୱ ଆରୋପ କରିଛନ୍ତି । ଆଉ ସେଇ କଥାଟି ହେଲା - 'ନୀଳଚକ୍ରେ ହୋ ଦେଖ ଉଡୁଛି ବାନା, ପତିତପାବନ ନାମଟି ଯା' ନାଁ ।' ପ୍ରକୃତରେ ନୀଳଚକ୍ର ଓ ସେଥିରେ ଉଡୁଥିବା ପତିତପାବନ ବାନାକୁ ହିଁ ଶ୍ରୀଜଗନ୍ନାଥ ଦର୍ଶନାର୍ଥୀମାନେ ଦୂରରୁ କରିଥାନ୍ତି ସଭକ୍ତି ପ୍ରଣାମ । ଭକ୍ତମାନଙ୍କ ହୃଦୟରେ ନୀଳଚକ୍ର ଚିରକାଳ ପ୍ରଭୁଙ୍କର ପ୍ରତୀକ ଭାବରେ ହିଁ ବିରାଜମାନ କରିଛନ୍ତି । ସେଥିପାଇଁ ସେ ନୀଳଚକ୍ରଙ୍କ ଉଦ୍ଦେଶ୍ୟରେ ହିଁ ଭକ୍ତ ନିବେଦନ କରିଥାଏ ପ୍ରଥମ ପ୍ରଣିପାତ ।

'ଶଙ୍ଖନାଭି'
ସର୍ବୋଦୟ ନଗର, ପୁରୀ-୨





# ରଥଯାତ୍ରାର ବୈଶିଷ୍ଟ୍ୟ

ଡଃ କୃଷ୍ଣଚନ୍ଦ୍ର ଭୂୟାଁ

ରଥଯାତ୍ରାର ଉତ୍ପତ୍ତି କେବେ ହୋଇଥିଲା ଏହା ଠିକ୍‌ଭାବେ ନିର୍ଣ୍ଣିତ ହୋଇ ନାହିଁ । ରଥଯାତ୍ରା କହିଲେ ପୁରୀର ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାକୁ ସାଧାରଣରେ ମନେକରାଯାଏ । କେବଳ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରଥଯାତ୍ରା ନୁହେଁ, ବହୁ ଦେବଦେବୀଙ୍କ ଉଦ୍ଦେଶ୍ୟରେ ମଧ ରଥଯାତ୍ରା ଉତ୍ସବ ପାଳନ କରାଯାଏ । ଏହା ଓଡ଼ିଶା ଓ ଭାରତର ବିଭିନ୍ନ ରାଜ୍ୟରେ ଏବଂ ଭାରତ ବାହାରେ ବିଭିନ୍ନ ଦେଶରେ ପାଳନ କରାଯାଏ । ଏବେ ତ କେତେକ ରାଜନୈତିକ ଦଳର ନେତାମାନେ ରଥରେ ଯାତ୍ରା କରୁଛନ୍ତି ।

**ସୂର୍ଯ୍ୟଙ୍କର ରଥ ହିଁ ସର୍ବପ୍ରଥମ ରଥ । ଋଗ୍‌ବେଦରେ ସୂର୍ଯ୍ୟଙ୍କୁ ମିତ୍ର ଦେବତା ବୋଲି କୁହାଯାଇଛି ।** ଔପନିଷଦିକ ଓ ପୌରାଣିକ ଯୁଗରେ ମିତ୍ର ଦେବତା କ୍ରମବିକାଶ ପଥରେ ବିଭିନ୍ନ ଦେବଦେବୀ ଭାବେ ରୂପାନ୍ତରିତ ହୋଇଛନ୍ତି । ସେ କେତେବେଳେ ବିଷ୍ଣୁ ବା ଶିବ ହୋଇଛନ୍ତି ତ କେତେବେଳେ କୌଣସି ଦେବୀ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାରେ ପରିଣତ ହୋଇଛନ୍ତି । ଜଗନ୍ନାଥ ଧର୍ମ, ମନ୍ଦିର, ସଂସ୍କୃତି ଓ ରଥଯାତ୍ରା ସହିତ ସୌରଶକ୍ତିର ନିବିଡ଼ ସଂପର୍କ ରହିଛି । ଔପନିଷଦିକ ଯୁଗରେ ଜୀବଜଗତର ଆତ୍ମାକୁ ପୃଥିବୀ-ଆତ୍ମାସୂର୍ଯ୍ୟ ସହିତ ଏକ ଓ ଅଭିନ୍ନ ଭାବେ ବର୍ଣ୍ଣନା କରାଯାଇଛି । ଋଷିମାନେ ସୂର୍ଯ୍ୟଶକ୍ତି ବା ରଶ୍ମିର ତିନୋଟି ଶକ୍ତି- ସୃଷ୍ଟି, ସ୍ଥିତି, ଲୟ ମଣିଷ ମଧ୍ୟରେ ପ୍ରକାଶିତ ହୋଇଥିବା କଥା କହିଛନ୍ତି । ଯେଉଁ ମଣିଷ ମଧ୍ୟରେ ତ୍ରିଶକ୍ତିର ପୂର୍ଣ୍ଣ ବିକାଶ ଘଟିଥାଏ ତାକୁ ସୂର୍ଯ୍ୟର ଅବତାର କୁହାଯାଏ । ନୂତନ ଶୃଙ୍ଖଳିତ ସମାଜ ଗଠନ, ମନୁଷ୍ୟ ସମାଜକୁ ରକ୍ଷା କରିବାର ପ୍ରୟାସ ଓ ଅନ୍ୟାୟ, ଅଜ୍ଞତା ଦୂର କରିବା ପାଇଁ ନିରବଚ୍ଛିନ୍ନ ସଂଗ୍ରାମ କରିବା ହେଉଛି ଅବତାରମାନଙ୍କର କର୍ମ । **ସୂର୍ଯ୍ୟଙ୍କ ରଥଯାତ୍ରା ଭଳି ଅବତାରମାନଙ୍କର ମଧ ରଥଯାତ୍ରା ହେଉଥିଲା ।**

ଭବିଷ୍ୟ ପୁରାଣରେ ଭାଦ୍ର ମାସରେ ସୂର୍ଯ୍ୟଙ୍କ ରଥଯାତ୍ରା ହେବା କଥା କୁହାଯାଇଛି । ୟୁରୋପରେ ସିସିଲି ଦ୍ୱୀପରେ ଭାଦ୍ରମାସର ପ୍ରଥମରେ ସୂର୍ଯ୍ୟଙ୍କ ରଥଯାତ୍ରା ଆରମ୍ଭ ହେଉଥିଲା । ସିସିଲିର ରଥ ଭଳି ଭାରତର ସୂର୍ଯ୍ୟ ରଥ । ଜ୍ୟୋତିଷ୍କଚକ୍ର, ସୂର୍ଯ୍ୟ, ନବଗ୍ରହ ଇତ୍ୟାଦି ଦୁଇସ୍ଥାନର ରଥରେ ଅଙ୍କିତ ହେଉଥିଲା । ଏକଦା ଭାରତରେ ମାଘମାସର ଶୁକ୍ଳ ସପ୍ତମୀ ତିଥିରେ ସୂର୍ଯ୍ୟଙ୍କ ରଥଯାତ୍ରା ଉତ୍ସବ ପାଳିତ ହେଉଥିଲା । ଏଭଳି ନିଦର୍ଶନ ବର୍ତ୍ତମାନର ପାଞ୍ଜିରେ ମିଳେ ମଧ । ମାଘମାସର ଶୁକ୍ଳ ସପ୍ତମୀକୁ ରଥାଖ୍ୟା ସପ୍ତମୀ ବୋଲି ଅଭିହିତ କରାଯାଇଛି । ସୂର୍ଯ୍ୟ ରଥଯାତ୍ରା ସମୟରେ ରଥରେ ଦେବତାଙ୍କୁ ବସାଇବା ପୂର୍ବରୁ ବାଣ ଫୁଟା ଯାଉଥିଲା । ଦେବତାଙ୍କୁ ରଥରେ ବସାଇବା ପରେ ପୂଜା, ବେଦପାଠ କରାଯାଉଥିଲା, ସଙ୍ଗୀତ ଗାନ କରାଯାଉଥିଲା । ରାତ୍ରି ଜାଗରଣ ବ୍ରତ ମଧ ପାଳନ କରାଯାଉଥିଲା । ପରଦିନ ଅଷ୍ଟମୀ ତିଥିର ଖୁବ୍ ସକାଳୁ ସୂର୍ଯ୍ୟ ଉପାସକ ଓ ସୌର ସଂପ୍ରଦାୟର ଲୋକମାନେ ରଥଟାଣି ପଥ ପରିକ୍ରମା କରୁଥିଲେ । ରଥବେଦୀର ଉତ୍ତରଭାଗ ଉତ୍ତରାୟଣ ଓ ଦକ୍ଷିଣଭାଗ ଦକ୍ଷିଣାୟନର ସଂକେତ ବହନ କରୁଥିଲା । ରଥର ଗୋଟିଏ ଗୋଟିଏ ଅଂଶକୁ ଦଣ୍ଡ-କ୍ଷଣ-ରାତ୍ରି-ଋତୁ-ଯୁଗ ସହିତ ତୁଳନା କରାଯାଉଥିଲା । କାଠ ଛଡ଼ା ରଥ ସୁନା, ରୁପା ଧାତୁରେ ତିଆରି ହେଉଥିଲା । କେତେକ ସ୍ଥାନରେ ରଥକୁ ହରିତ୍ ବର୍ଣ୍ଣର ଅଶ୍ୱ ଟାଣୁଥିଲେ । ଅଶ୍ୱ ମିଳୁ ନଥିଲେ ବୃଷ ରଥ ଟାଣୁ ଥିଲେ । ସିସିଲିରେ ସୂର୍ଯ୍ୟ ରଥର ବାହନ ଥିଲା ବୃଷ । ରଥର ଧ୍ୱଜା ସୁନା ଓ ମଣିମୁକ୍ତାରେ ଚିତ୍ରିତ ହେଉଥିଲା । ରଥରେ ସୂର୍ଯ୍ୟଙ୍କ ତ୍ରୟୀ ଭାବ ବ୍ରହ୍ମା (ସୃଷ୍ଟି), ବିଷ୍ଣୁ (ସ୍ଥିତି) ଓ ମହେଶ୍ୱର (ଲୟ) ବିରାଜିତ ହେଉଥିଲେ । ପୂର୍ବଦ୍ୱାର ଦେଇ ରଥ ନିର୍ଗମନର ରୀତି ଥିଲା ।

ପ୍ରହ୍ଲାଦ ପ୍ରଥମେ ମହାବିଷ୍ଣୁଙ୍କ ରଥ ଟାଣି ଥିଲେ ବୋଲି ଭବିଷ୍ୟୋତ୍ତର ପୁରାଣରେ ଅଛି । ପ୍ରହ୍ଲାଦଙ୍କ ପରେ ଗନ୍ଧର୍ବମାନେ ରଥ ଟାଣୁ ଥିଲେ । ପଦ୍ମପୁରାଣ, ସ୍କନ୍ଦ ପୁରାଣ ଓ ଭବିଷ୍ୟ

ପୁରାଣରେ କୁହାଯାଇଛି ଚତୁର୍ମାସ୍ୟର ଶେଷରେ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ରାତିରେ ବିଷ୍ଣୁଭକ୍ତମାନେ ବିଷ୍ଣୁଙ୍କ ରଥରେ ସ୍ଥାପନ କରି ରଥଯାତ୍ରା ପାଳନ କରୁଥିଲେ । ସେମାନେ ପତାକା ଶୋଭିତ ରାଜପଥରେ ଗୀତ ନୃତ୍ୟ ପରିବେଷଣ କରି ରଥ ଟାଣୁଥିଲେ । ନଗର ପ୍ରଦକ୍ଷିଣ କରି ସେମାନେ ଫେରି ଆସୁଥିଲେ ମନ୍ଦିରକୁ । ନାଟ୍ୟ ମନ୍ଦିରରେ ବିଷ୍ଣୁଙ୍କୁ ରଖି ସେମାନେ ସାରାରାତି ଜାଗ୍ରତ ରହୁଥିଲେ । ବିଷ୍ଣୁଙ୍କ ରଥଯାତ୍ରା ଭଳି କୃଷ୍ଣଙ୍କର ରଥଯାତ୍ରା ଉତ୍ସବ ପାଳିତ ହେଉଥିଲା । ଅଧିକନ୍ତୁ, କୃଷ୍ଣଙ୍କର ରଥର ବିଶେଷ ସଂପର୍କ ଥିଲା ସୂର୍ଯ୍ୟରଥ ସହିତ ।

ଏକାମ୍ର ପୁରାଣରେ ଶିବଙ୍କ ରଥଯାତ୍ରାର ବିବରଣୀ ରହିଛି । ଶିବଙ୍କ ରଥ ତିଆରି ପାଇଁ କାଠ ସଂଗ୍ରହ କରାଯାଉଥିଲା ବିଚିତ୍ର ପରିବେଶ ମଧ୍ୟରେ । ଶିବ ଅନୁରାଗୀମାନେ ଚାରିଆଡ଼େ ବାଦ୍ୟ ବଜାଇ ସ୍ଥାନଟିକୁ ମୁଖରିତ କରୁଥିଲେ । ଏକ ସାତ୍ତ୍ୱିକ ପରିମଣ୍ଡଳରେ ରଥ ତିଆରି କାମ ଆରମ୍ଭ ହୁଏ । ଶ୍ୱେତବର୍ଣ୍ଣର ଏହି ରଥରେ ଚାରୋଟି ତୋରଣରେ ଚାରୋଟି ସ୍ୱର୍ଣ୍ଣ କଳସ ଥାଏ । ସେଥିରେ ଦୀପମାଳା ଶୋଭା ପାଉଥାଏ । ଶିବଙ୍କୁ ରଥରେ ବସାଇ ପୂଜା କାର୍ଯ୍ୟ କରାଯାଏ । ରଥଯାତ୍ରା ଆରମ୍ଭରେ ସ୍ଥାନଟି ଜୟଧ୍ୱନିରେ ପ୍ରକମ୍ପିତ ହୋଇଥାଏ । ଚୈତ୍ର ଶୁକ୍ଳ ଅଷ୍ଟମୀରେ ଶିବଙ୍କ ରଥଯାତ୍ରା ହୁଏ । ଏହି ତିଥିରେ ଓଡ଼ିଶାରେ ଶିବଙ୍କ ରଥଯାତ୍ରା ହୁଏ । ନେପାଳରେ ବୈଶାଖର ପ୍ରଥମ, ଦ୍ୱିତୀୟ ଦିନରେ ଭୈରବ ଭୈରବୀଙ୍କ ରଥଯାତ୍ରାବେଳେ ଲିଙ୍ଗ ରଥଯାତ୍ରା ମଧ୍ୟ ପାଳିତ ହୁଏ ।

ଚୈତ୍ର ଶୁକ୍ଳ ଅଷ୍ଟମୀରେ ଶିବଙ୍କ ରଥଯାତ୍ରା ହୁଏ । ନେପାଳରେ ବୈଶାଖର ପ୍ରଥମ, ଦ୍ୱିତୀୟ ଦିନରେ ଭୈରବ ଭୈରବୀଙ୍କ ରଥଯାତ୍ରାବେଳେ ଲିଙ୍ଗ ରଥଯାତ୍ରା ମଧ୍ୟ ପାଳିତ ହୁଏ ।

ଦେବୀ ପୁରାଣରେ କାର୍ତ୍ତିକ ଶୁକ୍ଳ ତୃତୀୟାରୁ ପଞ୍ଚମୀ ଦିନ, ସପ୍ତମୀରୁ ଏକାଦଶୀ ଦିନ ଓ ପୂର୍ଣ୍ଣିମାରେ ମହାଦେବୀଙ୍କ ରଥଯାତ୍ରା ଉତ୍ସବ ନିର୍ଦ୍ଧାରିତ ହୋଇଛି । ସାପ୍ତଭୌମ ରଥରେ ଦେବୀଙ୍କୁ ଅଧିଷ୍ଠିତ କରାଯାଏ । ଦର୍ପଣ, ଶଙ୍ଖ, ପୁଷ୍ପ, ଚାମର, ପତାକା ଇତ୍ୟାଦିରେ ରଥ ଅଳଙ୍କୃତ ହୋଇଥାଏ । ବିଭିନ୍ନ ବାଦ୍ୟ ଧ୍ୱନିରେ ପରିବେଶ ମୁଖରିତ ହୋଇଥାଏ । ଶାକ୍ତମାନେ ବିଭିନ୍ନ ପଥ ଦେଇ ରଥ ପରିକ୍ରମା କରି ମନ୍ଦିରକୁ ରଥ ନେଇ ଫେରିଆସନ୍ତି । ନେପାଳରେ ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀରେ ଦେବୀଯାତ୍ରା ବା ନେତାଦେବୀର ରଥଯାତ୍ରା ଉତ୍ସବ ସମାରୋହରେ ଅନୁଷ୍ଠିତ ହୁଏ । ନେପାଳରେ କୁମାରୀ ରଥଯାତ୍ରା ମଧ୍ୟ ହୁଏ । କୁମାରୀ ଅଷ୍ଟମାତୃକାର ପ୍ରତୀକ । କୁମାରୀ ରଥରେ ଗଣେଶ, କାର୍ତ୍ତିକଙ୍କ ପ୍ରତୀକ ସ୍ୱରୂପ ଦୁଇଟି ବାଳକକୁ ବସାଇ ଦିଆଯାଏ । ଦେବଶକ୍ତି ଓ ଦେବୀଶକ୍ତି ବିରାଜିତ ହୋଇଥାଏ ସେହି ରଥରେ ।

ଗୌତମ ବୁଦ୍ଧଙ୍କ ମହାପ୍ରୟାଣ ପରେ ତାଙ୍କର ଶିଷ୍ୟମାନେ ବୌଦ୍ଧଧର୍ମର ନୀତି ବିରୋଧୀ କେତେକ ପ୍ରଥା ପ୍ରଚଳନ କରିଥିଲେ । ସେହି ନୀତି ବିରୋଧୀ ପ୍ରଥାଗୁଡ଼ିକ ମଧ୍ୟରେ ବୁଦ୍ଧଙ୍କ ରଥଯାତ୍ରା ହେଉଚି ଅନ୍ୟତମ । କେତେକ ଗବେଷକ ପୁରୀର ଶ୍ରୀଜଗନ୍ନାଥ ମନ୍ଦିରକୁ ଏକ ବୌଦ୍ଧ ମନ୍ଦିର ବୋଲି କହିବା ସଂଗେସଂଗେ ଜଗନ୍ନାଥଙ୍କ ରଥଯାତ୍ରାକୁ ବୁଦ୍ଧଙ୍କ ରଥଯାତ୍ରାର ସମତୁଲ୍ୟ ବୋଲି କହିଛନ୍ତି । ପଞ୍ଚମ ଖ୍ରୀଷ୍ଟାବ୍ଦରେ ଫାହିୟାନ୍ ବୁଦ୍ଧଙ୍କ ରଥଯାତ୍ରା ସ୍ୱଚକ୍ଷୁରେ ଦେଖିଥିଲେ । ଚତୁର୍ଥ ମାସର ପ୍ରଥମ ଦିବସରେ ନଗରର ଚତୁର୍ଦ୍ଦିଗ ସୁସଜ୍ଜିତ ହୋଇଥାଏ । ନଗରର ପୁର ଦ୍ୱାରରେ ରାଜା, ରାଣୀ, ରାଜପୁରର ମହିଳାମାନେ ବସି ଅପେକ୍ଷା କରିଥାଆନ୍ତି ରଥଯାତ୍ରା ଦେଖିବାକୁ । ରଥ ଆସିଲେ ରାଜା ଜୋତା ଖୋଲି, ନୂତନ ବସ୍ତ୍ର ପରିଧାନ କରି ଧୂପ ଦେଇ ପୂଜା କରୁଥିଲେ ବୁଦ୍ଧଙ୍କୁ । ରାଣୀ ଓ ରାଜପୁର ମହିଳାମାନେ ପୁଷ୍ପ ବର୍ଷଣ କରୁଥିଲେ ଦେବତାଙ୍କ ଉପରେ ଓ ଚରଣ ତଳେ । ଧୀର ପଦକ୍ଷେପରେ ଲୋକମାନେ ରଥଟାଣି ନେଉଥିଲେ । ମହାଯାନ ପନ୍ଥୀମାନଙ୍କର ବିରାଟ ରଥ ବାହାରୁଥିଲା । ମୂଳ ଦେବତାଙ୍କ ଦୁଇପାଖରେ ବୋଧିସତ୍ତ୍ୱ ଛିଡ଼ା ହେଉଥିଲେ । ପ୍ରତ୍ୟେକ ସଂଘପକ୍ଷରୁ ବିଭିନ୍ନ ରକମର ରଥ ବାହାରୁଥିଲା । ଚତୁର୍ଥ ମାସର ଶୁକ୍ଳ ପ୍ରତିପଦରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଏହି ଉତ୍ସବ ହେଉଥିଲା । ପାଟଳିପୁତ୍ରରେ ବୁଦ୍ଧଙ୍କ ରଥଯାତ୍ରା କିଭଳି ପାଳିତ ହେଉଥିଲା ତାହାର ବିବରଣୀ ଚୀନ ପରିବ୍ରାଜକଙ୍କ ଫାହିୟାନ ଦେଇଛନ୍ତି । ପ୍ରତିବର୍ଷ ଦ୍ୱିତୀୟ ମାସର ଅଷ୍ଟମ ଦିବସରେ ରଥଯାତ୍ରା ଉତ୍ସବ ହେଉଥିଲା । ମନ୍ଦିର ଅନୁରୂପ ଏହି ରଥରେ ଚାରୋଟି ଚୈତ୍ୟ, ଚାରୋଟି ଧ୍ୟାନୀ ବୁଦ୍ଧ ମୂର୍ତ୍ତି ରହୁଥିଲା । ସାମ୍ନାରେ ଛିଡ଼ା ହୋଇ ରହୁଥିଲେ ବୋଧିସତ୍ତ୍ୱ । ଏହି ରଥଯାତ୍ରାରେ ସବୁଶ୍ରେଣୀରେ, ସବୁଧର୍ମର ଲୋକ ଯୋଗ ଦେଉଥିଲେ । ରଥଯାତ୍ରାବେଳେ ସଙ୍ଗୀତ ଗାନ କରାଯାଉଥିଲା ଓ ଥଟ୍ଟା, ହସ, ତାମସା ମଧ୍ୟ ହେଉଥିଲା । ସବୁଲୋକ ରାତିସାରା ଜାଗ୍ରତ ରହୁଥିଲେ ଏବଂ ପ୍ରଦୀପର ଆଲୁଅରେ ବୁଦ୍ଧଙ୍କୁ ସ୍ୱାଗତ କରୁଥିଲେ । ଦୂର ଅଞ୍ଚଳରୁ ଲୋକମାନେ ଆସି ବୁଦ୍ଧଙ୍କ ରଥଯାତ୍ରାରେ ଯୋଗ ଦେଉଥିଲେ ।





କୌଣସି କୌଣସି ସ୍ଥାନରେ ବୁଦ୍ଧଙ୍କ ରଥଯାତ୍ରା ଚତୁର୍ଥ ମାସର ପ୍ରଥମଦିନ ପରିବର୍ତ୍ତେ ଅଷ୍ଟମ ଦିନରେ ଏବଂ ଦ୍ୱିତୀୟ ମାସର ଅଷ୍ଟମଦିନ ପରିବର୍ତ୍ତେ ପ୍ରଥମ ଦିନରେ ପାଳିତ ହେଉଥିବା କଥା ମଧ ଫାହିୟାନ୍ କହିଛନ୍ତି । ନେପାଳରେ ଚୈତ୍ର ଶୁକ୍ଳ ଅଷ୍ଟମୀ ତିଥିରୁ ମତ୍ସେନ୍ଦ୍ର ବା ବୁଦ୍ଧଙ୍କ ରଥଯାତ୍ରା ଉତ୍ସବ ହେଉଥିଲା । ହିନ୍ଦୁ ଓ ବୌଦ୍ଧ ସମସ୍ତେ ଏଥିରେ ଯୋଗ ଦେଉଥିଲେ । ଏହି ଉତ୍ସବ ଅଷ୍ଟମୀରୁ ଆରମ୍ଭ ହୋଇ ଏକାଦଶୀ ପର୍ଯ୍ୟନ୍ତ ଓ ତା' ପରେ ମଧ ଚାଲୁଥିଲା । ପାର୍ଶ୍ୱନାଥ ମହାବୀରଙ୍କ ରଥଯାତ୍ରା ଉତ୍ସବ ମଧ ଅତୀତରେ ପାଳିତ ହେଉଥିଲା । ଏବେ ମଧ ବିଭିନ୍ନ ରାଜ୍ୟରେ ସମାରୋହରେ ଜୈନ ଧର୍ମାବଲମ୍ବୀମାନେ ପାଳନ କରନ୍ତି ।

ଯେଉଁସବୁ ରଥଯାତ୍ରା କଥା କୁହାଗଲା ସେଥି ମଧରେ ପୁରୀର ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ହେଉଛି ସବୁଠାରୁ ଅଧିକ ଜନାଦୃତ, ପ୍ରଚାରିତ ଓ ପ୍ରସାରିତ । ଆଷାଢ଼ ମାସର ପୁଷ୍ୟା ନକ୍ଷତ୍ରରେ ଶୁକ୍ଳ ଦ୍ୱିତୀୟା ତିଥିରେ ଏହି ରଥଯାତ୍ରା ଉତ୍ସବ ହୁଏ । ତିଥି ସହିତ ନକ୍ଷତ୍ରର ସଂଯୋଗ ନଥିଲେ ହେଁ ତିଥିର ପ୍ରାଧାନ୍ୟ ହିଁ ଏଥିରେ ସ୍ୱୀକୃତ । ପ୍ରାଚୀନ ପ୍ରଥା ଅନୁସାରେ ଗୋଟିଏ ରଥରେ ତ୍ରିମୂର୍ତ୍ତିଙ୍କୁ ସ୍ଥାପନ କରି ଯାତ୍ରା କରିବାର କଥା । କିନ୍ତୁ ପୁରୁଷୋତ୍ତମ ମାହାତ୍ମ୍ୟ ଓ ନୀଳାଦ୍ରି ମହୋଦୟ ପଦ୍ଧତି ଅନୁସାରେ ତିନି ଦେବତାଙ୍କ ପାଇଁ ତିନୋଟି ପୃଥକ୍ ରଥ ନିର୍ଦ୍ଧାରିତ ହୋଇଛି । ନାରଦ ପୁରାଣ ଅନୁସାରେ ରାଜା ଇନ୍ଦ୍ରଦ୍ୟୁମ୍ନ ପୁରୀ ଧାମରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପ୍ରତିଷ୍ଠିତ କରନ୍ତି । କୁହାଯାଏ, ରାଜା ଅନଙ୍ଗ ଭୀମଦେବ ୧୧୯୯ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ମନ୍ଦିର ନିର୍ମାଣ ଶେଷ କରିବା ପରେ ଅଧିକ ପ୍ରସାରିତ ହୋଇ ରଥଯାତ୍ରା ଉତ୍ସବ ପାଳିତ ହେଲା । ପୁରୀର ଜଗନ୍ନାଥଙ୍କ ରଥଯାତ୍ରାର ପ୍ରଭାବରେ ପ୍ରତିବେଶୀ ବଙ୍ଗ ପ୍ରଦେଶ ଓ ଅନ୍ୟାନ୍ୟ ରାଜ୍ୟ ତଥା ଅନ୍ୟାନ୍ୟ ଦେଶରେ ରଥଯାତ୍ରା ପାଳିତ ହେବାକୁ ଲାଗିଲା ।

ପୁରୀର ଜଗନ୍ନାଥଙ୍କ ରଥଯାତ୍ରାର ପ୍ରଭାବରେ ପ୍ରତିବେଶୀ ବଙ୍ଗ ପ୍ରଦେଶ ଓ ଅନ୍ୟାନ୍ୟ ରାଜ୍ୟ ତଥା ଅନ୍ୟାନ୍ୟ ଦେଶରେ ରଥଯାତ୍ରା ପାଳିତ ହେବାକୁ ଲାଗିଲା ।

ବୈଦିକ ମିତ୍ର ଦେବତା ହିଁ ବିଷ୍ଣୁ ବା କୃଷ୍ଣ । ବିଷ୍ଣୁ ବା କୃଷ୍ଣ ହିଁ ଜଗନ୍ନାଥ । ବୈଦିକ ମିତ୍ର ଆରାଧନା ଯଜ୍ଞରେ ଯେଉଁ ତିନୋଟି ମହିମା କଳସ ବସୁଥିଲା ତାହା ସୂର୍ଯ୍ୟଙ୍କର ତ୍ରିଭାବର ପ୍ରତୀକ । ଦକ୍ଷିଣ ପୂର୍ବର ଦୁଇଟି ମହିମା କଳସ ହେଉଛି ସୂର୍ଯ୍ୟ, ସୂର୍ଯ୍ୟର ପ୍ରତୀକ ଅଗ୍ନି । ମଝିଟି ହେଉଛି ସୂର୍ଯ୍ୟଶକ୍ତି । ଗୋଟିଏ ଦେବତାର ତିନି ଭାବଧାରାର ଉପାସନା ହୁଏ ଏଠାରେ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ହେଉଛନ୍ତି ମିତ୍ର ଦେବତାଙ୍କ ତ୍ରୟୀଭାବ । ଉତ୍କଳଖଣ୍ଡରେ କୁହାଯାଇଛି ଜଗନ୍ନାଥ, ବଳରାମ ହେଉଛନ୍ତି ଗୋଟିଏ ଦେବତା ଏବଂ ସୁଭଦ୍ରା ହେଉଛନ୍ତି ଜଗନ୍ନାଥଙ୍କର ଶକ୍ତି-ଚୈତନ୍ୟ ରୂପିଣୀ । ତାଙ୍କର ପୁରୁଷନାମ ନାରାୟଣ-ବିଷ୍ଣୁ, ସ୍ତ୍ରୀ ନାମ ଲକ୍ଷ୍ମୀ । ଜଗନ୍ନାଥ ଜଗତର ଆତ୍ମା । ସବୁ ମଣିଷର ଆତ୍ମଶକ୍ତି, ସବୁଧର୍ମର ଆତ୍ମସତ୍ତାର ସମନ୍ୱୟରେ ଗଠିତ ଅସୀମ ଜଗନ୍ନାଥ ଆତ୍ମା । ଏହି ତତ୍ତ୍ୱ ମଣିଷ ହୃଦୟଙ୍ଗମ କଲେ ମନରେ ଭେଦାଭେଦ, ହିଂସା ଓ ବିଦ୍ୱେଷ ରହେନା । **ରଥଯାତ୍ରା ସମୟରେ ମନେହୁଏ ମଣିଷର ସସୀମ ଦେହ ରଥରେ ଅସୀମ ଜଗନ୍ନାଥ ଆତ୍ମାର ଉଦ୍ଭବ ହୁଏ । ସବୁ ଅଞ୍ଚଳ, ସବୁରାଜ୍ୟ, ସବୁ ଦେଶର ଲୋକ ଏଠାରେ ଏକାକାର ହୋଇଯାଆନ୍ତି, ସବୁଶ୍ରେଣୀ, ସବୁ ଜାତି, ସଂପ୍ରଦାୟ, ସବୁଧର୍ମ, ସବୁଗୋଷ୍ଠୀ ଏକ ହୋଇଯାଆନ୍ତି ।** ବ୍ରାହ୍ମଣ-ଚାଣ୍ଡାଳ, ଆର୍ଯ୍ୟ-ଅନାର୍ଯ୍ୟ, ଆଦିବାସୀ-ଅଣଆଦିବାସୀ, ଉଚ୍ଚ-ନୀଚ, ଶ୍ରମିକ-ମାଲିକ, ରାଜା-ପ୍ରଜା, ଓଡ଼ିଆ-ବଙ୍ଗାଳୀ, ଗୁଜରାଟୀ-ପଞ୍ଜାବୀ, ତେଲୁଗୁ-ତାମିଲ, ହିନ୍ଦୁ-ମୁସଲମାନ, ଖ୍ରୀଷ୍ଟଧର୍ମୀ-ଇସ୍‌ଲାମଧର୍ମୀ, ମୂର୍ଖ-ପଣ୍ଡିତ, ଛାତ୍ର-ଶିକ୍ଷକ, ଗରିବ-ଧନୀ, ସର୍ବହରା-ପୁଞ୍ଜିପତି, ସୁନ୍ଦର-ଅସୁନ୍ଦର, ରୋଗୀ-ଭୋଗୀ, ସାଧୁ-ଅସାଧୁ, ସମସ୍ତେ ସମାନ ହୋଇଯାଆନ୍ତି ବଡ଼ଦାଣ୍ଡରେ । ସାମ୍ୟ, ମୈତ୍ରୀ, ସଂହତି, ଶାନ୍ତି ରାଜତ୍ୱ କରେ ଏହି ଅଦ୍ଭୁତ, ବୈଚିତ୍ର୍ୟମୟ ଆଧ୍ୟାତ୍ମିକ ପରିମଣ୍ଡଳରେ । ଏହି ଶାନ୍ତି, ସଂହିତିର ଜୟଯାତ୍ରାରେ କେତେ ଧର୍ମଯାଜକ, ଦାର୍ଶନିକ, କବି, ଶିଳ୍ପୀ ପାଦ ପକାଇଛନ୍ତି । ଶଙ୍କରାଚାର୍ଯ୍ୟ, ରାମାନୁଜ, ନାନକ, ଶଙ୍କରଦେବ, ଶ୍ରୀଚୈତନ୍ୟ ଏଠି ମହିମାନ୍ୱିତ ହୋଇଛନ୍ତି ଓ ମହିମାନ୍ୱିତ କରିଛନ୍ତି । ଆଶ୍ଚର୍ଯ୍ୟ, ଅଦ୍ଭୁତ ବିଚିତ୍ର ଏହି ଜଗନ୍ନାଥ ଧର୍ମ, ମାହାତ୍ମ୍ୟ, ଦର୍ଶନ, ସଂସ୍କୃତି ପରମ୍ପରା ।

ଓ-୧୨, କ୍ଲଷ୍ଟର-୩
ପୂର୍ବାଞ୍ଚଳ, ସଲ୍ଟ ଲେକ୍
କୋଲକାତା-୭୦୦୦୯୭



# ରଥତତ୍ତ୍ୱ ଓ ରଥଯାତ୍ରା

ହରିଶ୍ଚନ୍ଦ୍ର ବେହେରା

**ନୀ**ଳାଚଳ କ୍ଷେତ୍ର ନାମଟି ନୀଳଗିରି ବା ନୀଳ ପର୍ବତ ନାମରୁ ଆସିଛି । କ୍ଷେତ୍ରର ମଧ୍ୟସ୍ଥଳରେ ବିଦ୍ୟମାନ ଶ୍ରୀମନ୍ଦିର । ଶ୍ରୀମନ୍ଦିର ରତ୍ନସିଂହାସନ ଉପରେ ବିରାଜମାନ କରନ୍ତି ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ, ଶ୍ରୀସୁଭଦ୍ରା, ସୁଦର୍ଶନ ଓ ଅନ୍ୟାନ୍ୟ ଦେବାଦେବୀମାନେ । ଜଗନ୍ନାଥ ସଂସ୍କୃତି ପୃଥିବୀର ଏକ ପ୍ରାଚୀନତମ ସଂସ୍କୃତି । ଚାରିଧାମ ଉତ୍ତରରେ ବଦ୍ରିନାଥ ଧାମ, ଦକ୍ଷିଣରେ ରାମେଶ୍ୱରମ୍, ପଶ୍ଚିମରେ ଦ୍ୱାରିକାନାଥ ଧାମ ଓ ପୂର୍ବରେ ଜଗନ୍ନାଥ ଧାମ । ତନ୍ମଧ୍ୟରୁ ଜଗନ୍ନାଥ ଧାମ ଶ୍ରେଷ୍ଠ ଅଟନ୍ତି । ଶ୍ରୀଜଗନ୍ନାଥ ଯଦିଓ ହିନ୍ଦୁମାନଙ୍କର ଆରାଧ୍ୟ ଦେବତା ତଥାପି ରଥଯାତ୍ରା ସମୟରେ ତଥା ଅନ୍ୟାନ୍ୟ ସମୟରେ ପୃଥିବୀର ବିଭିନ୍ନ କୋଣ ଅନୁକୋଣରୁ ବିଭିନ୍ନ ଧର୍ମାବଲମ୍ବୀମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସିଥାନ୍ତି । ଶ୍ରୀଜଗନ୍ନାଥ ସମନ୍ୱୟର ଦେବତା । ତାଙ୍କଠାରେ କୌଣସି ଧର୍ମ ବା ଜାତିର ବିଚାର ନଥାଏ । ଶୈବ, ଶାକ୍ତ, ଗାଣପତ୍ୟ, ସୌର, ବୈଷ୍ଣବ, ଜୈନ, ବୁଦ୍ଧ, ନାନକ, ଆର୍ଯ୍ୟ, ଅନାର୍ଯ୍ୟ ସମସ୍ତଙ୍କର ସେ ଦେବତା ଅଟନ୍ତି । ବହୁ ମତବାଦୀ ଧର୍ମାବଲମ୍ବୀମାନେ ଏହି କ୍ଷେତ୍ରକୁ ଆସି ଶ୍ରୀଜଗନ୍ନାଥଙ୍କର ମହିମା ଓ ପ୍ରଶସ୍ତି ଗାନ କରିଛନ୍ତି ଓ ପରିଶେଷରେ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଜଗନ୍ନାଥ ଧର୍ମରେ ଦୀକ୍ଷିତ ହୋଇଛନ୍ତି ।



କ୍ଷୀୟତେ ପାପଂଯତ୍ର ତତ୍‌କ୍ଷେତ୍ରଂ ଉଚ୍ୟତେ - ଅର୍ଥାତ୍ ଯେଉଁଠାରେ ମନୁଷ୍ୟମାନଙ୍କର ସମସ୍ତ ପାପ କ୍ଷୟ ହୁଏ ତାକୁ ହିଁ କ୍ଷେତ୍ର କୁହାଯାଏ । ସ୍ୱୟଂ ଜଗନ୍ନାଥ ଯେଉଁଠି ସର୍ବଦା ବିରାଜମାନ ହୁଅନ୍ତି ତାହା ହିଁ ଶ୍ରୀକ୍ଷେତ୍ର ତଥା ପୁରୁଷୋତ୍ତମ ଅଟନ୍ତି । ସେଥିପାଇଁ ଯଥାର୍ଥରେ କୁହାଯାଇଛି -

ସର୍ବେଷାଂମପି ଦେବନାଂ ରାଜା ଶ୍ରୀପୁରୁଷୋତ୍ତମ
ସର୍ବେଷାଂମପି କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମ ।

ଏଠାରେ କ୍ଷେତ୍ର ଓ କ୍ଷେତ୍ରାଧିପତି ଉଭୟେ ରାଜା ଅର୍ଥାତ୍ ଶ୍ରେଷ୍ଠ ଅଟନ୍ତି । ଭାରତ କିମ୍ବା ପୃଥିବୀର କୌଣସିଠାରେ କ୍ଷେତ୍ର କ୍ଷେତ୍ରାଧିପତି ଶ୍ରେଷ୍ଠତ୍ୱ ପ୍ରତିପାଦନ କରୁଥିବାର ଦେଖାଯାଏ ନାହିଁ । ଏହି ପୁରୁଷୋତ୍ତମ କ୍ଷେତ୍ରର ବିସ୍ତୀର୍ଣ୍ଣତା ବିଷୟରେ 'ବ୍ରହ୍ମପୁରାଣ'ରେ ଲେଖା ହୋଇଛି-

ଦଶଯୋଜନ ବିସ୍ତୀର୍ଣ୍ଣଂ ପଞ୍ଚଯୋଜନ ସମାୟତଂ
ନାନାଶ୍ଚର୍ଯ୍ୟ ସମାଯୁକ୍ତଂ କ୍ଷେତ୍ରଂ ପରମ ଦୁର୍ଲ୍ଲଭଂ ।

ଅର୍ଥାତ୍, ଏହି କ୍ଷେତ୍ରର ଲମ୍ବ ଦଶ ଯୋଜନ ତଥା ପ୍ରସ୍ଥ ପାଞ୍ଚ ଯୋଜନ ଅଟେ । ଏହି କ୍ଷେତ୍ର ନାନା ଆଶ୍ଚର୍ଯ୍ୟ ଘଟଣାବଳୀରେ ପରିପୂର୍ଣ୍ଣ ଏବଂ ଏହି କ୍ଷେତ୍ର ସମଗ୍ର କ୍ଷେତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ ହୋଇଥିବାରୁ ଅତ୍ୟନ୍ତ ଦୁର୍ଲ୍ଲଭ ଅଟନ୍ତି ।

ଏହି କ୍ଷେତ୍ରର ଆକାର ଶଙ୍ଖାକୃତି ହୋଇଥିବାରୁ ଏହାକୁ ସ୍କନ୍ଦପୁରାଣ ଅନ୍ତର୍ଗତ ଉତ୍କଳଖଣ୍ଡରେ ଶଙ୍ଖକ୍ଷେତ୍ର ବୋଲି ବର୍ଣ୍ଣନା କରାଯାଇଛି । ଏହି କ୍ଷେତ୍ରର ମହିମାକୁ ବିଭିନ୍ନ ପୁରାଣ ଉପନିଷଦ୍ କାବ୍ୟମାନଙ୍କରେ ସବିଶେଷ ଭାବରେ ବର୍ଣ୍ଣନା କରାଯାଇଛି । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସୁଭଦ୍ରା ପରିଣୟ କାବ୍ୟରେ ବର୍ଣ୍ଣନା କରିଛନ୍ତି -

ସେ କ୍ଷେତ୍ରେ ପ୍ରବେଶେ ବ୍ରହ୍ମ ହତ୍ୟାପାପ ହରେ
ସାକ୍ଷାତ ହୋଇଛି ଏ କପାଳମୋଚନରେ ଯେ ।




ସେ ହୁଏ ଚତୁରଭୁଜ ସେ ଯେ କ୍ଷେତ୍ରେ ରହି
ସତ ଏ କଥାକୁଟି ଅଜ୍ଞାନ କାକ ତହିଁ ଯେ ।
ସର୍ବଦାରେ ମୁକତି ପସରା ବସିଥାଏ
ସାରେ ପାପ ନରେ ବରାଟକେ କିଣିନେଇ ଯେ ।

ଏହି କ୍ଷେତ୍ର ଯେତିକି ରହସ୍ୟମୟ, ଏହାର କ୍ଷେତ୍ରାଧିପତି ଶ୍ରୀଜଗନ୍ନାଥ ମହାପ୍ରଭୁ ତତୋଧିକ ରହସ୍ୟମୟ ଅଟନ୍ତି । ସେଥିପାଇଁ କୁହାଯାଇଛି - 'ରହସ୍ୟ ପୁରୁଷୋତ୍ତମସ୍ୟ ଦେବାଃ ନଜାନନ୍ତି କୁତଃ ମନୁଷ୍ୟ, ଅର୍ଥାତ୍ ପୁରୁଷୋତ୍ତମ କ୍ଷେତ୍ରର ରହସ୍ୟ ଦେବତାମାନଙ୍କୁ ଅଗୋଚର ଥିବାବେଳେ ଛାର ମନୁଷ୍ୟ ତାହାର ଭେଦ କ'ଣ ପାଇବ ।

> ପାହୁଣ୍ଡ ବା ପହୁଣ୍ଡ ଆଦି ଶବ୍ଦରୁ ପହଣ୍ଡି ଶବ୍ଦର ଉତ୍ପତ୍ତି । ପହଣ୍ଡି ହେବା ଅର୍ଥାତ୍ ଧୀରେ ଧୀରେ ଅଗ୍ରସର ହେବା । ସୁଦର୍ଶନ ଓ ସୁଭଦ୍ରାଙ୍କୁ ଦଇତାମାନେ ସମ୍ମିଳିତ ଭାବରେ ଉତ୍ତୋଳନ କରି ଆଣୁଥିବା ବେଳେ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ମହାପ୍ରଭୁଙ୍କୁ ପହଣ୍ଡେଇ ଆଣନ୍ତି, ଅର୍ଥାତ୍ ପାହୁଣ୍ଡ ପାହୁଣ୍ଡ ହୋଇ ଆଗକୁ ଆଗକୁ ଆସନ୍ତି ।

ଶ୍ରୀମନ୍ଦିରରେ ମହାବିଷ୍ଣୁ ରତ୍ନ ସିଂହାସନ ଉପରେ ବିରାଜମାନ ହୋଇଛନ୍ତି ।

କବି ବ୍ରଜନାଥ ବଡ଼ଜେନା ତାଙ୍କର ସମର ତରଙ୍ଗ କାବ୍ୟର ଆଦ୍ୟ ଛାନ୍ଦରେ ବର୍ଣ୍ଣନା କରିଛନ୍ତି -

ଶ୍ରୀରାଧାବର ଚରଣକୁ ଚିନ୍ତି     କହୁଛି ଯାହା ଶୁଣ ହେ ସୁମତି
ଦକ୍ଷିଣ ସିନ୍ଧୁ ତଟେ ପୁଣ୍ୟ ଧାମ     ପୁରୁଷୋତ୍ତମ କ୍ଷେତ୍ର ଯାର ନାମ
ଯହିଁ ବିଜେ ଜଗନ୍ନାଥ ଯେ
ବଳଭଦ୍ର ଭଦ୍ରା ସୁଦରଶନ ଏ     ଚାରି ମୁରତି ବ୍ୟକତ ଯେ ।

ଲକ୍ଷେ ଶାଳଗ୍ରାମ ଉପରେ ନିର୍ମିତ ରତ୍ନବେଦୀ ବା ରତ୍ନ ସିଂହାସନ ତହିଁ ଉପରେ ବସିଛନ୍ତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ସୁଦର୍ଶନ ।

ପ୍ରତିବର୍ଷ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ରଥଯାତ୍ରା ଆରମ୍ଭ ହୁଏ । ନବଦିନ ପାଇଁ ଶ୍ରୀଜଗନ୍ନାଥ ଭାଇ ଭଉଣୀ ସହିତ ନିଜ ନିଜେ ରଥାରୋହଣ କରି ମାଉସୀ ମା' ମନ୍ଦିର ଅର୍ଥାତ୍ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରନ୍ତି । ସମସ୍ତଙ୍କ ପାଇଁ ମଙ୍ଗଳ ଉଦ୍‌ଘୋଷଣ କରୁଥିବାରୁ ଏହାକୁ ଘୋଷଯାତ୍ରା ମଧ କୁହାଯାଏ । ଏହି ଦିନ ମଙ୍ଗଳାରୋପଣ ସମୟରେ ବିଦ୍ୟାପତି ବଂଶଜ କୌଣ୍ଡିନ୍ୟ ଗୋତ୍ରାଧିପତି ପତି ମହାପାତ୍ରେ ସଂକଳ୍ପ ପାଠ କରି କୁହନ୍ତି 'ପୁଷ୍ୟାନାମଧେୟ ନକ୍ଷତ୍ରେ ସକଳ ଚରାଚରସ୍ୟ ତୀର୍ଯ୍ୟକ ଯୋନିମାରମ୍ଭ୍ୟ ବିବୁଧ ଲୋକ ପର୍ଯ୍ୟନ୍ତ ଚତୁରଶୀତି ଜୀବ ମାତ୍ରସ୍ୟ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ କଲ୍ୟାଣ କାମନାୟାଂ, ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ନାୟକ ଶ୍ରୀପୁରୁଷୋତ୍ତମସ୍ୟ ଚତୁବର୍ଗ ଫଳପ୍ରଦ ଘୋଷଯାତ୍ରା ମଙ୍ଗଳାର୍ପଣ କର୍ମମହଂ କରିଷ୍ୟେ ।'

ଆଷାଢ଼ ଶୁକ୍ଳ ଦ୍ୱିତୀୟା ପୂର୍ବଦିନ ଅର୍ଥାତ୍ ପ୍ରତିପଦା ତିଥିରେ ସ୍ୱୟଂ ପ୍ରଭୁ ଜଗନ୍ନାଥ ପ୍ରାତ୍ୟକୃତ୍ୟ ସମାପନ କରନ୍ତି । ମହାସ୍ନାନ କରନ୍ତି । ସେହି ଦିନ ନବଯୌବନ ବେଶ ଧାରଣ କରନ୍ତି । ଏହା ପରେ ସେ ବିଧିବିଧାନର ସହ ପାରମ୍ପରିକ ରୀତିରେ ନିତ୍ୟ ଉପଚାର ପୂଜା ଗ୍ରହଣ କରନ୍ତି । ପୂର୍ବରୁ ପ୍ରସ୍ତୁତ କରାଯାଇଥିବା ରଥତ୍ରୟକୁ ସେଦିନ ଶ୍ରୀମନ୍ଦିର ସିଂହଦ୍ୱାର ସମ୍ମୁଖରେ ସ୍ଥାପନ କରାଯାଏ ଏବଂ ବିଧିବିଧାନ ସହ ରଥ ପ୍ରତିଷ୍ଠା କରାଯାଏ । ଏହା ପରଦିନ ଅର୍ଥାତ୍ ଦ୍ୱିତୀୟା ତିଥିରେ ବ୍ରାହ୍ମ ମୁହୂର୍ତ୍ତରେ ବିଶ୍ୱାବସୁ ଓ ବିଦ୍ୟାପତି ବଂଶଜ ସେବକମାନେ ପ୍ରଭୁଙ୍କ ନିଦ୍ରା ଭଙ୍ଗ କରନ୍ତି । ମହାପ୍ରଭୁ ପ୍ରାତଃକୃତ୍ୟ ସମାପନ କରି ବିଧିବିଧାନର ସହ ସମସ୍ତ ଉପଚାରର ପୂଜା ଗ୍ରହଣ କରନ୍ତି । ଏହି ସମୟରେ ମଙ୍ଗଳାରୋପଣ ଏବଂ ବନ୍ଦାପନା ସମସ୍ତ କର୍ମ ଖୁବ୍ ଶୀଘ୍ର ସମାପ୍ତ ହେବାପରେ ଗଜପତି ମହାରାଜା ଠାକୁରମାନଙ୍କୁ ପୁଷ୍ପାଞ୍ଜଳି ପ୍ରଦାନ କରି ପ୍ରଭୁଙ୍କୁ ଘୋଷଯାତ୍ରାକୁ ବିଜେ କରିବା ଲାଗି ନିବେଦନ କରନ୍ତି ।

ମୃଦଙ୍ଗ, କଂସାଳ, ଶଙ୍ଖ, ଘଣ୍ଟା, ଭେରୀ, ତୂରୀ ଆଦି ନାନାଦି ବାଦ୍ୟ ବାଦନରେ ଶ୍ରୀକ୍ଷେତ୍ର ଆନନ୍ଦ ମୁଖରିତ ହୋଇଉଠେ । ଛତ୍ର, ଚାମର ଆଲଟ, ତରାସ ଆଦି ଆନ୍ଦୋଳିତ କରିବା ପାଇଁ ନିଯୁକ୍ତ ହୋଇଥିବା ସେବକମାନେ ସେବା କରୁଥାନ୍ତି । ବିପ୍ରମାନଙ୍କର ବେଦପାଠ ଏବଂ ଭକ୍ତମାନଙ୍କର ହରିବୋଲ ଧ୍ୱନି ମଧରେ ପ୍ରଭୁଙ୍କର ପହଣ୍ଡିବିଜେ ଆରମ୍ଭ ହୋଇଥାଏ । ପହଣ୍ଡିରେ ଶ୍ରୀସୁଦର୍ଶନ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀଜଗନ୍ନାଥ କ୍ରମାନ୍ୱୟରେ ପହଣ୍ଡି ଯାତ୍ରା ଆରମ୍ଭ କରନ୍ତି । ଠାକୁରମାନେ ରଥ ପରିକ୍ରମା କରି ରଥ ଉପରେ ବିଜେ କରନ୍ତି । ଠାକୁରମାନେ ଶ୍ରୀମନ୍ଦିର ଉତ୍ତର ଦ୍ୱାର ସପ୍ତ ପାହାଚ ଅତିକ୍ରମ କରି ଲକ୍ଷ୍ମୀମନ୍ଦିର ସମ୍ମୁଖରେ ଥିବା ପ୍ରଶସ୍ତ ପ୍ରାଙ୍ଗଣକୁ ଆସନ୍ତି । ଏହାପରେ ପୂର୍ବମୁଖା ହୋଇ ଆନନ୍ଦ ବଜାରକୁ ଆସି ପୁଣି ଦକ୍ଷିଣ ମୁଖା ହୋଇ ବାଇଶି ପାହାଚ ଉପରକୁ ଆସନ୍ତି । ଏହାପରେ ପୂର୍ବମୁଖା ହୋଇ ବାଇଶି ପାହାଚ ଅତିକ୍ରମ କରି ବଡ଼ଦାଣ୍ଡକୁ ଆସନ୍ତି ।

ପାହୁଣ୍ଡ ବା ପହୁଣ୍ଡ ଆଦି ଶବ୍ଦରୁ ପହଣ୍ଡି ଶବ୍ଦର ଉତ୍ପତ୍ତି । ପହଣ୍ଡି ହେବା ଅର୍ଥାତ୍ ଧୀରେ ଧୀରେ ଅଗ୍ରସର ହେବା । ସୁଦର୍ଶନ ଓ ସୁଭଦ୍ରାଙ୍କୁ ଦଇତାମାନେ ସମ୍ମିଳିତ ଭାବରେ ଉତ୍ତୋଳନ କରି ଆଣୁଥିବା ବେଳେ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ମହାପ୍ରଭୁଙ୍କୁ ପହଣ୍ଡେଇ ଆଣନ୍ତି, ଅର୍ଥାତ୍ ପାହୁଣ୍ଡ ପାହୁଣ୍ଡ ହୋଇ ଆଗକୁ ଆଗକୁ ଆସନ୍ତି, ପୁଣି ଟିକିଏ ଥକ୍କା ମାରି ଆଗକୁ ପାହୁଣ୍ଡ ପକାନ୍ତି । ଏହା ପ୍ରଭୁଙ୍କର ଲୀଳା ।

କିଏ କୁହେଁ ମହାପ୍ରଭୁଙ୍କର ପାଦ ନାହିଁ ବୋଲି, କିଏ କୁହେ ହାତ ନାହିଁ, କିଏ କୁହେଁ କାନ ନାହିଁ । ପ୍ରଭୁଙ୍କର ସବୁ କିଛି ଅଛି ପୁଣି ସବୁ କିଛି ନାହିଁ । ପ୍ରଭୁଙ୍କର କଳେବର ତ ଦାରୁରେ ନିର୍ମିତ ସେଥିରେ ପୁଣି ବ୍ରହ୍ମଯୁକ୍ତ ହୋଇଛନ୍ତି । ସେଥିପାଇଁ ତ ସିଏ ଦାରୁବ୍ରହ୍ମ ଭାବରେ ଜଗତ ବିଖ୍ୟାତ । ଦାରୁ ସ୍ଥୁଳରୂପୀ ହେଲେ ବ୍ରହ୍ମ ସୂକ୍ଷ୍ମରୂପୀ ଅଟନ୍ତି । ଏହା ହିଁ ଦାରୁବ୍ରହ୍ମଙ୍କର ରହସ୍ୟ । ବ୍ରହ୍ମଙ୍କ ରହସ୍ୟକୁ ଉନ୍ମୋଚନ କରିବା ପାଇଁ ସନ୍ଥ ତୁଳସୀ ଦାସ ତାଙ୍କର ରଚିତ 'ତୁଳସୀ' ରାମାୟଣର ବାଳକାଣ୍ଡରେ ବର୍ଣ୍ଣନା କରିଛନ୍ତି -

'ବିନୁପଦ ଚଲଇ ଶୁନଇ ବିନୁ କାନା<br>କର ବିନୁ କରଇ କରମ ବିଧି ନାନା ।<br>ଆନନ ରହିତ ସକଲ ରସ ଭୋଗୀ<br>ବିନୁ ବାନି ବକତା ସେହୁ ବଡ଼ ଯୋଗୀ ।<br>ତନବିନୁ ପରଶ ନୟନ ବିନୁ ରେଖା<br>ଗ୍ରାହଇ ଘ୍ରାନ ବିନୁ ରସ ଅଶେଷା ।<br>ଆସି ସବ ଭାଁତି ଅଲୌକିକ କରନା<br>ମହିମା ଜାନସୁଜାଇ ନାହିଁ ବରନା ।

ତାଙ୍କର ପାଦ ନାହିଁ କିନ୍ତୁ ସେ ଚାଲୁଛନ୍ତି, ତାଙ୍କର ହାତ ନାହିଁ କିନ୍ତୁ ସେ ନାନାବିଧ କର୍ମମାନ କରୁଛନ୍ତି, ତାଙ୍କର ମୁଖ ନାହିଁ କିନ୍ତୁ ସବୁ ରସାସ୍ୱାଦନ କରୁଛନ୍ତି, ତାଙ୍କର କାନ ନାହିଁ କିନ୍ତୁ ସେ ସବୁ ଶୁଣିପାରୁଛନ୍ତି, ତାଙ୍କର ଆଖି ନାହିଁ କିନ୍ତୁ ସେ ସବୁ ଦେଖୁଛନ୍ତି, ତାଙ୍କର ଦେହ ନାହିଁ କିନ୍ତୁ ସବୁ ସ୍ପର୍ଶକୁ ଅନୁଭବ କରିପାରୁଛନ୍ତି । ଏହା ହିଁ ହେଉଚି ବ୍ରହ୍ମ ଚେତନାର ଉତ୍ସ । ବ୍ରହ୍ମ ସର୍ବତ୍ର ବିଦ୍ୟମାନ କିନ୍ତୁ ତାଙ୍କୁ ସର୍ବତ୍ର ଦେଖି ହୁଏ ନାହିଁ, ସ୍ପର୍ଶ କରିହୁଏ ନାହିଁ ମାତ୍ର ଜ୍ଞାନ ଚକ୍ଷୁରେ ଜ୍ଞାନୀମାନେ ଋଷିମାନେ ଜାଣିପାରନ୍ତି, ଦେଖି ପାରନ୍ତି ।

ସେଥିପାଇଁ ବ୍ରହ୍ମଙ୍କୁ ଉପନିଷଦରେ ବର୍ଣ୍ଣନା କରାଯାଇଛି ।

ଅପାଣି ପାଦୋ ଜବନୋଗ୍ରହୀତା<br>ପଶ୍ୟତଃ ଚକ୍ଷୁଃ ସ ଶୃଣୋତ୍ୟ କର୍ଣ୍ଣଃ<br>ସବେତ୍ତି ବେଦ୍ୟମ୍ ନଚ ତସ୍ୟାସ୍ତି ବେତ୍ତା<br>ତମାହୁରଗ୍ର୍ୟମ୍ ପୁରୁଷମ୍ ମହାନ୍ତମ୍ ।

ବଡ଼ ଠାକୁର ବଳଭଦ୍ର ତାଳଧ୍ୱଜ ରଥରେ ବିଜେ କରନ୍ତି । ତାଙ୍କର ଆୟୁଧ ହଳ ଓ ମୂଷଳ ଅଟେ । ଏହି ରଥର ଚକ ସଂଖ୍ୟା ୧୪, ଚତୁର୍ଦ୍ଦଶ ମନ୍ୱନ୍ତରର ପ୍ରତୀକ । ଏହାର ଉଚ୍ଚତା ୩୨ ହାତ ୧୦ ଆଙ୍ଗୁଳ । ଏହା ୭୬୩ଟି କାଠ ଦ୍ୱାରା ନିର୍ମିତ ହୋଇଥାଏ । ରଥର ଆବରଣ ରକ୍ତ ନୀଳ । ଏହି ରଥର ରକ୍ଷକ ହେଲେ ବାସୁଦେବ ।

ଏହାର ଭଦ୍ରପୀଠ ହେଲା- ଅଷ୍ଟଦଳ ପଦ୍ମ । ଅନନ୍ତ ନାଗ ହେଲେ ରଥମୂର୍ଦ୍ଧନି ଦେବତା । ରଥର ସାରଥୀଙ୍କ ନାମ ହେଲା ମାତଳୀ । ଏହାର ଦ୍ୱାରପାଳ ହେଲେ ନନ୍ଦ ଓ ସୁନନ୍ଦ । ରଥ ରକ୍ଷକ ଭାସ୍କର । ରଥର ଚାରି ଅଶ୍ୱମାନେ ହେଲେ ତୀବ୍ର, ଘୋର, ଦୀର୍ଘଶ୍ରମ ଓ ସ୍ୱର୍ଣ୍ଣନାଭ । ରଥରଜ୍ଜୁ ହେଉଛନ୍ତି ବାସୁକୀ । ରଥର ପାର୍ଶ୍ୱଦେବତାଗଣ ହେଲେ - ପ୍ରାଣମ୍ଭାରୀ, ଗଦାନ୍ତକାରୀ, ହରିହର, ତ୍ର୍ୟେମ୍ବକ, ବାସୁଦେବ, ନାଟ୍ୟାମ୍ବର, ଅଘୋର ଓ ତ୍ରିପୁରାରି ଶିବ । ଏହାର ଚର ଦେବତାଦ୍ୱୟ ହେଲେ ବ୍ରହ୍ମା ଓ ଶିବ । ରଥ ମୂର୍ଦ୍ଧି ହେଲେ - କେତୁଭଦ୍ରା । ଏଥିରେ ରଥ ଭୈରବ ହେଲେ କ୍ଷେତ୍ରପାଳ ଓ ରଥ ଗନ୍ଧର୍ବ ହେଲେ ହୁ ହୁ । ରଥ ଚାରଣ କରନ୍ତି ମହାସିଦ୍ଧ, ଉଲେମୀ ଓ ଗର୍ଭାଧିଶ୍ୱରୀ । ରଥର ଋଷିପଟାରେ ବିରାଜମାନ କରିଥାନ୍ତି ଅଙ୍ଗିରା, ପୌଲସ୍ତ୍ୟ, ପୁଲ୍ଲହ, ଅଗସ୍ତି, କୃଷ୍ଣ, ମୁଦ୍‌ଗଲ, ଆତ୍ରେୟ ଓ କାଶ୍ୟପ । ରଥ କୁମ୍ଭର ନାମ ହେଲା ଭୁବନ, ବିମ୍ବ, ପୃଥିବୀ, ଚକ୍ରାୟୁଧ ଓ ହୁଁ ବୀଜ । ରଥ ନେତର ନାମ ହେଲା ଉନ୍ମନୀ । ଏହାର ଶକ୍ତିମାନେ ହେଲେ ତୁଙ୍ଗା, ତୁଙ୍ଗଭଦ୍ରା, ପ୍ରଭା, ସୁପ୍ରଭା, ଧାତ୍ରୀ, ବିଧାତ୍ରୀ, ନନ୍ଦା ଓ ସୁନନ୍ଦା ।

ଦେବୀ ସୁଭଦ୍ରା ଏବଂ ସୁଦର୍ଶନ ଦ୍ୱିତୀୟ ରଥ ଦର୍ପଦଳନ ବା ଦେବୀଦଳନ ରଥରେ ବିଜେ କରନ୍ତି । ଏହି ରଥ ଦେବତାମାନଙ୍କଦ୍ୱାରା ପ୍ରଦତ୍ତ ହୋଇଥିଲା । ପହଣ୍ଡି ସମୟରେ ସୁଦର୍ଶନ ସର୍ବପ୍ରଥମେ ଏହି ରଥରେ ବିଜେ ହୁଅନ୍ତି । ଦେବୀ ସୁଭଦ୍ରାଙ୍କର ଆୟୁଧ ପଦ୍ମକହ୍ଲାର ଅଟେ । ରଥର ଉଚ୍ଚତା ହେଲା ଏକତିରିଶ ହାତ । ଏହା ପାଞ୍ଚଶହ ତେୟାନବେ (୫୯୩) ଖଣ୍ଡ କାଠରେ ନିର୍ମିତ ହୋଇଥାଏ । ରଥରେ ବାରଟି ଚକ, ବର୍ଷର ବାରମାସର ପ୍ରତୀକ ଏବଂ ଆବରଣ ହେଲା କୃଷ୍ଣ ଲୋହିତ । ରଥର ରକ୍ଷକ ହେଲେ ଜୟଦୁର୍ଗା । ରଥର ସାରଥୀଙ୍କ ନାମ ହେଲା ଅର୍ଜ୍ଜୁନ । ଏହାର ଦ୍ୱାରପାଳିକା ହେଲେ ଦ୍ୱାଦଶା ବରଣ ଭୁବନେଶ୍ୱରୀ, ଚକ୍ର, ଗଙ୍ଗା ଓ ଯମୁନା । ଦର୍ପଦଳନର ଚାରୋଟି ଅଶ୍ୱ ହେଲେ

ରୋଚିକା, ମୋଚିକା, ଜିତା ଓ ଅପରାଜିତା । ରଥର ରଜ୍ଜୁ ହେଲେ ସ୍ୱର୍ଣ୍ଣଚୂଡ଼ ନାମକ ନାଗ । ଉଗ୍ରଚଣ୍ଡୀ ଏହି ରଥକୁ ରକ୍ଷା କରନ୍ତି । ରଥପାର୍ଶ୍ୱ ଦେବୀଗଣ ହେଲେ ବିମଳା, ଚାମୁଣ୍ଡା, ଭଦ୍ରକାଳୀ, ହରଚଣ୍ଡୀକା, ମଙ୍ଗଳା, ବାରାହୀ, କାତ୍ୟାୟିନୀ, ଜୟଦୁର୍ଗା ଓ କାଳୀ । ରଥଶିରର ଦେବତା ହେଲେ ଭକ୍ତିର୍ସମେଧ । ରଥଧ୍ୱଜାରେ ତ୍ରିପୁରା ସୁନ୍ଦରୀ ବିରାଜମାନା । ଏହି ରଥରେ ଚାମର ସେବା କରନ୍ତି ସୁମେଧା ଦେବୀ । ରଥର ଦେବୀ ହେଲେ ଶ୍ରୀ ଭୂ । ଦର୍ପଦଳନ ରଥର ମୁଖ ହେଲା ବ୍ରହ୍ମକର୍ତ୍ତା । ଏହି ରଥର ଗନ୍ଧର୍ବଙ୍କ ନାମ ହେଲା ହା ହା ଓ ଯକ୍ଷଙ୍କ ନାମ ହେଲା କିଂଜଳିକା । ରଥ ଚାରଣଙ୍କ ନାମ ହେଉଛି ମହାକର । ଋଷିପଟାରେ ବିରାଜମାନ କରୁଥିବା ଛଅଜଣ ଋଷି ହେଲେ ଭୃଗୁ, ସୁପ୍ରଭ, ବଜ୍ର, ଶୃଙ୍ଗୀ, ଧ୍ରୁବ ଓ ଉଲ୍ଲୁକୁ । ରଥ କୁମ୍ଭର ନାମ ହେଲା ଅମୃତା, ଜୀବା, କାୟ, ହ୍ରିଂବୀଜ । ରଥ ନେତର ନାମ ହେଲା ନାଦାମ୍ବିକା । ରଥ ଗର୍ଭର ଅଧିଶ୍ୱରୀମାନେ ହେଲେ ଶକ୍ତିଶପ୍ତା, ଜୟା, ବିଜୟା, ଘୋରା, ଅଘୋରା, ସୂକ୍ଷ୍ମା ଓ ଜ୍ଞାନା ।

ମହାପ୍ରଭୁ ସ୍ୱୟଂ ଜଗନ୍ନାଥ ତୃତୀୟ ରଥ ନନ୍ଦିଘୋଷରେ ବିଜେ କରନ୍ତି । ଏହି ନନ୍ଦିଘୋଷ ରଥ ଇନ୍ଦ୍ରଙ୍କଦ୍ୱାରା ପ୍ରଦତ୍ତ ଅଟେ । ଜଗନ୍ନାଥଙ୍କର ଆୟୁଧ ହେଲା ଚକ୍ର ଓ ଶଙ୍ଖ । ନନ୍ଦିଘୋଷ ରଥର ଉଚ୍ଚତା ହେଲା ତେତିଶ ହାତ ପାଞ୍ଚ ଆଙ୍ଗୁଳି । ଏହା ଆଠଶହ ବତିଶ ଖଣ୍ଡ କାଠରେ ତିଆରି । ରଥରେ ରହିଛି ଷୋହଳଟି ଚକ ଯାହା ଷୋହଳ କଳାର ପ୍ରତୀକ । ରଥର ଆବରଣ ହେଲା ରକ୍ତପୀତ । ରଥର ରକ୍ଷକ ହେଲେ ଗରୁଡ଼ । ରଥମୂର୍ଦ୍ଧନୀ ଦେବତା ହେଲେ କଲ୍ୟାଣ ସୁନ୍ଦର । ରଥର ସାରଥୀ ହେଲେ ଦାରୁକ । ଦ୍ୱାରପାଳଦ୍ୱୟଙ୍କ ନାମ ହେଲା ଜୟ ଓ ବିଜୟ । ରଥର ଚାରି ଅଶ୍ୱ ହେଲେ ଶଙ୍ଖ, ବଳାହକ, ଶ୍ୱେତ ଓ ହରିଦାଶ୍ୱ । ରଥ ରଜ୍ଜୁ ହେଲା ଶଙ୍ଖଚୂଡ଼ ନାମକ ନାଗୁଣୀ । ରଥ ଦେବୀ ହେଲେ ଯୋଗମାୟା । **ରଥରେ ନଅଜଣ ଥିବା ପାର୍ଶ୍ୱ ଦେବତାଗଣ ହେଲେ ହନୁମାନ, ରାମ, ଲକ୍ଷ୍ମଣ, ନାରାୟଣ, କୃଷ୍ଣ, ଗୋବର୍ଦ୍ଧନ ଧାରୀ, ଚିନ୍ତାମଣି, ରାଘବ ଏବଂ ନୃସିଂହ । ରଥର ଶକ୍ତି ହେଲେ ବିମଳା ଓ ବିରଜା ।** ରଥ ଗର୍ଭାଧୀଶ୍ୱର ହେଲେ ଏକପାଦ ନନ୍ଦ ଓ କୁମେର ଚାରଣ । ରଥ ଯକ୍ଷ ହେଲେ ହର୍ଯ୍ୟକ୍ଷ, ରଥର ଉକ୍ରର୍ଷଣୀ ହେଲେ ତ୍ରିୟକ୍ଷା, ଯୋଗା, ଆଜ୍ଞା, ଅନୁଜ୍ଞା, ପ୍ରଜ୍ଞା ଓ ମେଧା । ରଥ ଋଷିପଟାରେ ନାରଦ, ଦେବନ୍ଦ, ବ୍ୟାସ, ଶୁକ, ପରାଶର, ବଶିଷ୍ଠ, ବିଶ୍ୱାମିତ୍ର ଓ ରୁଦ୍ର ଆଦି ଆଠଜଣ ଋଷି ବିରାଜମାନ କରନ୍ତି । ରଥ ଧ୍ୱଜାଧିପତି ହେଲେ ବୀର ହନୁମାନ । ରଥ କୁମ୍ଭର ନାମ ହେଲା ହରିଣ୍ୟନ୍ନୟ । ନନ୍ଦିଘୋଷ ରଥର ନେତ ତ୍ରୈଲୋକ୍ୟମୋହିନୀ ଅଟେ । ରଥର ଅଧିଶ୍ୱର ହେଲେ ସ୍ୱୟଂ ଶ୍ରୀଜଗନ୍ନାଥ । ପହଣ୍ଡି ପରେ ତିନି ରଥରେ ତିନି ଠାକୁର ବିରାଜମାନ ହୁଅନ୍ତି । ତିନି ରଥର ଚକ ସଂଖ୍ୟା ହେଲା ୪୨ । ଗୁଣ୍ଡିଚା ମନ୍ଦିରକୁ ଯିବା ଓ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କଲେ ରଥତ୍ରୟର ଘୂର୍ଣ୍ଣନ ସଂଖ୍ୟା ୮୪ ହେବ ଅର୍ଥାତ୍ ଏହା ୮୪ ନର୍କରୁ ମଣିଷକୁ ଉଦ୍ଧାର କରେ ବୋଲି ବିଶ୍ୱାସ ଅଛି ।

ଦଳେଚ ଦୋଳ ଗୋବିନ୍ଦମ୍, ଚାପେଚ ମଧୁସୂଦନମ୍
ରଥେତୁ ବାମାନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ଲଭ୍ୟତେ ।

ମହାପ୍ରଭୁମାନଙ୍କୁ ଗୋଟି ଗୋଟି କରି ପହଣ୍ଡି ବିଜେ କରିବାକୁ ଗୋଟି ପହଣ୍ଡି ଓ ଏକାବେଳକେ ମହାପ୍ରଭୁମାନଙ୍କୁ ବିଜେ କରିବାକୁ ଧାଡ଼ି ପହଣ୍ଡି ବିଜେ କୁହାଯାଏ । ଠାକୁରମାନେ ରଥ ଉପରକୁ ବିଜେ ହେଲାବେଳେ ଧାଡ଼ି ପହଣ୍ଡି ଓ ରଥରୁ ଉଭୟ ଗୁଣ୍ଡିଚା ମଣ୍ଡପ ବା ଶ୍ରୀମନ୍ଦିରର ସିଂହାସନ ଉପରକୁ ବିଜେ ହେଲାବେଳେ ଗୋଟି ପହଣ୍ଡି ବିଜେ ହୁଅନ୍ତି ।

ସିଂହାସନରୁ ରଥକୁ ଓ ରଥରୁ ସିଂହାସନକୁ ତିନିମୂର୍ତ୍ତି ପହଣ୍ଡି ବିଜେ ହୋଇ ଆସନ୍ତି । **ଗୋଟି ପହଣ୍ଡି ଓ ଧାଡ଼ି ପହଣ୍ଡି ଭେଦରେ ପହଣ୍ଡି ଦୁଇ ପ୍ରକାର ।** ମହାପ୍ରଭୁମାନଙ୍କୁ ଗୋଟି ଗୋଟି କରି ପହଣ୍ଡି ବିଜେ କରିବାକୁ ଗୋଟି ପହଣ୍ଡି ଓ ଏକାବେଳକେ ମହାପ୍ରଭୁମାନଙ୍କୁ ବିଜେ କରିବାକୁ ଧାଡ଼ି ପହଣ୍ଡି ବିଜେ କୁହାଯାଏ । ଠାକୁରମାନେ ରଥ ଉପରକୁ ବିଜେ ହେଲାବେଳେ ଧାଡ଼ି ପହଣ୍ଡି ଓ ରଥରୁ ଉଭୟ ଗୁଣ୍ଡିଚା ମଣ୍ଡପ ବା ଶ୍ରୀମନ୍ଦିରର ସିଂହାସନ ଉପରକୁ ବିଜେ ହେଲାବେଳେ ଗୋଟି ପହଣ୍ଡି ବିଜେ ହୁଅନ୍ତି ।

ଠାକୁରମାନଙ୍କ ପହଣ୍ଡି ବିଜେ ପରେ ପୁରୀର ଠାକୁରରାଜା ନିଜେ ସୁବର୍ଣ୍ଣ ସମ୍ମାର୍ଜନୀରେ ଜଗନ୍ନାଥଙ୍କ ରଥ ଉପରେ ପହଁରନ୍ତି । ରୂପା ପାତ୍ରରେ ଚନ୍ଦନ ପୁଷ୍ପାଦି ସମ୍ଭାରକୁ ରଥ ଉପରେ ବିକ୍ଷିପ୍ତ ଭାବରେ ପକାଇବା ପରେ ଗଜପତି ମହାରାଜା ତାକୁ ସୁବର୍ଣ୍ଣ ମାର୍ଜନୀରେ ପହଁରିବା ପରେ ସୁବାସିତ ଜଳ ଛିଞ୍ଚାଯାଏ । ଗଜପତି ମହାରାଜା ଠାକୁରମାନଙ୍କୁ ସେହି ସମୟରେ ସ୍ୱତନ୍ତ୍ର ଭାବରେ ପୂଜା ଆରାଧନା କରନ୍ତି । ଏହି ନୀତିକୁ ଛେରାପହଁରା କୁହାଯାଏ ।

ତା' ପରେ ରଥ ତ୍ରୟରେ ଅଶ୍ୱମାନ ଯୋଚା ଯାଆନ୍ତି । ରଥରେ ସେବାୟତମାନେ ରଥ ଉପରେ ଘଣ୍ଟ, କାହାଳୀ ବଜାନ୍ତି । ରଥରେ ତିନୋଟି ଲେଖାଏଁ ଦଉଡ଼ି ବନ୍ଧାଯାଏ । ତା' ପରେ କ୍ରମାନ୍ୱୟରେ ତାଳଧ୍ୱଜ, ଦେବଦଳନ ଓ ନନ୍ଦିଘୋଷ ରଥଗୁଡ଼ିକୁ





ଭକ୍ତମାନେ ଅତି ଆନନ୍ଦରେ ହରିବୋଲ ଓ ହୁଳହୁଳି ଶବ୍ଦରେ ଗୁଣ୍ଡିଚାଘରଆଡ଼କୁ ଟାଣି ନିଅନ୍ତି ।

ଏହି ରଥଯାତ୍ରା ଦେଖିବା ପାଇଁ ଭାରତ ତଥା ପୃଥିବୀର ବିଭିନ୍ନ ଦେଶରୁ ବିଭିନ୍ନ ଜାତି, ଧର୍ମ ଓ ବର୍ଣ୍ଣର ଲୋକମାନେ ବଡ଼ଦାଣ୍ଡରେ ଏକତ୍ର ହୁଅନ୍ତି । ସମସ୍ତଙ୍କ ମନରେ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ କରିବାର ଚେତନା ଉଦ୍ରେକ ହୋଇଥାଏ । ସେଥିପାଇଁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବର୍ଣ୍ଣନା କରିଛନ୍ତି-

ସହସ୍ର ଯୋଜନରୁ ଆଗତହନ୍ତି ଜନେ
ସବୁ ରୂପେ ବଶ ହୋଇ ଯାହା ଦରଶନେ ଯେ ।

ରଥଯାତ୍ରା ଅତୀବ ମନୋହର ଓ ପ୍ରାଣସ୍ପର୍ଶୀ ଅଟେ । ବିଭିନ୍ନ ଲୀଳାଖେଳା ମାଧମରେ ରଥତ୍ରୟ ସନ୍ଧ୍ୟାସୁଦ୍ଧା ଯାଇ ଗୁଣ୍ଡିଚା ମନ୍ଦିରରେ ପହଞ୍ଚନ୍ତି । ସେଠାରେ ରଥ ପହଞ୍ଚିବା ପରେ ପୁନର୍ବାର ଠାକୁରମାନେ ପହଣ୍ଡି ହୋଇ ଗୁଣ୍ଡିଚା ମନ୍ଦିର ରତ୍ନବେଦୀ ଉପରେ ବିରାଜମାନ ହୁଅନ୍ତି ।

ଗୁଣ୍ଡିଚା ମନ୍ଦିରରେ ନବଦିନ ରହିବା ପରେ ରଥତ୍ରୟରେ ଠାକୁରମାନେ ବାହୁଡ଼ା ଯାତ୍ରା କରନ୍ତି ଓ ସିଂହଦ୍ୱାରରେ ପହଞ୍ଚିବା ପରେ ସୁନାବେଶ ହୁଅନ୍ତି । ସୁନାବେଶ ଦେଖିବା ପାଇଁ ଲକ୍ଷାଧିକ ଲୋକ ବଡ଼ଦାଣ୍ଡରେ ଭିଡ଼ ହୁଅନ୍ତି । ଏହାପରେ ଠାକୁରମାନଙ୍କର ବିଭିନ୍ନ ନୀତିମାନ ସମାପନ କରି ଠାକୁରମାନଙ୍କୁ ପହଣ୍ଡି କରି ରତ୍ନସିଂହାସନକୁ ସେବକମାନେ ନେଇଯାଆନ୍ତି ।

ଘ.ନଂ.- ଏସ୍.-୧୧୩
ମୈତ୍ରୀ ବିହାର, ଭୁବନେଶ୍ୱର-୨୩

---



# ଜଗନ୍ନାଥ

ଦେବଦାସ ଛୋଟରାୟ

ମୁଁ ମାଗୁଚି
ତୋ' ପାଖରୁ
ଅସୀମ ପ୍ରେମ ଆଉ ଅସୀମ କ୍ଷମା

ମତେ ଦେ
ତତେ ଆଉ ତୋ'
ହାତ ତିଆରି ମଣିଷକୁ
ଆହୁରି ଆହୁରି ଭଲ ପାଇବାର ଶକ୍ତି

ମତେ ଦେ
ବଳଭଦ୍ର ଆଉ ସୁଭଦ୍ରାଙ୍କଠୁଁ
ତତେ ବେଶି ଭଲ ପାଇବାର
ଅପରାଧ ପାଇଁ କ୍ଷମା

ମନେ ଅଛି ?
ମୁଁ ତୋ ଗମ୍ଭିରୀରୁ ବୁଲି ପଡ଼ି
ବାହାରିଲା ବେଳକୁ



କେମିତି ଶେଷଥର ପାଇଁ
ତତେ ଅନାଏ
ଖାଲି ତତେ, ଆଉ କାହାକୁ ନୁହେଁ

ପୁଣି ତୋ' ସାମ୍ନାରେ
ଠିଆ ହୋଇ, ତତେ ଚାହୁଁ ଚାହୁଁ
ଆଉ କାହାକୁ ଚାହିଁ ଦେବାର
ଆଉ କାହା କଥା ଭାବି ବସିବାର
ଅପରାଧ ପାଇଁ, କ୍ଷମା କରି ଦେ ମତେ

ଏ କେମିତି ମନ
ଦେଇଚୁ ସତେ ?
ତୋ' ନେତଠାରୁ
ଆହୁରି ଚଞ୍ଚଳ ଛଟପଟ

କୁଳପତି
ରେଭେନ୍ସା ବିଶ୍ୱବିଦ୍ୟାଳୟ, କଟକ






# ନବଦିନାତ୍ମକ ରଥଯାତ୍ରା



ଦାମୋଦର ପାଢ଼ୀ

**ଜ**ଗତର ନାଥ ପ୍ରଭୁ ଶ୍ରୀଶ୍ରୀଜଗନ୍ନାଥଙ୍କର ଲୀଳା, ଖେଳା, ମେଳା, ଜାନିଯାତ୍ରା, ଅପାର ଓ ବୈଚିତ୍ର୍ୟ ମଧ୍ୟରେ ଭକ୍ତଙ୍କୁ ସାଙ୍ଗରେ ନେଇ ସମଭାବରେ ପାଳିତ ହୋଇଆସିଛି । ସବୁଧର୍ମ, ଜାତି, ବର୍ଣ୍ଣ ସମସ୍ତସ୍ତରରେ ସାମାଜିକ ମାନବ ଏହି ଦାରୁଦେବତା ପରମବ୍ରହ୍ମ ଠାକୁର ଜଗନ୍ନାଥଙ୍କ ଲୀଳାରେ ସମାନ ରୂପରେ ଲାଳିତପାଳିତ ହୋଇଥାନ୍ତି । ପ୍ରଭୁଙ୍କର ଅପାର କରୁଣାରେ ସମସ୍ତେ ଚକା ଚକା ଆଖିକୁ କଳା ବଉଦରେ ଝଲସୁଥିବାର ଦେଖିପାରନ୍ତି ଓ ଚକାନୟନରେ ଥରେ ନୟନ ମିଶିଗଲେ ସମସ୍ତ ଭକ୍ତ ସମାଜ ଆତ୍ମବିଭୋର ହୋଇ ପଡ଼ିଥାନ୍ତି । ସତରେ ବିଶ୍ୱବ୍ରହ୍ମାଣ୍ଡରେ ଏହିଭଳି ଏକ ଆଧ୍ୟାତ୍ମିକବାଦର ସାମାଜିକ ଚଳନ୍ତି ଠାକୁର ସମଭାବ ସୃଷ୍ଟିକାରୀ ଜଗନ୍ନାଥ ପରମ ବ୍ରହ୍ମଙ୍କର ବାରମାସରେ ତେର ପର୍ବ ରଚନା ନିଶ୍ଚିନ୍ତ ରୂପେ ଭକ୍ତିସାଗରରେ ନର-ନାରୀ ଦେବ-ଦେବୀଙ୍କୁ ଆଶ୍ଚର୍ଯ୍ୟ କରି ଦେଇଥାଏ ଓ ଏଥିରେ ନୂତନ ଆହ୍ଲାଦ, ଭକ୍ତି ସାଗରର ଉନ୍ମାଦନା ସୃଷ୍ଟି କରିଥାଏ । ଶ୍ରୀକ୍ଷେତ୍ର, ପୁରୁଷୋତ୍ତମ, କ୍ଷେତ୍ର, ଯେଉଁଠାରେ ବିଜେ ଚତୁର୍ଦ୍ଧାମୂର୍ତ୍ତି ଜଗତର ନାଥ ପ୍ରଭୁ ଶ୍ରୀଶ୍ରୀଜଗନ୍ନାଥ ସେହି କ୍ଷେତ୍ର ପୁଣି ଶଙ୍ଖ କ୍ଷେତ୍ର, ନୀଳାଚଳ କ୍ଷେତ୍ର, ନୀଳାଦ୍ରି କ୍ଷେତ୍ର, ଶ୍ରୀଶ୍ରୀଜଗନ୍ନାଥ ଧାମ ଯାହା ଧାମ ମଧ୍ୟରେ ସର୍ବଶ୍ରେଷ୍ଠ ଧାମ । ମହୋଦଧି କୂଳେ ଜ୍ୟେଷ୍ଠଭ୍ରାତା ବଳଭଦ୍ର, ଭଗ୍ନୀ ସୁଭଦ୍ରା, ଶ୍ରୀଜଗନ୍ନାଥ ଓ ସୁଦର୍ଶନ ସହ ଚତୁର୍ଦ୍ଧାମୂର୍ତ୍ତିରେ ଏଠାରେ ବିଦ୍ୟମାନ । ବାରମାସରେ କେବଳ ତେର ଯାତ୍ରା ନୁହେଁ ତା' ସଂଗେସଂଗେ ୨୭ଟି ଉପଯାତ୍ରା, ୧୦୮ଟି ପର୍ବପର୍ବାଣି ମଧ୍ୟ ପାଳିତ ହୋଇଥାଏ । ଏହା ପ୍ରଭୁ ଶ୍ରୀଶ୍ରୀଜଗନ୍ନାଥଙ୍କ ସଂସ୍କୃତି, ଧର୍ମ ଉପରେ ପ୍ରତ୍ୟେକ ଓଡ଼ିଆଙ୍କ ଘରେ ଘରେ ପାଳିତ ହେଉଛି । ନୀଳାଦ୍ରି ମହୋଦୟ ସମେତ ସ୍ନାନଯାତ୍ରା, ଶ୍ରୀଗୁଣ୍ଡିଚା ଯାତ୍ରା, ଶ୍ରୀହରି ଶୟନୋତ୍ସବ, ଉତ୍‌ଥାପନ ଯାତ୍ରା, ପାର୍ଶ୍ୱପରିବର୍ତ୍ତନ, ଦକ୍ଷିଣାୟନ ଯାତ୍ରା, ପ୍ରାବରଣ ଷଷ୍ଠୀ, ପୁଷ୍ୟାଭିଷେକ, ଉତ୍ତରାୟନ, ବାସନ୍ତିକ ଦୋଳ ଉତ୍ସବ, ଦମନକ ଚତୁର୍ଦ୍ଦଶୀ ଓ ଅକ୍ଷୟ ତୃତୀୟା ବା ଚନ୍ଦନଯାତ୍ରା ବର୍ଷର ବିଭିନ୍ନ ମାସରେ ଭକ୍ତଙ୍କ ଗହଣରେ ପାଳିତ ହୋଇଆସିଛି । ଏହାବ୍ୟତୀତ ୮ଟି ଉପଯାତ୍ରା ଶ୍ରୀମନ୍ଦିରରେ ପାଳିତ ହେଉଛି । ଯଥାକ୍ରମେ- ଚିତାଲାଗି ଅମାବାସ୍ୟା, ଝୁଲଣ ଯାତ୍ରା, ଜନ୍ମାଷ୍ଟମୀ, ସପ୍ତପୁରୀ ଅମାବାସ୍ୟା, ଷୋଳପୂଜା, କୁମାର ପୂର୍ଣ୍ଣିମା, ପୁଷ୍ୟାଭିଷେକ, ରାମନବମୀ ।

ସମସ୍ତ ଜାନିଯାତ୍ରା ମଧ୍ୟରେ ଗୁଣ୍ଡିଚା ରଥଯାତ୍ରା ତଥା ଘୋଷଯାତ୍ରା ସର୍ବଶ୍ରେଷ୍ଠ । ଭକ୍ତଙ୍କୁ ନେଇ କାଳିଆ ଠାକୁର ବର୍ଷକରେ ଥରେ ରତ୍ନସିଂହାସନରୁ ଉଠି ଆସି ବଡ଼ଦାଣ୍ଡରେ ବିଜେ କରନ୍ତି ନନ୍ଦିଘୋଷ ରଥରେ । ସ୍ନାନଯାତ୍ରା ଓ ରଥଯାତ୍ରାରେ ସ୍ୱୟଂ ମା' ସୁଭଦ୍ରା, ପ୍ରଭୁ ବଳଭଦ୍ର ଓ ଚକାଡ଼ୋଳିଆ ପ୍ରଭୁଙ୍କର ଦାରୁବିଗ୍ରହମାନେ ବିଜେ ହୋଇ ପ୍ରତ୍ୟକ୍ଷଭାବେ ଭକ୍ତଙ୍କ ଗହଣକୁ ଆସିଥିବାବେଳେ ଅନ୍ୟାନ୍ୟ ଯାତ୍ରାରେ ପ୍ରଭୁଙ୍କର ଆଜ୍ଞାମାଳ ପାଇ ଚଳନ୍ତି ପ୍ରତିମାମାନେ ବିରାଜମାନ ହୋଇଥାନ୍ତି ।

ବିଶ୍ୱର କୋଣ ଅନୁକୋଣରେ ଶ୍ରୀଜଗନ୍ନାଥ ପ୍ରେମୀ ଭକ୍ତମାନେ ଏହି ଦିନଟିକୁ ଅପେକ୍ଷା କରିଥାନ୍ତି, ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ । ସତରେ ଦାରୁର ବିଗ୍ରହ ହାତ, କାନ, ଗୋଡ଼, ପଲକ ନଥାଇ ସ୍ୱପରିକଳ୍ପିତ ବିଗ୍ରହରେ କାଳିଆ ଶଙ୍ଖକ୍ଷେତ୍ର, ପୁରୁଷୋତ୍ତମ ଧାମ ମହୋଦଧିକୂଳେ ପାଷାଣର ବିଶାଳ ମନ୍ଦିରରେ ପୂଜା ପାଇ ଆସୁଛି । ପତିତପାବନ ପତିତଜନଙ୍କୁ ଉଦ୍ଧାରିବା ପାଇଁ ଦର୍ଶନ ଦେବା ପାଇଁ ବର୍ଷକରେ ଥରେ ପତିତପାବନ ଯାତ୍ରାରେ ସର୍ବସାଧାରଣଙ୍କ ମେଳକୁ ଚାଲି ଆସିଥାନ୍ତି । ଆଶ୍ଚର୍ଯ୍ୟ ଲାଗେ, କି ଭଗବତ ପ୍ରେମରେ ପାଗଳ ହୋଇ ଲକ୍ଷ ଲକ୍ଷ ଭକ୍ତ ଛୁଟି ଆସନ୍ତି ଶ୍ରୀକ୍ଷେତ୍ର ବଡ଼ଦାଣ୍ଡକୁ । କିଏ ଏମାନଙ୍କୁ ଡାକିନଥାଏ । କିନ୍ତୁ ପତିତପାବନ ବାନା ଫରଫର୍ ହୋଇ ଉଡ଼ି ଉଡ଼ି ଅଗଣିତ ଭକ୍ତଙ୍କୁ ଟାଣି ଆଣେ ବର୍ଷକେ ଥରେ ହେଉଥିବା ଏହି ଯାତ୍ରାକୁ । କାଳିଆର ଏହି ମହିମା ସମସ୍ତେ ଅନୁଭବ କରନ୍ତି ।





ଆଷାଢ଼ ମାସର ଶୁକ୍ଳପକ୍ଷ ପୁଷ୍ୟା ନକ୍ଷତ୍ରଯୁକ୍ତ ଦ୍ୱିତୀୟା ତିଥିରେ ରଥଯାତ୍ରା ବିଶ୍ୱର ପ୍ରତ୍ୟେକ ସ୍ଥାନରେ ମହାସମାରୋହରେ ପାଳିତ ହୋଇ ଆସୁଛି । କାଷ୍ଠରେ ନିର୍ମିତ ରଥତ୍ରୟରେ ଚତୁର୍ଦ୍ଧାମୂର୍ତ୍ତି ରତ୍ନସିଂହାସନ, ଶ୍ରୀମନ୍ଦିର ପରିତ୍ୟାଗ ପୂର୍ବକ ନବଦିନାତ୍ମକ ଆଡ଼ପମଣ୍ଡପକୁ ଯାତ୍ରା କରନ୍ତି । ଏହା ଆଡ଼ପମଣ୍ଡପ ଯାତ୍ରା, ଗୁଣ୍ଡିଚା ଯାତ୍ରା, ଘୋଷଯାତ୍ରା, ନବଦିନାତ୍ମକ ଯାତ୍ରା, ପତିତପାବନ ଯାତ୍ରା, ଦଶାବତାର ଯାତ୍ରା, ମହାବେଦୀ ଯାତ୍ରା ନାମରେ ଜନାଦୃତ । ନବଦିବସ ବ୍ୟାପୀ ଏହି ସାମ୍ବତ୍ସରିକ ରଥଯାତ୍ରା ନିମନ୍ତେ, ପ୍ରତିବର୍ଷ ନୂତନ କାଷ୍ଠରେ ରଥତ୍ରୟର ନିର୍ମାଣ କରାଯାଇଥାଏ । ଏହି ଦାରୁ ମାଘମାସ ଶୁକ୍ଳ ଶ୍ରୀପଞ୍ଚମୀଠାରୁ ସଂଗ୍ରହ ହୋଇ ବଡ଼ଦାଣ୍ଡର ରଥଖଳାରେ ରଖାଯାଇଥାଏ । ଅକ୍ଷୟ ତୃତୀୟା ଦିନ ରଥ ନିର୍ମାଣର ଶୁଭାରମ୍ଭ ହୋଇଥାଏ । ରାମନବମୀ ଦିନ କାଠଚିରା ଓ ଶ୍ରୀନୃସିଂହ ଚତୁର୍ଦ୍ଦଶୀ ଦିନଠାରୁ ଗୁଜ ବା ରୁଜ ଅନୁକୂଳ, ଶ୍ରୀକ୍ଷେତ୍ର ଭଉଁରୀ ଦିବସରେ ରଥତ୍ରୟର ୬ ଗୋଟି ଚକନିର୍ମାଣ ଶେଷ କରାଯାଏ । ଦେବସ୍ନାନ ପୂର୍ଣ୍ଣିମା ଦିନ ୪ ନାହାକ ଡେରା ଅନୁକୂଳ ଓ ନେତ୍ରୋତ୍ସବ ଦିନ ପୂର୍ଣ୍ଣାଙ୍ଗ ରଥତ୍ରୟ ନିର୍ମାଣ ହୋଇ ରଥଖଳାରୁ ଟଣା ହୋଇ ଶ୍ରୀମନ୍ଦିର ସିଂହଦ୍ୱାର ପର୍ଯ୍ୟନ୍ତ ନିଆଯାଇଥାଏ ।

ଜଗନ୍ନାଥ ହେଉଛନ୍ତି କ୍ଷର, ଅକ୍ଷର ବା ବିଦ୍ୟା ଓ ଅବିଦ୍ୟାର ନିୟାମକ । ସେଥିପାଇଁ ସେ ଲୋକଶ୍ରେଷ୍ଠ ବା ପୁରୁଷୋତ୍ତମ । ସେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗକାରୀ । ତାଙ୍କର ମହିମା ତ୍ରିପୁର ବ୍ୟାପ୍ତ । ବେଦଠାରୁ ପୁରାଣ ପର୍ଯ୍ୟନ୍ତ, ଜଗନ୍ନାଥଙ୍କ ସଂପର୍କରେ ଯେଉଁ ଚମତ୍କାର ବର୍ଣ୍ଣନା ପରିଲକ୍ଷିତ ହୋଇଥାଏ, ସେଥିରୁ ତାଙ୍କର ଉତ୍ସ ସଂପର୍କରେ ସ୍ଥୂଳ ଧାରଣା ସୃଷ୍ଟି ହୋଇଥାଏ । ସେ ଯେଉଁ ଧାମରେ ବିଜେ କରିଛନ୍ତି ତାହା ଶ୍ରେଷ୍ଠଧାମ । ବ୍ରହ୍ମ ପୁରାଣରେ ଏହାକୁ ଶ୍ରେଷ୍ଠ ସ୍ଥାନ ଦିଆଯାଇଛି ।

ଏହିପରି ଏକ ମହାମହିମ ବିଶ୍ୱନିୟନ୍ତା ଦାରୁଦେବତା ଜଗନ୍ନାଥଙ୍କର କ୍ଷେତ୍ରରେ ଶ୍ରୀଗୁଣ୍ଡିଚା ରଥଯାତ୍ରାର ମାହାତ୍ମ୍ୟ ଯଥେଷ୍ଟ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବିରାଜିତ ରଥ ନନ୍ଦିଘୋଷ, ତାଳଧ୍ୱଜ ଓ ଦର୍ପଦଳନରେ ସୃଷ୍ଟିର ସକଳ ଦେବଦେବୀଙ୍କଠାରୁ ଆରମ୍ଭ କରି ଗ୍ରହ, ନକ୍ଷତ୍ର, ଋଷି, ଗନ୍ଧର୍ବ, ଯକ୍ଷ ଏବଂ ହନୁମାନ, ଅର୍ଜ୍ଜୁନପରି ଶ୍ରେଷ୍ଠ ଭକ୍ତଗଣ ସ୍ଥାନ ପାଇଛନ୍ତି । ଜାତି ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସକଳ ଶ୍ରେଣୀର ଭକ୍ତ ବାଦ୍ୟ, ନୃତ୍ୟ, ଭକ୍ତି ଗୀତ, ସଙ୍ଗୀତ, ହରିବୋଲ ହୁଳହୁଳି ଧ୍ୱନିରେ ବଡ଼ଦାଣ୍ଡରେ ଜୟ ଜୟ ଜଗନ୍ନାଥ ଧ୍ୱନିରେ ମହାନନ୍ଦରେ ରଥ ଟାଣି ନିଅନ୍ତି । ରଥର ଘର୍ଘର ଧ୍ୱନିରେ ଚଉଦଭୁବନ ପ୍ରକମ୍ପିତ ହୋଇଉଠେ ।

ନବଦିନାତ୍ମିକା ରଥଯାତ୍ରା ଉପରେ ବହୁପ୍ରାଚୀନ କାଳରୁ ଶ୍ରୀଜଗନ୍ନାଥଙ୍କର ମହାତ୍ମ୍ୟ ଜନମାନସରେ ରହି ଆସିଛି । ବ୍ରହ୍ମପୁରାଣ, ସ୍କନ୍ଦ ପୁରାଣ, ନାରଦ ପୁରାଣ, ବାମନ ପୁରାଣ, ସୂତ ସଂହିତାରେ ଏହା ବର୍ଣ୍ଣିତ ହୋଇଛି ।

ଜଗନ୍ନାଥଙ୍କ ଅନ୍ୟ ନାମ ପୀତବାସ । ତେଣୁ ନନ୍ଦିଘୋଷ ରଥ ହଳଦିଆ ଲୁଗାରେ ଆବୃତ ହୋଇଥାଏ । ରଥର ଉଚ୍ଚତା ୩୩ ହାତ ୫ ଆଙ୍ଗୁଳି ଏହା ୮୩୨ ଖଣ୍ଡ କାଷ୍ଠରେ ନିର୍ମିତ । ୧୬ଟି ଚକ ସହ ଗରୁଡ଼, ଧ୍ୱଜାଧିପତି ହନୁମାନ, ଆୟୁଧ ଚନ୍ଦ୍ର ଓ ଶଙ୍ଖ ରଥାବରଣ ରକ୍ତପୀତ ରଥମୂର୍ଦ୍ଧି ଦେବତା କଲ୍ୟାଣ ସୁନ୍ଦର, ଶକ୍ତି-ବିମଳା ଓ ବିରଜା, ରଥର ନବ ପାର୍ଶ୍ୱଦେବତା ଯଥା- ହନୁମାନ, ରାମ, ଲକ୍ଷ୍ମଣ, ନାରାୟଣ, କୃଷ୍ଣ, ଗୋବର୍ଦ୍ଧନ ଧାରଣ ଚିନ୍ତାମଣି, ରାଘବ ଓ ନୃସିଂହ, ରଥ ଅଶ୍ୱ-ଶଙ୍ଖ, ବଳାହକ, ଶ୍ୱେତ, ହରିଦାଶ୍ୱ, ସାରଥୀର ନାମ- ଦାରୁକ ରଥରଜ୍ଜୁ- ଶଙ୍ଖଚୂଡ଼ ନାମ୍ନୀ ନାଗୁଣୀ, ରଥଦେବୀ- ଯୋଗମାୟା ରଥ ଭୈରବ- ଏକପାଦ, ନନ୍ଦ ଓ କୁବେରଚାରଣ, ଋଷିପଟାରେ- ନାରଦ, ଦେବଳ, ବ୍ୟାସ, ଶୁକଦେବ, ପରାଶର ବଶିଷ୍ଠ, ବିଶ୍ୱାମିତ୍ର, ରୁଦ୍ର ଆଦି ଅଷ୍ଟଋଷି, ଦ୍ୱାରପାଳ- ଜୟ ଓ ବିଜୟ ନେତର ନାମ- ତ୍ରୈଲୋକ୍ୟମୋହିନୀଙ୍କୁ ନେଇ ଶ୍ରୀଜଗନ୍ନାଥ ନବଦିନବ୍ୟାପୀ ଯାତ୍ରାରେ ବାହାରିଥାନ୍ତି । ବଳଭଦ୍ରଙ୍କ ଅନ୍ୟନାମ ନୀଳାମ୍ବର । ତେଣୁ ତାଙ୍କ ରଥ ନୀଳବସ୍ତ୍ରରେ ଆବୃତ । ରଥର ଉଚ୍ଚତା ୩୨ ହାତ ୧୦ ଆଙ୍ଗୁଳି । ୭୬୩ ଖଣ୍ଡ କାଷ୍ଠରେ ଏହା ନିର୍ମିତ । ୧୪ଟି ଚକରେ ତାଳଧ୍ୱଜ ରଥ ନିର୍ମିତ । ଏହାର ରକ୍ଷକ- ବାସୁଦେବ, ଆୟୁଧ ହଳ ଓ ମୂଷଳ, ରଥମୂର୍ଦ୍ଧି ଦେବତା - ଅନନ୍ତ ନାଗ, ରଥ ପାର୍ଶ୍ୱ ନବଦେବତା, ଦ୍ୱାରପାଳ ନନ୍ଦ ସୁନନ୍ଦ ଓ ନେତର ନାମ ଉନ୍ନନି । ରଥଭୈରବ- କ୍ଷେତ୍ରପାଳ, ସାରଥୀର ନାମ ମାତଳି, ରଥ ରକ୍ଷକ- ଭାସ୍କର, ରଥ ଅଶ୍ୱ ତୀବ୍ର, ଘୋର ଦୀର୍ଘଶ୍ରମ ଓ ସ୍ୱର୍ଣ୍ଣନାଭ, ରଥରଜ୍ଜୁ- ବାସୁକୀ । ସୁଭଦ୍ରାଙ୍କ ରଥଟି ଦେବୀରଥ ହୋଇଥିବାରୁ ଏହା କୃଷ୍ଣ ବସ୍ତ୍ରରେ ଆବୃତ । ଏହାର ଉଚ୍ଚତା ୩୧ ହାତ ଓ ୫୯୩ ଖଣ୍ଡ କାଠରେ ନିର୍ମିତ ଓ ୧୨ଟି ଚକ ବିଶିଷ୍ଟ । ଦେବଦଳନର ରକ୍ଷକ ଜୟଦୁର୍ଗା, ଧ୍ୱଜାଧିପତି ତ୍ରିପୁରା ସୁନ୍ଦରୀ, ରଥମୂର୍ଦ୍ଧି ଦେବତା- ସୁମେଧା ଦେବୀ (ଚାମରହସ୍ତା), ସାରଥୀର ନାମ ଅର୍ଜ୍ଜୁନ- ରଥରକ୍ଷକ ଉଗ୍ରଚଣ୍ଡୀ, ୪ଟି ଅଶ୍ୱର ନାମ- ରୋଚିକା, ମୋଚିକା, ଜିତା ଓ ଅପରାଜିତା, ରଥରଜ୍ଜୁ- ସ୍ୱର୍ଣ୍ଣଚୂଡ଼ ନାଗ, ରଥଦେବୀ- ଶ୍ରୀ-ଭୂ, ଦ୍ୱାରପାଳିକା ଗଙ୍ଗା-ଯମୁନା, ନେତର ନାମ ନାଦାମ୍ବିକା ।

ରଥକୁ ଧାଡ଼ି ପହଣ୍ଡିରେ ପ୍ରଥମେ ବଳଭଦ୍ର ଓ ତାଙ୍କ ପୂର୍ବରୁ ସୁଦର୍ଶନ ସୁଭଦ୍ରାଙ୍କ ରଥକୁ ବିଜେ କରାନ୍ତି । ତାଙ୍କ ପରେ ସୁଭଦ୍ରା ଓ ଶେଷରେ ଜଗନ୍ନାଥ ପହଣ୍ଡି ବିଜେ ହୁଅନ୍ତି । ତିନିଠାକୁର ରଥରେ ବସିବା ପରେ ବିମାନବଡୁମାନେ ଚଳନ୍ତି ପ୍ରତିମା ରାମ ଓ କୃଷ୍ଣଙ୍କୁ ଆଣି ବଳଭଦ୍ରଙ୍କ ରଥରେ ଏବଂ ମଦନମୋହନଙ୍କୁ ଜଗନ୍ନାଥଙ୍କ

ରଥରେ ସ୍ଥାପନ କରନ୍ତି । ଠାକୁରମାନଙ୍କ ରଥାରୂଢ଼ ପରେ ପୁରୀର ଠାକୁରରାଜା, ପ୍ରଭୁଙ୍କର ପ୍ରଥମ ସେବକ ଗଜପତି ନିଜେ ସୁବର୍ଣ୍ଣ ସମ୍ମାର୍ଜନୀରେ ଜଗନ୍ନାଥ ରଥ ଉପରେ ପହଁରନ୍ତି । ପହଁରିବା ପରେ ସୁବାସିତ ଜଳ ଛିଞ୍ଚାଯାଏ । ଏହାକୁ ଛେରାପହଁରା କୁହାଯାଏ । ଏହାପରେ କ୍ରମାନ୍ୱୟରେ ତାଳଧ୍ୱଜ, ଦେବଦଳନ ଓ ନନ୍ଦିଘୋଷ ରଥ ଗୁଣ୍ଡିଚାଘର ଆଡ଼କୁ ଟଣା ହୋଇ ଚାଲନ୍ତି । ଲକ୍ଷ ଲକ୍ଷ ଭକ୍ତ ଆକୁଳ, ଆତୁରରେ ରଥ ଦଉଡ଼ି ଧରି ଟାଣିବାରେ ମନ, ପ୍ରାଣ ଢାଳି ଦିଅନ୍ତି । କାରଣ- ରଥସ୍ଥଂ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେଂ ।

'ତୋ' ରଥ ଦଉଡ଼ି ଅଣ୍ଟାରେ ମୁଁ ଭିଡ଼ି, ଆନନ୍ଦରେ ଟାଣୁଥିବି ।
କାଳିଆରେ ଜୀବନ ଧନ୍ୟ ମଣିବି ।।'

ସାମ୍ୟ, ମୈତ୍ରୀ, ସହଯୋଗ, ଉଦାରତା ଜ୍ଞାନ, କର୍ମ, ଶକ୍ତି ଓ ସର୍ବଧର୍ମ ସମନ୍ୱୟର ଘନୀଭୂତ ପରିପ୍ରକାଶ ଜଗନ୍ନାଥ ସଂସ୍କୃତି ଓ ରଥଯାତ୍ରା । ରାଜା ସାର୍ବଭୌମ ଅଧିକାରର ଅଧିନାୟକ, ସାମାଜିକ ଚଳଣି ବା ରୁଚିବୋଧରେ ଅନ୍ୟତମ । ନିମ୍ନତମ କାର୍ଯ୍ୟ ସେ ଝାଡୁଦାର ରୂପେ ଛେରାପହଁରାରେ ଝାଡୁ ମାରନ୍ତି । ଲକ୍ଷେ ରାଜ୍ୟର ମଉଡ଼ମଣି ସମାଜର ଏକ ନିମ୍ନସ୍ତରର ସେବକ ଝାଡୁଦାର ତୁଲ୍ୟ ସେବା ନିର୍ବାହ କରିଥାନ୍ତି ଓ ଏଥିରେ ସେ କୁଣ୍ଠାବୋଧ କରିନଥାନ୍ତି । ସେ ରାଜା କିନ୍ତୁ ସେ ଠାକୁରରାଜା ରଥଯାତ୍ରା ଓ ବାହୁଡ଼ାଯାତ୍ରାରେ ବେତ୍ର ହସ୍ତରେ ଧରି ଡାହୁକମାନେ ଡାକ ଦେଲେ ରଥ ଚାଲେ ।

ରଥ ଗୁଣ୍ଡିଚା ମଣ୍ଡପ ଆଡ଼େ ଗଡ଼ି ଚାଲେ । ରାସ୍ତାରେ ଠାକୁରମାନଙ୍କୁ ନିସଙ୍ଖୁଡ଼ି ଭୋଗ ଦିଆଯାଏ । ମାଉସୀମା (ଅର୍ଦ୍ଧାଶନୀ) ମନ୍ଦିର ନିକଟରେ ଶ୍ରୀଜଗନ୍ନାଥ ରଥ କିଛି ସମୟ ଠିଆ ହୁଏ । ଶ୍ରୀଜଗନ୍ନାଥଙ୍କୁ ପୋଡ଼ପିଠା ଭୋଗ ଦିଆଯାଏ । ବଳଗଣ୍ଡି ନିକଟରେ ମଧ ଶ୍ରୀଜଗନ୍ନାଥଙ୍କର ରଥ କିଛି ସମୟ ରହେ । ସେଠାରେ ବଳିରାଜା ଜଗନ୍ନାଥଙ୍କୁ ଦର୍ଶନ କରୁଥିବାର ପ୍ରବାଦ ରହିଛି ।

ସେଦିନ ରାତିରେ ଠାକୁରମାନେ ଗୁଣ୍ଡିଚା ମନ୍ଦିର ନିକଟରେ ରଥରେ ରହନ୍ତି ଓ ଦଶାବତାର ବେଶ କରାଯାଏ । ପରଦିନ ଗୁଣ୍ଡିଚା ମନ୍ଦିରକୁ ବିଜେ କରନ୍ତି । ସେଠାରେ ୭ ଦିନ ଯାଏଁ ଅବସ୍ଥାନ କରନ୍ତି । ରଥଯାତ୍ରାର ପଞ୍ଚମ ଦିନ ହେରାପଞ୍ଚମୀ ପାଳିତ ହୁଏ । ଏକ ସପ୍ତାହ ଧରି ଶ୍ରୀଜୀଉମାନେ ଆଡ଼ପମଣ୍ଡପରେ ଅବସ୍ଥାନ କରନ୍ତି । ଏ ମଧ୍ୟରେ ଗୋଟିଏ ଦିନ ଦର୍ଶନାର୍ଥୀ ଭକ୍ତଗଣ ଆଡ଼ପମଣ୍ଡପରେ ଶ୍ରୀଜୀଉମାନଙ୍କୁ ଦର୍ଶନ କରନ୍ତି ତେବେ ଅସୀମ ପୁଣ୍ୟଲାଭ ହୁଏ ।

ମହାବେଦୀ ମହୋତ୍ସବରେ ଦେବତାମାନେ ମଧ ସ୍ୱର୍ଗରୁ ଆସି ଦାରୁବ୍ରହ୍ମଙ୍କ ଦର୍ଶନ କରିଥାନ୍ତି । ଶ୍ରୀଜୀଉଙ୍କର ରଥଯାତ୍ରା ହେଉଛି ବାତ୍ସଲ୍ୟର ଜୟଯାତ୍ରା । ସଂପୂର୍ଣ୍ଣ ଗୁଣ୍ଡିଚା ଯାତ୍ରା ସ୍ନାନ ପୂର୍ଣ୍ଣିମାଠାରୁ ଶୟନ ପୂର୍ଣ୍ଣିମା ପର୍ଯ୍ୟନ୍ତ ବ୍ୟାପ୍ତ । ତାହା ମଧ୍ୟରେ ଜ୍ୟେଷ୍ଠପୂର୍ଣ୍ଣିମା ବା ସ୍ନାନପୂର୍ଣ୍ଣିମାଠାରୁ ଆଷାଢ଼ ଅମାବାସ୍ୟା ଶାବର ପୂଜା ବା ଗୁପ୍ତ ପୂଜା । ଏହା ଅନବସର ଅଟେ । ଏହି ସମୟରେ ଶାବର ଭାବରେ ପୂଜା ମନ୍ତ୍ରହୀନ ଭାବରେ ଆଚରିତ ହୁଏ ।

ପୁରୁଷୋତ୍ତମ ସଂସ୍କୃତିରେ ସମାଜର ସର୍ବ ଉଚ୍ଚସ୍ତରରେ ଥିବା ମଣିଷ ଓ ସର୍ବନିମ୍ନ ଭାଗରେ ଥିବା ମଣିଷ ସମାନ । ଜଗନ୍ନାଥଙ୍କ ନାମ ପତିତପାବନ ଓ ତାଙ୍କ ପତାକାର ନାମ 'ପତିତପାବନ ବାନା' ।

ହେରାପଞ୍ଚମୀ ଯାତ୍ରାର ପଞ୍ଚମ ଦିନ ଅର୍ଥାତ୍ ଆଷାଢ଼ ଶୁକ୍ଳ ଷଷ୍ଠୀରେ ପାଳିତ ହୋଇଥାଏ । ସ୍ନାନପୂର୍ଣ୍ଣିମା ପରବର୍ତ୍ତୀ ପ୍ରତିପଦାଠାରୁ ଆଷାଢ଼ ଅମାବାସ୍ୟା ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କର ଅନବସର । ତେଣୁ ଲକ୍ଷ୍ମୀ ନାରାୟଣଙ୍କର ମିଳନ ଅସମ୍ଭବ ହୋଇଥାଏ । ସେଥିପାଇଁ 'ନୀଳାଦ୍ରି ମହୋଦୟ'ରେ ହେରାପଞ୍ଚମୀ ପର୍ଯ୍ୟନ୍ତ ମହାଲକ୍ଷ୍ମୀ ଓ ଜଗନ୍ନାଥଙ୍କର ଦର୍ଶନ ନିଷେଧ କରାଯାଇଅଛି ।

ଆଷାଢ଼ ଶୁକ୍ଳ ଷଷ୍ଠୀ ହେରାପଞ୍ଚମୀ ନାମରେ ପ୍ରସିଦ୍ଧ । ଶ୍ରୀମନ୍ଦିରର ଭଣ୍ଡାର ଘରୁ ମହାଲକ୍ଷ୍ମୀଙ୍କ ବିଜେ ପ୍ରତିମାଙ୍କୁ ବିମାନରେ ବସାଇ ଛତି, ତ୍ରାଶ, କବାଟ, କାହାଳୀ ସଲଟଣରେ ରାତ୍ରି କାଳରେ ଗୁଣ୍ଡିଚା ମନ୍ଦିରକୁ ନିଆଯାଏ । ଜଗନ୍ନାଥଙ୍କ ରଥ ନିକଟରେ ମହାଲକ୍ଷ୍ମୀଙ୍କୁ ଗୁଣ୍ଡିଚା ମନ୍ଦିରର ଜୟ ବିଜୟ ଦ୍ୱାର ନିକଟରେ ପହଞ୍ଚିଲେ ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ଅର୍ପଣ କରାଯାଏ । ଏହି ସମୟରେ ଜଗନ୍ନାଥଙ୍କ ପୂଜାପଣ୍ଡା ଜୀଉମାନଙ୍କର ପୂଜା ବଢ଼ାଇ ଓ ଧୂପଦୀପ ଦେଇ ଟେରା ପକାଇ ଦିଅନ୍ତି । ମହାଲକ୍ଷ୍ମୀ ଦର୍ଶନ ନପାଇ କ୍ରୋଧ ଓ ଅପମାନରେ ଗୁଣ୍ଡିଚା ମନ୍ଦିରରୁ ବାହାରି ଆସି ଶ୍ରୀଜଗନ୍ନାଥଙ୍କ ରଥ ଭାଙ୍ଗି କିଏ ନଜାଣିବା ପାଇଁ ବଡ଼ଦାଣ୍ଡରେ ନ ଆସି ବିନା ବାଜା ରୋଷଣୀରେ ହେରାଗୋହିରୀ ସାହି ବାଟ ଦେଇ ଶ୍ରୀମନ୍ଦିରକୁ ଲେଉଟି ଆସନ୍ତି ।

ଅଷ୍ଟମୀ ଦିନ ଗୁଣ୍ଡିଚା ମନ୍ଦିର ସମ୍ମୁଖରେ ଥିବା ତିନିରଥଙ୍କୁ ଦକ୍ଷିଣାମୁଖୀ କରାଇ ବୁଲାଇ ଦିଆଯାଏ । ନବମୀ ଦିନ ଗୁଣ୍ଡିଚା ମନ୍ଦିରରେ ଜୀଉମାନଙ୍କର ପ୍ରସିଦ୍ଧି ନବମୀ ସନ୍ଧ୍ୟାଦର୍ଶନ ହୁଏ । ଏହା ଭକ୍ତମାନଙ୍କ ନିମନ୍ତେ ଆଡ଼ପମଣ୍ଡପରେ ଶେଷ ଦର୍ଶନ ତଥା ଇନ୍ଦ୍ରଦ୍ୟୁମ୍ନ ମହୋତ୍ସବ ଦିନ ଏହି ଦର୍ଶନକୁ ସନ୍ଧ୍ୟାଦର୍ଶନ କୁହାଯାଏ । ଏହିଦିନ ଆଡ଼ପମଣ୍ଡପରେ ଶ୍ରୀଜୀଉଙ୍କର ଦର୍ଶନ, ବ୍ରାହ୍ମଣମାନଙ୍କୁ

ମହାପ୍ରସାଦ ଭୋଜନ ପ୍ରସାଦ ପ୍ରଦାନ ଓ ନିଜ ପରିବାର ଜ୍ଞାତିକୁଟୁମ୍ବ ପରିଜନ ଏକତ୍ର ବସି ଏକପତ୍ରେ ଭୋଜନ ଯେପରି ସୁଖକର ତଦୁର୍ଦ୍ଧ ପୁଣ୍ୟଫଳ ଏବଂ ସପ୍ତପୁରୁଷ ଉଦ୍ଧାର ହେଉଥିବା ପୁରାଣଶାସ୍ତ୍ରରେ ବର୍ଣ୍ଣନା ହୋଇଛି । ତେଣୁ ପ୍ରତ୍ୟେକ ବର୍ଷ ଏହି ଦିନରେ ଆଡ଼ପମଣ୍ଡପ ଅତ୍ୟନ୍ତ ପବିତ୍ର ମନେ ହୋଇଥାଏ । ଯଥାର୍ଥରେ କୁହାଯାଇଛି- 'ନୀଳାଦ୍ରୌତୁ ସହସ୍ରାଣି ଆଡ଼ପମଣ୍ଡପ ଦିନେ ।'

ଦଶମ ଦିନ ବାହୁଡ଼ାଯାତ୍ରା । ଗୁଣ୍ଡିଚା ମନ୍ଦିରରୁ ଠାକୁରମାନଙ୍କୁ ପହଣ୍ଡି କରି ରଥରେ ବିଜେ କରାଯାଏ । ପ୍ରଥମେ ବଳଭଦ୍ରଙ୍କ ତାଳଧ୍ୱଜ ଟଣାଯାଏ । ବଡ଼ଶଙ୍ଖଠାରେ ପହଞ୍ଚିଲେ ସୁଭଦ୍ରାଙ୍କ ଦର୍ପଦଳନ ଓ ପରେ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ଶରଧାବାଲିରୁ ଟଣାଯାଏ । ତାଳଧ୍ୱଜ ଓ ଦେବଦଳନ ଶ୍ରୀମନ୍ଦିର ସିଂହଦ୍ୱାର ଅଭିମୁଖେ ବଡ଼ଦାଣ୍ଡରେ ଯାଉଥିବାବେଳେ ଶ୍ରୀଜଗନ୍ନାଥ ବାଟରେ ମାଉସୀମା ମନ୍ଦିରରେ ମାଉସୀମାଙ୍କ ଶ୍ରୀହସ୍ତରୁ ପୋଡ଼ପିଠା ମଣୋହି ପାଇଁ ରଥ ଅଟକି ଯାଏ । ପୁରୀ ବଡ଼ଦାଣ୍ଡରେ ଶ୍ରୀମନ୍ଦିରଠାରୁ ଦେଢ଼ କିଲୋମିଟର ଦୂରରେ ଡାହାଣପଟେ ଏହି ପ୍ରାଚୀନ ମାଉସୀମା ବା ଅର୍ଦ୍ଧାଶିନି ମନ୍ଦିର ରହିଛି । ଏହା ୨୫ ହାତ ଉଚ୍ଚ ପୂଜିତା ଦେବୀଙ୍କ ନାମ ଯେପରି ଲୌକିକ ତାଙ୍କର ଗଠନ ଶୈଳୀ ଓ ପରିପାଟୀ ମଧ ସେପରି ଅଲୌକିକ । ଦେବୀ ପରମ ବୈଷ୍ଣବୀ । ଦେବୀ ମାଉସୀମା ସଂପୂର୍ଣ୍ଣ ଭାବରେ ଆସନରେ ନ ବସି ଅର୍ଦ୍ଧଦଣ୍ଡାୟମାନ ଅବସ୍ଥାରେ ବସିଥିବା ଏବଂ ମୂର୍ତ୍ତି ସମ୍ମୁଖରେ ମା' ସୁଭଦ୍ରାଙ୍କର ମୁଖା ବହୁ ପୁରାତନ କାଳରୁ ମଣ୍ଡିତ । ଏହି ମୁଖାର ମରାମତି କେବଳ ନବକଳେବର ସମୟରେ ହୁଏ । କେବଳ ନୃସିଂହ ଚତୁର୍ଦ୍ଦଶୀ ଦିନ ଦେବୀଙ୍କୁ ମହାଭିଷେକ କରାଯାଏ । ଶ୍ରୀମୁଖ ପର୍ଯ୍ୟନ୍ତ ସୁଗନ୍ଧିତ ଜଳରେ ଆବୃତ କରାଯାଏ ।

ବଳଭଦ୍ର ଓ ସୁଭଦ୍ରାଙ୍କ ରଥ ସିଂହଦ୍ୱାର ନିକଟରେ ପହଞ୍ଚିବା ପରେ ଜଗନ୍ନାଥଙ୍କ ରଥ ରାଜନଅର ସମ୍ମୁଖରେ ଅଟକି ରହେ । ଶ୍ରୀମନ୍ଦିରରୁ ମହାଲକ୍ଷ୍ମୀଙ୍କର ବିଜେ ପ୍ରତିମାକୁ ପାଲିଙ୍କିରେ ବସାଇ ଆନନ୍ଦବଜାର ସ୍ନାନମଣ୍ଡପ ସନ୍ନିକଟ ଚାହାଣୀ ମଣ୍ଡପକୁ ଅଣାଯାଏ । ଚାହାଣୀ ମଣ୍ଡପରୁ ମହାଲକ୍ଷ୍ମୀ ଜଗନ୍ନାଥଙ୍କୁ ରଥ ଉପରେ ଦର୍ଶନ କରନ୍ତି । ତାହାପରେ ପାଲିଙ୍କିଟି ଜଗନ୍ନାଥଙ୍କ ରଥ ନିକଟକୁ ନିଆଯାଏ । ରଥ ଚାରିପଟେ ଥରେ ବୁଲି ଶ୍ରୀମନ୍ଦିରକୁ ଲେଉଟି ଆସେ । ଶ୍ରୀଜୀଉଙ୍କ ଆଜ୍ଞାମାଳ ମହାଲକ୍ଷ୍ମୀଙ୍କୁ ପ୍ରଦତ୍ତ ହୁଏ । ଏହାପରେ ନନ୍ଦିଘୋଷ ସିଂହଦ୍ୱାରକୁ ଆସି ପହଞ୍ଚେ ।

ରଥ ଉପରେ ଠାକୁରମାନେ ତିନି ଦିନ ଅବସ୍ଥାନ କରନ୍ତି । ବାହୁଡ଼ା ଏକାଦଶୀରେ ଠାକୁରଙ୍କର ସୁନାବେଶ ହୁଏ । ତତ୍‌ପରଦିନ ଠାକୁରମାନଙ୍କୁ ଅଧରପଣା ଭୋଗ ଦିଆଯାଏ । ତୃତୀୟ ଦିନ ଠାକୁରମାନେ ନୀଳାଦ୍ରି ବିଜେ କରନ୍ତି । ବଳଭଦ୍ର ସୁଭଦ୍ରା ରତ୍ନସିଂହାସନକୁ ପହଣ୍ଡିରେ ବିଜେ କରିବା ପରେ ଜଗନ୍ନାଥଙ୍କର ପହଣ୍ଡି ଆରମ୍ଭ ହୁଏ । ଏହି ସମୟରେ ମହାଲକ୍ଷ୍ମୀଙ୍କର ଚଳନ୍ତି ପ୍ରତିମା ବିମାନରେ ଆସି ସିଂହଦ୍ୱାର ପାର୍ଶ୍ୱ ମେଘନାଦ ପାଚେରୀ ଉପରିଭାଗରେ ଥିବା ଭେଟମଣ୍ଡପରେ ବିଜେ ହୁଅନ୍ତି । ଦେବଦାସୀ ଯାଇ ସିଂହଦ୍ୱାର ବନ୍ଦ କରନ୍ତି । ପ୍ରଭୁ ସିଂହଦ୍ୱାର ନିକଟରେ ପହଞ୍ଚିଲେ ସିଂହଦ୍ୱାର ଉନ୍ମୁକ୍ତ ହୁଏ ଓ ପହଣ୍ଡି ବିଜେରେ ମନ୍ଦିର ମଧରେ ପ୍ରବେଶ କଲେ ଜୟ ବିଜୟ ଦ୍ୱାର ବନ୍ଦ କରି ଦିଆଯାଏ । ଦ୍ୱାର ଦୁଇପାର୍ଶ୍ୱରେ ମହାଲକ୍ଷ୍ମୀଙ୍କର ପ୍ରତିନିଧି ଦେବଦାସୀ ଓ ପ୍ରଭୁଙ୍କର ପ୍ରତିନିଧି ଦଇତାପତିଙ୍କ ମଧରେ ମାନ ଅଭିମାନର ବାକ୍ୟ ବିନିମୟ ହୁଏ । ଏଠାରେ ମହାଲକ୍ଷ୍ମୀଙ୍କୁ ରସଗୋଲା ଅର୍ପଣ କରି ମାନଭଞ୍ଜନ କରାଯାଏ । ତାହାପରେ ଜଗନ୍ନାଥଙ୍କୁ ରତ୍ନ ସିଂହାସନରେ ବିଜେ କରାଯାଏ । ସୁନାବେଶର ପରଦିନ ଅଧରପଣା ଅର୍ପଣ ସମୟରେ ପାଞ୍ଚୋପଚାର ବିଧିରେ ପୂଜା ହେବା ପରେ ଅଧରପଣା ପାତ୍ର ଶ୍ରୀଜୀଉମାନଙ୍କର ଏହି ପାତ୍ର ଭାଙ୍ଗି ଦିଆଯାଏ । ରଥର ପାର୍ଶ୍ୱଦେବାଦେବୀ, ଚଣ୍ଡୀଚାମୁଣ୍ଡାମାନେ, ଶ୍ରୀଜୀଉମାନଙ୍କର ଶ୍ରୀମୁଖଲାଗି ଏହି ଅଧରପଣା ସେବା କରି ସମସ୍ତେ ଶାନ୍ତିରେ ସ୍ୱ ସ୍ୱ ଆଳୟକୁ ପ୍ରତ୍ୟାଗମନ କରିଥାନ୍ତି ।

ଯଥାର୍ଥରେ ସମସ୍ତ ମାନବସମାଜ, ଜୀବଜଗତକୁ ନୂତନ ଜୀବନରୂପୀ ସଂସ୍କୃତି ସଂପୂର୍ଣ୍ଣ ଚେତନା ଦେବାରେ ଶ୍ରୀଜଗନ୍ନାଥଙ୍କ ଧର୍ମ, ଭାବନା, ସଂସ୍କୃତି, ପରମ୍ପରା ଉପାଦେୟ । ଜଗନ୍ନାଥ ଏକ ଚେତନାର ଚିନ୍ତାଧାରାର, ସଂସ୍କୃତିର ସଙ୍କେତ । ବିଶ୍ୱପ୍ରେମ, ଶାନ୍ତି, ମୈତ୍ରୀ, ମୁକ୍ତି, ଚେତନା ଓ ଅନନ୍ତ ବ୍ୟାପ୍ତିର ପ୍ରତୀକ । ସେ ଜଗତର ନାଥ ଓ ଅସୀମ ବିଶ୍ୱବ୍ରହ୍ମାଣ୍ଡର ନିୟନ୍ତା ସେ । ସର୍ବବ୍ୟାପୀ ଉମା ଓ ସାର୍ବଭୌମ, ଜଗନ୍ନାଥ ଅପାଣିପାଦ ହେବା ମୂଳରେ ରହିଛି ଦୁଇ ସମାନ୍ତରାଳ ବାହୁ ସରଳରେଖା ମିଳନ ଏକ ଅନନ୍ତ ବିନ୍ଦୁରେ ହୋଇଛି । ସେ ଅରୂପ ପୁଣି ସ୍ୱରୂପ ସେ ନିର୍ଗୁଣ ପୁଣି ସଗୁଣ । ବୈଷ୍ଣବ ଦେଖିଛି ବିଷ୍ଣୁ ରୂପରେ ବୌଦ୍ଧ ଦେଖିଛି ବୁଦ୍ଧ ରୂପରେ, ଶୈବ ଦେଖିଛି ଶିବ ରୂପରେ, ଗାଣପତ୍ୟ ଦେଖିଛି ଗଣପତି ରୂପରେ । ତୁମେ ରାମ, ତୁମେ କୃଷ୍ଣ, ତୁମେ ବିଷ୍ଣୁ । ଏଣୁ ଶ୍ରୀଜଗନ୍ନାଥ କୌଣସି ଏକ ନିର୍ଦ୍ଦିଷ୍ଟ ସତ୍ତା, ସୀମା ବା ରୂପ ବର୍ଗ ମଧରେ ଆବଦ୍ଧ ନୁହନ୍ତି ।

ଏ ହେଲା ଆପଣଙ୍କର ନବଦିନ ବ୍ୟାପି ଘୋଷଯାତ୍ରା । ଯାହାକୁ ପତିତପାବନ ଯାତ୍ରା ରୂପେ ବିଶ୍ୱର ସବୁଧର୍ମ ଜାତିର ଲୋକମାନେ ବଡ଼ଦେଉଳ ବାହାରେ ବଡ଼ଦାଣ୍ଡରେ ରଥ ଉପରେ, ପହଣ୍ଡି ସମୟରେ ମୁକ୍ତ ଭାବେ ଦର୍ଶନ କରୁଛନ୍ତି ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ
ପୁରୀ

# ଶଙ୍ଖ ଓ ଶଙ୍ଖକ୍ଷେତ୍ରର ମାହାତ୍ମ୍ୟ

ଡାକ୍ତର ଦୀନବନ୍ଧୁ ମହାରଣା

**ଶ**ଙ୍ଖ ଏକପ୍ରକାର ସାମୁଦ୍ରିକ ଜୀବ ଦେହାବଶେଷରୁ ପ୍ରାପ୍ତ ପବିତ୍ର ବସ୍ତୁ । ଭାରତୀୟ ହିନ୍ଦୁ ସନାତନ ଧର୍ମରେ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଶଙ୍ଖର ମହତ୍ୱ ଅତି ଉଚ୍ଚସ୍ଥାନ ଲାଭ କରିଛି । ପ୍ରାୟତଃ ସମସ୍ତ ହିନ୍ଦୁ ଦେବାଦେବୀ ମନ୍ଦିରରେ, ପୂଜାସ୍ଥଳୀରେ, ଭାଗବତ ଟୁଙ୍ଗୀ, ମଠ ଓ ଶକ୍ତିପୀଠରେ ଏହାର ଉପସ୍ଥିତି ଦେଖିବାକୁ ମିଳେ । ବିବାହ, ଜନ୍ମୋତ୍ସବ, ପୂଜା-ପାର୍ବଣ ଆଦି ଯାବତୀୟ ମାଙ୍ଗଳିକ କାର୍ଯ୍ୟରେ ଶଙ୍ଖ ବାଦନର ବ୍ୟବସ୍ଥା କରାଯାଏ । ଏହାର କାରଣ ହେଉଛି ପ୍ରାୟତଃ ସନାତନ ଧର୍ମର ଅଧିକାଂଶ ଦେବାଦେବୀ ଆୟୁଧ ରୂପରେ ଶଙ୍ଖ ଧାରଣ କରିଛନ୍ତି । ସ୍ୱୟଂ ଭଗବାନ ବିଷ୍ଣୁ ପ୍ରସିଦ୍ଧ 'ପାଞ୍ଚଜନ୍ୟ' ନାମକ ଶଙ୍ଖର ଅଧିକାରୀ ଥିଲେ ବୋଲି ପୁରାଣ ଶାସ୍ତ୍ରରୁ ଜଣାଯାଏ । ସମୁଦ୍ର ମନ୍ଥନ ସମୟରେ ଦେବାସୁର ମିଳିତ ଭାବରେ ଯେଉଁ ଅମୃତ ଓ ରତ୍ନାଦି ପ୍ରାପ୍ତି କରିବା ପାଇଁ ପ୍ରୟାସ କରିଥିଲେ, ସେହି ସମୟରେ 'ପାଞ୍ଚଜନ୍ୟ' ନାମକ ଜୈବିକ ଶଙ୍ଖ ସମୁଦ୍ରରୁ ବାହାରିଥିଲା, ଯାହାର ଅଦ୍ଭୁତ ସ୍ୱର, ରୂପ ଓ ଗୁଣ ପ୍ରତି ଆକୃଷ୍ଟ ହୋଇ ସ୍ୱୟଂ ଭଗବାନ ବିଷ୍ଣୁ ତାହାକୁ ନିଜର ଆୟୁଧ ରୂପେ ଗ୍ରହଣ କରିଥିଲେ । ସେହି ସମୟରୁ ଶ୍ରୀବିଷ୍ଣୁଙ୍କର ଚତୁର୍ଭୁଜଧାରୀ ଅବୟବରେ 'ଶଙ୍ଖ' ଶୋଭା ପାଇ ଆସୁଛି ।



ମହାଭାରତ ଯୁଦ୍ଧ ସମୟରେ ବିପକ୍ଷକୁ ସନ୍ଦେଶ-ସଂପ୍ରେକ୍ଷଣ ତଥା ଉଭୟ ପକ୍ଷକୁ ଯୁଦ୍ଧ ପାଇଁ ତତ୍ପର ହେବା ଉଦ୍ଦେଶ୍ୟରେ ଶଙ୍ଖ ଧ୍ୱନି ଉଚ୍ଚାରଣ କରାଯାଉଥିଲା । କେବଳ ସେତିକି ନୁହେଁ ଯୁଦ୍ଧରେ ବିଜୟ ଲାଭ କରିଥିବା ଯୋଦ୍ଧା ଶଙ୍ଖ ବାଦନ କରି ବିଜୟ ପ୍ରାପ୍ତିର ସୂଚନା ଏବଂ ଯୁଦ୍ଧ ସମାପ୍ତିର ସୂଚନା ଶତ୍ରୁ ପକ୍ଷକୁ ଦେଉଥିଲେ । ମହାଭାରତ ଯୁଦ୍ଧରେ ପାଣ୍ଡବ ଯୋଦ୍ଧାମାନଙ୍କ ମଧ୍ୟରେ ଅର୍ଜୁନ 'ଦେବଦତ୍ତ' ନାମକ ଶଙ୍ଖ, ଭୀମ 'ପୌଣ୍ଡ୍ର', ଯୁଧିଷ୍ଠିର 'ଅନନ୍ତ ବିଜୟ', ନକୁଳ 'ସୁଘୋଷ' ତଥା ସହଦେବ 'ମଣିପୁଷ୍ପକ' ନାମକ ଶଙ୍ଖ ଧାରଣ କରିଥିଲେ ବୋଲି ଜଣାଯାଏ । ସୁତରାଂ ଅତୀତରେ ଶଙ୍ଖ ଯେ କେବଳ ପବିତ୍ରତା ଓ ଆଧ୍ୟାତ୍ମିକତାର ବାର୍ତ୍ତା ବହନ କରୁଥିଲା, ତାହା ନୁହେଁ ତାହା ଯୁଦ୍ଧ ଓ ବୀରତ୍ୱର ବାର୍ତ୍ତା ପ୍ରଚାରରେ ମଧ୍ୟ ସହାୟକ ବସ୍ତୁ ଥିଲା ।

### ଶଙ୍ଖକ୍ଷେତ୍ର - ପୁରୀ : ନାମକରଣର ତାତ୍ପର୍ଯ୍ୟ

ସ୍ମରଣାତୀତ କାଳରୁ ଉତ୍କଳର ଚାରିଗୋଟି ପ୍ରମୁଖ ଆଧ୍ୟାତ୍ମିକ କ୍ଷେତ୍ର ମଧ୍ୟରୁ ପୁରୀକୁ ଶଙ୍ଖକ୍ଷେତ୍ର, ମର୍ତ୍ତ୍ୟବୈକୁଣ୍ଠ, ଶ୍ରୀକ୍ଷେତ୍ର, ଶ୍ରୀନୀଳାଚଳ ଧାମ, ନୀଳାଦ୍ରି ବିହାର, ପୁରୁଷୋତ୍ତମ କ୍ଷେତ୍ର ଆଦି ନାମରେ ଜଣାଯାଏ । ଅନ୍ୟ ତିନିଗୋଟି ମଧ୍ୟ ଶ୍ରୀବିଷ୍ଣୁଙ୍କ ଆୟୁଧ ନାମରେ ନାମିତ, ଯଥା- ଶଙ୍ଖକ୍ଷେତ୍ର ନୀଳାଚଳ ପୁରୀ ସହିତ, ଗଦାକ୍ଷେତ୍ର ଶ୍ରୀବିରଜା ଯାଜପୁର, ଚକ୍ରକ୍ଷେତ୍ର ଏକାମ୍ରକାନନ ଓ ପଦ୍ମକ୍ଷେତ୍ର କୋଣାର୍କ ।




ତେଣୁ ଶାସ୍ତ୍ରରେ ଉଲ୍ଲେଖ ଅଛି-

'ଗଦାକ୍ଷେତ୍ରଂ ଚ ବିରଜାମେକାମ୍ରଂ ସଂଜ୍ଞାକମ୍
କୋଣାର୍କଂ ପଦ୍ମକ୍ଷେତ୍ରଂ ଚ ଶଙ୍ଖକ୍ଷେତ୍ରଂ ନୀଳାଚଳମ୍ ।'
(ବାମଦେବ ସଂହିତା)

ଏହି ଚାରିକ୍ଷେତ୍ର ମଧ୍ୟରୁ ଶଙ୍ଖକ୍ଷେତ୍ର ଶ୍ରୀନୀଳାଚଳ ସର୍ବଶ୍ରେଷ୍ଠ ଆସନରେ ପ୍ରତିଷ୍ଠିତ । ଭୌଗଳିକ ସୀମା ସରହଦ ତଥା ଶାସ୍ତ୍ରୀୟ ସିଦ୍ଧାନ୍ତାନୁସାରେ ଶଙ୍ଖକ୍ଷେତ୍ର ନୀଳାଚଳର ପରିସୀମା ହେଉଛି ଦକ୍ଷିଣାବର୍ତ୍ତୁକ ଶଙ୍ଖ ସଦୃଶ (ଶଙ୍ଖ ଦୁଇ ପ୍ରକାର ଆକୃତିଯୁକ୍ତ : ଦକ୍ଷିଣାବର୍ତ୍ତୀ ଓ ବାମାବର୍ତ୍ତୀ) । ଦକ୍ଷିଣାବର୍ତ୍ତକ ଶଙ୍ଖର ଆକୃତି ହେଉଛି ଭୌମାକୃତି ଅର୍ଥାତ୍ ତ୍ରିକୋଣାକାର । ଜଗନ୍ନାଥ ପୁରାଣରେ ଉଲ୍ଲେଖ ଅଛି-

ଶଙ୍ଖର ନାଭିଦେଶରେ ଶଙ୍ଖକ୍ଷେତ୍ରର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କର ଭବ୍ୟ ମନ୍ଦିର ସଗୌରବେ ଦଣ୍ଡାୟମାନ । ଭବ୍ୟ ଶ୍ରୀମନ୍ଦିର ଶଙ୍ଖର ନାଭି ପ୍ରଦେଶରେ ଅବସ୍ଥିତ ଥିବା ଦୃଷ୍ଟିରୁ ଏହି କ୍ଷେତ୍ରକୁ ନାଭିକ୍ଷେତ୍ର ବା ଶଙ୍ଖ ନାଭିମଣ୍ଡଳ ନାମରେ ଶାକ୍ତ ତତ୍ତ୍ୱ ପ୍ରତିପାଦନ କରିଥାଏ ।

ଦକ୍ଷିଣାବର୍ତ୍ତକ ଶଙ୍ଖ ଯେଉଁ ପରକାର
ଶ୍ରୀପୁରୁଷୋତ୍ତମ କ୍ଷେତ୍ର ତେମନ୍ତ ପ୍ରକାର ।

ବାଙ୍କି ମୁହାଣ ନଦୀ, ମିଟିଆଣି ନଦୀ, ମଙ୍ଗଳା ନଦୀ ଓ ତୀର୍ଥରାଜ ମହୋଦଧି ପରିବେଷ୍ଟିତ ଦ୍ୱିପାଞ୍ଚଳ ହିଁ ଶଙ୍ଖକ୍ଷେତ୍ର ନାମରେ ଅଭିହିତ । ଏହି ପବିତ୍ର କ୍ଷେତ୍ରର ବିସ୍ତୀର୍ଣ୍ଣତା ଥିଲା ଦଶଯୋଜନ ଏବଂ ଆୟତନ ପାଞ୍ଚ ଯୋଜନ । ଶାସ୍ତ୍ର ସିଦ୍ଧାନ୍ତାନୁସାରେ-

ଦଶଯୋଜନଂ ବିସ୍ତୀର୍ଣ୍ଣଂ ପଞ୍ଚଯୋଜନ ମାୟତ୍ତମ୍
ନାନାଶ୍ଚର୍ଯ୍ୟ ସମାଯୁକ୍ତଂ କ୍ଷେତ୍ର ପରମ ଦୁର୍ଲ୍ଲଭମ୍ ।'
(ବ୍ରହ୍ମପୁରାଣ-୪ର୍ଥ ଅଧ୍ୟାୟ)

କାଳକ୍ରମେ ଏହି ବିସ୍ତୀର୍ଣ୍ଣ ଶଙ୍ଖକ୍ଷେତ୍ରର ଆୟତନ ସଙ୍କୁଚିତ ହେବା କଥା ପୁରାଣ ଶାସ୍ତ୍ରମାନଙ୍କରେ ଲିପିବଦ୍ଧ ହୋଇଛି । ତନ୍ମଧ୍ୟରୁ 'ସ୍କନ୍ଦ ପୁରାଣ' ସିଦ୍ଧାନ୍ତ ଅନୁସାରେ, ଶଙ୍ଖକ୍ଷେତ୍ର ତ୍ରିକୋଣାକାର ଏବଂ ପାଞ୍ଚକୋଶ ବିଶିଷ୍ଟ । 'ବାମଦେବ ସଂହିତା' ସିଦ୍ଧାନ୍ତରେ ଶଙ୍ଖକ୍ଷେତ୍ର ପାଞ୍ଚକ୍ରୋଶ । ଏହି ଦୃଷ୍ଟିରୁ ଏହି କ୍ଷେତ୍ର ପଞ୍ଚକ୍ରୋଶୀ ନାମରେ ପ୍ରସିଦ୍ଧିଲାଭ କରିଅଛି । ଶଙ୍ଖକ୍ଷେତ୍ରର ପଞ୍ଚକ୍ରୋଶ ମଧ୍ୟରୁ ଦୁଇକ୍ରୋଶ ପରିମିତ ସ୍ଥାନ ବଙ୍ଗୋପ ସାଗର ଗର୍ଭରେ ବିଲୀନ ହୋଇଯାଇଛି । ଅବଶିଷ୍ଟ ତିନିକ୍ରୋଶ ସ୍ଥାନ ଅଧୁନା ବିଦ୍ୟମାନ ଅଛି । ସାଗର ଗର୍ଭେ ଦୁଇକ୍ରୋଶ ସ୍ଥାନ ବିଲୀନ ହୋଇଯାଇଥିବା ଦୃଷ୍ଟେ, ତୀର୍ଥରାଜ ମହୋଦଧି ନାମରେ ନାମିତ ଓ ମହିମାନ୍ୱିତ । ଶାସ୍ତ୍ରରେ ଉଲ୍ଲେଖ ଅଛି-

'ଶୃଣୁ ବୈଷ୍ଣବ କ୍ଷେତ୍ରସ୍ୟ ଚାୟତଂ ପଞ୍ଚକୋଶ କମ୍
ଦ୍ୱିକୋଶ ସାଗରପି□ଷ୍ୟାଦ୍ ତ୍ରିକୋଶଂ ପୃଥିବୀ ତଳେ ।'
(ବାମଦେବ ସଂହିତା)

ତ୍ରିକୋଣାକୃତି ଦକ୍ଷିଣାବର୍ତ୍ତକ ଶଙ୍ଖ ସଦୃଶ ଶଙ୍ଖକ୍ଷେତ୍ରର ମସ୍ତକ ଅର୍ଥାତ୍ ପଶ୍ଚିମ ସୀମାନ୍ତରେ ଶ୍ରୀଲୋକନାଥ, ଅଗ୍ରଭାଗରେ ଅର୍ଥାତ୍ ପୂର୍ବ ସୀମାରେ ଶ୍ରୀବିଲେଶ୍ୱର ମହାଦେବ, ମଧ୍ୟଭାଗରେ ମାଉସୀମା' ଏବଂ ଶଙ୍ଖର କେନ୍ଦ୍ରସ୍ଥଳରେ ରୋହିଣୀ କୁଣ୍ଡ ଓ କଳ୍ପବୃକ୍ଷ ବିଦ୍ୟମାନ । ଶଙ୍ଖର ନାଭିଦେଶରେ ଶଙ୍ଖକ୍ଷେତ୍ରର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କର ଭବ୍ୟ ମନ୍ଦିର ସଗୌରବେ ଦଣ୍ଡାୟମାନ । ଭବ୍ୟ ଶ୍ରୀମନ୍ଦିର ଶଙ୍ଖର ନାଭି ପ୍ରଦେଶରେ ଅବସ୍ଥିତ ଥିବା ଦୃଷ୍ଟିରୁ ଏହି କ୍ଷେତ୍ରକୁ ନାଭିକ୍ଷେତ୍ର ବା ଶଙ୍ଖ ନାଭିମଣ୍ଡଳ ନାମରେ ଶାକ୍ତ ତତ୍ତ୍ୱ ପ୍ରତିପାଦନ କରିଥାଏ ।

ପୁରାଣ ଶାସ୍ତ୍ରମାନଙ୍କରେ ଏହି କାରଣରୁ ପୁରୀକୁ ଶଙ୍ଖକ୍ଷେତ୍ର ନାମରେ ନାମିତ କରାଯାଇଛି ।

**ଶଙ୍ଖ : ଉପଚାର ଓ ଉପାସନାର ଅପୂର୍ବ ସାଧନ**

ଶଙ୍ଖ ଯେ କେବଳ ପୂଜା, କର୍ମକାଣ୍ଡରେ ବ୍ୟବହୃତ ହେଉଥିବା ଏକ ପବିତ୍ର ବସ୍ତୁ ନୁହେଁ, ଏହାକୁ ଆୟୁର୍ବେଦୀୟ ଚିକିତ୍ସାରେ ମଧ୍ୟ ସ୍ୱାସ୍ଥ୍ୟଲାଭର ସାଧନ ରୂପେ ସ୍ୱୀକାର କରାଯାଇଛି । ଆୟୁର୍ବେଦରେ ଶଙ୍ଖ ଭସ୍ମରୁ ଔଷଧ ପ୍ରସ୍ତୁତ କରାଯାଇ ବିଭିନ୍ନ ପ୍ରକାରର ଉଦରଗତ ରୋଗ, ସ୍ତ୍ରୀରୋଗ, ନେତ୍ର ରୋଗ ଆଦିର ଉପଚାର କରାଯିବାର ବିଧି ରହିଛି । ଉଦାହରଣ ସ୍ୱରୂପ ଶଙ୍ଖଭସ୍ମରୁ ପ୍ରସ୍ତୁତ 'ମହାଶଙ୍ଖ ବଟି' ଅମ୍ଳପିତ୍ତ ରୋଗ ଚିକିତ୍ସାରେ ବ୍ୟବହୃତ ହେଉଥିବା ଏକ ପ୍ରଭାବଶାଳୀ ଶାସ୍ତ୍ରୀୟ ଔଷଧ ଭାବରେ ପରିଚିତ ।

**ପୁନଃଶ୍ଚ ଶଙ୍ଖ ଧ୍ୱନି କରିବା ଦ୍ୱାରା ମନୁଷ୍ୟର ଶ୍ୱାସଗତି ଦୀର୍ଘ ହୋଇ ଫୁସ୍‌ଫୁସ୍ ଶକ୍ତିଶାଳୀ ହୋଇଥାଏ, କାରଣ ଶଙ୍ଖ ଫୁଙ୍କିବା ସମୟରେ ପ୍ରଥମେ ପ୍ରାଣବାୟୁ (ଅମ୍ଳଜାନ) ଫୁସ୍‌ଫୁସ୍‌ରେ ସଂଗୃହୀତ ହୁଏ ଏବଂ ଏହାକୁ ଶଙ୍ଖ ମଧ୍ୟରେ ଶବ୍ଦ ସହିତ ଧୀରେ ଧୀରେ ଛାଡ଼ିବାଦ୍ୱାରା ଆନ୍ତ, ଶ୍ୱାସନଳୀ ତଥା ଫୁସ୍‌ଫୁସ୍ ଏକ ସମୟରେ କାମ କରିଥାଏ । ଯଦି ଏହି ପ୍ରକ୍ରିୟାକୁ ନିରନ୍ତର ଅର୍ଥାତ୍ ପ୍ରତିଦିନ ଅଭ୍ୟାସ କରାଯାଏ,**

**ତେବେ ଶ୍ୱାସରୋଗ, ଉରଃକ୍ଷତ, କାଶ, ପ୍ଲୀହା, ଯକୃତ ଆଦି ରୋଗ ସମୂଳେ ନଷ୍ଟ ହୋଇଯାଏ ଏବଂ ବ୍ୟକ୍ତି ଦୀର୍ଘଜୀବୀ ହୋଇଥାଏ ।**

ବିଶ୍ୱ ବିଖ୍ୟାତ ଭାରତୀୟ ବୈଜ୍ଞାନିକ ଜଗଦୀଶ ଚନ୍ଦ୍ର ବସୁଙ୍କ ଗବେଷଣାଲବ୍ଧ ତଥ୍ୟାନୁସାରେ ଶଙ୍ଖ ଫୁଙ୍କିବାଦ୍ୱାରା ତାହାର ଧ୍ୱନି ଯେଉଁ ପର୍ଯ୍ୟନ୍ତ ଯାଏ, ସେ ପରିସର ମଧ୍ୟରେ ଥିବା ରୋଗ ଜୀବାଣୁ ଏହି ଶଙ୍ଖଧ୍ୱନି ପ୍ରଭାବରୁ ଆଘାତ ପ୍ରାପ୍ତ ହୁଅନ୍ତି ଏବଂ ନିରନ୍ତର ଶଙ୍ଖଧ୍ୱନିଦ୍ୱାରା ଏଗୁଡ଼ିକ ମୂର୍ଚ୍ଛିତ ଓ ମୃତପ୍ରାୟ ହୋଇଯା'ନ୍ତି । ତେଣୁ ବାୟୁମଣ୍ଡଳ ଏତାଦୃଶ କୀଟାଣୁ ଉପସ୍ଥିତିରୁ ଉନ୍ମୁକ୍ତ ହୋଇଯାଏ । ସେହିପରି ଶଙ୍ଖ ମଧ୍ୟରେ ଜଳ ଭରି ପ୍ରକ୍ଷେପଣ, ପ୍ରକ୍ଷାଳନ ଏବଂ ପାନ କରିବାଦ୍ୱାରା ସ୍ୱାସ୍ଥ୍ୟ ଲାଭ ହୋଇଥାଏ । ଯେପରି ତମ୍ବା, ପିତ୍ତଳ ପାତ୍ରରେ ଜଳ ରଖିବାଦ୍ୱାରା ତାହାର ଗୁଣ ବୃଦ୍ଧି ହୋଇଥାଏ, ସେହିପରି ଶଙ୍ଖରେ ଜଳ ଭରି ରଖିବାଦ୍ୱାରା ସେଥିରେ ଅନେକ ଗୁଣ ଆସିଥାଏ । ଗର୍ଭବତୀ ମହିଳାଙ୍କୁ ଶଙ୍ଖରେ ଜଳ ଭରି ଏବଂ ଦୁଗ୍ଧ ପାନ କରାଇଲେ ଶିଶୁ ସୁନ୍ଦର ଓ ସୁସ୍ଥ ହୋଇଥାଏ । ଏହା ମଧ୍ୟ ଶୁଣାଯାଏ ଯେ, ଗର୍ଭବତୀ ମହିଳାଙ୍କୁ ପ୍ରସବ ବେଦନାରୁ ମୁକ୍ତି ଦେବା ପାଇଁ ଶଙ୍ଖ ଧ୍ୱନି ଶୁଣାଇଲେ ବିଶେଷ ଲାଭ ମିଳେ । ଶଙ୍ଖ ନାଦ କରିବା ଦ୍ୱାରା ଶରୀରର ସମସ୍ତ ସଂସ୍ଥାନ (ଶ୍ୱାସ, ପାଚନ, ମସ୍ତିଷ୍କ ଓ ହୃଦୟ ଆଦି) ଏକସଂଗେ ପ୍ରଭାବିତ ହୋଇଥାଏ ।

ଏଥିରୁ ଜଣାଯାଏ ଯେ ଭଗବାନ ବିଷ୍ଣୁଙ୍କର ଆୟୁଧ ରୂପେ ମାନ୍ୟତା ପ୍ରାପ୍ତ 'ଶଙ୍ଖ' ଉଭୟ ଉପଚାର ଓ ଉପାସନାର ଏକ ପ୍ରମୁଖ ସାଧନ । ତେଣୁ ଶାସ୍ତ୍ରରେ ଏହା ୧୪ ଗୋଟି ରତ୍ନ ମଧ୍ୟରେ ସ୍ଥାନପ୍ରାପ୍ତ ହୋଇଛି ।

ଓଡ଼ିଶା ଆୟୁର୍ବେଦ ସେବାସଦନ
ରୁମ୍ ନଂ-୧୧୧, ମ୍ୟୁନିସିପାଲିଟି ମାର୍କେଟ କମ୍ପ୍ଲେକ୍ସ
ଓ.ଏମ୍.ପି. ଛକ, କଟକ-୩

---



# ଶ୍ରେଷ୍ଠ ବନ୍ଧୁ ତୁମେ

ଶୈଳେନ୍ଦ୍ର ନାରାୟଣ ଷଡ଼ଙ୍ଗୀ

ବନ୍ଧୁ ପଣେ ବନ୍ଧୁ ତୁମେ ଉଡ଼ାଅ କେତନ
ଜଗବନ୍ଧୁ ସମ ବନ୍ଧୁ ନାହିଁ ବୋଲି ଆନ ।

ଜଗବନ୍ଧୁ ବୋଲି ବନ୍ଧୁ ତୁମେ ଜଗତର
ଜଗତବାସୀଙ୍କ ତୁମେ ଅତି ଆପଣାର ।

ପ୍ରାଣବନ୍ଧୁ ବୋଲି ତୁମେ ପ୍ରାଣେ ଉଠ ଜାଗି
ପ୍ରାଣ ଭରି ଭଲ ପାଏ ଯେବେ ଅନୁରାଗୀ ।

ଦୀନବନ୍ଧୁ ବୋଲି ତୁମେ ଦୀନ ଝୁରି ମରେ
ଦିନ ଦିନ ଧରି ଡାକେ ସ୍ନେହ ଆଦରରେ ।

ଭକ୍ତବନ୍ଧୁ ବୋଲି ଭକ୍ତ ଡାକଇ ଆତୁରେ
ଭକତ ଡାକିଲେ ସାହା ହୁଅ ବାରେ ବାରେ ।

ବନ୍ଧୁ ବୋଲି ବନ୍ଧୁ ମହାନ୍ତି ଆସିଲେ ଧାଇଁ
ସୁନା ଥାଳିରେ ପ୍ରସାଦ ପରଶିଲ ସାଇଁ ।

ଶେଷ ବନ୍ଧୁ ତୁମେ ମୋର ଶେଷ ଜୀବନର
ଶ୍ରେଷ୍ଠ ବନ୍ଧୁ ହୋଇ ରୁହ ହେ କଳାଠାକୁର ।





ସ୍ୱତନ୍ତ୍ର ଶାସନ ସଚିବ
ଅର୍ଥ ବିଭାଗ, ଭୁବନେଶ୍ୱର

# ରହସ୍ୟମୟ ଶ୍ରୀଜଗନ୍ନାଥ ଓ ଶ୍ରୀକ୍ଷେତ୍ରରେ ସଂସ୍କାର

ଡକ୍ଟର ପ୍ରଦୀପ କୁମାର ଚୌଧୁରୀ

ଜଗତର ନାଥ ପ୍ରଭୁ ଶ୍ରୀଜଗନ୍ନାଥ, ଓଡ଼ିଆ ଜାତିର ଗର୍ବ, ଗୌରବ ଓ ସ୍ୱାଭିମାନର ପ୍ରତୀକ । ସେ କେବଳ ଓଡ଼ିଆ ଜାତିର ବଡ଼ଠାକୁର ନୁହଁନ୍ତି, ବରଂ ସାରା ଜଗତକୁ ପ୍ରତିପାଳନ କରୁଥିବା ଦେବତା । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅପାର ମହିମା ଯୁଗେ ଯୁଗେ ସାରା ବିଶ୍ୱର ଭକ୍ତମାନଙ୍କୁ ଆକୃଷ୍ଟ କରିଆସିଛି । ଜଗନ୍ନାଥ ଧାମର ସ୍ୱାତନ୍ତ୍ୟ ମଧ୍ୟ ସମଗ୍ର ବିଶ୍ୱର ବିଭିନ୍ନ ଧର୍ମପୀଠଠାରୁ ଭିନ୍ନ । ଏହି ଧାମର ଅନେକ ବୈଶିଷ୍ଟ୍ୟ, ଅନ୍ୟଠାରେ ଦେଖିବାକୁ ମିଳେ ନାହିଁ । କ'ଣ ଏହି ବୈଶିଷ୍ଟ୍ୟ ? କ'ଣ ସେହିସବୁ ସ୍ୱାତନ୍ତ୍ୟ ? ଏ ସଂପର୍କରେ ଆଲୋଚନା ।

**ସା**ରା ଜଗତକୁ ପ୍ରତିପାଦନ କରୁଥିବା ଦେବତା ହେଉଛନ୍ତି ଶ୍ରୀଜଗନ୍ନାଥ । ସାରା ବିଶ୍ୱରେ ହିନ୍ଦୁଧର୍ମ ତଥା ସର୍ବଧର୍ମର ସମନ୍ୱୟର ପ୍ରତୀକ ସେ । କୌଣସି ଜାତି, ଧର୍ମ, ଗୋଷ୍ଠୀ, ଅଞ୍ଚଳ, ରାଜ୍ୟ କିମ୍ବା ଦେଶର ସେ ପ୍ରତୀକ ନୁହନ୍ତି । ସେ ସମ୍ପୂର୍ଣ୍ଣ ଜଗତର ପ୍ରତୀକ । ଜଗତ୍ ଓ ନାଥ, ଏହି ଦୁଇଗୋଟି ଶବ୍ଦର ମିଳନର ସମାହାର ଜଗନ୍ନାଥ । 'ଜଗତ୍' ଅର୍ଥାତ୍ ବିଶ୍ୱବ୍ରହ୍ମାଣ୍ଡ, 'ନାଥ' ଅର୍ଥାତ୍ ସ୍ୱାମୀ ବା ଅଧୀଶ୍ୱର ।



ଭାରତବର୍ଷର ପୂର୍ବ ଦିଗରେ ବଙ୍ଗୋପସାଗର କୂଳରେ ପୁରୀ ସହରରେ ଦଣ୍ଡାୟମାନ ସୁଦୀର୍ଘ ପ୍ରସ୍ତର ନିର୍ମିତ ମନ୍ଦିର, 'ଶ୍ରୀମନ୍ଦିର' ଭାବେ ସାରା ବିଶ୍ୱରେ ଖ୍ୟାତ । ଏହା ଓଡ଼ିଆ ଜାତିର ପ୍ରାଣ, ଗୌରବ ଓ ସ୍ୱାଭିମାନର ପ୍ରତୀକ । ଭାରତର ପୂର୍ବରେ ପୁରୀ, ପଶ୍ଚିମରେ ଦ୍ୱାରକା, ଉତ୍ତରରେ ବଦ୍ରିନାଥ ଏବଂ ଦକ୍ଷିଣରେ ରାମେଶ୍ୱର, ଏହି ଚାରିକ୍ଷେତ୍ର 'ଚତୁର୍ଦ୍ଧାମ' ଭାବେ ହିନ୍ଦୁଧର୍ମରେ ମାନ୍ୟତା ଲାଭ କରିଛି । ଏହି ଚତୁର୍ଦ୍ଧାମ ମଧ୍ୟରୁ ପୁରୀ ହିନ୍ଦୁମାନଙ୍କର ଶ୍ରେଷ୍ଠ ଧାମ । ଏହି ଧାମ ମୁକ୍ତିର ଧାମ, ବୈକୁଣ୍ଠଧାମ । ଏହି କ୍ଷେତ୍ରର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ରହିଛି । ଏହି କ୍ଷେତ୍ରରେ ଭକ୍ତ ସାଲବେଗ, ଦାସିଆ ବାଉରୀ, ବନ୍ଧୁ ମହାନ୍ତି, ଗୁରୁ ନାନକ, ଜୟଦେବ, ଗଣପତି ଭଟ୍ଟ, ଶଙ୍କରାଚାର୍ଯ୍ୟଙ୍କ ପରି ଅନେକଙ୍କ ଭକ୍ତି ଅନୁଭୂତିର ପଟ୍ଟାନ୍ତର ନାହିଁ । ଏପରିକି, ପ୍ରଭୁ ଯୀଶୁଖ୍ରୀଷ୍ଟ ଏହି କ୍ଷେତ୍ରକୁ ଆସିଥିବା ଏବଂ ଏହି କ୍ଷେତ୍ରରୁ ତାଙ୍କର ଆଧାତ୍ମିକ ବୀଜ ଅଙ୍କୁରିତ ହୋଇଥିବା ଭଳି କେତେକ ପ୍ରମାଣ ମିଳିଥାଏ । ଠିକ୍ ସେହିପରି ବୌଦ୍ଧଧର୍ମର ବହୁ ମୌଳିକ ଚିନ୍ତନ ଶ୍ରୀଜଗନ୍ନାଥଙ୍କ ସହ ସାମଞ୍ଜସ୍ୟ ରହିଥିବା କଥା ଉଲ୍ଲେଖଯୋଗ୍ୟ । ଶ୍ରୀଜଗନ୍ନାଥ ଆଧାତ୍ମିକ ଚେତନାର ପ୍ରତିମୂର୍ତ୍ତି । ପୁଣି ତାଙ୍କ ସହ ସଭ୍ୟତା, ସଂସ୍କୃତି, ସାହିତ୍ୟ, କଳା, ସଂଗୀତ, ପରମ୍ପରା ଏପରିକି ଅର୍ଥନୀତି, ରାଜନୀତି, ବିଜ୍ଞାନ ଆଦି ଯୋଡ଼ି ହୋଇରହିଛି । ସେ ଏକ ପରିବ୍ୟାପ୍ତ ଚେତନାର ପ୍ରତୀକ । ବିଶ୍ୱଭ୍ରାତୃଭାବ, ଜଗତ୍‌କଲ୍ୟାଣ, ମାନବବାଦ ଇତ୍ୟାଦିର ମୂଳଦୁଆ ହିଁ ଜଗନ୍ନାଥ ସଂସ୍କୃତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସ୍ୱୟଂ ଜଗନ୍ନାଥ ସମଗ୍ର ବିଶ୍ୱବ୍ରହ୍ମାଣ୍ଡକୁ ଏକତାର ରଜ୍ଜୁରେ ବାନ୍ଧି ରଖିଛନ୍ତି । ଶ୍ରୀଜଗନ୍ନାଥ ବିଶ୍ୱର ଏକମାତ୍ର ଦେବତା, ଯିଏକି ନିଜ ଭାଇଭଉଣୀଙ୍କ ସହ ରତ୍ନ ସିଂହାସନରେ ବିରାଜମାନ ହୋଇ ବିଶ୍ୱଭ୍ରାତୃଭାବର ଚେତନାକୁ ସମୃଦ୍ଧି ଓ ପ୍ରସାରିତ କରୁଛନ୍ତି । ସେହି ଚେତନାର ଅଣୁଟିଏ ପାଇ ସ୍ୱାମୀ ବିବେକାନନ୍ଦ ମାନବଧର୍ମର ପ୍ରଚାର କରି ଏକ ନୂତନ ଯୁଗର ଅଭ୍ୟୁଦୟ କଲେ । ପ୍ରଭୁ ଜଗନ୍ନାଥ ନିରାକାର ପରଂବ୍ରହ୍ମ । ସେ କୌଣସି ଆକାର ମଧ୍ୟରେ ସୀମିତ ନୁହନ୍ତି । ନୀଳ ସିନ୍ଧୁ ତଟରେ, ନୀଳ ପର୍ବତରେ, ନୀଳ ଜ୍ୟୋତିରେ ଉଦ୍‌ଭାସିତ ହୋଇ ସେ ତ୍ରିସୂକ୍ତ

ନୀଳବର୍ଣ୍ଣକୁ ଜାଗ୍ରତ କରୁଥିବା ବିଶ୍ୱବନ୍ଦନୀୟ ଠାକୁର । ସେ ଶୂନ୍ୟକୁ ପ୍ରତିପାଦନ କରୁଥିବା ଶୂନ୍ୟପୁରୁଷ ପରଂବ୍ରହ୍ମ ଏବଂ ପୂର୍ଣ୍ଣକୁ ପ୍ରତିପାଦନ କରୁଥିବା ପୂର୍ଣ୍ଣବ୍ରହ୍ମ ପୁରୁଷୋତ୍ତମ ।

ଜଗନ୍ନାଥ ହିଁ ଏକମାତ୍ର ବ୍ରହ୍ମର ସୂଚକ କାରଣ ବ୍ରହ୍ମ କୌଣସି ନିର୍ଦ୍ଦିଷ୍ଟ ଆକାର, ପରିଧି, ଲିଙ୍ଗ, ଗୋଷ୍ଠୀ, ଅଞ୍ଚଳ ଭିତରେ ସୀମିତ ନୁହେଁ । ବ୍ରହ୍ମଲିଙ୍ଗରୁ ଉର୍ଦ୍ଧ୍ୱ, ଅର୍ଥାତ୍ ଶ୍ରୀଜଗନ୍ନାଥ ଏକମାତ୍ର ଦେବତା, ଯିଏ ଲିଙ୍ଗଭିତ୍ତିକ ଭେଦଭାବର ଉର୍ଦ୍ଧ୍ୱରେ । ତେଣୁ ସେ ପୂର୍ଣ୍ଣବ୍ରହ୍ମ । ପୁରୁଷମାନଙ୍କ ମଧ୍ୟରେ ସେ ପୁରୁଷଶ୍ରେଷ୍ଠ ପୁରୁଷୋତ୍ତମ, ସ୍ତ୍ରୀମାନଙ୍କ ମଧ୍ୟରେ ସେ ଆଦ୍ୟାଶକ୍ତି ଜଗଦ୍ଧାତ୍ରୀ ମାତା ଦକ୍ଷିଣକାଳୀଙ୍କ ସ୍ୱରୂପା । ତେଣୁ ବୈଷ୍ଣବାଚାର୍ଯ୍ୟମାନେ ଜଗନ୍ନାଥଙ୍କୁ ପରମ ବିଷ୍ଣୁ ଭାବରେ, ଶାକ୍ତମାନେ ଶକ୍ତିର ଉତ୍ସ ଆଦ୍ୟାଶକ୍ତି ରୂପରେ, ଏପରିକି ଗ୍ରହାଚାର୍ଯ୍ୟମାନେ ନବଗ୍ରହ ସ୍ୱରୂପ ଭାବରେ, ଶୈବମାନେ ପ୍ରକୃତିମୟ ଶିବ ରୂପରେ, ବ୍ରହ୍ମ ଉପାସକ, ଶୂନ୍ୟବ୍ରହ୍ମ ରୂପରେ ବର୍ଣ୍ଣନା କରିଛନ୍ତି । ଯେଉଁ ଚେତନା ବ୍ରହ୍ମମୟ, ଭାବନା ବିଶ୍ୱରୁ ଉର୍ଦ୍ଧ୍ୱ ଏବଂ ଚିନ୍ତନ ଜଗତ୍‌କଲ୍ୟାଣ ପାଇଁ ଉଦ୍ଦିଷ୍ଟ, ତାହା ହିଁ ଜଗନ୍ନାଥ ସଂସ୍କୃତିର ମୂଳତତ୍ତ୍ୱ । ଏହି ତତ୍ତ୍ୱକୁ ଆଧାର କରି ଓଡ଼ିଆ ଜାତିର ଉତ୍ପତ୍ତି ଓ ସମୃଦ୍ଧି । ଉତ୍କଳର ଭାଷା, ସାହିତ୍ୟ, ସଂଗୀତ, ସଂସ୍କୃତି, ପରମ୍ପରା, ପର୍ବପର୍ବାଣି, ଯାନିଯାତ୍ରା ଇତ୍ୟାଦି ଜଗନ୍ନାଥ ସଂସ୍କୃତି ସହିତ ପ୍ରତ୍ୟକ୍ଷ ଭାବରେ ସଂଯୁକ୍ତ । ଓଡ଼ିଆ ସଂସ୍କୃତି, ଚିନ୍ତନ ଓ ପରମ୍ପରାରେ ପ୍ରଭୁ ଜଗନ୍ନାଥଙ୍କ ଭାବନା ପ୍ରସ୍ଫୁଟିତ । ସେ ହିଁ ଓଡ଼ିଆ ଜାତିର ପ୍ରାଣ, ଆରାଧ୍ୟ ଓ ସାଙ୍କେତିକ ଦୃଷ୍ଟିରେ ସର୍ବ କ୍ଷମତାର ଅଧିକାରୀ । ତାଙ୍କୁ ହିଁ ପାଥେୟ କରି ଓଡ଼ିଆ ଜାତିର ମାନ, ସମ୍ମାନ ଓ ପ୍ରତିଷ୍ଠା । ତେଣୁ ପ୍ରତିଟି ଓଡ଼ିଆ ପାଇଁ ପ୍ରଭୁ ଜଗନ୍ନାଥ ପ୍ରିୟ ଆଉ ଆପଣାର ।

କେବଳ ଭାରତର ଚତୁର୍ଦ୍ଧାମ ନୁହେଁ ସମଗ୍ର ବିଶ୍ୱର ବିଭିନ୍ନ ଧର୍ମପୀଠ ମଧ୍ୟରେ ପୁରୀ ଜଗନ୍ନାଥ ଧାମର ସ୍ୱାତନ୍ତ୍ର୍ୟ ଭିନ୍ନ । ଏହି ଧାମର ଅନେକ ବୈଶିଷ୍ଟ୍ୟ ରହିଛି, ଯାହା ଅନ୍ୟଠାରେ ଦେଖିବାକୁ ମିଳେ ନାହିଁ । ସେହିଭଳି କେତେକ ବୈଶିଷ୍ଟ୍ୟ ସମ୍ପର୍କରେ ବିଶ୍ଳେଷଣ କରାଯାଇପାରେ ।

### ୧) ଅବୟବ ଗଠନ

ଶ୍ରୀଜଗନ୍ନାଥ ଧାମର ଚତୁର୍ଦ୍ଧାମୂର୍ତ୍ତି ପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ସୁଦର୍ଶନଙ୍କ ଅବୟବ ନିମ୍ବ କାଷ୍ଠରେ ନିର୍ମିତ, ଯାହାକୁ 'ମହାଦାରୁ' ବୋଲି କୁହାଯାଏ । ଦାରୁଦେବତା ଭାବେ ଯେଉଁ ଖ୍ୟାତି ପୁରୀର ଏହି ଚତୁର୍ଦ୍ଧାମୂର୍ତ୍ତିଙ୍କର ରହିଛି, ତାହା ପୃଥିବୀରେ ଅନ୍ୟତ୍ର ପ୍ରାୟତଃ ଦୁର୍ଲଭ ।

### ୨) ଘଟ ପରିବର୍ତ୍ତନ

ବିଶ୍ୱର ଅନ୍ୟ କୌଣସି ଧାର୍ମିକ ପୀଠରେ ଦେବତା ଦେହତ୍ୟାଗ ବା ଘଟ ପରିବର୍ତ୍ତନ କରିବାର ପରମ୍ପରା ନାହିଁ । ଶ୍ରୀଜଗନ୍ନାଥ ଏକମାତ୍ର ଦେବତା, ଯିଏ ଘଟ ପରିବର୍ତ୍ତନ କରିଥାନ୍ତି । ଯେଉଁ ବର୍ଷ ଯୋଡ଼ା - ଆଷାଢ଼ ପଡ଼ିବ, ସେହି ବର୍ଷ ସେ ଘଟ ପରିବର୍ତ୍ତନ କରନ୍ତି । ପୁରାତନ ଅବୟବକୁ କୋଇଲି ବୈକୁଣ୍ଠରେ ସଂସ୍କାରପୂର୍ବକ ତ୍ୟାଗକରି ନୂତନ ଘଟରେ ଆବିର୍ଭାବ ହୁଅନ୍ତି । ଗୀତାରେ ଶ୍ରୀକୃଷ୍ଣଙ୍କ ମୁଖନିଃସୃତ ବାଣୀରେ ବର୍ଣ୍ଣନା ଅଛି, ଏ ଶରୀର ମରଣଶୀଳ ଏବଂ ଆତ୍ମା ଅବିନାଶୀ । ଆତ୍ମାର ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ବ୍ୟକ୍ତି ପୁରୁଣା ବସ୍ତ୍ରକୁ ପରିତ୍ୟାଗ କରି ନୂତନ ବସ୍ତ୍ର ପରିଧାନ କଲାଭଳି, ଆତ୍ମା ପୁରୁଣା ଶରୀରକୁ ପରିତ୍ୟାଗ କରି ନୂତନ ଘଟରେ ଆବିର୍ଭାବ ହୁଏ । ପ୍ରଭୁ ଶ୍ରୀଜଗନ୍ନାଥଙ୍କର କ୍ଷେତ୍ରରେ ମଧ୍ୟ ଏହା ପରିଲକ୍ଷିତ ।

### ୩) ବିଶ୍ୱଭ୍ରାତୃଭାବ

ବିଶ୍ୱଭ୍ରାତୃଭାବ ହେଉଛି ଜଗନ୍ନାଥ ସଂସ୍କୃତିର - ମୌଳିକ ଚେତନା, ଯାହା ଏହାକୁ ମହନୀୟ କରିଛି । ପ୍ରାୟତଃ ସମସ୍ତ ଧର୍ମକ୍ଷେତ୍ରରେ ଭଗବାନ ଏକାକୀ କିମ୍ବା ନିଜ ସହଧର୍ମିଣୀଙ୍କ ସହ ପୂଜା ପାଉଥିବା ବେଳେ ଜଗନ୍ନାଥ ଧାମର ବୈଶିଷ୍ଟ୍ୟ ହେଲା ଏଠାରେ ସ୍ୱୟଂ ପ୍ରଭୁ ଶ୍ରୀଜଗନ୍ନାଥ ନିଜ ଭଉଣୀ ସୁଭଦ୍ରା ଓ ବଡ଼ଭାଇ ଶ୍ରୀବଳଭଦ୍ରଙ୍କ ସହ ପୂଜା ପାଆନ୍ତି । ବିଶ୍ୱଭ୍ରାତୃଭାବ ଓ ମାନବବାଦ ହିଁ ଜଗନ୍ନାଥ ସଂସ୍କୃତିର ମୂଳତତ୍ତ୍ୱ । ଜଗନ୍ନାଥ ହିଁ ପ୍ରଥମ ଓ ସମ୍ଭବତଃ ଏକମାତ୍ର ଦେବତା, ଯାହାଙ୍କୁ ମାନବବାଦର ପ୍ରତୀକ କୁହାଯାଉଛି । ସେଇଥିପାଇଁ ହିଁ ସେ ପତିତପାବନ । ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ ନିର୍ବିଶେଷରେ ନିଜର ନାମକରଣ ତଥା ରତ୍ନମଣ୍ଡପରେ ଶୋଭିତ ଚତୁର୍ଦ୍ଧାମୂର୍ତ୍ତିଙ୍କର ଅପୂର୍ବ ସମାହାରରୁ ଏହି ତତ୍ତ୍ୱ ଆଧାରିତ ।

### ୪) ଭକ୍ତବତ୍ସଳ

ଭକ୍ତର ଭଗବାନ୍ - ଜଗନ୍ନାଥ ସଂସ୍କୃତିର ଏହା ତାତ୍ତ୍ୱିକ ଉପଲବ୍ଧି । ପ୍ରଭୁ ଶ୍ରୀଜଗନ୍ନାଥ ଭକ୍ତର ଭାବରେ ହିଁ ବନ୍ଧା । ବିଶ୍ୱର ଅନ୍ୟ କୌଣସି ପୀଠର ଦେବତା ନିଜର ଆସ୍ଥାନ ଛାଡ଼ି ଭକ୍ତଙ୍କ ଗହଳକୁ ଆସନ୍ତି ନାହିଁ । ମାତ୍ର ଭକ୍ତବତ୍ସଳ ଠାକୁର ଶ୍ରୀଜଗନ୍ନାଥ ମହାପ୍ରଭୁ ଆଷାଢ଼ ମାସର ଦ୍ୱିତୀୟା ତିଥିରେ ନିଜର ରତ୍ନ ସିଂହାସନ, ଷାଠିଏ ପଉଟି ଅନ୍ନ ଏବଂ ଅନ୍ୟସବୁ ମୋହ ଛାଡ଼ି ଭକ୍ତମାନଙ୍କ ନିକଟକୁ ଆସନ୍ତି । ସମସ୍ତଙ୍କୁ ଦର୍ଶନ ଦିଅନ୍ତି । ରଥାରୂଢ଼ ହୋଇ ଭକ୍ତମାନଙ୍କ ସହ ମିଶନ୍ତି । ଏହା ହିଁ ଶ୍ରୀଜଗନ୍ନାଥଙ୍କ ଅପାର ମହିମା ।

### ୫) ଅସମ୍ପୂର୍ଣ୍ଣ ପୂର୍ଣ୍ଣବ୍ରହ୍ମ

ସ୍ୱୟଂ ଶ୍ରୀଜଗନ୍ନାଥ ଅସମ୍ପୂର୍ଣ୍ଣ । ହାତ, ଗୋଡ଼, କାନ ନାହିଁ, କିନ୍ତୁ ପୂର୍ଣ୍ଣତ୍ୱ ପ୍ରାପ୍ତିର ଶ୍ରେଷ୍ଠ ପୀଠ ବା ଧାମ ଭାବରେ ଜଗନ୍ନାଥ ଧାମ ସାରା ବିଶ୍ୱରେ ପ୍ରସିଦ୍ଧ । ଶଙ୍କରାଚାର୍ଯ୍ୟଙ୍କ ଉକ୍ତିର ପରିଭାଷାରେ, ଏହି ପୀଠ ହେଉଛି ଭକ୍ତି ତଥା ମୁକ୍ତିର ଶ୍ରେଷ୍ଠ ଓ ଶେଷ ପୀଠ । ସେଠାରେ ଭକ୍ତି ଓ ମୁକ୍ତିର ପୂର୍ଣ୍ଣଚ୍ଛେଦ । ପ୍ରଭୁ ଜଗନ୍ନାଥ ହେଉଛନ୍ତି ବିଶ୍ୱର ଏକମାତ୍ର ଦେବତା, ଯାହାଙ୍କ ଠାଣି ବିଚିତ୍ର । ତାଙ୍କର ନେତ୍ର ଗୋଲ, ନେତ୍ରରେ ପତା ନାହିଁ । ପ୍ରଭୁ ଜଗନ୍ନାଥଙ୍କ ଚକ୍ଷୁ କେବେ ବି ମୁଦ୍ରିତ ହୁଏ ନାହିଁ । ଜଗତର ସକଳ କଲ୍ୟାଣ ନିମନ୍ତେ ସେ ସଦାଜାଗ୍ରତ ଦେବତା ।

### ୬) ଗଣତନ୍ତ୍ର ଓ ସମାନତାର ସୂତ୍ରଧର

ପ୍ରଭୁ ଶ୍ରୀଜଗନ୍ନାଥ ଘୋଷଯାତ୍ରାରେ ସ୍ୱୟଂ ଗଜପତି ମହାରାଜା ଛେରାପହଁରା କରନ୍ତି । ଗଜପତି ମହାରାଜା ଏଠାରେ ପ୍ରଭୁଙ୍କ ଦାସ ସାଜନ୍ତି । ରାଜା, ପ୍ରଜା ଓ ଭଗବାନଙ୍କ ସମନ୍ୱୟ ତଥା ଏକତାର ପ୍ରତୀକ ସ୍ୱୟଂ ଜଗନ୍ନାଥ । ଏହି ବୈଶିଷ୍ଟ୍ୟ ଅନ୍ୟ କୌଣସି ଧର୍ମପୀଠରେ ଦେଖାଯାଏ ନାହିଁ । ଜଗନ୍ନାଥ ହିଁ ପ୍ରଥମ ଗଣଦେବତା, ଯେଉଁ ପୀଠରେ ରହିଛି ଗଣତନ୍ତ୍ରର ମୂଳତତ୍ତ୍ୱ । ଗଣତନ୍ତ୍ରର ମୂଳମନ୍ତ୍ର ହେଲା ସମାନତା ବା ସମସ୍ତଙ୍କର ସମାନ ଅଧିକାର । ଏହି ତତ୍ତ୍ୱକୁ ପ୍ରଭୁ ଜଗନ୍ନାଥ ପ୍ରତିପାଦନ କରନ୍ତି । ଜାତି, ଧର୍ମ, ବର୍ଣ୍ଣ ଲିଙ୍ଗ ନିର୍ବିଶେଷରେ ଜଗନ୍ନାଥ ମହାପ୍ରଭୁ ସମସ୍ତଙ୍କର । ଘୋଷଯାତ୍ରା ସମୟରେ ଦେବତା, ରାଜା ଓ ପ୍ରଜାମାନଙ୍କର ଯେଉଁ ଅପୂର୍ବ ସମନ୍ୱୟ ଦେଖିବାକୁ ମିଳେ, ତାହା ହିଁ ଏହି ପୀଠର ଗାଣତାନ୍ତ୍ରିକ ବୈଶିଷ୍ଟ୍ୟକୁ ସୂଚାଇଥାଏ ।

### ୭) ବିରଳ ଦର୍ଶନ

ପ୍ରାୟତଃ ଅଧିକାଂଶ ଧର୍ମପୀଠରେ ଠାକୁରଙ୍କୁ ବର୍ଷସାରା ଦର୍ଶନ କରିହୁଏ, କିନ୍ତୁ ଜଗନ୍ନାଥ ଧାମର ଠାକୁର ପ୍ରତ୍ୟେକ ବର୍ଷ ଘୋଷଯାତ୍ରାର ପନ୍ଦରଦିନ ପୂର୍ବରୁ ଅଣସର ଯାଆନ୍ତି । ଲୋକବିଶ୍ୱାସ ଅନୁଯାୟୀ ଏହି ସମୟରେ ଠାକୁର ଜ୍ୱରରେ ପଡ଼ନ୍ତି । ଦଇତାପତି (ବ୍ରାହ୍ମଣ ବିଦ୍ୟାପତି ଓ ବିଶ୍ୱାବସୁ ଶବର କନ୍ୟା ଲଳିତାଙ୍କ ଔରସରୁ ଜାତ)ଙ୍କ ବ୍ୟତୀତ ଅନ୍ୟ କୌଣସି ବ୍ୟକ୍ତି ବର୍ଷତମାମ ଠାକୁରଙ୍କ ଦର୍ଶନ କରିପାରନ୍ତି ନାହିଁ ।

### ୮) ବ୍ରହ୍ମର ନିଦର୍ଶନ

ସାରା ବିଶ୍ୱ 'ଶ୍ରୀଜଗନ୍ନାଥ' ହିଁ ଏକମାତ୍ର ଲିଙ୍ଗବିହୀନ ଠାକୁର । ଜଗନ୍ନାଥ, ପୁରୁଷବାଚକ ଶବ୍ଦ ହେଲେ ମଧ୍ୟ ପ୍ରକୃତରେ ସେ କୌଣସି ନିର୍ଦ୍ଦିଷ୍ଟ ଲିଙ୍ଗର ସୂଚକ ନୁହଁନ୍ତି । ତେଣୁ ସେ ପୂର୍ଣ୍ଣବ୍ରହ୍ମ, ପରଂବ୍ରହ୍ମ, ପରମାତ୍ମା, ବ୍ରହ୍ମମୟ ବା ଜଗତ୍‌ମୟ । ଶ୍ରୀଜଗନ୍ନାଥଙ୍କୁ ବୈଷ୍ଣବମାନେ ପୁରୁଷୋତ୍ତମ ବିଷ୍ଣୁ ଭାବରେ, ଶୈବମାନେ ପ୍ରକୃତିମୟ ଶିବ ରୂପରେ, ଶାକ୍ତମାନେ ସ୍ତ୍ରୀ ଶକ୍ତିର ଉତ୍ସ ଆଦ୍ୟାଶକ୍ତି ମାତା ଦକ୍ଷିଣକାଳୀ ରୂପରେ, ଜ୍ୟୋତିଷାଚାର୍ଯ୍ୟମାନେ ଘନନୀଳ ବର୍ଣ୍ଣ ଶନିମହାଗ୍ରହ ରୂପରେ ବର୍ଣ୍ଣନା କରିଛନ୍ତି । ଲିଙ୍ଗ ନିର୍ଦ୍ଦିଷ୍ଟ ଗୋଷ୍ଠୀ, ଜାତି ବା ପ୍ରଜାତିର ସୂଚକ ହେଲାବେଳେ ସାର୍ବଜନୀନ ଭାବେ ଶ୍ରୀଜଗନ୍ନାଥ ସମସ୍ତଙ୍କ ପ୍ରିୟ ଓ ଗ୍ରହଣୀୟ । ସବୁଧର୍ମର ଆରାଧ୍ୟ ଦେବତା କୌଣସି ଏକ ନିର୍ଦ୍ଦିଷ୍ଟ ଲିଙ୍ଗ ଭିତରେ ଆବଦ୍ଧ ରହିଥିଲାବେଳେ ଶ୍ରୀଜଗନ୍ନାଥ ହିଁ ଏକମାତ୍ର ଦେବତା, ଯିଏ ଏସବୁର ଊର୍ଦ୍ଧ୍ୱରେ ରହି ସମ୍ପୂର୍ଣ୍ଣ ଜଗତକୁ ପ୍ରତିପାଳନ କରୁଛନ୍ତି । ସେ ପୁରୁଷମାନଙ୍କ ମଧ୍ୟରେ ପୁରୁଷଶ୍ରେଷ୍ଠ ବା ପୁରୁଷୋତ୍ତମ, ସ୍ତ୍ରୀମାନଙ୍କ ମଧ୍ୟରେ ଆଦ୍ୟାଶକ୍ତିର ମୂଳଉତ୍ସ ଭାବରେ ବନ୍ଦନୀୟ ଓ ଗ୍ରହଣୀୟ ।

### ୯) ଐଶ୍ୱର୍ଯ୍ୟମୟ ସଂସ୍କୃତି

ଶ୍ରୀଜଗନ୍ନାଥଙ୍କ କ୍ଷେତ୍ର 'ଶ୍ରୀକ୍ଷେତ୍ର' ନାମରେ ନାମିତ । 'ଶ୍ରୀ' ଅର୍ଥାତ୍ ଦେବୀ ଲକ୍ଷ୍ମୀ । 'ଶ୍ରୀ' ହିଁ ସେହି କ୍ଷେତ୍ରର ଅଧିଷ୍ଠାତ୍ରୀ । ସେହି କ୍ଷେତ୍ରକୁ କେବେ ହେଲେ 'ଶ୍ରୀ' ଛାଡ଼ି ଯାଆନ୍ତି ନାହିଁ । ତେଣୁ ଶ୍ରୀଜଗନ୍ନାଥଙ୍କ ମନ୍ଦିର 'ଶ୍ରୀମନ୍ଦିର' ଭାବେ ପରିଚିତ । ସାଧାରଣତଃ ଅନ୍ୟାନ୍ୟ ଦେବଦେବୀଙ୍କ ଆସ୍ଥାନସ୍ଥଳୀକୁ ମନ୍ଦିର କୁହାଯାଉଥିବାବେଳେ ଜଗନ୍ନାଥଙ୍କ ମନ୍ଦିର 'ଶ୍ରୀମନ୍ଦିର' ନାମରେ ପରିଚିତ । ଜଗନ୍ନାଥ ଧାମର ସେହି ଐଶ୍ୱର୍ଯ୍ୟମୟ ସଂସ୍କୃତି ବିଭିନ୍ନ ଧର୍ମାବଲମ୍ବୀଙ୍କୁ ଆକର୍ଷିତ କରେ ।

### ୧୦) ମହାପ୍ରସାଦ

ସବୁ ଧର୍ମକ୍ଷେତ୍ରରେ ଠାକୁରଙ୍କୁ ଅର୍ପିତ ନୈବେଦ୍ୟ 'ପ୍ରସାଦ' ଭାବରେ ପରିଚିତ ହେଲାବେଳେ, ଶ୍ରୀଜଗନ୍ନାଥଙ୍କ ପ୍ରସାଦ 'ମହାପ୍ରସାଦ' ଭାବେ ଖ୍ୟାତ । ତାହା ମଧ୍ୟ ସେହି କ୍ଷେତ୍ରର ଅନ୍ୟତମ ବୈଶିଷ୍ଟ୍ୟ । ସେହି କ୍ଷେତ୍ରରେ ଷାଠିଏ ପଉଟି ଅନ୍ନ ସହ ଚଉଷଠି ପ୍ରକାର ବ୍ୟଞ୍ଜନ ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କଠାରେ ଲାଗିହୁଏ । ସେହି ବ୍ୟଞ୍ଜନ ଆଡ଼ପ ମଣ୍ଡପ ଓ ଭୋଗମଣ୍ଡପରେ ପ୍ରଭୁଙ୍କ ଅର୍ପଣ ହେଲାପରେ ଯାଇ ମହାପ୍ରସାଦରେ ପରିଣତ ହୁଏ । ସେହି କ୍ଷେତ୍ରର ବିଶେଷତ୍ୱ ହେଲା ଯେଉଁ ଅନ୍ନପ୍ରସାଦ ଠାକୁରଙ୍କ ପାଇଁ ପ୍ରସ୍ତୁତ ହୁଏ, ସେ ସବୁ ଜଗନ୍ନାଥଙ୍କ ଭୋଗମଣ୍ଡପକୁ ବୁହା ହୋଇ ପୂଜାପଣ୍ଡାଙ୍କଦ୍ୱାରା ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରାଯାଏ । ଅନ୍ୟ କ୍ଷେତ୍ରରେ ଏହାର ବ୍ୟତିକ୍ରମ ଦେଖାଯାଏ । ଠାକୁରଙ୍କ ପାଇଁ ପ୍ରସ୍ତୁତ ଭୋଗର କିଛିମାତ୍ର ଅମଣିଆ ଭୋଗ ଠାକୁରଙ୍କ ନିକଟକୁ ଯାଏ

ଏବଂ ସେହି ଭୋଗର କିଛି ଅଂଶ ପ୍ରସ୍ତୁତ ଅମଣିଆ ଭୋଗରେ ମିଶାଇ ପ୍ରସାଦ ହୁଏ ।

### ୧୧) ପୂର୍ଣ୍ଣବ୍ରହ୍ମର ସ୍ୱରୂପ

ଜଗନ୍ନାଥ ହେଉଛନ୍ତି ଏକମାତ୍ର ଶୂନ୍ୟପୁରୁଷ ପୂର୍ଣ୍ଣବ୍ରହ୍ମ । କାରଣ, ଜଗନ୍ନାଥ ଶୂନ୍ୟର ପ୍ରତୀକ । ଜଗନ୍ନାଥଙ୍କ ଦୁଇନେତ୍ର ଶୂନ୍ୟ ଆଉ ପୂର୍ଣ୍ଣର ସୂଚକ । ଶୂନ ମିଶାଣ ଶୂନ = ଶୂନ ଏବଂ ଶୂନ ଫେଡ଼ାଣ ଶୂନ = ଶୂନ । ଏହା ପ୍ରମାଣ କରୁଛି, ଶୂନ ହିଁ ପୂର୍ଣ୍ଣତାର ପରିଭାଷା । ଶୂନରୁ ଶୂନ୍ୟ, ଶୂନ୍ୟରୁ ମହାଶୂନ୍ୟ, ମହାଶୂନ୍ୟରୁ ବ୍ରହ୍ମ, ବ୍ରହ୍ମରୁ ପରମବ୍ରହ୍ମ, ପରମବ୍ରହ୍ମରୁ ଲୀନ ବା ମୁକ୍ତି - ସ୍ୱୟଂ ଜଗନ୍ନାଥଙ୍କ ସ୍ୱରୂପ ଅଟେ ।

### ୧୨) ନବଗ୍ରହଙ୍କ ସମନ୍ୱୟର ପ୍ରତୀକ

ଶ୍ରୀଜଗନ୍ନାଥ ହେଉଛନ୍ତି ବିଶ୍ୱର ଏକମାତ୍ର ଦେବତା, ଯିଏ ନବଗ୍ରହଙ୍କୁ ପ୍ରତିପାଦନ କରନ୍ତି । ଯଥା- ଜଗନ୍ନାଥଙ୍କ ଦୁଇନେତ୍ର - ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ପ୍ରତୀକ, ଜଗନ୍ନାଥଙ୍କ ନାଲି ଅଧର - ମଙ୍ଗଳଙ୍କ ପ୍ରତୀକ, ରଥାରୂଢ଼ ଜଗନ୍ନାଥ - ବାମନ ବୁଧଙ୍କ ପ୍ରତୀକ, ପୀତବସ୍ତ୍ର ପରିହିତ ଓ ସୁବର୍ଣ୍ଣ ଶୋଭିତ ଜଗନ୍ନାଥ - ବୃହସ୍ପତିଙ୍କ ପ୍ରତୀକ, ପ୍ରେମମୋହିତ କଳା - ଶୁକ୍ରଙ୍କ ପ୍ରତୀକ, କଳାର୍ଣ୍ଣବ ଅବୟବ - ଦକ୍ଷିଣକାଳୀ ଓ ଶନିଙ୍କ ପ୍ରତୀକ, ଶ୍ରୀଜଗନ୍ନାଥଙ୍କ ଅସମ୍ପୂର୍ଣ୍ଣ ଅବୟବ - ରାହୁ ଓ କେତୁଙ୍କ ପ୍ରତୀକ ।

ପ୍ରଭୁ ଜଗନ୍ନାଥ ହିଁ ନବଗ୍ରହ, ସମ୍ପୂର୍ଣ୍ଣ ରାଶିଚକ୍ର ଓ ନକ୍ଷତ୍ରମଣ୍ଡଳ । ତିନିଠାକୁର ଅର୍ଥାତ୍- ଲଗ୍ନ, ରାଶି ଓ ନକ୍ଷତ୍ର, ସୃଷ୍ଟି, ସ୍ଥିତି ଓ ବିଲୟ, ଦିବସ, ସନ୍ଧ୍ୟା ଓ ରାତ୍ର, ଜଳ, ସ୍ଥଳ ଓ ଆକାଶ, ଆଦ୍ୟ, ମଧ୍ୟ ଓ ଅନ୍ତ, ଜୀବନ, ଯୌବନ ଓ ମୃତ୍ୟୁ ବା ମୁକ୍ତି ।

### ୧୩) ପୂର୍ଣ୍ଣତାର ପରିଭାଷା

ଶ୍ରୀଜଗନ୍ନାଥଙ୍କର ନବଦିନ ବ୍ୟାପୀ ଘୋଷଯାତ୍ରା ପୂର୍ଣ୍ଣତାର ପ୍ରତୀକ । କାରଣ ନବମ ହେଉଛି ଏକମାତ୍ର ପୂର୍ଣ୍ଣସଂଖ୍ୟା । ଶ୍ରୀଜଗନ୍ନାଥ ନବଗ୍ରହର ପ୍ରତୀକ ରୂପରେ ନବଦିନ ବ୍ୟାପୀ ଶ୍ରୀଗୁଣ୍ଡିଚା ଯାତ୍ରା କରନ୍ତି । ଶ୍ରୀଜଗନ୍ନାଥଙ୍କ ଶ୍ରୀଗୁଣ୍ଡିଚା ଯାତ୍ରା, ଗୁଣ୍ଡିଚା ମନ୍ଦିରର ଆଡ଼ପମଣ୍ଡପରେ ସାତଦିନ ବିଜେ ଏବଂ ଶ୍ରୀମନ୍ଦିର ବାହୁଡ଼ା ଯାତ୍ରା ନବଦିନ ତାହା ନବଗ୍ରହଙ୍କ ସାଙ୍କେତିକ ଉଦ୍ଦେଶ୍ୟକୁ ପ୍ରତିପାଦନ କରେ । ଲୋକବିଶ୍ୱାସ ଅନୁଯାୟୀ ଯେଉଁ ବ୍ୟକ୍ତି ଶ୍ରୀଗୁଣ୍ଡିଚା ଯାତ୍ରା ଓ ଶ୍ରୀମନ୍ଦିର ବାହୁଡ଼ାଯାତ୍ରା ସହ ସାତଦିନ ଶ୍ରୀଗୁଣ୍ଡିଚା ଆଡ଼ପମଣ୍ଡପରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରେ, ସେହି ବ୍ୟକ୍ତି ନବଗ୍ରହଚକ୍ରରୁ ମୁକ୍ତି ପାଏ । ଜଗନ୍ନାଥଙ୍କ ଦୁଇ ଦିନର ଯାତ୍ରା ରାହୁ ଓ କେତୁଙ୍କ ଉଦ୍ଦେଶ୍ୟରେ ହୋଇଥିଲାବେଳେ, ଏକ ସପ୍ତାହ ଶ୍ରୀଗୁଣ୍ଡିଚା ମନ୍ଦିରରେ ରହଣିକାଳ ଅନ୍ୟ ସାତଟି ଗ୍ରହ ଯଥା- ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନିଙ୍କୁ ପ୍ରତିନିଧିତ୍ୱ କରନ୍ତି । ଏଥିରୁ ଅନୁମେୟ ଶ୍ରୀଜଗନ୍ନାଥ ସଂସ୍କୃତି ପୂର୍ଣ୍ଣତାର ପରିଭାଷା ।

### ୧୪) ବାସ୍ତୁପୁରୁଷ ଶ୍ରୀଜଗନ୍ନାଥ

ଭାରତ ଭୂଖଣ୍ଡର ବାସ୍ତୁ ସମ୍ପୂର୍ଣ୍ଣ ଭୁଲ୍ । ବାସ୍ତୁଶାସ୍ତ୍ର ବସ୍ତୁ ଶବ୍ଦରୁ ଆନୀତ । ବାସ୍ତୁଶାସ୍ତ୍ର ଅନୁଯାୟୀ ପୃଥିବୀରେ ପାଞ୍ଚ ପ୍ରକାର ବସ୍ତୁ ଅଛି । ତାହା ହେଲା ପଞ୍ଚମହାଭୂତ । ଅର୍ଥାତ୍ ଆକାଶ, ଜଳ, ଅଗ୍ନି, ମୃତ୍ତିକା ଓ ବାୟୁ । ଏଥିମଧ୍ୟରୁ ଜ୍ୟୋତିଷଶାସ୍ତ୍ର ଆକାଶ ବା ଅନ୍ତରୀକ୍ଷରେ ଥିବା ଜ୍ୟୋତିର୍ମୟ ଗ୍ରହନକ୍ଷତ୍ରର ପ୍ରଭାବକୁ ଅଧ୍ୟୟନ କରେ । ଅନ୍ୟ ଚାରୋଟି ଉପାଦାନ ଜଳ, ଅଗ୍ନି, ମୃତ୍ତିକା ଓ ବାୟୁକୁ ନେଇ ବାସ୍ତୁଶାସ୍ତ୍ର ସୃଷ୍ଟି । ଏହି ଚାରିପ୍ରକାର ଉପାଦାନ କେଉଁ ଦିଗରେ ରହିଲେ ତା'ର ପ୍ରଭାବ କିପରି ହୁଏ, ତାହା ବାସ୍ତୁଶାସ୍ତ୍ର ନିର୍ଣ୍ଣୟ କରେ । ଐଶାନ୍ୟ କୋଣ ବା ଉତ୍ତର-ପୂର୍ବ କୋଣ ହେଉଛି ଜଳୀୟ କୋଣ, ଦକ୍ଷିଣ-ପୂର୍ବ କୋଣ ହେଲା ଅଗ୍ନି କୋଣ, ଦକ୍ଷିଣ-ପଶ୍ଚିମ କୋଣ ହେଲା ମୃତ୍ତିକା ବା ନୈଋତ କୋଣ, ଉତ୍ତର-ପଶ୍ଚିମ କୋଣ ହେଲା ବାୟବ୍ୟ କୋଣ । ଏହି ଦିଗଗୁଡ଼ିକରେ ସେହି ସଂକ୍ରାନ୍ତୀୟ ବସ୍ତୁ ବା ଉପାଦାନ ରହିଲେ ବାସ୍ତୁଶାସ୍ତ୍ରର ସମତା ରହେ, କିନ୍ତୁ ଭାରତ ଭୂଖଣ୍ଡରେ ଏହାର ବ୍ୟତିକ୍ରମ ଘଟୁଛି । କାରଣ ଭାରତର ଐଶାନ୍ୟ କୋଣରେ ତୁଙ୍ଗ ହିମାଳୟ ପର୍ବତ ଏବଂ ନୈଋତ କୋଣରେ ବଙ୍ଗୋପସାଗର ଓ ଆରବସାଗର ଅବସ୍ଥିତ କିନ୍ତୁ ଭାରତର ଅଗ୍ନିକୋଣରେ ଶ୍ରୀମନ୍ଦିର ଅବସ୍ଥିତ ଏବଂ ତାହାର ଅଗ୍ନି କୋଣରେ ପୃଥିବୀର ବୃହତ୍ତ ଚୂଲା ରହିଛି । ରୋଷଶାଳାରେ ଅଗ୍ନି ପ୍ରଜ୍ୱଳିତ ହୋଇ ଭାରତର ବାସ୍ତୁକୁ ସନ୍ତୁଳିତ କରୁଛି । ଏହି ରୋଷଶାଳାରେ କେବେ ଅଗ୍ନି ନିର୍ବାପିତ ହୁଏ ନାହିଁ । ଶ୍ରୀମନ୍ଦିରର ବାସ୍ତୁ ଅଖଣ୍ଡ ଭାରତର ସମୃଦ୍ଧିର ପରିଚାୟକ । ଏହିସବୁ ଦୃଷ୍ଟିକୋଣରୁ ମହାପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ଅଖଣ୍ଡ ଭାରତ-ଭୂମିର 'ବାସ୍ତୁପୁରୁଷ' ।

ପ୍ରଭୁ ଜଗନ୍ନାଥ ହିଁ ନବଗ୍ରହ, ସମ୍ପୂର୍ଣ୍ଣ ରାଶିଚକ୍ର ଓ ନକ୍ଷତ୍ରମଣ୍ଡଳ । ତିନିଠାକୁର ଅର୍ଥାତ୍- ଲଗ୍ନ, ରାଶି ଓ ନକ୍ଷତ୍ର, ସୃଷ୍ଟି, ସ୍ଥିତି ଓ ବିଲୟ, ଦିବସ, ସନ୍ଧ୍ୟା ଓ ରାତ୍ର, ଜଳ, ସ୍ଥଳ ଓ ଆକାଶ, ଆଦ୍ୟ, ମଧ୍ୟ ଓ ଅନ୍ତ, ଜୀବନ, ଯୌବନ ଓ ମୃତ୍ୟୁ ବା ମୁକ୍ତି ।





## ୧୫) ସର୍ବଧର୍ମର ସମନ୍ୱୟ

ଶ୍ରୀଜଗନ୍ନାଥ ସଂସ୍କୃତିକୁ ସର୍ବଧର୍ମର ଉତ୍ସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଶ୍ରୀଜଗନ୍ନାଥଙ୍କ କ୍ଷେତ୍ରରୁ ବହୁ ମନୀଷୀ, ସାଧୁ, ସନ୍ଥ ସେମାନଙ୍କର ଆଧାତ୍ମିକ ସାଧନା ସଫଳ କରି ସାରା ବିଶ୍ୱରେ ଜଗନ୍ନାଥଙ୍କ ମୂଳତତ୍ତ୍ୱ ପ୍ରଚାର କରିଯାଇଛନ୍ତି । ବିଭିନ୍ନ ଧର୍ମ ବିଶେଷତଃ ଖ୍ରୀଷ୍ଟଧର୍ମ, ଇସ୍‌ଲାମ ଧର୍ମ, ବୌଦ୍ଧ ଧର୍ମ ଓ ଜୈନ ଧର୍ମରେ ଶ୍ରୀଜଗନ୍ନାଥ ସଂସ୍କୃତିର ଉଣାଅଧିକେ ପ୍ରଭାବ ଦେଖିବାକୁ ମିଳେ । ଖ୍ରୀଷ୍ଟଧର୍ମ-କେତେକ ତଥ୍ୟାନୁଯାୟୀ ଯୀଶୁଖ୍ରୀଷ୍ଟ ଶ୍ରୀଜଗନ୍ନାଥଙ୍କ କ୍ଷେତ୍ରକୁ ଆସି ଆଧାତ୍ମିକ ସାଧନାରେ ସଫଳ ହୋଇ ଈଶ୍ୱରଙ୍କ ଦୂତ ଭାବରେ ସାରା ପୃଥିବୀରେ ମାନବବାଦର ପ୍ରଚାର କରିଥିଲେ । ବାଇବେଲରେ ଯୀଶୁଖ୍ରୀଷ୍ଟଙ୍କ ଜୀବନୀ ଅଧ୍ୟାୟରେ ମଧ୍ୟାବସ୍ଥାର ସାତ ବର୍ଷ ଯୀଶୁଙ୍କ ଅବସ୍ଥିତି ସମ୍ବନ୍ଧରେ କୌଣସି ସୂଚନା ନାହିଁ । ସେହି ସାତ ବର୍ଷକାଳ ଯୀଶୁ ଭାରତର ହିମାଳୟ ଅଞ୍ଚଳ ଏବଂ ବଙ୍ଗୋପସାଗର କୂଳରେ ଶ୍ରୀଜଗନ୍ନାଥଙ୍କ କ୍ଷେତ୍ରରେ ଅବସ୍ଥାନ କରିଥିବା ପ୍ରମାଣିତ ହୋଇଛି । ଉତ୍ତର ଭାରତର ହିମାଳୟସ୍ଥିତ ବଦ୍ରିନାଥ ସନ୍ନିକଟ ଏକ ସ୍ଥାନର ନାମକରଣ ହେଲା 'ଯୋଶୀମଠ' ଏବଂ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ସନ୍ନିକଟରେ ମଧ୍ୟ 'ଯୋଶୀମଠ' ଅବସ୍ଥିତ । ସେହି ନାମକରଣରୁ ମନେହୁଏ ଯୀଶୁ ଏହି ଦୁଇସ୍ଥାନରେ ଆଧାତ୍ମିକ ସାଧନା କରିଥିଲେ ଏବଂ ତାଙ୍କ ନାମ ଅନୁଯାୟୀ ରଖାଯାଇଥିଲା 'ଯୀଶୁମଠ' ଯାହା ପରବର୍ତ୍ତୀ ସମୟରେ ଅପଭ୍ରଂଶ ହୋଇ 'ଯୋଶୀମଠ' ଭାବରେ ପରିଚିତ ହେଲା ।

**ଇସ୍‌ଲାମ ଧର୍ମ -** ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥଙ୍କର ଇସ୍‌ଲାମ ଧର୍ମ ସହ ମଧ୍ୟ ସମ୍ପର୍କ ରହିଛି । ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିର ଚୂଡ଼ାରେ ନୀଳଚକ୍ର ଶିଖରରେ ପତିତପାବନ ବାନା ଶୋଭାବର୍ଦ୍ଧନ କରୁଛି । ସେହି ବାନାରେ ଇସ୍‌ଲାମ ଧର୍ମର ପ୍ରତୀକ 'ଚନ୍ଦ୍ର ଓ ତାରା' ଶୋଭାପାଏ । ଏଥିରୁ ମନେହୁଏ ପ୍ରଭୁ ଜଗନ୍ନାଥ ଇସ୍‌ଲାମ ଧର୍ମର ମଧ୍ୟ ପ୍ରତିନିଧିତ୍ୱ କରନ୍ତି । ଶ୍ରୀଜଗନ୍ନାଥଙ୍କ ବସ୍ତ୍ର ପରିଧାନ ଶୈଳୀ ମଧ୍ୟ ପ୍ରାୟତଃ ମୁସଲମାନମାନଙ୍କ ଭଳି । ମୁସଲମାନମାନେ ଯେପରି ଲୁଙ୍ଗି ପିନ୍ଧନ୍ତି, ପ୍ରଭୁ ଜଗନ୍ନାଥ ପ୍ରାୟତଃ ସେହିପରି ବସ୍ତ୍ର ପରିଧାନ କରନ୍ତି ।

**ବୌଦ୍ଧଧର୍ମ -** ଶ୍ରୀଜଗନ୍ନାଥଙ୍କ ସହ ବୌଦ୍ଧଧର୍ମର ସମ୍ପର୍କ ପ୍ରମାଣିତ । ଶ୍ରୀଜଗନ୍ନାଥଙ୍କୁ ଦଶାବତାର ସ୍ୱରୂପ ଭାବରେ ବର୍ଣ୍ଣନା କରାଯାଇଛି । ଦଶାବତାର ସ୍ୱରୂପ ମଧ୍ୟରେ ବୁଦ୍ଧଙ୍କ ଅବତାର ଗୋଟିଏ । ବୌଦ୍ଧ ଧର୍ମାବଲମ୍ବୀମାନେ ବିଶ୍ୱାସ କରନ୍ତି, ଜଗନ୍ନାଥଙ୍କର ନାଭି କ୍ଷେତ୍ରରେ ବୁଦ୍ଧଙ୍କର ପବିତ୍ର ଦାନ୍ତ ରହିଛି । ବୌଦ୍ଧଧର୍ମର ଆଦର୍ଶ ଯଥା ସତ୍‌ଚିନ୍ତା, ସତ୍‌ଜ୍ଞାନ, ସତ୍‌କର୍ମ, ଦୟା, କ୍ଷମା, କରୁଣା, ସମତା ଓ ମାନବିକତା ଭଳି ଶ୍ରୀଜଗନ୍ନାଥ ବିଶ୍ୱଭ୍ରାତୃଭାବର ବାର୍ତ୍ତାବହ ।

**ଜୈନଧର୍ମ -** ଜୈନଧର୍ମର ମୂଳତତ୍ତ୍ୱ ହେଲା 'କୈବଲ୍ୟ' ପ୍ରାପ୍ତି । ତିନି ରତ୍ନ ଉପରେ କୈବଲ୍ୟ ପର୍ଯ୍ୟବସିତ, ଅର୍ଥାତ୍ ସତ୍‌ଜ୍ଞାନ, ସତ୍‌ଚିନ୍ତା ଓ ସତ୍‌କର୍ମ । ଶ୍ରୀଜଗନ୍ନାଥ ତତ୍ତ୍ୱ ସହିତ ଏହାର ସାମଞ୍ଜସ୍ୟ ରହିଛି । ତିନିଠାକୁର ଜୈନଧର୍ମର 'ତ୍ରିରତ୍ନ'କୁ ପ୍ରତିନିଧିତ୍ୱ କରନ୍ତି ।

### ଉତ୍କଳୀୟ ସଂସ୍କୃତି

ଉତ୍କଳୀୟ ସଂସ୍କୃତି ପୂର୍ଣ୍ଣତାର ପରିଭାଷା । ଏହି ସଂସ୍କୃତି ହିଁ ଜଗନ୍ନାଥ ସଂସ୍କୃତି । ଏହାର ପରିଚୟ ଆମର ଭାଷା, ସାହିତ୍ୟ, ସାମାଜିକ, ଚଳଣି, ବିଶ୍ୱାସ ଇତ୍ୟାଦିରେ ପ୍ରସ୍ଫୁଟିତ । ଆମ ଭାଷା ବି ଏକ ଲିଙ୍ଗବିହୀନ ଭାଷା । ଉଦାହରଣ ସ୍ୱରୂପ - 'ସେ ଆସୁଅଛି' କହିଲେ ଆମେ ବୁଝିପାରୁନାହୁଁ 'ସେ ଝିଅଟି ଆସୁଛି ନା ପୁଅଟି ଆସୁଛି' । କିନ୍ତୁ ଅନ୍ୟ ଭାଷାରେ ଏହାର ବିଭେଦ ସ୍ପଷ୍ଟ ବାରିହୁଏ । କିନ୍ତୁ ଆମ ଭାଷା ଜଗନ୍ନାଥ ସଂସ୍କୃତିର ବିଶ୍ୱଭ୍ରାତୃଭାବ ଉପରେ ପର୍ଯ୍ୟବସିତ । ଯେଉଁଠାରେ ଭିନ୍ନତାର ସୂଚନା, ପ୍ରଭେଦ କିମ୍ବା ବିଭେଦର ସୂଚନା ନାହିଁ । ଶ୍ରୀଜଗନ୍ନାଥ ବ୍ରହ୍ମଙ୍କ ପ୍ରତୀକ । ବ୍ରହ୍ମ, କୌଣସି ଲିଙ୍ଗର ସୂଚକ ନୁହଁନ୍ତି । ଠିକ୍ ସେହିପରି ଆମ ଭାଷା ଜଗନ୍ନାଥଙ୍କ ସେହି ଶୂନ୍ୟତତ୍ତ୍ୱରୁ ଆସିଥିବା ହେତୁ ତାହା ଲିଙ୍ଗବିହୀନ ବିଶ୍ୱଭ୍ରାତୃଭାବର ବାର୍ତ୍ତାବହ । ଆମ ଭାଷାର ପ୍ରତ୍ୟେକ ଅକ୍ଷର ଦେଖିବାକୁ ପୂର୍ଣ୍ଣଗୋଲ ବା ଅର୍ଦ୍ଧଗୋଲ, ଠିକ୍ ଚକାଆଖି ସଦୃଶ । ଆମ ସଂସ୍କୃତି, ଜାତି, ଧର୍ମ, ବର୍ଣ୍ଣ, ଭାଷା, ଗୋଷ୍ଠୀ, ଅଞ୍ଚଳରୁ ଊର୍ଦ୍ଧ୍ୱରେ ରହି ବିଶ୍ୱଭ୍ରାତୃଭାବକୁ ପ୍ରତିନିଧିତ୍ୱ କରୁଛି ।

'ଜଗନ୍ନାଥ' ଶବ୍ଦର ଅର୍ଥ ହେଲା ସେ ଜଗତ୍‌ମୟ, ବିଶ୍ୱରୁ ଊର୍ଦ୍ଧ୍ୱ, ସାର୍ବଜନୀନ ଏବଂ ଅଭିନ୍ନତାର ପରିଭାଷା । 'ଜଗନ୍ନାଥ' ଶବ୍ଦକୁ ବିଶ୍ଳେଷଣ କଲେ ସେହି ଚାରୋଟି ଅକ୍ଷରର ସ୍ୱତନ୍ତ୍ର ତତ୍ତ୍ୱ ରହିଛି ।

**'ଜ'**- ଅର୍ଥାତ୍ ସେ ଜଗତ୍‌ମୟ, ଜ୍ୟୋତିସ୍ୱରୂପ ଯିଏ କି ଜନ୍ମମୃତ୍ୟୁ ଚକ୍ରରୁ ଊର୍ଦ୍ଧ୍ୱରେ । ଅର୍ଥାତ୍ ଅଜୋନିସମ୍ଭୂତ ।

**'ଗ'**- ସେ ସମସ୍ତ ଗଣକୁ ପ୍ରତିନିଧିତ୍ୱ କରନ୍ତି । ସୁରଗଣ, ଅସୁରଗଣ, ଦେବଗଣ, ମାନବଗଣ, କୀଟପତଙ୍ଗ ଗଣଙ୍କଠାରୁ ଆରମ୍ଭ କରି ଗ୍ରହନକ୍ଷତ୍ରଗଣଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ପ୍ରତିନିଧିତ୍ୱ କରନ୍ତି ।





**'ନା'**- ସେ ନାନା ରୂପରେ ବିରାଜମାନ । ଯଥା- ଜ୍ୟୋତିଷାଚାର୍ଯ୍ୟମାନେ ତାଙ୍କୁ ଶନିଙ୍କ ପ୍ରତୀକ, ଶାକ୍ତମାନେ ଦକ୍ଷିଣକାଳୀଙ୍କ ପ୍ରତୀକ, ବୈଷ୍ଣବାଚାର୍ଯ୍ୟମାନେ ବିଷ୍ଣୁଙ୍କ ପ୍ରତୀକ, ବୌଦ୍ଧଧର୍ମାବଲମ୍ବୀମାନେ ବୁଦ୍ଧଙ୍କ ଅବତାର ରୂପେ ଗ୍ରହଣ କରିଛନ୍ତି ।

**'ଥ'**- ଯାହାକୁ ଥରେ ମାତ୍ର ଦର୍ଶନ କଲେ, ଏ ଜୀବ ଜୀବନଚକ୍ରରୁ ମୁକ୍ତି ପାଇ ମୋକ୍ଷପ୍ରାପ୍ତି ହୁଏ । ସେ ହେଉଛନ୍ତି ଜଗନ୍ନାଥ ।

**ଶ୍ରୀକ୍ଷେତ୍ରରେ ଆବଶ୍ୟକୀୟ ସଂସ୍କାର**

ଭାରତବର୍ଷର ସବୁତୀର୍ଥକ୍ଷେତ୍ରଠାରୁ ଆମ ଶ୍ରୀକ୍ଷେତ୍ର ବିଶାଳ, ପ୍ରାଚୀନ ଏବଂ ଏହାର ମହନୀୟତା ସାର୍ବଜନୀନ ଭାବରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଏହା ଉପଲବ୍ଧି ହୋଇଛି । ଏହାର ଅନେକ ଉଦାହରଣ ଆମ ଇତିହାସ, ପୁରାଣ ଓ କିମ୍ବଦନ୍ତୀରେ ବର୍ଣ୍ଣିତ । କିନ୍ତୁ, ଆମ ଶ୍ରୀମନ୍ଦିରର ବ୍ୟବସ୍ଥାରେ ଉନ୍ନତି ଆବଶ୍ୟକ ଏବଂ ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି । କେବଳ ପ୍ରଶାସନ, ଶ୍ରୀମନ୍ଦିର ସେବାୟତ, ପୂଜାପଣ୍ଡା, ଗଜପତି କିମ୍ବା ସରକାରଙ୍କ ଉପରେ ଏହାର ସମ୍ପୂର୍ଣ୍ଣ ଦାୟିତ୍ୱ ରହିଛି ତାହା ନୁହେଁ । ଏହା ପ୍ରତ୍ୟେକ ଓଡ଼ିଆଙ୍କର ସ୍ୱାଭିମାନର ପ୍ରଶ୍ନବାଚୀ । ଯେଉଁ ଠାକୁର ସାରା ବିଶ୍ୱରୁ ଊର୍ଦ୍ଧ୍ୱ ଏବଂ ଜଗତକୁ ପ୍ରତିନିଧିତ୍ୱ କରନ୍ତି ଏବଂ ବିଶ୍ୱଭ୍ରାତୃଭାବର ବାର୍ତ୍ତାବହ ସେପରି କ୍ଷେତ୍ର ଆମ ଉତ୍କଳରେ ସ୍ଥାନିତ ହୋଇଛି, ତାହା ଆମ ପାଇଁ ଗର୍ବ ଓ ଗୌରବର କଥା । କିନ୍ତୁ, ସମୟାନୁକ୍ରମେ ତାହାର ସଂସ୍କାର ଅତ୍ୟନ୍ତ ଜରୁରୀ ଆବଶ୍ୟକତା ମନେ ହେଉଛି । ନିମ୍ନଲିଖିତ ସଂସ୍କାରପ୍ରତି ଆମ୍ଭେମାନେ ଯଦି ଯତ୍ନବାନ୍ ହେବା ତାହା ହେଲେ ଆମ ଶ୍ରୀମନ୍ଦିରର ଶ୍ରୀବୃଦ୍ଧି ଘଟିବା ସହିତ ଆମ ସଂସ୍କୃତି ରୁଚିମନ୍ତ ଓ ବୁଦ୍ଧିମନ୍ତ ହୋଇ ବିଶ୍ୱଦରବାରରେ ଆମ ଜାତିର ଗୌରବ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

୧. ରାଜଧାନୀ ଭୁବନେଶ୍ୱରରୁ ପୁରୀ ସଂଲଗ୍ନ ରାସ୍ତାକୁ ପ୍ରଶସ୍ତ କରାଯାଉ

ଆମ ରାଜଧାନୀ ଭୁବନେଶ୍ୱରରୁ କଟକ ରାସ୍ତା ଭଳି ଚାରିଲେନ୍ ବିଶିଷ୍ଟ ରାସ୍ତାରେ ଭୁବନେଶ୍ୱର ଓ ପୁରୀକୁ ସଂଯୋଗ କରାଯାଉ ।

୨. ପୁରୀଧାମର ଏକ ସ୍ୱତନ୍ତ୍ର ତୋରଣ ବ୍ୟବସ୍ଥା କରାଯାଉ

ପ୍ରତ୍ୟେକ ତୀର୍ଥକ୍ଷେତ୍ରରେ ଏକ ସ୍ୱତନ୍ତ୍ର ତୋରଣ ବ୍ୟବସ୍ଥା ହୋଇଥାଏ । ତୋରଣ ସେହି ତୀର୍ଥକ୍ଷେତ୍ରକୁ ଯାତ୍ରୀମାନଙ୍କୁ ସ୍ୱାଗତ କରିଥାଏ । କିନ୍ତୁ ଆମ ଜଗନ୍ନାଥ କ୍ଷେତ୍ର ଭାରତବର୍ଷର ବିଶିଷ୍ଟ ଧାମ ହେଲେ ମଧ୍ୟ ସେହି କ୍ଷେତ୍ରରେ କୌଣସି ସୁନ୍ଦର, ସୁସଜ୍ଜିତ ତୋରଣର ବ୍ୟବସ୍ଥା ନାହିଁ । ଏକ ସ୍ୱତନ୍ତ୍ର ତୋରଣ ପ୍ରତିଷ୍ଠା ହେଲେ ତାହା ଯାତ୍ରୀମାନଙ୍କୁ ଆକୃଷ୍ଟ କରିବାରେ ସହାୟକ ହେବ ।

୩. ଶ୍ରୀମନ୍ଦିର ତରଫରୁ ସ୍ୱତନ୍ତ୍ର ଯାତାୟତ ବ୍ୟବସ୍ଥା ଭୁବନେଶ୍ୱର ଓ ପୁରୀ ମଧ୍ୟରେ କରାଯାଉ ।

ଅନ୍ୟ ରାଜ୍ୟଗୁଡ଼ିକରେ ଏପରିକି ଆନ୍ଧ୍ରର ତିରୁପତିରେ ଯେପରି ସେହି ତୀର୍ଥ ସଂସ୍ଥା ତରଫରୁ ଯାତ୍ରୀମାନଙ୍କ ଯିବାଆସିବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଛି । ସେହିପରି ଭୁବନେଶ୍ୱର ଓ ପୁରୀ ମଧ୍ୟରେ ବ୍ୟବସ୍ଥା କରାଯାଉ ।

୪. ପୁରୀଠାରେ ଶ୍ରୀମନ୍ଦିର ତରଫରୁ ଯାତ୍ରୀନିବାସର ବ୍ୟବସ୍ଥା କରାଯାଉ ।

ଯେପରି ଶିରିଡ଼ି ଧାମରେ, ରାମେଶ୍ୱରରେ, ତିରୁପତିରେ, ବଦ୍ରିନାଥଠାରେ ମନ୍ଦିର ତରଫରୁ ଯାତ୍ରୀମାନଙ୍କ ପାଇଁ ଯାତ୍ରୀନିବାସ ସୁଲଭ ମୂଲ୍ୟରେ ଯୋଗାଇ ଦିଆଯାଉଛି, ସେହିପରି ବ୍ୟବସ୍ଥା ଶ୍ରୀମନ୍ଦିର ତରଫରୁ ରଖାଯାଉ ।

୫. ସମୁଦ୍ରକୂଳରେ ଶ୍ରୀମନ୍ଦିରର ଯାତ୍ରୀନିବାସ ପ୍ରତିଷ୍ଠା କରାଯାଉ ଏବଂ ଯାତ୍ରୀମାନଙ୍କୁ ଶ୍ରୀମନ୍ଦିରରୁ ଯାତ୍ରୀନିବାସ ପର୍ଯ୍ୟନ୍ତ ଯାତାୟାତର ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଉ ।

୬. ଅନ୍ୟ ତୀର୍ଥକ୍ଷେତ୍ର ଯଥା- ବୈଷ୍ଣୋ ଦେବୀ, ତିରୁପତି ଓ ଅନ୍ୟାନ୍ୟ କ୍ଷେତ୍ରରେ ଯାତ୍ରୀମାନଙ୍କୁ ଆକୃଷ୍ଟ କରିବା ପାଇଁ ଯେପରି ହେଲିକ୍ୟାପ୍ଟର ଓ ହେଲିପ୍ୟାଡ଼ର ବ୍ୟବସ୍ଥା କରାଯାଇଛି । ପୁରୀଠାରେ ସେହି ବ୍ୟବସ୍ଥା କରାଗଲେ ଆମ ଜଗନ୍ନାଥ ସଂସ୍କୃତିର ପ୍ରସାର ଓ ପ୍ରଚାର ହେବ ।

୭. ଅନ୍ୟ ତୀର୍ଥକ୍ଷେତ୍ରରେ ଯେପରି ଶୃଙ୍ଖଳା ପ୍ରସାଦର ବିକ୍ରୟ ବ୍ୟବସ୍ଥା ରହିଛି । ମହାପ୍ରସାଦର ଗୁଣ ଓ ମାନ ପ୍ରତି ଧ୍ୟାନ ଦେଇ ଯାତ୍ରୀମାନଙ୍କ ପାଇଁ ତାହା ବିକ୍ରୟର ବ୍ୟବସ୍ଥା କରାଯାଉ ।

୮. ଶ୍ରୀମନ୍ଦିରର ସ୍ୱତନ୍ତ୍ର ସ୍ଥାନରେ ଘିଅଦୀପ, ଅଗରବତୀ, ଫୁଲମାଳ, ତୁଳସୀ ଓ ଅମଣିଆ ଭୋଗର ବିକ୍ରୟ ବ୍ୟବସ୍ଥା କରାଯାଉ

ଅନ୍ୟାନ୍ୟ ତୀର୍ଥକ୍ଷେତ୍ରରେ ଯେପରି ମନ୍ଦିର ପ୍ରଶାସନ ପକ୍ଷରୁ ମନ୍ଦିରର ପୂଜା ଦୋକାନର ବ୍ୟବସ୍ଥା କରାଯାଇଛି, ସେହି ଢାଞ୍ଚାରେ ଆମ ଶ୍ରୀମନ୍ଦିରରେ ପ୍ରଶାସନ ତରଫରୁ ସ୍ୱତନ୍ତ୍ର ପୂଜାସାମଗ୍ରୀ

ଦୋକାନର ବ୍ୟବସ୍ଥା ହୋଇ ସେଠାରେ ଘିଅଦୀପ, ଅଗରବତୀ, ଫୁଲ, ତୁଳସୀ ଓ ଅମଣିଆ ଭୋଗ ବିକ୍ରୟର ବ୍ୟବସ୍ଥା କରାଯାଉ ।

୯. ଶ୍ରୀମନ୍ଦିର ତରଫରୁ ଶ୍ରୀଜଗନ୍ନାଥ ଫଟୋ, ଛଡ଼ା ତୁଳସୀମାଳ, ନିର୍ମାଲ୍ୟ ବିକ୍ରୟ ବ୍ୟବସ୍ଥା କରାଯାଉ ।

୧୦. ପୁରାତନ ଭଜନ କ୍ୟାସେଟ୍, ସିଡି, ପୁସ୍ତକ, ମୁଦ୍ରିକା, କ୍ୟାଲେଣ୍ଡର, ଜୀଉଙ୍କର ଶ୍ରୀଅଙ୍ଗଛଡ଼ା ଚନ୍ଦନ, ଶ୍ରୀଅଙ୍ଗବସ୍ତ୍ର, ତୁଳସୀମାଳ ବିକ୍ରୟ କରାଯାଉ ।

୧୧. ଶ୍ରୀଜଗନ୍ନାଥଙ୍କର ସ୍ୱର୍ଣ୍ଣ, ରୌପ୍ୟ ଓ ତାମ୍ରଫଳକ, ଲକେଟ୍ ଓ ମୁଦ୍ରିକା ବିକ୍ରୟର ବ୍ୟବସ୍ଥା କରାଯାଉ ।

ଅନ୍ୟ ତୀର୍ଥକ୍ଷେତ୍ର ଯଥା- ବୈଷ୍ଣୋ ଦେବୀ, ତିରୁପତି, ଶିରିଡ଼ି କ୍ଷେତ୍ରରେ ଠାକୁରଙ୍କ ଚିତ୍ର ସମ୍ବଳିତ ସ୍ୱର୍ଣ୍ଣ, ରୌପ୍ୟ ଓ ତାମ୍ର ଲକେଟ ଇତ୍ୟାଦି ମୁଦ୍ରିକା ବିକ୍ରୟ ହୁଏ । ଆମ ଶ୍ରୀକ୍ଷେତ୍ରରେ ଆମ ଜୀଉଙ୍କର ଚିତ୍ର ସମ୍ବଳିତ ଏପରି ସ୍ୱର୍ଣ୍ଣ, ରୌପ୍ୟ ଓ ତାମ୍ର ଲକେଟ ଫଳକ ବିକ୍ରୟ ବ୍ୟବସ୍ତା କରାଯାଉ ।

୧୨. ଦାନହୁଣ୍ଡିର ସ୍ୱତନ୍ତ୍ର ବ୍ୟବସ୍ଥା ଶ୍ରୀମନ୍ଦିର ଚତୁଃଦ୍ୱାରରେ, ପୁରୀ ରେଲୱେ ଷ୍ଟେସନ୍, ବସ୍‌ଷ୍ଟାଣ୍ଡ, ସମୁଦ୍ରକୂଳ ନିକଟରେ ରଖିବାର ବ୍ୟବସ୍ଥା କରାଯାଉ ।

୧୩. ରାଜଧାନୀର ମୁଖ୍ୟ ଷ୍ଟେସନ୍, ବସ୍‌ଷ୍ଟାଣ୍ଡ, ପୋଷ୍ଟଅଫିସ୍, ବ୍ୟାଙ୍କ କାର୍ଯ୍ୟାଳୟ ନିକଟରେ ଜଗନ୍ନାଥଙ୍କର ହୁଣ୍ଡି ରଖିବା ବ୍ୟବସ୍ଥା କରାଯାଉ ।

୧୪. ଆନନ୍ଦ ବଜାର ସମ୍ପୂର୍ଣ୍ଣ ମରାମତି ହୋଇ ଖରା, ବର୍ଷା, ଶୀତରେ ଯାତ୍ରୀମାନଙ୍କ ନିମନ୍ତେ ସଦ୍ୟ ଭୋଜନ ବ୍ୟବସ୍ଥା କରାଯାଉ ।

୧୫. ପାନୀୟ ଜଳର ସ୍ୱତନ୍ତ୍ର ବ୍ୟବସ୍ଥା ଶ୍ରୀମନ୍ଦିର ଭିତରେ କରାଯାଉ ଏବଂ ହସ୍ତପ୍ରକ୍ଷାଳନର ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଉ ।

୧୬. ପ୍ରସାଦ କୁପନ୍‌ର ବ୍ୟବସ୍ଥା ହୋଇ ଭୋଜନାଳୟର ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଉ ।

ଶିରିଡ଼ି, ତିରୁପତି ଓ ଅନ୍ୟାନ୍ୟ ଧର୍ମକ୍ଷେତ୍ରରେ ଦଶହଜାର ଲୋକ ଏକ ସମୟରେ ବସି ପ୍ରସାଦ ସେବନର ବ୍ୟବସ୍ଥା ରହିଛି । ସେହିପରି ଏକ ଭୋଜନାଳୟର ବ୍ୟବସ୍ଥା ଆମ ଶ୍ରୀକ୍ଷେତ୍ରରେ କରାଯାଉ ।

୧୭. ପ୍ରତ୍ୟେକ ଯାତ୍ରୀମାନଙ୍କଠାରୁ ଦର୍ଶନ ପ୍ରଣାମୀ ଟ.୧୦.୦୦ ଆଦାୟ ହୋଇ ତାହା ଶ୍ରୀମନ୍ଦିରର ବ୍ୟବସ୍ଥା ପାଇଁ ଖର୍ଚ୍ଚ କରାଯାଉ ।

୧୮. ପ୍ରତ୍ୟେକ ସେବାକାରୀ, ସେବାୟତଙ୍କ ନିମନ୍ତେ ଶ୍ରୀମନ୍ଦିର କମିଟି ଅନୁମୋଦନ ହୋଇ ସରକାରଙ୍କ ତରଫରୁ ମାସିକ ଦରମାର ବ୍ୟବସ୍ଥା କରାଯାଉ ।

୧୯. ଶ୍ରୀମନ୍ଦିର ମଧରେ ପଣ୍ଡାମାନେ କୌଣସି ଯାତ୍ରୀମାନଙ୍କଠାରୁ ଦକ୍ଷିଣା ମାଗିବା ବ୍ୟବସ୍ଥାକୁ କଡ଼ାକଡ଼ି ଭାବରେ ବନ୍ଦ କରାଯାଉ ।

୨୦. ଶ୍ରୀମନ୍ଦିର ସୁରକ୍ଷାକର୍ମୀଙ୍କ ନିମନ୍ତେ ସ୍ୱତନ୍ତ୍ର ପୋଷାକ ବ୍ୟବସ୍ଥା କରାଯାଉ ।

୨୧. କ୍ଲୋଜ୍ ସର୍କିଟ୍ କ୍ୟାମେରା ମନ୍ଦିରର ଚାରିପଟେ ଖଞ୍ଜା ହେଉ ।

୨୨. ସକାଳୁ ଓ ସନ୍ଧ୍ୟାରେ ଶ୍ରୀମନ୍ଦିର ମୁଖଶାଳା ନିକଟରେ ଶ୍ରୀଜଗନ୍ନାଥଙ୍କ ସ୍ୱତନ୍ତ୍ର ଭଜନ ପରିବେଷଣର ବ୍ୟବସ୍ଥା କରାଯାଉ ।

୨୩. ଶ୍ରୀମନ୍ଦିରର ଚତୁଃଦ୍ୱାରଠାରୁ ଅନତି ଦୂରରେ ସୁଲଭଶୌଚାଳୟର ବ୍ୟବସ୍ଥା କରାଯାଉ ।

୨୪. ଶ୍ରୀମନ୍ଦିରର ଚାରିପଟେ କ୍ଲୋକ୍‌ରୁମ୍ ବ୍ୟବସ୍ଥା କରାଯାଉ ।

୨୫. ଶ୍ରୀମନ୍ଦିର ପରିଷ୍କାର ପରିଚ୍ଛନ୍ନ ଦିଗରେ ଯଥେଷ୍ଟ ଧ୍ୟାନ ଦିଆଯାଉ ।

୨୬. ଓଡ଼ିଶାକୁ ଆସୁଥିବା ବୃହତ୍ ଶିଳ୍ପାୟନ ସଂସ୍ଥାକୁ ଏଠାରେ ଶିଳ୍ପପ୍ରତିଷ୍ଠା ପୂର୍ବରୁ ଶ୍ରୀମନ୍ଦିରକୁ ସ୍ୱତନ୍ତ୍ର ଅନୁଦାନ ଦେବା ପାଇଁ ସରକାରଙ୍କ ତରଫରୁ ଅନୁରୋଧ କରାଯାଉ ।

୨୭. ଶ୍ରୀଜଗନ୍ନାଥଙ୍କ ସଂସ୍କୃତି ଉପରେ ଗବେଷଣାଗାର ଭୁବନେଶ୍ୱର ଓ ପୁରୀରେ ଖୋଲାଯାଉ ଏବଂ ଓଡ଼ିଶାର ସାଧୁ, ପଣ୍ଡିତ ଓ ଜଗନ୍ନାଥପ୍ରେମୀ ବ୍ୟକ୍ତିବିଶେଷଙ୍କୁ ଜଗନ୍ନାଥ ସଂସ୍କୃତି ପ୍ରଚାର ଓ ପ୍ରସାର କରିବା ପାଇଁ ଶ୍ରୀମନ୍ଦିର ତରଫରୁ ସୁଯୋଗ ସୃଷ୍ଟି କରାଯାଉ ।

୨୮. ଶ୍ରୀମନ୍ଦିର ତରଫରୁ 'ଶ୍ରୀଜଗନ୍ନାଥ ବିଶ୍ୱ ଭ୍ରାତୃଭାବ ଆନ୍ତର୍ଜାତିକ' ପୁରସ୍କାର ପ୍ରୋତ୍ସାହନ ଶ୍ରୀଜଗନ୍ନାଥତତ୍ତ୍ୱ ତଥା ବିଶ୍ୱଭ୍ରାତୃଭାବ ପ୍ରଚାର କରିଥିବା ବ୍ୟକ୍ତି କିମ୍ବା ଅନୁଷ୍ଠାନକୁ ମନ୍ଦିର ପରିଚାଳନାର ଅଧକ୍ଷ, ଶ୍ରୀମନ୍ଦିରର ପୂଜାପଣ୍ଡା, ମୁଖ୍ୟ ଦଇତାପତି, ଗଜପତି ଓ ଓଡ଼ିଶାର ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ, ବାଚସ୍ପତି, ବିରୋଧୀଦଳ ନେତା ତଥା ଗଣ୍ୟମାନ୍ୟ ବ୍ୟକ୍ତିମାନଙ୍କ ଜରିଆରେ ଏହି ପୁରସ୍କାର ଦିଆଯାଉ ।

୨୯. ଓଡ଼ିଶାର ସବୁ ସମ୍ବାଦପତ୍ର, ଦୂରଦର୍ଶନ ଓ ରେଡ଼ିଓ ଗଣମାଧ୍ୟମ ଜଗନ୍ନାଥଙ୍କ ତତ୍ତ୍ୱ ପ୍ରସାରଣ ଦିଗରେ ଯଥେଷ୍ଟ ଧ୍ୟାନ ଦେବା ସହ ଆମ ସଂସ୍କୃତିକୁ ଉଜ୍ଜୀବିତ କରିବା ପାଇଁ ସରକାରଙ୍କ ତରଫରୁ ବ୍ୟବସ୍ଥା ହେଉ ।

୩୦. ଶ୍ରୀଜଗନ୍ନାଥଙ୍କ ଯାନିଯାତ୍ରା, ବିଭିନ୍ନ ପର୍ବପର୍ବାଣି, ଶ୍ରୀଜଗନ୍ନାଥଙ୍କ ନବ ଦିନବ୍ୟାପୀ ଘୋଷଯାତ୍ରା ଓଡ଼ିଶାର ସବୁ ସମ୍ବାଦପତ୍ର, ଗଣମାଧ୍ୟମରେ ସ୍ୱତନ୍ତ୍ର ଭାବରେ ସ୍ଥାନିତ ହେବା ପାଇଁ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ଅନୁରୋଧ କରାଯାଇଛି ।

୩୧. ଯାତ୍ରୀମାନଙ୍କ ପ୍ରତି ହେଉଥିବା ଅସଦାଚାରଣ, ଅଶ୍ଳୀଳତା ପାଇଁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଦଣ୍ଡବିଧାନର ବ୍ୟବସ୍ଥା କରାଯାଉ ଏବଂ ଜନସାଧାରଣଙ୍କ ତରଫରୁ ଏହାକୁ ବିରୋଧ କରାଯାଉ ।

୩୨. ପ୍ରତ୍ୟେକ ଦର୍ଶନାର୍ଥୀ ବ୍ୟକ୍ତିଙ୍କୁ ମାଗଣାରେ ଶ୍ରୀଜଗନ୍ନାଥଙ୍କ ଛଡ଼ାତୁଳସୀ ଓ ଏକ ଲଡୁ ମହାପ୍ରସାଦ ପ୍ରଦାନ କରାଯାଉ ।

୩୩. ଶ୍ରୀମନ୍ଦିର ପ୍ରଶାସନ ତରଫରୁ ମାସିକ ଜଗନ୍ନାଥ ଧର୍ମୀ ପତ୍ରିକା ଓଡ଼ିଆ ଭାଷା ସହିତ ଅନ୍ୟାନ୍ୟ ଭାଷାରେ ସ୍ୱତନ୍ତ୍ର ଭାବରେ ହିନ୍ଦୀ ଓ ଇଂରାଜୀରେ ପ୍ରକାଶ ପାଇଲେ ଜଗନ୍ନାଥ ସଂସ୍କୃତିର ପ୍ରଚାର ଓ ପ୍ରସାର ହୋଇପାରନ୍ତା ।

୩୪. ଶ୍ରୀମନ୍ଦିର ଚତୁଃପାର୍ଶ୍ୱ ପରିଷ୍କାର ପରିଚ୍ଛନ୍ନ ରଖିବା ସଂଗେସଂଗେ ସମସ୍ତ ଭୋଜନାଳୟଗୁଡ଼ିକୁ କଡ଼ାକଡ଼ି ଭାବେ ଆମିଷ ଭୋଜନ ବ୍ୟବସ୍ଥାରୁ ନିଷେଧ କରାଯାଉ ।

୩୫. ସମ୍ପୂର୍ଣ୍ଣ ରୂପେ ଶ୍ରୀମନ୍ଦିର ପରିସରରେ ଯାତ୍ରୀମାନଙ୍କଦ୍ୱାରା ଦୀପ ପ୍ରଜ୍ୱଳନର ବ୍ୟବସ୍ଥା ବନ୍ଦ କରାଯାଉ ଏବଂ ଅନ୍ୟାନ୍ୟ ତୀର୍ଥକ୍ଷେତ୍ର ଭଳି ଆମ ଶ୍ରୀମନ୍ଦିରରେ ଦୀପ ପ୍ରଜ୍ୱଳନର ବ୍ୟବସ୍ଥା ଶ୍ରୀମନ୍ଦିର ସିଂହଦ୍ୱାର ଅରୁଣସ୍ତମ୍ଭ ନିକଟରେ କରାଯାଉ । ଫଳରେ ଆମ ଶ୍ରୀମନ୍ଦିର ପରିଷ୍କାର ରହିବା ସଂଗେସଂଗେ ଜନଗହଳି ସମୟରେ କୌଣସି ପ୍ରକାର ଅଗ୍ନିଜନିତ ଦୁର୍ଘଟଣା ହେବାର ସମ୍ଭାବନା ରହିବ ନାହିଁ ।

୩୬. ଅନ୍ୟାନ୍ୟ ବିଶିଷ୍ଟ ତୀର୍ଥକ୍ଷେତ୍ର ତଥା ଶିରିଡ଼ି, ତିରୁପତି ଭଳି ଆମ ଶ୍ରୀମନ୍ଦିରର ଅନ୍ତଃଗୃହରେ ଶୀତାତାପ ନିୟନ୍ତ୍ରଣର ବ୍ୟବସ୍ଥା କରାଯାଉ । ତାହା ହେଲେ ଜନଗହଳି ସମୟରେ ଭକ୍ତମାନେ ସୁସ୍ଥ ଅନୁଭବ କରି ଭଗବାନଙ୍କୁ ଦର୍ଶନ ଲାଭ କରିବେ । ଏପରିକି ବହୁ ସମୟରେ କେତେକ ତୀର୍ଥକ୍ଷେତ୍ରରେ ଅତ୍ୟଧିକ ଜନଗହଳି ହୋଇ ଶ୍ୱାସରୁଦ୍ଧ ହେବାର ଉଦାହରଣ ରହିଛି । ଏହି ବ୍ୟବସ୍ଥା ହେଲେ ଭକ୍ତମାନେ ସୁସ୍ଥ ଅନୁଭବ କରିବା ସଂଗେସଂଗେ ଶ୍ୱାସରୁଦ୍ଧ ବିପଦରୁ ମୁକ୍ତି ପାଇପାରିବେ ।

ଜ୍ୟୋତିର୍ବିଦ୍ ଓ ଭାରତୀୟ ସୂଚନା ସେବାର ଅଧିକାରୀ
ଭି.ଏ.-୩୪/୪, ୟୁନିଟ୍-୨
ଭୁବନେଶ୍ୱର-୯

---

# କଳାଶ୍ରୀମୁଖ ପୟରେ

ଭାରତୀ ନାୟକ



କଳା କଳା ଡୋଳା ତୋର,
କରୁଣାରେ ଜରଜର ।

କଳାଶ୍ରୀମୁଖେ ଫୁଟେ ଦ୍ୟୁତି,
କୃପାବାରି ବରଷଇ ଭକ୍ତଜନପ୍ରତି ।

କି ସୁନ୍ଦର ଆହା ଦିଶେ ଝଟଝଟ,
କୀରିଟ ସୁଶୋଭିତ ଶ୍ରୀମୁଖ ଅମୃତ ।

କୁଞ୍ଜବନେ ରଚିଥିଲୁ, ନାନା ରାସ, ନାନା ପ୍ରୀତି,
କି କାରଣେ ବରିନେଲୁ, ନୀଳକନ୍ଦରେ ତୋର ସ୍ଥିତି ।

କିଛି ଅଛି ନିଶ୍ଚୟ ତୋର ଅଭେଦ୍ୟ ପ୍ରୀତି,
କଳା କୁଶଳ ଉତ୍କଳ ଜନପ୍ରତି ।

କେତେ ନୃପ କେତେ ନରପତି,
କେତେ ସାଧୁ କେତେ ପଣ୍ଡିତ ଯଶସ୍ୱୀ,

କୃପା ଲଭି ତୋର, ପାଇଛନ୍ତି ଅମୃତ ଜୀବନ
କରୁଣାସାଗର, ତୋର ଶ୍ରୀଚରଣେ ଥାଉ ମୋର ପ୍ରାଣ ।



ଶ୍ରୀସତ୍ୟସାଇ ଏନ୍‌କ୍ଲେଭ
ଏମ୍.ଆଇ.ଜି.-୧/୧୮୦, ଖଣ୍ଡଗିରି
ଭୁବନେଶ୍ୱର-୩୦

# ଦେବଦୁର୍ଲ୍ଲଭ ସ୍ଥାନ ଶ୍ରୀକ୍ଷେତ୍ର

ସଦାଶିବ ମିଶ୍ର

**ଶ୍ରୀ**କ୍ଷେତ୍ର ବା ପୁରୀ ଏକ ପୌରାଣିକ, ଐତିହାସିକ, ଧାର୍ମିକ ଓ ସାଂସ୍କୃତିକ କ୍ଷେତ୍ର ଭାବରେ ସମଗ୍ର ବିଶ୍ୱରେ ସୁପରିଚିତ । ଏହାର ଧର୍ମ, ସଂସ୍କୃତି ଆଜି ବିଶ୍ୱ ଦରବାରରେ ବହୁ ଚର୍ଚ୍ଚିତ । ଶ୍ରୀକ୍ଷେତ୍ରର ପ୍ରଧାନ ଆକର୍ଷଣ ହେଲା ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥ । ପୁରୀ ଏଭଳି ଏକ ସ୍ଥାନ ଯାହା ବିଷୟରେ ଚିନ୍ତା କଲାବେଳେ ଭାବନାର ଖିଅ ସରେ ନାହିଁ । ଏହି କ୍ଷେତ୍ରର ମହିମା ଯେତେ ବର୍ଣ୍ଣନା କଲେ ମଧ୍ୟ ତାହା ଅପୂର୍ଣ୍ଣ ହୋଇଯାଏ । ପୁରାଣବର୍ଣ୍ଣିତ ଶ୍ରୀକ୍ଷେତ୍ର, ଶଙ୍ଖକ୍ଷେତ୍ର, ନୀଳାଚଳ, ପୁରୁଷୋତ୍ତମ ଓ ପୁରୀ ନାମରେ ଖ୍ୟାତ । କାଳକ୍ରମେ ଏହାର ନାମ 'ପୁରୁଷୋତ୍ତମ ପୁରୀ'ରୁ ପୁରୀ ହୋଇଅଛି ବୋଲି ପଣ୍ଡିତ ଓ ଗବେଷକମାନଙ୍କର ମତ । ୧୮୪୦-୪୧ ମସିହା ପର୍ଯ୍ୟନ୍ତ ପୁରୁଷୋତ୍ତମ କ୍ଷେତ୍ର ନାମଟି ବ୍ୟବହାର ହେଉଥିବାର ଯଥେଷ୍ଟ ପ୍ରମାଣ ରହିଛି । ଆଧ୍ୟାତ୍ମିକ ଦୃଷ୍ଟିରୁ ଏହି କ୍ଷେତ୍ରର ମହିମା ସ୍ୱତନ୍ତ୍ର । ହିନ୍ଦୁ ଧର୍ମଶାସ୍ତ୍ର ଓ ପୁରାଣମାନଙ୍କରେ ଏହି କ୍ଷେତ୍ରର ବିଶେଷ ମହିମା ବର୍ଣ୍ଣନା କରାଯାଇଅଛି । ହିନ୍ଦୁମାନଙ୍କର ପବିତ୍ର କ୍ଷେତ୍ର ଚାରିଧାମ ବଦ୍ରିଧାମ, ଦ୍ୱାରକା, ପୁରୀ ଓ ରାମେଶ୍ୱର ମଧ୍ୟରେ ବିଷ୍ଣୁଙ୍କର ବିଶେଷ ପ୍ରିୟସ୍ଥଳ ହେଲା ଶ୍ରୀକ୍ଷେତ୍ର । ପ୍ରାଚୀନ ପୁରାଣ କପିଳସଂହିତାରେ ଏହି କ୍ଷେତ୍ରକୁ ସାକ୍ଷାତ ବୈକୁଣ୍ଠ ଓ ଏହା କ୍ଷେତ୍ରମାନଙ୍କର ମଣି ବୋଲି ବର୍ଣ୍ଣନା କରାଯାଇଅଛି ।



'ସାକ୍ଷାତ ବୈକୁଣ୍ଠ ସ୍ୱରୂପଂ ତତ୍‌କ୍ଷେତ୍ରଂ ଶ୍ରୀପୁରୁଷୋତ୍ତମ୍
କ୍ଷେତ୍ରାଣା ମଣି କ୍ଷେତ୍ରଂ ତଂ ତୀର୍ଥାନାପି ଯଦ୍ ବରଂ ।'

ଯେଉଁ କ୍ଷେତ୍ରର କ୍ଷେତ୍ରାଧିପତି ହେଉଛନ୍ତି ସ୍ୱୟଂ ପରଂବ୍ରହ୍ମ ଶ୍ରୀଜଗନ୍ନାଥ, ସେହି କ୍ଷେତ୍ର ପରମ ପାବନ କ୍ଷେତ୍ର ହେବ ନାହିଁ ତ ଆଉ କେଉଁ କ୍ଷେତ୍ର ହେବ ? ଦାରୁରୂପରେ ସ୍ୱୟଂ ପରଂବ୍ରହ୍ମ ସେଠାରେ ବିରାଜମାନ କରିଥିବାରୁ ସେଠାରେ ପ୍ରାଣତ୍ୟାଗ କରୁଥିବା ସମସ୍ତ ଜୀବ ବୈକୁଣ୍ଠ ପ୍ରାପ୍ତ ହୁଅନ୍ତି । ଏଭଳି ପରମ ପବିତ୍ର ଓ ଶ୍ରେଷ୍ଠ କ୍ଷେତ୍ର କେଉଁଠାରେ ନାହିଁ ବୋଲି ବ୍ରହ୍ମା ଓ ଅନେକ ମୁନିଋଷି ଦୃଢ଼ତାର ସହ ଉଦ୍‌ଘୋଷଣା କରିଛନ୍ତି । ସେହି କ୍ଷେତ୍ରର ଆକର୍ଷଣରେ ଯୁଗେ ଯୁଗେ ବହୁ ମନୀଷି, ତାପସ, ସାଧକ, ଯୋଗୀ, ଧର୍ମପ୍ରଚାରକ, ସନ୍ଥ ଓ ଦାର୍ଶନିକ ଏହି ଭୂମିରେ ନିଜର ପାଦଥାପି ନିଜକୁ ଧନ୍ୟ ମଣିଛନ୍ତି । ସେହି ପୁଣ୍ୟ ମାଟି ଓ ବାଲିର ମହିମାରେ ବିସ୍ମୟାତିଭୂତ ହୋଇଛନ୍ତି । ପ୍ରଭୁଙ୍କର ଅନେକ ଲୀଳାଖେଳା ଦେଖି ବିମୋହିତ ହୋଇଛନ୍ତି ସେହି ଭୂମିର ସ୍ପର୍ଶରେ ପୁଲକିତ ହୋଇଛନ୍ତି, ଶ୍ରୀଜଗନ୍ନାଥଙ୍କ ଭିତରେ ନିଜର ଇଷ୍ଟଙ୍କୁ ଦର୍ଶନ କରି ଚକିତ ହୋଇଛନ୍ତି, ଅପୂର୍ବ ସେ କ୍ଷେତ୍ର ଓ ଅପୂର୍ବ ସେ କ୍ଷେତ୍ରର ମହିମା । ବୈଦିକ ଯୁଗରୁ ବର୍ତ୍ତମାନ ପର୍ଯ୍ୟନ୍ତ ବିଭିନ୍ନ ଶାସ୍ତ୍ର, ପୁରାଣ, କାବ୍ୟ, କବିତା, ଗଳ୍ପ ଓ ଉପନ୍ୟାସରେ ସେହି କ୍ଷେତ୍ରର ମହିମା ମହିମାମଣ୍ଡିତ । ଋଗ୍ ବେଦର ଦଶମ ମଣ୍ଡଳରେ ବର୍ଣ୍ଣନା କରାଯାଇ ଅଛି -

ଅଦୋଯଦ୍ଦାରୁ ପ୍ଲବେତ ସିନ୍ଧୋପାରେ ଅପୁରୁଷମ୍
ତଦାରଭସ୍ୱ ଦୁର୍ହଣୋ ତେନ ଗଛ ପରସ୍ତରମ୍ ।

ଅର୍ଥାତ୍ ହେ ! ଉତ୍ତମ ଭାଗବତଗଣ ସିନ୍ଧୁ ତୀରରେ ସ୍ୱୟମ୍ଭୂ ପୁରୁଷୋତ୍ତମ ଦାରୁମୟ ବିଗ୍ରହ ରୂପେ ବିରାଜିତ । ତାଙ୍କ

ଉପାସନାଦ୍ୱାରା ଶ୍ରେଷ୍ଠ ଦିବ୍ୟ ଲୋକ ଗମନ କର । କବି ହାଡ଼ିଦାସ ଶ୍ରୀକ୍ଷେତ୍ର ମାହାତ୍ମ୍ୟରେ ଶ୍ରୀକ୍ଷେତ୍ରର ବର୍ଣ୍ଣନା ଅତି ଚମତ୍କାର ହୋଇଅଛି ।

ସେହୁ କ୍ଷେତ୍ରମାନ ପୁରୁଷୋତ୍ତମ । ଯେ ପୁରେ ପଶି ନପାରଇ ଯମ ।।
ସକଳ ପୁଣ୍ୟତୀର୍ଥ ଯହିଁଥାଇ । ମାନବ ହୋଇ ତା' କେ ପାରିବ କହି ।।
ସ୍ୱୟଂ ଗୋଲୋକ ଯହିଁରେ ଘଟଣା । ବ୍ରହ୍ମା, ଇନ୍ଦ୍ର, ଚନ୍ଦ୍ର ସେବିତା ବଣା ।।
ସେଠାରେ ବୋଲି ଯାହା ପାଞ୍ଚକୋଶ । ପୃଥ୍ୱୀ ଆପ ତେଜ ବାୟୁ ଆକାଶ ।।

ଓଡ଼ିଶାର ଆଦିକବି ସାରଳା ଦାସଙ୍କଠାରୁ ଆରମ୍ଭ କରି ବଳରାମ ଦାସ, ଜଗନ୍ନାଥ ଦାସ, ଦିବାକର ଦାସ, ଅର୍ଜୁନ ଦାସ, ଶିଶୁଶଙ୍କର ଦାସ, ସାଲବେଗ, ସାରିଆ ଭିକ, ମହାଦେବ ଦାସ, ହୃଷିକେଶ ଦାସ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଦାସ, ଅଭିମନ୍ୟୁ ସାମନ୍ତ ସିଂହାର, କବିସୂର୍ଯ୍ୟ ବଳଦେବ ରଥ, ରାଧାନାଥ ରାୟ, ମଧୁସୂଦନ ରାଓ, ନନ୍ଦକିଶୋର ବଳ, ବୈଷ୍ଣବ ପାଣି, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ଓ ଆଧୁନିକ ଓଡ଼ିଆ ସାହିତ୍ୟର ଅନେକ କବିଙ୍କ ରଚନାରେ ମହିମା ମୁଖରିତ ହୋଇଅଛି ଶ୍ରୀକ୍ଷେତ୍ର । ଯେଉଁ କ୍ଷେତ୍ରରେ ପ୍ରତିଷ୍ଠିତ ଠାକୁର-ବଡ଼ ଠାକୁର, ସେବକ-ବଡ଼ପଣ୍ଡା, ଦାଣ୍ଡ-ବଡ଼ଦାଣ୍ଡ, ପ୍ରସାଦ-ମହାପ୍ରସାଦ, ବାଲି-ଶରଧା ବାଲି, ମଶାଣୀ-ସ୍ୱର୍ଗଦ୍ୱାର, ସିନ୍ଧୁ-ମହୋଦଧି ବଡ଼ଦେଉଳରେ ଉଡୁଥିବା ନେତ-ପତିତପାବନ ବାନା, ଶ୍ରୀକ୍ଷେତ୍ରର ରଥଯାତ୍ରା-ସମଗ୍ର ମାନବ ଜାତିର ମହାମିଳନ ପର୍ବ ସେହି କ୍ଷେତ୍ର ଶ୍ରେଷ୍ଠ କ୍ଷେତ୍ର ହେବ ନାହିଁତ ଆଉ କେଉଁ କ୍ଷେତ୍ର ହେବ ? ଦିବାକର ଦାସ 'ଜଗନ୍ନାଥ ଚରିତାମୃତ'ରେ ଶ୍ରୀକ୍ଷେତ୍ର ମହିମା ଅପୂର୍ବ ଭାବରେ ବର୍ଣ୍ଣନା କରିଛନ୍ତି ।

ସେହି ଗୋଲୋକ ନିତ୍ୟସ୍ଥଳ । ସେହିଟି ଗିରି ନୀଳାଚଳ ।।
କୋଟିଏ ଯୁଗ ଯେବେ ଯାଇ । ଏଥିରେ ଲୀଳା ନସରଇ ।।

x x x

ଗୁଣ୍ଡିଚା ଘର ଦକ୍ଷିଣରେ । ଗୋପ ମଥୁରା ସେହିଠାରେ ।।
ଅଯୋଧ୍ୟା ଦ୍ୱାରିକା ଏ ଦୁଇ । ବଳଗଣ୍ଡିରେ ଛନ୍ତି ରହି ।।

x x x

ଲକ୍ଷ୍ମଣ ରାମେଶ୍ୱର ଦୁଇ । ଲୋକନାଥରେ ଗୁପ୍ତ ରହି ।।
ସ୍ୱର୍ଗାଦି ଯେତେକ ସମ୍ପତ୍ତି । ପତିତପାବନରେ ଛନ୍ତି ।।
ଧର୍ମ ଅର୍ଥ ଯେ କାମ ମୋକ୍ଷ । କଳ୍ପବଟ ଛାୟା ପ୍ରତ୍ୟକ୍ଷ ।।
ମତ୍ସ୍ୟ କୂର୍ମ ବରାହ ମୂର୍ତ୍ତି । ନୃସିଂହ ବାମନ ମୂରତି ।।
ପରଶୁରାମ ରଘୁନାଥ । ଯେ କୃଷ୍ଣ ଗୋପୀଙ୍କର ନାଥ ।।
ଏହି କ୍ଷେତ୍ରରେ ଛନ୍ତି ରହି । ଅନ୍ୟେ ଭ୍ରମୁଛ କାହିଁ ପାଇଁ ।।
ମାନଧାତା ଯେ ସତ୍ୟ ଯୁଗେ । ଦର୍ଶନ କଲେ ଏହି ରୂପେ ।।
ଦ୍ୱାପରେ କୃଷ୍ଣ ଯେ ଅର୍ଜୁନ । ଆସି ମିଳିଲେ ଏହି ସ୍ଥାନ ।।
ଶ୍ରୀଜଗନ୍ନାଥଙ୍କ ଦର୍ଶନ । କରି କାମନା କଲେ ପୂର୍ଣ୍ଣ ।।

ସ୍କନ୍ଦ ପୁରାଣର ଉତ୍କଳଖଣ୍ଡରେ ଶ୍ରୀକ୍ଷେତ୍ରରେ ମାହାତ୍ମ୍ୟ ବହୁଳ ଭାବରେ ବର୍ଣ୍ଣିତ ହୋଇଛି । ସବୁକ୍ଷେତ୍ର ମଧ୍ୟରେ ଶ୍ରୀକ୍ଷେତ୍ର ଶ୍ରେଷ୍ଠ, ସେହି କ୍ଷେତ୍ରରୁ ଭଗବାନଙ୍କର ସବୁ ଅବତାରର ଉତ୍ପତ୍ତି, ସେହି କ୍ଷେତ୍ରର ମହିମା ଅଶେଷ, ସେହି କ୍ଷେତ୍ର ସୃଷ୍ଟି, ସ୍ଥିତି ଓ ପାଳନର କେନ୍ଦ୍ରସ୍ଥଳ । ଭଗବାନଙ୍କର ଦଶାବତାର ଦର୍ଶନରେ ଯେଉଁ ପୁଣ୍ୟ ଫଳ ମିଳିଥାଏ ପୁରୁଷୋତ୍ତମ କ୍ଷେତ୍ରରେ ପାଦଥାପି ଦାରୁବ୍ରହ୍ମଙ୍କୁ ଦର୍ଶନ କଲେ ସେହି ଫଳ ମିଳେ । ପରମ ଶାନ୍ତି ଓ ମୋକ୍ଷର ସ୍ଥଳ ହେଉଛି ପୁରୁଷୋତ୍ତମ କ୍ଷେତ୍ର । ମର୍ତ୍ତ୍ୟ ପାତାଳ ସାର୍ଦ୍ଧ ତ୍ରିକୋଟି ତୀର୍ଥମାନଙ୍କ ମଧ୍ୟରେ ଏହି କ୍ଷେତ୍ରକୁ ସାଯୁଜ୍ୟ ମୁକ୍ତିର ପାବନ କ୍ଷେତ୍ର ଭାବରେ ଅବିହିତ କରାଯାଇଛି । ସେହି କ୍ଷେତ୍ରରେ ଯମରାଜଙ୍କର କର୍ତ୍ତୃତ୍ୱ ନାହିଁ । ସେହି କ୍ଷେତ୍ରରେ ପ୍ରାଣୀ, କୀଟ, ପତଙ୍ଗ ଯେ ବି ଦେହତ୍ୟାଗ କରେ ସେ ମୋକ୍ଷ ଲାଭ କରିଥାଏ ।

'ସିନ୍ଧୁ ରାଜସ୍ୟ ସଲିଳାଦପାବନ୍ନଳଂ ବଟସ୍ୟପୁଟେ
କୀଟ ପକ୍ଷୀ ମନୁଷ୍ୟଣାଂ ମରଣାନ୍ମୁକ୍ତି ଦୋମତଃ ।
ଅତ୍ର ତ୍ୟଜନ୍ତି ଯେ ପ୍ରାଣୀ ସ୍ତେଷାମ ତ୍ୱକ୍ଷଣ ମେବହି
ସ୍ୱରୂପା ଜାୟତେ ମୁକ୍ତି ସଂଶୋୟୋ ମା'ସ୍ତୁତେ ଯମଂ ।'

ତନ୍ତ୍ର ପୁରାଣମାନଙ୍କରେ ଶ୍ରୀକ୍ଷେତ୍ରର ମହିମା ବର୍ଣ୍ଣନା ଦେଖିବାକୁ ମିଳେ । ୬୪ ତନ୍ତ୍ର ପୀଠ ମଧ୍ୟରୁ ପୁରୁଷୋତ୍ତମ ପୀଠ ପ୍ରଥମ ଓ ପ୍ରଧାନ କ୍ଷେତ୍ର ବୋଲି 'କାଳିକା ପୁରାଣ'ରେ ଉଲ୍ଲେଖ ରହିଛି ।

ଓଡ୍ୟାଖ୍ୟଂ ପ୍ରଥମ ପୀଠଂ
ଦ୍ୱିତୀୟ ଜାଳା ଶୈଳକଂ

ଚତୁର୍ଥ ଶତାବ୍ଦୀରେ ରଚିତ ହୋଇଥିବା 'ତନ୍ତ୍ରଯାମଳ'ରେ ଶ୍ରୀକ୍ଷେତ୍ର ମହିମା ବର୍ଣ୍ଣିତ ହୋଇଅଛି ।

'ଭାରତେ ଚୋତ୍କଳେ ଦେଶେ
ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ
ଭକ୍ତାନା ଅଭୟ ପ୍ରଦ ।'

ଓଡ଼ିଆ ସାହିତ୍ୟର ଆଦିଯୁଗର ଭକ୍ତକବି ବଳରାମ ଦାସ 'ଭାବସମୁଦ୍ର' ଗ୍ରନ୍ଥରେ ଶ୍ରୀକ୍ଷେତ୍ରର ମହିମା ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି-

କାହୁଁ ଭିଆଇଲୁ କ୍ଷେତ୍ର ତୋହର
ଚଉଦ ଭୁବନ ମଧ୍ୟୁ ବାହାର ।

ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କୁ ନେଇ ଓଡ଼ିଆ ସାହିତ୍ୟରେ ଯେତେସବୁ କାବ୍ୟ, କବିତା ପ୍ରବନ୍ଧ ସୃଷ୍ଟି ହୋଇଛି ତାହାର ପଟ୍ଟାନ୍ତର ନାହିଁ । ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିର, ମଠ, ମନ୍ଦିର, ବଡ଼ଦାଣ୍ଡ, ପଞ୍ଚତୀର୍ଥ, ଶରଧାବାଲି, ସ୍ୱର୍ଗଦ୍ୱାର, ଗୁଣ୍ଡିଚାଘର, ମାଉସୀମା' ମନ୍ଦିର, ଲୋକନାଥ ମନ୍ଦିର, ପଞ୍ଚପାଣ୍ଡବ ଓ ବେଳାଭୂମିର ବର୍ଣ୍ଣନାରେ ମହିମାମଣ୍ଡିତ ହୋଇଛି ଶ୍ରୀକ୍ଷେତ୍ର । ଶ୍ରୀକ୍ଷେତ୍ରର ମହିମା ଉପଲକ୍ଷି କରି ଉତ୍କଳମଣି ଗୋପବନ୍ଧୁ ବର୍ଣ୍ଣନା କରିଛନ୍ତି -

ଏହି ସେ ଉତ୍କଳ ପୁଣ୍ୟ ଦେହସ୍ଥଳୀ ।
ହୋଇଛନ୍ତି ଠୁଳ ଯହିଁ ତୀର୍ଥାବଳୀ ।
ତା' ମଧ୍ୟେ ବିରାଜେ ପୁଣ୍ୟ ନୀଳାଚଳ ।
ଭାରତର ଧର୍ମ ହୃଦ ଶତଦଳ ।

ଭକ୍ତକବି ମଧୁସୂଦନ ରାଓ ଶ୍ରୀକ୍ଷେତ୍ର ମହିମା ବର୍ଣ୍ଣନାରୁ ବାଦ୍ ପଡ଼ି ନାହାନ୍ତି । ଯାହାଙ୍କର ଚିନ୍ତା ଚେତନା ଓ କର୍ମ ଥିଲା ଆଧ୍ୟାତ୍ମିକତା ସେ ବା କିପରି ଭୁଲି ପାରିବେ ଶ୍ରୀକ୍ଷେତ୍ରର ମହିମାକୁ । ସେ ବର୍ଣ୍ଣନା କରିଛନ୍ତି-

'ସୁର-ଗଣପତି- ଶିବ ଶକ୍ତି-ବିଷ୍ଣୁ
ରୂପେ ଭଗବାନ ରାଜନ୍ତି ଯହିଁ,
ଯେ ଯଥା ଭାବଇ ସେ ତଥା ଦେଖଇ
ଅନୁରୂପ ସିଦ୍ଧି ଲଭଇ ତହିଁ ।
ମହୋଦଧି ତୀରେ ରାଜଇ ଯା ଶିରେ
ପାପତାପ ନାଶି ପୁଣ୍ୟ କେତନ,
ସୁଦୂର ଆଗତ ବିଶ୍ୱାସୀ ଭକତ
ଗତି ମୁକ୍ତି ଯହିଁ କରେ ଦର୍ଶନ ।'

ଶ୍ରୀକ୍ଷେତ୍ରର ଭୌଗୋଳିକ ସ୍ଥିତି, ସାମାଜିକ ଚଳଣୀ, ଧର୍ମ ଭାବନା, ନୃତ୍ୟ, ଗୀତି, କଳା, ଭାସ୍କର୍ଯ୍ୟ ଜାତୀୟସ୍ତରରେ ସ୍ୱତନ୍ତ୍ର ଓ ଅନନ୍ୟ । ଶ୍ରୀକ୍ଷେତ୍ରର ରଥଯାତ୍ରା, ଓଡ଼ିଶୀ ନୃତ୍ୟ ଆଜି ବିଶ୍ୱସ୍ତରରେ ପରମ ଆଦର ଲାଭ କରିବା ସହିତ ଶ୍ରୀକ୍ଷେତ୍ରର ସଂସ୍କୃତି ଆକୃଷ୍ଟ କରି ଆସିଛି ଯୁଗେ ଯୁଗେ ସଭିଙ୍କୁ ସମଗ୍ର ମାନବ ଜାତିକୁ । ବୃହାନ୍ନାର ସିଂହ ପୁରାଣ ବର୍ଣ୍ଣନା ଅନୁସାରେ-

'ପୁରୁଷୋତ୍ତମାତ ପରଂକ୍ଷେତ୍ର ନାସ୍ତ୍ୟତ୍ର ପୃଥିବୀ ତଳେ
ଭୂସ୍ୱର୍ଗମତି ଖ୍ୟାତଂ ଦେବାନାପି ଦୁର୍ଲ୍ଲଭମ ।'

ସଂପାଦକ 'ସୁଲେଖା' ଓ ଶ୍ରୀକ୍ଷେତ୍ର ସମ୍ବାଦ
ବିମାନ ବଡୁ ସାହି, ଚଟିଆ ପଡ଼ାଗଳି, ପୁରୀ-୧

---



# ଭାବଗ୍ରାହୀ

ବିଜୟଲକ୍ଷ୍ମୀ ରାୟ

ଭାବବିନୋଦିଆ ଭାବଗ୍ରାହୀ ତୁହି ଭାବକୁ ନିକଟେ ଥାଉ,
ଭାବ ନଜାଣଇ କିଭାବ କରିବି କହିଦିଅ ମହାବାହୁ ।

ଭାବରେ ବାନ୍ଧିଲେ ଗୋପାଙ୍ଗନା ତୋତେ ଭାବରେ ହୋଇଲୁ ବାଇ,
ଭାବରେ ଦାସିଆ ନଡ଼ିଆଟି ଦେଲା, ନେଲୁ ତୁ ହାତ ବଢ଼ାଇ ।

ଭକ୍ତ ସାଲବେଗ ଭକ୍ତି ଭାବେ ଡାକି ରଥ ଦେଲେ ଅଟକାଇ,
ମୋହଯିବା ଯାଏଁ ରଥେ ଥିବ ପ୍ରଭୁ, ଭାବରେ ବିକଳ ହୋଇ ।

ବଳରାମ ଦାସ ଭାବରେ ଡାକିଲେ ବାଲି ରଥେ ବିଜେ କଲୁ,
କାକୁତି ମିନତି ହୋଇ ମୁଁ ଡାକୁଛି ମୋ' କଥାକୁ ନ ଶୁଣିଲୁ ।

ଜଞ୍ଜାଳ ଜାଲରେ ଛନ୍ଦି ହୋଇ ପ୍ରଭୁ ବାଟ ମୁହିଁ ପାଉ ନାହିଁ,
ଯେଣେ ଚାହେଁ ପ୍ରଭୁ ଅମାର ଅନ୍ଧାର ଆଲୁଅର ସତ୍ତା ନାହିଁ ।

ରୁକ୍ଷ କଣ୍ଟକିତ ଅନ୍ଧକାର ପଥ ଦୁରୁବଳ ମୋର ପାଦ,
କର ଆଲୋକିତ ଦିଅ ହେ ସାହସ ଘୁଞ୍ଚାଅ ମୋ' ଅବସାଦ ।

ଆହେ ଦୀନବନ୍ଧୁ ଫେଡ଼ ମୋର ଦୁଃଖ ବିତରି କରୁଣା ବାରି,
ଅସୀମ ଧଇର୍ଯ୍ୟ ବିଷମ ଏ ଭବ ପରୀକ୍ଷାରୁ କର ପାରି ।

ଭାବି ଭାବି ତୋତେ ଭାବେ ଯା' ଲେଖୁଛି ଗ୍ରହଣ କର ଗୋସାଇଁ,
ନୀଳାଦ୍ରି ମଣ୍ଡପେ ବିଜେ କରି ଅଛ, ତୁମେ ପରା ଭାବଗ୍ରାହୀ ।

ଧନ ସନମାନ ମାଗୁ ନାହିଁ ତୋତେ ଆହେ ଅନ୍ତର୍ଯ୍ୟାମି ନାଥ,
ମୋହ ଅନ୍ତକାଳେ ଯାହା ମୁଁ ମାଗିଛି ପୂରାଇବ ମନୋରଥ ।



ପ୍ଲଟ ନଂ-୬
ଚିନ୍ତାମଣିଶ୍ୱର, ଭୁବନେଶ୍ୱର






# ଶ୍ରୀମନ୍ଦିରରେ ଗଣେଶ ଉପାସନା

ଲାଲମୋହନ ପଟ୍ଟନାୟକ

**ନି**ରାକାର ପରଂବ୍ରହ୍ମଙ୍କର ସାକାର ଉପାସନା ହେଉଛି ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ଉପାସନା । ଶ୍ରୀଜଗନ୍ନାଥ ମହାପ୍ରଭୁ ହେଉଛନ୍ତି ସର୍ବଦେବମୟ, ସର୍ବରୂପମୟ, ସର୍ବମନ୍ତ୍ରମୟ ଏବଂ ସର୍ବଭାବମୟ । ଏକ ହୋଇ ସେ ଏକାଧିକ । ସବୁକୁ ନେଇ ସେ ଏକ । ଶ୍ରୀଜଗନ୍ନାଥ ଓଁକାରରୂପୀ ହେତୁ ସବୁ ଦେବଦେବୀଙ୍କର ସ୍ରଷ୍ଟା । ଶ୍ରୀଜଗନ୍ନାଥଙ୍କଠାରୁ ସବୁ ମତବାଦ - ଗାଣପତ୍ୟ, ଶୈବ, ଶାକ୍ତ, ସୌର ଓ ବୈଷ୍ଣବ ମତବାଦର ସୃଷ୍ଟି । ଗଣ, ନାରାୟଣ, ରୁଦ୍ର, ଅମ୍ବିକା, ଭାସ୍କର ଆଦି ରୂପରେ ଶ୍ରୀଜଗନ୍ନାଥ ଭିନ୍ନ ଭିନ୍ନ ମତବାଦୀଙ୍କଦ୍ୱାରା ଉପାସିତ । ତନ୍ତ୍ର ଶାସ୍ତ୍ରରେ ବଳଭଦ୍ର, ସୁଭଦ୍ରା ଏବଂ ଜଗନ୍ନାଥଙ୍କୁ ଯଥାକ୍ରମେ ଉଗ୍ରତାରା, ଭୁବନେଶ୍ୱରୀ ଓ ଦକ୍ଷିଣକାଳିକା ରୂପେ ଆରାଧନା କରାଯାଏ ।

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କୁ ଗଜାନନ, ଶ୍ରୀରାମ, ଶ୍ରୀକୃଷ୍ଣ, ନୃସିଂହ, ବାମନାଦି ରୂପରେ ବିଭୂଷିତ କରାଯାଇ ଉପାସନା କରାଯାଇଥାଏ । ଶ୍ରୀମନ୍ଦିର ବେଢ଼ାରେ ସବୁ ଦେବଦେବୀ - ଶିବ, ରାମ, କୃଷ୍ଣ, ବିମଳା, ଲକ୍ଷ୍ମୀ, ସରସ୍ୱତୀ, ଗଣେଶ - ବିରାଜମାନ କରି ପୂଜା ପାଉଛନ୍ତି । ଶ୍ରୀଜଗନ୍ନାଥଙ୍କୁ ଗଜାନନ ରୂପେ ପୂଜା କରାଯିବା ସଂଗେସଂଗେ ଶ୍ରୀମନ୍ଦିର ବେଢ଼ାରେ ଗଣେଶଙ୍କର ବିଭିନ୍ନ ମନ୍ଦିରରେ ପୂଜା ଆରାଧନା ହେଉଅଛି ।

ପବିତ୍ର ଦେବସ୍ନାନ ପୂର୍ଣ୍ଣିମା (ଜ୍ୟେଷ୍ଠ ପୂର୍ଣ୍ଣିମା) ଦିନ ଶ୍ରୀଜଗନ୍ନାଥ ମହାପ୍ରଭୁ ଶ୍ରୀମନ୍ଦିରର ରତ୍ନସିଂହାସନରୁ ପହଣ୍ଡି ବିଜେ କରି ବଡ଼ଦେଉଳର ବାହାରବେଢ଼ାରେ ସ୍ନାନବେଦୀ ଉପରେ ପୂର୍ବଦିଗକୁ ମୁଖ କରି ବିରାଜମାନ କରନ୍ତି । ବଡ଼ଦାଣ୍ଡରେ ସମବେତ ଲକ୍ଷ ଲକ୍ଷ ଦର୍ଶନାର୍ଥୀଙ୍କ ସମ୍ମୁଖରେ ସ୍ନାନ କରି ଗଜାନନ ବେଶରେ ବିଭୂଷିତ ହୋଇ ଶ୍ରୀଜୀଉମାନେ ପୂଜା ପାଆନ୍ତି । ସର୍ବଧର୍ମ ସମନ୍ୱୟର ଠାକୁର ରୂପେ ଶ୍ରୀଜଗନ୍ନାଥ ଗଜାନନ ବେଶରେ ଜାତି-ଧର୍ମ-ବର୍ଣ୍ଣ ଲିଙ୍ଗ ବୟସ ନିର୍ବିଶେଷରେ ଲକ୍ଷ ଲକ୍ଷ ଦର୍ଶନାର୍ଥୀଙ୍କୁ ଦର୍ଶନ ଦେଇଥାନ୍ତି । ଦାରୁଦେବତାଙ୍କର ଏହି ଅପରୂପ ଗଜାନନ ବେଶର ସାଜ ବଡ଼ଠାକୁର ଶ୍ରୀବଳଭଦ୍ରଙ୍କ ପାଇଁ ଗୋପାଳତୀର୍ଥ ମଠ ଏବଂ ଶ୍ରୀଜଗନ୍ନାଥ, ଦେବୀ ସୁଭଦ୍ରା ଶ୍ରୀସୁଦର୍ଶନଙ୍କ ପାଇଁ ରାଘବଦାସ ମଠ ଯୋଗାଇଥାନ୍ତି । ଏହି ବେଶକୁ ମହାପ୍ରଭୁଙ୍କର ଗଣେଶ ବେଶ କୁହାଯାଏ । ଏହି ବେଶରେ ବିଭୂଷିତ ଥାଇ ମହାପ୍ରଭୁଙ୍କର ସେହିଦିନର ଏକମାତ୍ର ଅନ୍ନଭୋଗ ହୋଇଥାଏ । ଭୋଗଲାଗି ପରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଦୁର୍ଲ୍ଲଭ ସାହାଣମେଲା ଦର୍ଶନ ହୁଏ । ସାହାଣମେଲା ସମୟରେ ଭକ୍ତମାନେ ଶ୍ରୀବିଗ୍ରହଙ୍କର ସାନ୍ନିଧ ଲାଭର ସୁଯୋଗ ପାଇଥାନ୍ତି । ସାହାଣମେଲାରେ ଭକ୍ତ ଶ୍ରୀବିଗ୍ରହମାନଙ୍କୁ କୋଳ କରି ଶ୍ରୀଅଙ୍ଗରେ ନିଜକୁ ଜଡ଼ିତ କରିପାରିଥାନ୍ତି । ଏଭଳି ସୁଯୋଗ ବଡ଼ଦେଉଳରେ ଅନ୍ୟ କୌଣସି ସମୟରେ କାହାରିକୁ ମିଳିନଥାଏ ।

ଶ୍ରୀମନ୍ଦିରର ମୁଖ୍ୟ ପ୍ରବେଶଦ୍ୱାର ହେଉଛି ସିଂହଦ୍ୱାର । ସାଧାରଣତଃ ଭକ୍ତମାନେ ସିଂହଦ୍ୱାର ବାଟେ ଶ୍ରୀମନ୍ଦିରରେ ପ୍ରବେଶ କରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରନ୍ତି । ସିଂହଦ୍ୱାର ପ୍ରବେଶପଥ ଗୁମୁଟରେ ପ୍ରଥମେ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ ଶ୍ରୀପତିତପାବନଙ୍କ ଦର୍ଶନ ମିଳିଥାଏ । ଶ୍ରୀଜଗନ୍ନାଥ ମହାପ୍ରଭୁ ପତିତଜନଙ୍କ ଉଦ୍ଧାର ପାଇଁ ଶ୍ରୀମନ୍ଦିରରେ ବିରାଜମାନ କରିଛନ୍ତି । ବିଭିନ୍ନ କାରଣରୁ ଶ୍ରୀମନ୍ଦିରରେ ପ୍ରବେଶ କରିବାକୁ ବଞ୍ଚିତ ହେଉଥିବା ଦର୍ଶନାର୍ଥୀ ଭକ୍ତମାନେ ସ୍ନାନବେଦୀରେ ଶ୍ରୀଜଗନ୍ନାଥଙ୍କୁ ଗଜାନନ ରୂପେ ଏବଂ ସିଂହଦ୍ୱାର ଗୁମୁଟରେ ଶ୍ରୀପତିତପାବନ ଭାବେ ଦର୍ଶନ କରିଥାନ୍ତି । ସିଂହଦ୍ୱାର ଗୁମୁଟ ଭିତରେ ବାମପାର୍ଶ୍ୱ କାନ୍ଥରେ ଫତେହନୁମାନଙ୍କ ପାଖରେ ଗଣେଶ ବିଗ୍ରହ ବିରାଜିତ । **ଶ୍ରୀଜଗନ୍ନାଥଙ୍କୁ ଶ୍ରୀମନ୍ଦିରରେ ଦର୍ଶନ କରିବାରେ ସମସ୍ତ ବିଘ୍ନ ଦୂର ହେବା ସକାଶେ ଭକ୍ତ ପ୍ରଥମେ ସିଂହଦ୍ୱାର ଗୁମୁଟରେ ବିଘ୍ନେଶ୍ୱର ଗଣେଶଙ୍କୁ ପ୍ରାର୍ଥନା କରି ବାଇଶି ପାହାଚ ଚଢ଼ି କୂର୍ମବେଢ଼ାରେ ପ୍ରବେଶ କରିଥାଏ ।** କୂର୍ମବେଢ଼ାରେ ଅଗ୍ରପୂଜ୍ୟ ବିଘ୍ନେଶ ଗଣେଶଙ୍କର ତିନୋଟି ସ୍ୱତନ୍ତ୍ର ମନ୍ଦିର ଅଛି । ତାହା ହେଉଛି





'ବଟଗଣେଶ' ମନ୍ଦିର, 'ନର୍ତ୍ତକଗଣେଶ' ମନ୍ଦିର ଏବଂ 'କାଞ୍ଚିଗଣେଶ' ମନ୍ଦିର । ଏହା ବ୍ୟତୀତ ମେର୍ଦ୍ଦାରୋଷ କାନ୍ଥରେ ଗଣେଶ ପ୍ରତିମା, ଦକ୍ଷିଣଘର ବାହାର କାନ୍ଥରେ ଗଣେଶଙ୍କ ଚିତ୍ରପ୍ରତିମା, ବିମଳା ମନ୍ଦିର ପ୍ରବେଶଦ୍ୱାର ବାମପାର୍ଶ୍ୱରେ ନର୍ତ୍ତକ ଗଣେଶ ମୂର୍ତ୍ତି, ମହାଲକ୍ଷ୍ମୀ ମନ୍ଦିର ଜଗମୋହନ କାନ୍ଥରେ ଗଣେଶଙ୍କ ଚିତ୍ର, ଶ୍ରୀମନ୍ଦିର ନାଟମଣ୍ଡପ କାନ୍ଥରେ ଗଣେଶ ପ୍ରତିମା, ଭୋଗମଣ୍ଡପରେ ଗଣେଶ, ଗୋଦାମ ଗଣେଶ, ରୋଷଗଣେଶ ଓ ସରଘର ଗଣେଶ ବିରାଜମାନ କରିଛନ୍ତି ।

କଳ୍ପବଟ ମୂଳରେ 'ବଟଗଣେଶ' ମନ୍ଦିର । ଏହି ଦକ୍ଷିଣାଭିମୁଖୀ ମନ୍ଦିର ଗଜପତି କପିଳେନ୍ଦ୍ର ଦେବ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ ନିର୍ମାଣ କରିଥିବା କୁହାଯାଏ । ମନ୍ଦିରରେ ଶ୍ୱେତବର୍ଣ୍ଣର ଗଣେଶ ବିରାଜମାନ କରିଛନ୍ତି । ତେଣୁ ଭକ୍ତମାନେ ଏହାଙ୍କୁ 'ଶ୍ୱେତଗଣେଶ' ଭାବରେ ଆରାଧନା କରିଥାନ୍ତି । କଳ୍ପବଟ ତଳେ ଏହି ଗଣେଶ ମନ୍ଦିର ଥିବାରୁ ମନ୍ଦିରରେ ବିରାଜମାନ କରୁଥିବା ଗଣେଶ ବିଗ୍ରହଙ୍କୁ 'ବଟଗଣେଶ' କୁହାଯାଏ । ଭକ୍ତମାନେ ସେମାନଙ୍କର ସମସ୍ତ କାମନା ସିଦ୍ଧି ପାଇଁ ଏହି ଗଣେଶ ମନ୍ଦିରରେ ପ୍ରାର୍ଥନା କରୁଥିବାରୁ ଏହି ଗଣେଶ ବିଗ୍ରହ କାମନା ସିଦ୍ଧକାରୀ 'ଚିନ୍ତାମଣି' ଗଣେଶ ନାମରେ ପ୍ରସିଦ୍ଧ । ଏହି ମନ୍ଦିର ସମ୍ମୁଖରେ ଗଣେଶଙ୍କ ବାହନ ମୂଷିକଙ୍କର କଳାମୁଗୁନି ପଥରରେ ନିର୍ମିତ ଏକ କମନୀୟ ବିଗ୍ରହ ବିଦ୍ୟମାନ । ଏହି ବିଗ୍ରହ ଭାସ୍କର୍ଯ୍ୟର ସ୍ୱାତନ୍ତ୍ର୍ୟ ଅଛି । **ମୂଷିକଙ୍କ ପୃଷ୍ଠଭାଗ ସ୍ପର୍ଶ କଲେ ହାତକୁ କଣ୍ଟା କଣ୍ଟା ଲାଗେ । ମନ୍ଦିର ନିର୍ମାଣ କାଳରୁ ଲକ୍ଷ ଲକ୍ଷ ଭକ୍ତ ମୂଷିକଙ୍କୁ ଆଉଁସି ଦେଇ ଆସୁଥିଲେ ବି ମୂଷିକଙ୍କ ପୃଷ୍ଠଭାଗ ମସୃଣ ନ ହୋଇ ଏ ପର୍ଯ୍ୟନ୍ତ ସେହିପରି କଣ୍ଟକିତ ହୋଇ ରହିଛି ।** ଏହି ବିଗ୍ରହଙ୍କ ପାଖରେ ବିଘ୍ନେଶଙ୍କ ଉଦ୍ଦେଶ୍ୟରେ ଭକ୍ତମାନେ ଦୀପଦାନ କରିଥାନ୍ତି । ଅନ୍ୟ କୌଣସି ଗଣେଶ ବିଗ୍ରହଙ୍କ ପାଖରେ ଦୀପଦାନ କରିବାର ଦେଖାଯାଏ ନାହିଁ । ଭକ୍ତମାନେ ମୁଖ୍ୟତଃ ବଟଗଣେଶଙ୍କ ଦର୍ଶନ କରି ଜଗନ୍ନାଥଙ୍କ ଦର୍ଶନ ପାଇଁ ଯାଇଥାନ୍ତି । ଗଣେଶ ଚତୁର୍ଥୀ ଦିନ ବଟଗଣେଶଙ୍କ ମନ୍ଦିରରେ ଭକ୍ତମାନଙ୍କର ପ୍ରବଳ ଭିଡ଼ ହୁଏ । ଅତିବଡ଼ୀ ଜଗନ୍ନାଥ ଦାସ ଏହି ଗଣେଶଙ୍କ ନିକଟରେ ଭାଗବତ ପାଠ କରୁଥିଲେ । ଶ୍ରୀମନ୍ଦିର ଖୁଣ୍ଟିଆ ସେବକ ଏହି ମନ୍ଦିର ସେବାନୀତି ଦାୟିତ୍ୱରେ ଅଛନ୍ତି ।

ନର୍ତ୍ତକ ଗଣେଶ ମନ୍ଦିର ବିମଳା ମନ୍ଦିର ସମ୍ମୁଖ କୂଅ ପାଖରେ ଅବସ୍ଥିତ । ଜଳକ୍ରୀଡ଼ା ମଣ୍ଡପ ପଛପାଖରେ ଥିବା ଏହି ମନ୍ଦିରର ମୁଖ ଦକ୍ଷିଣ ଦିଗକୁ । ମନ୍ଦିର ସମ୍ମୁଖରେ ଏକ ଖୋଲା ମଣ୍ଡପ ବା ଚଉତରା ମନ୍ଦିରର ଉଚ୍ଚତା ପ୍ରାୟ ୩୫ ଫୁଟ । ମନ୍ଦିରରେ କଳା ମୁଗୁନି ପଥର ନିର୍ମିତ ଗଣେଶ ମୂର୍ତ୍ତି ନୃତ୍ୟ କରୁଥିବା ଭଙ୍ଗୀରେ ଶକ୍ତିଙ୍କ ଉପରେ ଦଣ୍ଡାୟମାନ । ନୃତ୍ୟ କରୁଥିବା ଭଙ୍ଗୀରେ ଥିବାରୁ ଏହାଙ୍କୁ ନର୍ତ୍ତକ ଗଣେଶ ବା ନାଚୁଆ ଗଣେଶ କହନ୍ତି । ପ୍ରାୟ ୬ ଫୁଟ ଉଚ୍ଚତା ବିଶିଷ୍ଟ ଏହି ଗଣେଶ ମୂର୍ତ୍ତିଙ୍କର ଅଷ୍ଟଭୁଜ । ଦୁଇହସ୍ତ ଉପରକୁ କରି ସର୍ପଧାରଣ କରିଛନ୍ତି । ଦକ୍ଷିଣ ହସ୍ତରେ ସର୍ପର ଫଣା ଓ ବାମହସ୍ତରେ ସର୍ପର ଲାଞ୍ଜ । ଅନ୍ୟ ଦକ୍ଷିଣ ହସ୍ତମାନଙ୍କରେ ଜପମାଳା ଦନ୍ତ ଓ ମୁଦ୍ରା ଏବଂ ବାମହସ୍ତମାନଙ୍କରେ ଅଙ୍କୁଶ, ମୁଦ୍ରା ଓ ଲଡୁ । ଲଡୁ ଉପରେ ଗଣେଶଙ୍କ ଶୁଣ୍ଢ । ଏପରି ଏକ ଛୋଟମୂର୍ତ୍ତି ବିମଳା ମନ୍ଦିର ପ୍ରବେଶଦ୍ୱାର ବାମପାର୍ଶ୍ୱରେ ଅଛନ୍ତି । ଗଜପତି ମହାରାଜା ପୁରୁଷୋତ୍ତମ ଦେବ ଏହି ନର୍ତ୍ତକ ଗଣେଶ ବିଗ୍ରହଙ୍କୁ କାଞ୍ଚିରୁ ଆଣି ଏଠାରେ ସ୍ଥାପନ କରିଛନ୍ତି । ଶ୍ରୀମନ୍ଦିର ସେବକ ତଳୁଛ ମହାପାତ୍ର ଏହି ମନ୍ଦିରର ଦାୟିତ୍ୱରେ ଅଛନ୍ତି । ଗଣେଶ ଚତୁର୍ଥୀ ଦିନ ଶ୍ରୀଜଗନ୍ନାଥଙ୍କ ସନ୍ଧ୍ୟାଧୂପ ପରେ ନର୍ତ୍ତକ ଗଣେଶଙ୍କ ଭୋଗ ଲାଗି ଓ ବନ୍ଦାପନା ଆଦି ନୀତି ପୂଜାପଣ୍ଡା ସେବକଙ୍କଦ୍ୱାରା ପାଳନ କରାଯାଇଥାଏ । ଏହି ଭୋଗ ଘଣ୍ଟାଛତା କାହାଳୀ ସହ କରାଯାଏ ।

ଶ୍ରୀମନ୍ଦିରର ଠିକ୍ ପଛରେ ସାକ୍ଷୀଗୋପାଳ ମନ୍ଦିର ପାଖରେ କାଞ୍ଚିଗଣେଶ ମନ୍ଦିର ଅବସ୍ଥିତ । ମନ୍ଦିରର ଉଚ୍ଚତା ବେଢ଼ା ପର୍ଯ୍ୟନ୍ତ ପ୍ରାୟ ୨୨ ଫୁଟ । ପୂର୍ବାଭିମୁଖୀ କଳାମୁଗୁନି ପ୍ରସ୍ତରରେ ନିର୍ମିତ ଚତୁର୍ଭୁଜ ବିଶିଷ୍ଟ ଗଣେଶ ବିଗ୍ରହ ଏହି ମନ୍ଦିରରେ ବିଦ୍ୟମାନ । ବିଗ୍ରହଙ୍କ କୋଳରେ ବିରାଜିତ ରତିଦେବୀଙ୍କ ଜଙ୍ଘଦ୍ୱାରରେ ଗଣେଶଙ୍କ ଶୁଣ୍ଢ ରହିଥିବାରୁ ଏହାଙ୍କୁ ଭାଣ୍ଡଗଣେଶ କୁହାଯାଏ । ଗଜପତି ପୁରୁଷୋତ୍ତମ ଦେବ ୧୪୭୪ ଖ୍ରୀଷ୍ଟାବ୍ଦରେ କାଞ୍ଚି ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି କାଞ୍ଚିରୁ ଏହି ଗଣେଶ ବିଗ୍ରହଙ୍କୁ ଆଣି ଏଠାରେ ସ୍ଥାପନ କରିଥିଲେ । ସେଥିପାଇଁ ଏହାଙ୍କୁ କାଞ୍ଚି ଗଣେଶ ବା କାଞ୍ଚିବିଜୟ ଗଣେଶ କୁହାଯାଏ । କାଞ୍ଚିରାଜାଙ୍କୁ ଭେଣ୍ଡେଇ କାଞ୍ଚିରୁ ଶ୍ରୀକ୍ଷେତ୍ର ଚାଲି ଆସିଥିବାରୁ ଏହି ଗଣେଶଙ୍କୁ କେହି କେହି ଭଣ୍ଡଗଣେଶ କହିଥାନ୍ତି । ଏ ହେଉଛନ୍ତି ତାନ୍ତ୍ରିକ ଦେବତା । କେତେକଙ୍କ ମତରେ କାଞ୍ଚିରୁ ଆସିଥିବା ପ୍ରକୃତ ଗଣେଶ ମୂର୍ତ୍ତି କୂର୍ମପ୍ରାଚୀର ପଶ୍ଚିମ-ଦକ୍ଷିଣ ଦିଗରେ ସମାଧି ଅବସ୍ଥାରେ ଅଛନ୍ତି । ଶ୍ରୀମନ୍ଦିରର ପ୍ରମୁଖ ସେବକ ଭିତରଛୁ ମହାପାତ୍ର ଏହି ଗଣେଶଙ୍କ ସେବାନୀତି ନିର୍ବାହ କରିଥାନ୍ତି ।

ଏହି ତିନି ଗଣେଶ ମନ୍ଦିର ଭୋଗଲାଗି ପାଇଁ ଶୁଖିଲା ଭୋଗ ବଲ୍ଲଭ, କୋରା, କାକରା କୋଠଭୋଗ ଖଞ୍ଜାରୁ ଆସିଥାଏ । ଶ୍ରୀମନ୍ଦିର ବେଢ଼ାରେ ସମସ୍ତ ପ୍ରକାର ବିଘ୍ନ ବିନାଶ ପାଇଁ ବିଘ୍ନେଶଙ୍କ ଏହି ସବୁ ମୂର୍ତ୍ତି ବିରାଜମାନ କରିଛନ୍ତି ।

ଏନ୍.-୧/୧୯୭
ଆଇ.ଆର୍.ସି. ଭିଲେଜ
ଭୁବନେଶ୍ୱର-୧୫





# ଶ୍ରୀଜଗନ୍ନାଥ ମନ୍ଦିରର ପ୍ରଶାସନିକ ସଂସ୍କାର

ଡକ୍ଟର ଦୁର୍ଗା ପ୍ରସନ୍ନ ଚୌଧୁରୀ

ମହାପ୍ରଭୁ ଶ୍ରୀଜଗନ୍ନାଥ କେବଳ ଭାରତବର୍ଷରେ ନୁହେଁ ବରଂ ସମସ୍ତ ପୃଥିବୀର ଅଦ୍ୱିତୀୟ ଦେବତା ଭାବରେ ପରିଚିତ । ମହାପ୍ରଭୁଙ୍କର ଦୃଷ୍ଟି ଶକ୍ତି, ଶ୍ରବଣ ଶକ୍ତି ଓ କହିବାର କ୍ଷମତା ମଧ୍ୟ ରହିଛି । ସଚରାଚର ପୃଥିବୀରେ ସମସ୍ତ ଜୀବଜନ୍ତୁଙ୍କର ଗତିଚ୍ୟୁତି ଇତ୍ୟାଦି ନିର୍ଣ୍ଣୟ କରିବାର ଶକ୍ତି ମହାପ୍ରଭୁଙ୍କର ରହିଛି । ସମସ୍ତେ ବୁଝନ୍ତି ସେ ହିନ୍ଦୁ ଦେବତା, କିନ୍ତୁ ସେ ଯେ ଅନ୍ୟ ସଂପ୍ରଦାୟର ଭକ୍ତମାନଙ୍କର ଭଗବାନ ଏହା କେହି ବିଶ୍ୱାସ କରିପାରନ୍ତି ନାହିଁ । ଆମ୍ଭେମାନେ ତାଙ୍କୁ ଆମର ନିଜର ଛୋଟ ହୃଦୟରେ ନ ରଖି ସେ ଧରାପୃଷ୍ଠରେ ଓ ଜୀବଜନ୍ତୁଙ୍କ ପାଖରେ ଶରୀର ରୂପୀ ଭଗବାନ ରୂପରେ ପରିଚିତ କରାଇବା ଦରକାର । ସେ ମାନବ ସମାଜର ସ୍ରଷ୍ଟା, ସେ ସର୍ବ ବିଦ୍ୟମାନ, ତେଣୁ ପ୍ରତ୍ୟେକ ଜୀବଜନ୍ତୁର ଜୀବନ ରୂପୀ ଆତ୍ମାକୁ ଆଲୋକିତ କରନ୍ତି । ତାଙ୍କ ବିନା ଏ ପୃଥିବୀ ଦୁଃଖ, ବିଶାଦ ଓ ବିଭିନ୍ନ ଦୁର୍ଦ୍ଦଶାର ସମ୍ମୁଖୀନ ହେବ । ସେ ଶାନ୍ତ, କମନୀୟ, ସ୍ଥିର ଓ ପ୍ରେମର ପ୍ରତୀକ, ସେଥିପାଇଁ ଆମ୍ଭେମାନେ ତାଙ୍କର ସେବକ ହୋଇ ତାଙ୍କର ସେବା କରିବା ନିତାନ୍ତ ଜରୁରୀ ।



ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ଜଗନ୍ନାଥ ମନ୍ଦିର ଉତ୍କଳୀୟ ଭାସ୍କର୍ଯ୍ୟ କଳା ଚାତୁର୍ଯ୍ୟରେ ଏକ ଅନବଦ୍ୟ କୀର୍ତ୍ତି । ଐତିହାସିକ ବିବରଣୀ ତଥା ବିଭିନ୍ନ ପ୍ରାଚୀନ ଶିଳାଲିପିରୁ ଖୋଦିତ ତଥ୍ୟ ଅନୁଯାୟୀ ଗଙ୍ଗବଂଶର ପ୍ରସିଦ୍ଧ ରାଜା ଅନଙ୍ଗ ବର୍ଦ୍ଧନ ଚୋଡ଼ଗଙ୍ଗ ଦେବଙ୍କଦ୍ୱାରା ବର୍ତ୍ତମାନର ଶ୍ରୀମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ପ୍ରାୟ ୧୨୩୦ ଖ୍ରୀଷ୍ଟାବ୍ଦରେ ତୃତୀୟ ଅନଙ୍ଗ ଭୀମଦେବଙ୍କ ସମୟରେ ସଂପୂର୍ଣ୍ଣ ହୋଇଥିବା ଜଣାଯାଇଛି । ସର୍ବପ୍ରଥମେ ପୁରୀଠାରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ଓଡ଼ିଶା ଇତିହାସରେ ଏକ ପ୍ରମୁଖ ସ୍ଥାନ ଅଧିକାର କରିଅଛି । **ଅନୁଧ୍ୟାନରୁ ଜଣାପଡ଼େ ଓଡ଼ିଶାରେ ପୁରୀ, ଖୋର୍ଦ୍ଧା, କଟକ ଓ ଅନ୍ୟାନ୍ୟ ଜିଲ୍ଲାରେ ପ୍ରାୟତଃ ୫୬,୬୪୪,୯୦୯ ଏକର ଜମି ଠାକୁରଙ୍କର ଅଛି ।** ସେହିପରି ପଶ୍ଚିମବଙ୍ଗରେ ପ୍ରାୟ ଏ. ୩୨୨.୯୩୦ ଡେ., ଆନ୍ଧ୍ରପ୍ରଦେଶରେ ପ୍ରାୟ ଏ.୧୮.୯୮୭ ଡେ., ମହାରାଷ୍ଟ୍ରରେ ପ୍ରାୟ ଏ.୨୮.୨୧୮ ଡେ., ମଧ୍ୟପ୍ରଦେଶରେ ପ୍ରାୟ ଏ.୨୬.୮୧୦ ଡେ. ଓ ବିହାରରେ ପ୍ରାୟ ଏ.୨୭୪ ଜମି ଠାକୁରଙ୍କର ଅଛି । ସେ ସମସ୍ତ ସ୍ଥାବର ଜମି ଭାରତବର୍ଷରେ ବିକ୍ଷିପ୍ତ ଭାବରେ ରହିଥିଲେ ମଧ୍ୟ ତାହା ଜଗତର ନାଥ ଜଗନ୍ନାଥଙ୍କ ସେବା ପାଇଁ ଉଦ୍ଦିଷ୍ଟ । ଯଦିଓ ମହାପ୍ରଭୁଙ୍କର ଏତେ ସ୍ଥାବର ଜମି ରହିଲା କିନ୍ତୁ ତାହା ପରିଚାଳନାଗତ ତ୍ରୁଟି ଯୋଗୁଁ ଅବହେଳିତ ହେଲା । ଜମି ଦଖଲକାରୀମାନେ ଜମିରେ ନିଜର ମାଲିକାନାସ୍ୱତ୍ତ୍ୱ ଜାହିର କଲେ ଓ ରାଜଭାଗ ଠିକ୍ ସମୟରେ ଆସିଲା ନାହିଁ । ମହାପ୍ରଭୁଙ୍କ ଆୟ ବର୍ଦ୍ଧିତ ନହୋଇ ତାହା କ୍ରମାଗତ ହ୍ରାସ ହେଲା । ଏପରିକି ହିନ୍ଦୁ ବେଦୋତ୍ତର ଆଇନର ଖିଲାପ କରି କିଛି ଲୋକ ନିଜ ନାମରେ ମହାପ୍ରଭୁଙ୍କ ସଂପତ୍ତି ଅଧିକାର ସାବ୍ୟସ୍ତ କରିବାକୁ ଚେଷ୍ଟା କଲେ । ବ୍ରିଟିଶ ସାମ୍ରାଜ୍ୟ ବିସ୍ତାର ପରେ ଏହାର ରକ୍ଷଣାବେକ୍ଷଣ ଦାୟିତ୍ୱ ଓ ନୀତି ଆଦି ରାଜା ଓ ସରକାରଙ୍କ ଉପରେ ନ୍ୟସ୍ତ ଥିଲା । ଚତୁର୍ଥ ରେଗୁଲେସନ ୧୮୦୯ ପାସ୍ ହେଲା ପରେ ମନ୍ଦିର ଦାୟିତ୍ୱ ପ୍ରଥମେ ଖୋର୍ଦ୍ଧା ରାଜା ଓ ପରେ ପୁରୀ ରାଜାଙ୍କ ଉପରେ ନ୍ୟସ୍ତ ହେଲା ।

ମହାପ୍ରଭୁ ଶ୍ରୀଜଗନ୍ନାଥ ବିଶ୍ୱର ଆରାଧ୍ୟ ଦେବତା ହୋଇଥିବାରୁ ଓ ତାଙ୍କର ସ୍ଥାବର ଅସ୍ଥାବର ସଂପତ୍ତିରେ





ପରିଚାଳନାଗତ ତ୍ରୁଟି ଦେଖାଯିବାରୁ ତାହା ଶୃଙ୍ଖଳିତ କରିବା ପାଇଁ ଓ ପ୍ରଶାସନରେ ପରିବର୍ତ୍ତନ ଆଣିବା ପାଇଁ ୧୯୫୫ ମସିହାରେ ଶ୍ରୀଜଗନ୍ନାଥ ମନ୍ଦିର ଅଧିନିୟମ ପ୍ରଣୀତ ହେଲା । ଉକ୍ତ ଅଧିନିୟମ ୧୯୫୫ର ଧାରା ୧, ୨, ୩ ପ୍ରଥମ ପର୍ଯ୍ୟାୟରେ ତା.୧୫.୧୦.୫୫ରିଖରେ କାର୍ଯ୍ୟକାରୀ ହେଲା । କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ଅବଶିଷ୍ଟ ଧାରାଗୁଡ଼ିକ (୪ଠାରୁ ୩୬ ପର୍ଯ୍ୟନ୍ତ) ତା.୨୭.୧୦.୬୦ରିଖରେ କାର୍ଯ୍ୟକାରୀ କରାଗଲା । ଉକ୍ତ ଅଧିନିୟମ ପରବର୍ତ୍ତୀ ପର୍ଯ୍ୟାୟରେ ବିଭିନ୍ନ ସମୟରେ ସଂଶୋଧନ କରାଯାଇଛି । ମନ୍ଦିର ପ୍ରଶାସନର ସୁଦୃଢ଼ କରିବା ପାଇଁ ଓ ମନ୍ଦିରର ସ୍ୱତନ୍ତ୍ରତା ତଥା ଏକାଗ୍ରତା ଆଣିବା ପାଇଁ ଉକ୍ତ ଧାରା ୨ ଅନୁସାରେ ହିନ୍ଦୁ ଦେବୋତ୍ତର ଆଇନ ଶ୍ରୀମନ୍ଦିରର ପରିଚାଳନା ତଥା ବିଭିନ୍ନ ସଂପତ୍ତିକୁ ପ୍ରଯୁଜ୍ୟ ହେବ ନାହିଁ । ଉକ୍ତ ଅଧିନିୟମଦ୍ୱାରା ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟି ଗଠନ କରାଗଲା । ଉକ୍ତ କମିଟିରେ ପୁରୀର ଗଜପତି ମହାରାଜ ଅଧକ୍ଷ ରହିଲେ । ଏହାର କାର୍ଯ୍ୟକାରୀ ଅଧକ୍ଷ ଭାବେ ଜଣେ ଅତିରିକ୍ତ ମୁଖ୍ୟ ଶାସନ ସଚିବସ୍ତରୀୟ ଅଧିକାରୀ କାର୍ଯ୍ୟକାରୀ ଅଧିକାରୀ ଭାବେ ରହିଲେ । ଅନ୍ୟମାନଙ୍କ ମଧରେ ମୁଖ୍ୟ ପ୍ରଶାସକ ଭାବରେ ଉକ୍ତ କମିଟିରେ ସଚିବ ତଥା ସଭ୍ୟ ରହିବେ । ପୁରୀର ଜିଲ୍ଲାପାଳ, ପୁଲିସ୍ ଅଧୀକ୍ଷକ, ଅତିରିକ୍ତ ଶାସନ ସଚିବ, ଆଇନ ବିଭାଗ, ଦେବୋତ୍ତର ଆୟୁକ୍ତ, ସ୍ଥାପତ୍ୟ ବିଭାଗର ଅଧୀକ୍ଷକ, ମୁକ୍ତି ମଣ୍ଡପ ତରଫରୁ ବ୍ୟକ୍ତିବିଶେଷ, ସେବକମାନଙ୍କ ତରଫରୁ ପାଞ୍ଚଜଣ ବ୍ୟକ୍ତିବିଶେଷ ମଠ ଅବା ସେବାପୂଜା ଓ ମନ୍ଦିର ନୀତି ସହ ସଂଶ୍ଳିଷ୍ଟ ଥିବା ବ୍ୟକ୍ତିବିଶେଷ, ତିନିଜଣ ଅନ୍ୟାନ୍ୟ ବ୍ୟକ୍ତିବିଶେଷ ଯେଉଁମାନଙ୍କ ମଧରେ ଜଣେ ହିସାବ ରକ୍ଷକ ସଭ୍ୟଭାବେ ରହିବେ । ଉକ୍ତ ସମସ୍ତ ସଭ୍ୟଙ୍କୁ ରାଜ୍ୟ ସରକାର ମନୋନୀତ କରିବେ ଓ ସଭ୍ୟମାନେ ହିନ୍ଦୁ ଧର୍ମାବଲମ୍ବୀ ହୋଇଥିବା ଦରକାର । ଉକ୍ତ ଅଧିନିୟମ ପ୍ରଣୀତ ହେଲାପରେ ଧାରା ୫ ମୁତାବକ ମନ୍ଦିରର ପରିଚାଳନା, ପ୍ରଶାସନ ଓ ମହାପ୍ରଭୁଙ୍କ ସଂପତ୍ତି ବିଶେଷ ଉକ୍ତ ପରିଚାଳନାଗତ କମିଟି ଉପରେ ନ୍ୟସ୍ତ କରାଗଲା । ମହାପ୍ରଭୁଙ୍କ ସଂପତ୍ତିର ମାର୍ଫତଦାର ହିସାବରେ ସମସ୍ତ ରେକର୍ଡ଼ କମିଟି ନାମରେ ରହିଲା । ମହାପ୍ରଭୁଙ୍କ ଅସ୍ଥାବର ସଂପତ୍ତି କମିଟି ଅଧୀନରେ ରଖାଗଲା । ଶ୍ରୀମନ୍ଦିର ପରିଚାଳନା କମିଟିର ଅଧ୍ୟକ୍ଷ ଓ ପଦ ପ୍ରଯୁକ୍ତ ସଭ୍ୟମାନଙ୍କ ବ୍ୟତୀତ ଅନ୍ୟ ସଭ୍ୟମାନଙ୍କ ଅବଧି ତିନି ବର୍ଷ ରହିବ ଓ ସେମାନେ ରାଜ୍ୟ ସରକାରଙ୍କଦ୍ୱାରା ପୁନଃ ମନୋନୀତ ହୋଇପାରନ୍ତି । ଧାରା ୧୦ ଅନୁସାରେ ସରକାର ମନୋନୀତ କରିଥିବା ସଭ୍ୟମାନଙ୍କୁ ବହିଷ୍କାର କରିପାରିବେ ଯଦି ଉକ୍ତ ସଭ୍ୟ କୌଣସି ଫୌଜଦାରୀ ଅଦାଲତଦ୍ୱାରା ଦଣ୍ଡିତ ହୋଇଥିବେ, ଯଦି ସେ ପାଗଳ ଅଥବା କୌଣସି ରୋଗଗ୍ରସ୍ତ ହୋଇ ମାନସିକ ଓ ଶାରୀରିକ ଭାରସାମ୍ୟ ହରାଇଥିବେ, ଯଦି ସେ ଆର୍ଥିକ ଦୃଷ୍ଟିରୁ ଦେବାଳିଆ ହୋଇଥିବେ, ଯଦି ସେ ଶ୍ରୀମନ୍ଦିର ପ୍ରଶାସନପ୍ରତି କୁବ୍ୟବହାର ପ୍ରଦର୍ଶନ କରିବେ ଅଥବା ଶ୍ରୀମନ୍ଦିର ସଂପତ୍ତି ଆତ୍ମସାତ୍ କରିବେ, ଯଦି ସେ ହିନ୍ଦୁ ଧର୍ମ ପରିତ୍ୟାଗ କରିଥିବେ, ଯଦି ସେ କ୍ରମାଗତ ଭାବେ ତିନିଥର ପରିଚାଳନାଗତ ମିଟିଂରେ ବିନା କାରଣରେ ଅନୁପସ୍ଥିତ ଥିବେ ଓ ଯଦି ଆଇନଜ୍ଞ ହୋଇ ଶ୍ରୀମନ୍ଦିରର ସ୍ୱାର୍ଥ ବିରୁଦ୍ଧରେ କୌଣସି ମାମଲା ପରିଚାଳନା କରୁଥିବେ ।

ଅଧିନିୟମ ଅନୁସାରେ ଶ୍ରୀମନ୍ଦିରର ମୁଖ୍ୟ ପ୍ରଶାସକ କମିଶନର ପାହ୍ୟାର ଅଧିକାରୀ ହେବା ବାଞ୍ଛନୀୟ ଓ ପ୍ରଶାସକ ଭାବେ ଓଡ଼ିଶା ପ୍ରଶାସନିକ ସେବାର ବରିଷ୍ଠ ଅଧିକାରୀ ହୋଇଥିବା ଆବଶ୍ୟକ । ଶ୍ରୀମନ୍ଦିର ନୀତି ଓ ଉନ୍ନତିମୂଳକ କାର୍ଯ୍ୟରେ ପ୍ରଶାସକମାନେ ନିଯୁକ୍ତି ପାଇଥାନ୍ତି । ଶ୍ରୀମନ୍ଦିର ନିରାପତ୍ତା ଓ ସୁରକ୍ଷା ପାଇଁ ଓଡ଼ିଶା ପୁଲିସ୍ ସେବାର ବରିଷ୍ଠ ଅଧିକାରୀ ପ୍ରଶାସକ (ନିରାପତ୍ତା) ଭାବେ ନିଯୁକ୍ତି ଦିଆଯାଇଥାଏ । ପ୍ରଶାସକ (ନୀତି) ଶ୍ରୀମନ୍ଦିରର ସମସ୍ତ ନୀତିକାନ୍ତି, ପର୍ବପର୍ବାଣି, ମହାପ୍ରଭୁଙ୍କ ଦର୍ଶନ ଓ ଅନ୍ୟାନ୍ୟ ସମସ୍ତ ନୀତି ସଂକ୍ରାନ୍ତ କାର୍ଯ୍ୟର ତଦାରଖ କରିବେ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ମହାପ୍ରଭୁଙ୍କ ନୀତି ବା ପୂଜା ଠିକ୍ ସମୟରେ ହେବା ପାଇଁ ଜଗନ୍ନାଥପ୍ରେମୀମାନେ ଓ ସରକାର ସଦାସର୍ବଦା ଚିନ୍ତା କରିଥାନ୍ତି । ସେହି ନୀତିର ଉତ୍ତମ ପରିଚାଳନା ପାଇଁ ଶ୍ରୀଜଗନ୍ନାଥ ଅଧିନିୟମ ପ୍ରଣୀତ କରାଯାଇଥିଲା ଓ ଶ୍ରୀମନ୍ଦିର ପରିଚାଳନା କମିଟିର ମୁଖ୍ୟ ଦାୟିତ୍ୱ ହେଉଛି ମହାପ୍ରଭୁଙ୍କ ନୀତିକାନ୍ତି ସୂଚାରୁ ରୂପେ ସଂପାଦନ ହେବା ଓ ମହାପ୍ରଭୁଙ୍କ ସଂପତ୍ତିର ରକ୍ଷଣାବେକ୍ଷଣ କରିବା ।

ଅଧିନିୟମ ମୁତାବକ ପରିଚାଳନାଗତ କମିଟି ଅର୍ଥ, ନୀତି ଓ ରତ୍ନଭଣ୍ଡାର ସମ୍ବନ୍ଧୀୟ ସବ୍‌କମିଟି ଗଠନ କରିପାରିବେ । ଧାରା ୧୬(୧) ମୁତାବକ ମହାପ୍ରଭୁଙ୍କର କୌଣସି ଅସ୍ଥାବର ସଂପତ୍ତି ଯାହାର ମୂଲ୍ୟ ଏକ ହଜାର ଟଙ୍କାରୁ ଊର୍ଦ୍ଧ୍ୱ ହୋଇଥିବ ଓ କୌଣସି ଅଳଙ୍କାର ରାଜ୍ୟ ସରକାରଙ୍କର ବିନା ଅନୁମତିରେ ବିକ୍ରୀ, ବନ୍ଧକ ଓ ଅନ୍ୟ କୌଣସି ଉପାୟରେ ହସ୍ତାନ୍ତର ହୋଇପାରିବ ନାହିଁ । ସେହିପରି ଅଧିନିୟମର ଧାରା ୧୬(୨) ମୁତାବକ କୌଣସି ସ୍ଥାବର ସଂପତ୍ତି ଯାହାକି ପରିଚାଳନାଗତ କମିଟିର ତତ୍ତ୍ୱାବଧାନରେ ରହିଛି । ରାଜ୍ୟ ସରକାରଙ୍କର ବିନା ସମ୍ମତିରେ ବିକ୍ରୟ, ବନ୍ଧକ,





ପାଞ୍ଚବର୍ଷରୁ ଊର୍ଦ୍ଧ୍ୱ ସମୟ ପାଇଁ ଲିଜ୍ ଦିଆଯାଇପାରିବ ନାହିଁ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଧାରା ୧୬(୨) ମୁତାବକ କୌଣସି ସ୍ଥାବର ସଂପତ୍ତିକୁ ରାଜ୍ୟ ସରକାରଙ୍କ ବିନା ସମ୍ମତିରେ ହସ୍ତାନ୍ତର କରାଯାଇ ପାରିବ ନାହିଁ । ଧାରା ୧୬(କ) ମୁତାବକ ମହାପ୍ରଭୁଙ୍କ କୌଣସି ଜମି ବେଆଇନ ଭାବେ ଦଖଲ କରୁଥିବା ବ୍ୟକ୍ତିବିଶେଷଙ୍କୁ ଉଚ୍ଛେଦ କରିବା ପାଇଁ ଆଇନ ମୁତାବକ କାର୍ଯ୍ୟାନୁଷ୍ଠାନ କରାଯାଇପାରିବ । ମହାପ୍ରଭୁଙ୍କ ସ୍ଥାବର ସଂପତ୍ତି ବିକ୍ରୟ କରିବା ପାଇଁ ଏକ ଜିଲ୍ଲାସ୍ତରୀୟ ଲ୍ୟାଣ୍ଡ ସବ୍‌କମିଟି ଗଠନ କରାଯାଇଛି । ଉକ୍ତ ଲ୍ୟାଣ୍ଡ ସବ୍‌କମିଟି ଜମିର ମୂଲ୍ୟାୟନ କରି ମନ୍ଦିର ପରିଚାଳନା କମିଟିକୁ ସମର୍ପଣ କରିବେ ଓ ପରିଚାଳନା କମିଟି ତାହା ଅନୁମୋଦନ କରି ରାଜ୍ୟ ଲ୍ୟାଣ୍ଡ କମିଟିଙ୍କୁ ପ୍ରେରଣ କରିବେ । ରାଜ୍ୟ ଲ୍ୟାଣ୍ଡ କମିଟି ଉକ୍ତ ଜମିର ମୂଲ୍ୟାୟନ ଅନୁମୋଦନ କଲାପରେ ରାଜ୍ୟ ସରକାର ଧାରା ୧୬(୨) ଅନୁସାରେ ବିକ୍ରୟ ପାଇଁ ଅଥବା ଜମି ହସ୍ତାନ୍ତର କରିବା ପାଇଁ ବିଚାର କରିବେ ।

ମହାପ୍ରଭୁଙ୍କ ନୀତିର ସୁପରିଚାଳନା ପାଇଁ ସେବକ, ସେବାୟତ, ଅଧିକାରୀ ଓ ପରିଚାଳନା କମିଟିର ସଭ୍ୟମାନେ ଯତ୍ନବାନ ହେବା ଦରକାର । ଅଧିନିୟମ ଧାରା ୩୦(କ) ମୁତାବକ ଶ୍ରୀଜୀଉଙ୍କର ନୀତିରେ ଅବହେଳା, ସେବାପୂଜାରେ ବିଭ୍ରାଟ, ନୀତିରେ ବିଳମ୍ବ, ନୀତି କରୁଥିବା ବ୍ୟକ୍ତିବିଶେଷଙ୍କୁ ବଳପୂର୍ବକ ହଇରାଣ ହରକତ, ଅନ୍ନ ମହାପ୍ରସାଦ ନିର୍ଦ୍ଦିଷ୍ଟ ସ୍ଥାନ ବ୍ୟତୀତ ଅନ୍ୟଠାରେ ବିକ୍ରୟ, ଯାତ୍ରୀମାନଙ୍କପ୍ରତି ଦୁର୍ବ୍ୟବହାର, ଯେକୌଣସି ସ୍ଥାନରେ ମନ୍ଦିର ପରିସର ଭିତରେ ମଳତ୍ୟାଗ କିମ୍ବା ଅଶାଳୀନ ଭାଷା ବ୍ୟବହାର କରିବା ଓ ମାଦକ ଦ୍ରବ୍ୟ ନିଜେ ସେବନ କରିବା ଇତ୍ୟାଦି ଧର୍ତ୍ତବ୍ୟ ଅପରାଧ ଅଟେ । ଏହି ଅପରାଧ କଲେ ଜେଲ୍ ଜୋରିମାନା ହେବାରେ ଅଧିନିୟମରେ ବ୍ୟବସ୍ଥା ଅଛି । ଏଥିରେ ପୋଲିସ୍ ଅପରାଧୀକୁ ଗିରଫ କରିପାରିବେ ଓ ବିଚାର ବିଭାଗ ଅଦାଲତ ଏହାର ବିଚାର କରି ଜେଲ୍ ଜୋରିମାନା କରିପାରିବେ ବୋଲି ଅଧିନିୟମରେ ଉଲ୍ଲେଖ ଅଛି । ଏତଦ୍‌ବ୍ୟତୀତ ମୁଖ୍ୟ ପ୍ରଶାସକଙ୍କୁ ବିଭାଗୀୟ କାର୍ଯ୍ୟାନୁଷ୍ଠାନ ପାଇଁ ସମସ୍ତ କ୍ଷମତା ଦିଆଯାଇଅଛି । ମୁଖ୍ୟ ପ୍ରଶାସକ ମନ୍ଦିରର ସୁରକ୍ଷା, ଶାନ୍ତିଶୃଙ୍ଖଳା ଓ ଶ୍ରୀମନ୍ଦିରର ସମ୍ମାନ ରକ୍ଷା କରିବା ପାଇଁ ସେବକ, ମନ୍ଦିର କର୍ମଚାରୀ, ଅଫିସରମାନଙ୍କୁ ଶୃଙ୍ଖଳିତ କରିବେ । ଯଦି କୌଣସି ବ୍ୟକ୍ତିବିଶେଷ ଦାୟିତ୍ୱରେ ଅବହେଳା, ଆଇନତଃ ଆଦେଶକୁ ଅବମାନନା, ଦୁର୍ବ୍ୟବହାର, ଶ୍ରୀମନ୍ଦିରର ଶାନ୍ତିଶୃଙ୍ଖଳା ଓ ଶ୍ରୀମନ୍ଦିରର ସମ୍ମାନ ପ୍ରତି ଆଞ୍ଚ ଆଣନ୍ତି, ତାଙ୍କ ବିରୋଧରେ ବିଭିନ୍ନ ପ୍ରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇପାରିବ । ମୁଖ୍ୟ ପ୍ରଶାସକ ଏଭଳି ଗୁରୁତ୍ୱପୂର୍ଣ୍ଣ ବିଶୃଙ୍ଖଳାରେ ମାସିକ ପ୍ରାପ୍ୟ ବନ୍ଦ କରିବା, ଜୋରିମାନା ଦେୟ କରିବା, ନିଲମ୍ବନ ଆଦେଶ ଦେବା ଓ ବହିଷ୍କାର କରିବା ପର୍ଯ୍ୟନ୍ତ ଅଭିଯୁକ୍ତଙ୍କ ବିରୋଧରେ ଆଦେଶ ଦେଇପାରିବେ । ଏଥିରୁ ଜଣାପଡ଼େ ଯେ ଶ୍ରୀମନ୍ଦିରର ସୁପରିଚାଳନା ପାଇଁ ଦକ୍ଷ ପ୍ରଶାସନ ଉତ୍ତରଦାୟୀ । ସେଥିପାଇଁ ସମସ୍ତ ଭକ୍ତ ଜଗତ ଅର୍ଥାତ୍ ସେବକ ଓ ପ୍ରଶାସକ ଶ୍ରୀଜଗନ୍ନାଥଙ୍କ ପଦାରବିନ୍ଦରେ ନିଜକୁ ସମର୍ପଣ କରି ପ୍ରଭୁଙ୍କର ଆଶୀର୍ବାଦ କାମନା କରିବା ବାଞ୍ଛନୀୟ । ଏହାଦ୍ୱାରା ମାନବ ସମାଜର ଓ ସମଗ୍ର ବିଶ୍ୱର ଉନ୍ନତି ସାଧିତ ହେବ ।

ଅତିରିକ୍ତ ଶାସନ ସଚିବ
ଆଇନ ବିଭାଗ, ଭୁବନେଶ୍ୱର



# ଶ୍ରୀମନ୍ଦିରର ପରିଚାଳନା ଇତିହାସ

ଡକ୍ଟର ଭାସ୍କର ମିଶ୍ର

**ପୁ**ଣ୍ୟଭୂମି ଭାରତବର୍ଷର ଚାରିଧାମ ମଧ୍ୟରେ ଅନ୍ୟତମ ଶ୍ରୀପୁରୁଷୋତ୍ତମ ଧାମ ଏବଂ ତତ୍ର ପ୍ରତିଷ୍ଠିତ ଶ୍ରୀଜଗନ୍ନାଥ ମନ୍ଦିର ସମଗ୍ର ବିଶ୍ୱର ଆଧ୍ୟାତ୍ମିକ ତଥା ସାଂସ୍କୃତିକ ପରମ୍ପରା ଦୃଷ୍ଟିରୁ ଅନନ୍ୟ । ପୃଥିବୀର କୋଣ ଅନୁକୋଣରେ ବାସ କରୁଥିବା ଅଗଣିତ ଭକ୍ତଜନଙ୍କର ଚରମ ଓ ପରମ ଶାନ୍ତିର ନିକେତନ ତଥା ପ୍ରାଣକର୍ତ୍ତା ରୂପରେ ଜଗତର ନାଥ ଶ୍ରୀଜଗନ୍ନାଥ ଧର୍ମକ୍ଷେତ୍ର ପୁଣ୍ୟ ନୀଳାଚଳରେ ସତତ ବିଦ୍ୟମାନ । ଏହି କାରଣରୁ ପୁରୀ ଧାମ ଓ ଶ୍ରୀଜଗନ୍ନାଥ ମନ୍ଦିର ପୃଥିବୀର ଏକ ଅନବଦ୍ୟ ସାଂସ୍କୃତିକ ଓ ଆଧ୍ୟାତ୍ମିକ ପରମ୍ପରାର ସ୍ମାରକୀ ବହନ କରି ଗୋଟିଏ ମହାନ୍ ତୀର୍ଥ ସ୍ଥାନର ମର୍ଯ୍ୟାଦାଲାଭ କରିଆସୁଅଛି ।



ସ୍ମରଣାତୀତ କାଳରୁ ଶ୍ରୀକ୍ଷେତ୍ରର ନୀଳଗିରି ପର୍ବତରେ ନୀଳମାଧବଙ୍କ ଅବସ୍ଥିତି ଓ ତତ୍‌ପରେ, ଶ୍ରୀପୁରୁଷୋତ୍ତମ ନାମରେ ବିରାଜିତ ହୋଇ ପୂଜାର୍ଚ୍ଚନା ପାଇଆସୁଥିଲେ । ବିଭିନ୍ନ ପୁରାଣ, ଉପପୁରାଣମାନଙ୍କରୁ ମିଳୁଥିବା ତଥ୍ୟ ଅନୁଯାୟୀ ସତ୍ୟଯୁଗରେ ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନ ଏହି କ୍ଷେତ୍ରର ଅଧିଷ୍ଠିତ ଦେବତାଙ୍କୁ ଦର୍ଶନ କରିବା ଅଭିଳାଷରେ ଶ୍ରୀକ୍ଷେତ୍ରରେ ପଦାର୍ପଣ କରି ନୀଳମାଧବ ଅଦୃଶ୍ୟ ହୋଇଯିବା ପରେ ଏଠାରେ ଯଜ୍ଞାଦି ଅନୁଷ୍ଠାନ ପୂର୍ବକ ଶ୍ରୀବିଗ୍ରହମାନଙ୍କୁ ପ୍ରତିଷ୍ଠା କରିଥିଲେ । ଐତିହାସିକ ବିବରଣୀ ଅନୁଯାୟୀ, ମାନତୁଙ୍ଗ ତାଙ୍କ 'ଭକ୍ତ ମର-ସ୍ତୋତ୍ର' ନାମକ ଗ୍ରନ୍ଥରେ ଜୈନ ତୀର୍ଥଙ୍କର ଋଷଭ ଦେବଙ୍କ ସ୍ତୁତିଗାନ କରିବାକୁ ଯାଇ ତାଙ୍କୁ ବୁଦ୍ଧ ଦେବ, ଶଙ୍କର (ଶିବ) ଓ ପୁରୁଷୋତ୍ତମଙ୍କ ସଙ୍ଗେ ତୁଳନୀୟ ବୋଲି ଲେଖିଥିଲେ । ସେହି ଶ୍ଳୋକର ଶେଷ ପାଦଟି ଏମ୍. ୱିଣ୍ଟାରନିଜ୍ ନିମ୍ନପ୍ରକାରେ ଇଂରାଜୀରେ ଅନୁବାଦ କରିଛନ୍ତି- 'Thou O Lord, art Purusottama, the highest of all the beings.'(୧)

ମାନତୁଙ୍ଗଙ୍କ ସମୟ ବିଭିନ୍ନ ପଣ୍ଡିତ, ଗବେଷକମାନଙ୍କ ମତରେ ଖ୍ରୀ: ତୃତୀୟ ଶତାବ୍ଦୀଠାରୁ ଅଷ୍ଟମ ଶତାବ୍ଦୀ ମଧ୍ୟରେ ସ୍ଥିରୀକୃତ ହୋଇଛି । ସେହିକାଳ ମଧ୍ୟରେ ଶ୍ରୀପୁରୁଷୋତ୍ତମ ଏ ଦେଶର ସର୍ବଶ୍ରେଷ୍ଠ ଦେବତା ରୂପେ ଜୈନ ଧର୍ମାବଲମ୍ବୀ ମାନତୁଙ୍ଗ ମଧ୍ୟ ପ୍ରଚାର କରିଥିଲେ ।(୨)

ଖ୍ରୀଷ୍ଟୀୟ ପ୍ରାୟ ଦଶମ ଶତାବ୍ଦୀର ପ୍ରାରମ୍ଭରେ ସୋମବଂଶୀୟ ମହାରାଜା ମହାଶିବ ଗୁପ୍ତ ଯଯାତି ଭଗ୍ନ ହୋଇ ପଡ଼ିଥିବା ପ୍ରାସାଦ ନିକଟରେ ବର୍ତ୍ତମାନର ମୁକ୍ତିମଣ୍ଡପ ସମ୍ମୁଖରେ ଏକ ମନ୍ଦିର ନିର୍ମାଣ କରି ତହିଁରେ ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହ ସ୍ଥାପନ କରିଥିଲେ । ଯଯାତିଙ୍କ ପୂର୍ବରୁ ନବମ ଶତାବ୍ଦୀରେ ମୁରାରୀ ମିଶ୍ରଙ୍କ ରଚିତ 'ଅନର୍ଘ ରାଘବ' ନାଟକ ଶ୍ରୀପୁରୁଷୋତ୍ତମଙ୍କ ସମ୍ମୁଖରେ ପରିବେଶିତ ହୋଇଥିଲା ।

ପରିଦୃଶ୍ୟମାନ ଶ୍ରୀମନ୍ଦିରର ନିର୍ମାତା ଅନନ୍ତବର୍ମ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ କାଳ ୧୦୭୮ରୁ ୧୧୪୭ ଖ୍ରୀଷ୍ଟାବ୍ଦ ବୋଲି ଐତିହାସିକମାନେ ସ୍ଥିର କରିଛନ୍ତି । ତା.୧୭.୨.୧୦୭୮ ଶନିବାର ରେବତୀ ନକ୍ଷତ୍ର ଓ ମିଥୁନ ଲଗ୍ନରେ ତାଙ୍କର ରାଜ୍ୟାଭିଷେକ ହୋଇଥିଲା । ସେତେବେଳକୁ ତାଙ୍କର ବୟସ ହୋଇଥିଲା ମାତ୍ର ୫ ବର୍ଷ । ବୀର ଚୋଡ଼ଙ୍କର ଶିଶୁ କନ୍ୟା

'ଗୁଣ୍ଡିଚୋଡ଼ି' ସହିତ ତାଙ୍କର ଶୁଭ ବିବାହ ଅନୁଷ୍ଠିତ ହୋଇଥିଲା । ଚୋଡ଼ଗଙ୍ଗଙ୍କ ୪୦ ବର୍ଷ ବୟସରେ ସେ ତ୍ରିକଳିଙ୍ଗାଧିପତି ଭାବେ ପ୍ରାଚୀନ ରାଜଧାନୀ କଳିଙ୍ଗ ନଗର ବଂଶଧାରା ନଦୀ କୂଳରୁ ସ୍ଥାନାନ୍ତରିତ କରି ମହାନଦୀ କୂଳରେ ଅଭିନବ 'ବାରାଣାସୀ'ଠାରେ ନୂତନ ରାଜଧାନୀ ସ୍ଥାପନ କରିଥିଲେ । ଦୀର୍ଘ ୭୦ ବର୍ଷ କାଳ ପର୍ଯ୍ୟନ୍ତ ଚୋଡ଼ଗଙ୍ଗଙ୍କ ଦକ୍ଷ ଶାସନ ଫଳରେ ରାଜନୈତିକ ସ୍ଥିରତା ଏବଂ ଧାର୍ମିକ ସଂହତି ପ୍ରତିଷ୍ଠିତ ହୋଇପାରିଥିଲା । ତାଙ୍କର ଶେଷ ଜୀବନ ଶ୍ରୀକ୍ଷେତ୍ରର ଚୁଡ଼ଙ୍ଗ ସାହିରେ କଟିଥିଲା । ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କର ଶିଳ୍ପ ଶାସ୍ତ୍ରାନୁମୋଦିତ ପଞ୍ଚ ରଥ ବିଶିଷ୍ଟ ରେଖ ଦେଉଳ ନିର୍ମାଣର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ କରିଥିଲେ ।(୩) ଏହାର ୮୪ ବର୍ଷ ପରେ ତାଙ୍କର ଅଣନାତି ପରମ ବିଷ୍ଣୁ ଭକ୍ତ ପ୍ରଚଣ୍ଡ ପ୍ରତାପୀ ଅନଙ୍ଗ ଭୀମଦେବ (ତୃତୀୟ) ୧୨୩୦ ଖ୍ରୀଷ୍ଟାବ୍ଦରେ ଶାସ୍ତ୍ରାନୁମୋଦିତ ଭାବେ ବଡ଼ ଦେଉଳର ପ୍ରତିଷ୍ଠା ସମ୍ପନ୍ନ କରି ସେଥିରେ ତିନିମୂର୍ତ୍ତିଙ୍କୁ ସ୍ଥାପନ କରିଥିଲେ । ତାଙ୍କର ନଗରୀ ତାମ୍ର ଶାସନରେ ଏ ପ୍ରସଙ୍ଗ ଉଲ୍ଲେଖ ଅଛି । ବଡ଼ ଦେଉଳରେ ପ୍ରତିଷ୍ଠିତ ତିନି ଠାକୁରଙ୍କ ମଧ୍ୟରେ ଶ୍ରୀପୁରୁଷୋତ୍ତମ ଶ୍ରେଷ୍ଠ ହୋଇଥିବାରୁ ଏହି ମନ୍ଦିରଟି ତାଙ୍କ ନାମରେ ନାମିତ ହୋଇଥିଲା ।(୪)

ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ରାଜାମାନଙ୍କ ଅମଳରେ ଠାକୁରମାନଙ୍କୁ ବହୁ ଜମିବାଡ଼ି, ଧନରତ୍ନ ଦାନ ଦିଆଯାଇ ଥିଲା । ମନ୍ଦିରର ନୀତି ପରିଚାଳନାରେ ତ୍ରୁଟି ଦେଖା ଦେଲେ ଦୋଷୀକୁ ରାଜଦଣ୍ଡ ମିଳୁଥିଲା ।

ଅନଙ୍ଗ ଭୀମଦେବଙ୍କ ସମୟରେ ବିଭିନ୍ନ ସେବାପୂଜା, ସେବକ ବ୍ୟବସ୍ଥା, ଭୋଗ, ଉତ୍ସବ ସର୍ବୋପରି ପରିଚାଳନା ଇତ୍ୟାଦି ଶୃଙ୍ଖଳିତ ଭାବେ ପ୍ରତିଷ୍ଠିତ ହୋଇଥିବା ଜଣାଯାଏ । ଉକ୍ତ ଦିନଠାରୁ ଶ୍ରୀଜଗନ୍ନାଥ ମନ୍ଦିର ସ୍ୱାଧୀନ ହିନ୍ଦୁ ମହାରାଜାମାନଙ୍କଦ୍ୱାରା ପ୍ରତ୍ୟକ୍ଷ ନିୟନ୍ତ୍ରଣାଧୀନରେ ୧୫୬୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନିର୍ବିଘ୍ନରେ ଚାଲିଥିବା ଐତିହାସିକ ତଥ୍ୟରୁ ଉପଲବ୍ଧ ହେଉଅଛି । ଏହାପରେ ଶ୍ରୀମନ୍ଦିର ପ୍ରଶାସନ ୧୫୬୮ରୁ ୧୫୯୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଆଫଗାନ୍, ଖ୍ରୀ:୧୫୯୦ରୁ ୧୭୫୧ ପର୍ଯ୍ୟନ୍ତ ମୁସଲମାନ, ଖ୍ରୀ:୧୭୫୧ରୁ ୧୮୦୩ ପର୍ଯ୍ୟନ୍ତ ମରହଟ୍ଟା ଏବଂ ୧୮୦୩ଠାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଇଂରେଜ ଶାସନାଧୀନ ରହିଆସିଥିଲା ।

ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ରାଜାମାନଙ୍କ ଅମଳରେ ଠାକୁରମାନଙ୍କୁ ବହୁ ଜମିବାଡ଼ି, ଧନରତ୍ନ ଦାନ ଦିଆଯାଇ ଥିଲା । ମନ୍ଦିରର ନୀତି ପରିଚାଳନାରେ ତ୍ରୁଟି ଦେଖା ଦେଲେ ଦୋଷୀକୁ ରାଜଦଣ୍ଡ ମିଳୁଥିଲା । ମୋଗଲମାନଙ୍କ ରାଜତ୍ୱରେ ରାଜା ମାନସିଂହ ଖୋର୍ଦ୍ଧା ରାଜା ରାମଚନ୍ଦ୍ର ଦେବଙ୍କୁ ଖ୍ରୀ:୧୫୯୦ରେ ପୁରୀ ବଡ଼ଦେଉଳ ପରିଚାଳନା ଭାର ଅର୍ପଣ କରିଥିଲେ ।

ଅଷ୍ଟାଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ମରହଟ୍ଟାମାନେ ନବାବ ଆଲିବର୍ଦ୍ଦି ଖାଁଙ୍କଠାରୁ ଓଡ଼ିଶାର ଶାସନ ହାତକୁ ନେବାପରେ ମରହଟ୍ଟା ଶାସକମାନେ ନିଜ ତତ୍ତ୍ୱାବଧାନରେ ଶ୍ରୀମନ୍ଦିରକୁ ରଖିଥିଲେ । ଠାକୁରମାନଙ୍କ ନୀତି ଭଲଭାବରେ ଚଳିବା ପାଇଁ ବହୁତ ଜମି ଖଞ୍ଜିଥିଲେ । ମୁସଲମାନମାନଙ୍କର ରାଜତ୍ୱ ସମୟରେ ଯାତ୍ରୀମାନଙ୍କ ଉପରେ କର ଆଦାୟ ହେଉଥିଲା । ମରହଟ୍ଟାମାନେ ମଧ୍ୟ ଯାତ୍ରୀ କର ଆଦାୟ କରୁଥିଲେ । କେତେକ ପରିଛାମାନଙ୍କୁ ନିଯୁକ୍ତ କରି ମରହଟ୍ଟାମାନେ ଶ୍ରୀମନ୍ଦିର ପରିଚାଳନା କରୁଥିବା ଜଣାଯାଏ ।

ଇଂରେଜ ପ୍ରଶାସକ ଲର୍ଡ଼ ଓ୍ୱେଲସଲି ପୁରୀ ଏବଂ ଶ୍ରୀମନ୍ଦିରକୁ ଦଖଲ ନେବାବେଳେ କିପରି ଭାବରେ ଚଳିବାକୁ ହେବ ସେ ସମ୍ବନ୍ଧରେ ସୈନିକମାନଙ୍କୁ ଆଦେଶ ଦେଇଥିଲେ, 'ତୁମ୍ଭେମାନେ ଶ୍ରୀଜଗନ୍ନାଥ ପୁରୀରେ ପହଞ୍ଚିବା ପରେ ବଡ଼ ଦେଉଳର ମାନ ମର୍ଯ୍ୟାଦା, ବ୍ରାହ୍ମଣ, ସେବକ ଓ ଯାତ୍ରୀମାନଙ୍କର ଧର୍ମ ବିଶ୍ୱାସ ପ୍ରତି ଯେପରି କୌଣସି ଆଘାତ ନ ଲାଗେ, ସେଥିପାଇଁ ସତର୍କ ରହିବ । ଜଗନ୍ନାଥ ମନ୍ଦିର ସମେତ ବିଭିନ୍ନ ଦେବ ମନ୍ଦିରମାନଙ୍କର ନିରାପତ୍ତା ପାଇଁ ଯଥେଷ୍ଟ ଜଗୁଆଳ ରଖିବ । ନୀତି, ପର୍ବପର୍ବାଣି, ଯାତ୍ରା, ଉତ୍ସବ ଇତ୍ୟାଦି ଯେପରି ନିରାପଦରେ ସମାହିତ ହୁଏ, ସେଥିପ୍ରତି ଦୃଷ୍ଟି ରଖିବ ।' ସେହି ସମୟରେ ବୁଦ୍ଧିମାନ ବ୍ରିଟିଶ ସେନାପତି ଶ୍ରୀଜଗନ୍ନାଥ ମନ୍ଦିର ରକ୍ଷା ନିମନ୍ତେ ନଗଦ ଟଙ୍କା ଦେବାର ବନ୍ଦୋବସ୍ତ କରିଥିବାରୁ ଉତ୍କଳୀୟମାନେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ମରହଟ୍ଟା ସରକାରଙ୍କ ରାଜତ୍ୱବେଳେ ବଡ଼ ଦେଉଳର ନୀତି ସବୁ ଯେପରି ଚଳୁଥିଲା, ଇଂରେଜ ସରକାର ସେହିପରି ଚଳାଇଲେ । ତିନି ଚାରି ବର୍ଷ ଏହିପରି ଚଳାଇବା ପରେ ଆୟଠାରୁ ବ୍ୟୟ ବେଶୀ ହୋଇଥିବାରୁ ସରକାର ହାତରୁ ଟଙ୍କା ଦେଇ ଶ୍ରୀମନ୍ଦିର କାର୍ଯ୍ୟ ନିର୍ବାହ କରିବାକୁ ବାଧ୍ୟ ହୋଇଥିଲେ । ପରବର୍ତ୍ତୀ ସମୟରେ ୧୮୦୮ ଖ୍ରୀଷ୍ଟାବ୍ଦରେ ରେଗୁଲେସନ୍ (ନଂ୪) ଜାରି କରି ତିନି ଜଣ ପଣ୍ଡିତଙ୍କୁ ନେଇ ଗୋଟିଏ କମିଟି ଗଠନ କଲେ ଏବଂ ସେହି କମିଟି ହାତରେ ମନ୍ଦିରର ପରିଚାଳନା ଭାର ରହିଥିଲା । ୧୮୪୦ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ମନ୍ଦିରର ପରିଚାଳନା ଭାର ପୁରୀ ରାଜାଙ୍କ ହାତରେ ନ୍ୟସ୍ତ ରହିଲା ।(୫) ୧୮୫୮ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ସରକାର ଶ୍ରୀମନ୍ଦିରକୁ ତାଙ୍କକର୍ତ୍ତୃତ୍ୱ ଛିନ୍ନ କରିବାକୁ ଯାଇ ପୁରୀ ରାଜାଙ୍କୁ ୧୫୬ଟି 'ଏଖରାଜାତ ମାହାଲ' ଶ୍ରୀମନ୍ଦିର ପରିଚାଳନା

ଉଦ୍ଦେଶ୍ୟରେ ହସ୍ତାନ୍ତରିତ କରିଥିଲେ । ସେଥିରୁ ୧୩୮ ଗ୍ରାମର ସମସ୍ତ ଆୟରୁ ଶତକଡ଼ା ୨୦ ଭାଗ ଏବଂ ୧୮ଟି ଗ୍ରାମର ସମୁଦାୟ ପାଉଣା ଶ୍ରୀମନ୍ଦିର ପକ୍ଷରୁ ଆଦାୟ ହେଉଥିଲା । ଏହାଛଡ଼ା ମରହଟ୍ଟା ରାଜତ୍ୱବେଳେ ଟ.୨୭୦୦୦/- ନଗଦ ଟଙ୍କା ୯୦ଟି ଗ୍ରାମରୁ 'ସତେଇଶି ହଜାରୀ ମାହାଲ' ଆୟ ଅର୍ଥ ୧୮୪୩ ମସିହାରେ ପୁରୀ ରାଜାଙ୍କ ନାମରେ ହସ୍ତାନ୍ତରିତ ହୋଇଥିଲା ।

ଇଂରେଜ ଶାସନାଧୀନ ସମୟରେ ଖୋର୍ଦ୍ଧା ଓ ତତ୍‌ପରେ ପୁରୀ ଗଜପତି ମହାରାଜାମାନେ ବିଭିନ୍ନ ସମୟରେ କିଛି ବର୍ଷ ଧରି ଶ୍ରୀମନ୍ଦିରର ସୁପରିନ୍‌ଟେଣ୍ଡେଣ୍ଟ ଭାବରେ ନିଯୁକ୍ତି ପାଇ ମନ୍ଦିରର ନୀତି, ରୀତି ତଥା ପରିଚାଳନା ଆଦିର ତତ୍ତ୍ୱାବଧାନ ଦାୟିତ୍ୱରେ ରହିଥିଲେ ।

> ଭାରତ ସ୍ୱାଧୀନତା ଲାଭ କରିବା ପରେ ବିଭିନ୍ନ କାରଣରୁ ଶ୍ରୀମନ୍ଦିର ନୀତି ଓ ପରିଚାଳନାରେ କ୍ରମାଗତ ବିଶୃଙ୍ଖଳା ସୃଷ୍ଟି ହୋଇ କେତେ ସମସ୍ୟା ଉପୁଜିବାରୁ ରାଜ୍ୟ ସରକାର ୧୯୫୨ ମସିହାରେ 'ପୁରୀ ଜଗନ୍ନାଥ ମନ୍ଦିର (ପ୍ରଶାସନ) ଆଇନ୍' ପ୍ରଣୟନ କଲେ ।

୧୮୦୫ ମସିହାରେ ପୁରୀ ମନ୍ଦିରର ପରିଚାଳନା ସମ୍ବନ୍ଧେ ଗ୍ରୋମ୍ ସାହେବ ଯେଉଁ ସୁବିସ୍ତୃତ ରିପୋର୍ଟ ଦାଖଲ କରିଥିଲେ, ତହିଁରେ ମନ୍ଦିର ପରିଚାଳନାର ବିଶୃଙ୍ଖଳା ଓ ଏହାର ପ୍ରତିକାର ବ୍ୟବସ୍ଥା ସ୍ଥାନ ପାଇଥିଲା । ସେହିପରି ୧୯୦୨ ମସିହାରେ ଗ୍ୟାରେଟ୍ ସାହେବ ପାଇଁ ରିପୋର୍ଟ ସରକାରଙ୍କଠାରେ ଦାଖଲ କରିଥିଲେ ତହିଁର ପରିଶିଷ୍ଟରେ ଶ୍ରୀମନ୍ଦିର ସଂପର୍କରେ ବିଭିନ୍ନ ଆଇନ୍ ପ୍ରଣୟନ କରାଯିବା ଉଚିତ୍ ବୋଲି ଦର୍ଶାଇଥିଲେ । ୧୮୬୦ରୁ ୧୮୯୭ ମସିହା ପର୍ଯ୍ୟନ୍ତ ରାଣୀ ସୂର୍ଯ୍ୟମଣି ପାଟ ମହାଦେଈ ଶ୍ରୀମନ୍ଦିରର ସୁପରିନ୍‌ଟେଣ୍ଡେଣ୍ଟ ଦାୟିତ୍ୱ ତୁଲାଇଥିଲେ । ଇଂରେଜ ସରକାର ଓ ରାଣୀଙ୍କ ମଧ୍ୟରେ ଆପୋଷ ରାଜିନାମା ହେବା ଫଳରେ ସରକାର ସିଭିଲ୍ କୋର୍ଟରୁ ସୁଟ୍ ଉଠାଇ ଆଣିଥିଲେ । ସର୍ତ୍ତ ଅନୁଯାୟୀ ଶ୍ରୀମନ୍ଦିରର ଦାୟିତ୍ୱ ପୁରୀ ରାଜାଙ୍କୁ ଦିଆଯିବା ସଂଗେସଂଗେ ମନ୍ଦିର ପରିଚାଳନା ବାବଦରେ ତାଙ୍କୁ ସାହାଯ୍ୟ କରିବା ପାଇଁ ଜଣେ ଦକ୍ଷ ମ୍ୟାନେଜର ନିଯୁକ୍ତି କରିବେ । ଏପରିକି ମ୍ୟାନେଜରଙ୍କ କ୍ଷମତା କ'ଣ ତାହା ଏକ ରାଜିନାମା ଡିକ୍ରୀରେ ଉଲ୍ଲେଖ ରହିଥିଲା । ୧୮୮୮ ଖ୍ରୀଷ୍ଟାବ୍ଦ ଡିସେମ୍ବର ୧୫ ତାରିଖରେ ବ୍ରିଟିଶ ସରକାର ଓ ରାଣୀ ସୂର୍ଯ୍ୟମଣି ପାଟ ମହାଦେଈଙ୍କ ମଧ୍ୟରେ ଏକ ରାଜିନାମା ହୋଇ ଏକ ସର୍ତ୍ତ ରହିଥିଲା । ତାହା ହେଲା-

କ) ପୁରୀ ରାଜା ଶ୍ରୀମନ୍ଦିର ପରିଚାଳକ ରହିବେ ।

ଖ) ସୂର୍ଯ୍ୟମଣି ପାଟ ମହାଦେଈ ନାବାଳକ ରାଜାଙ୍କର ଗାର୍ଡ଼ିଆନ୍ ରହିବେ ।

ଗ) ପୁରୀ ମନ୍ଦିର ପରିଚାଳନା ପାଇଁ ଜଣେ ଦକ୍ଷ ମ୍ୟାନେଜରଙ୍କୁ ନିଯୁକ୍ତି କରିବେ ଓ ବରଖାସ୍ତ ମଧ୍ୟ କରିପାରିବେ ।

ଘ) ଯଦି କୌଣସିସ କାରଣରୁ ରାଣୀ ମ୍ୟାନେଜର ପଦ କିଛି ସମୟ ବିନା କାରଣରେ ଖାଲି ରଖନ୍ତି, କଚେରୀ ମ୍ୟାନେଜର ନିଯୁକ୍ତି କରିପାରିବେ ।

ଙ) ମ୍ୟାନେଜର ଶ୍ରୀମନ୍ଦିର ପରିଚାଳନା ଦାୟିତ୍ୱପୂର୍ଣ୍ଣ ମାତ୍ରାରେ ଗ୍ରହଣ କରିବେ ।

ଇଂରେଜ ସରକାରଙ୍କ ସମୟରେ ପୁରୀ ଗଜପତି ମହାରାଜାମାନେ ଶ୍ରୀମନ୍ଦିରର ସୁପରିନ୍‌ଟେଣ୍ଡେଣ୍ଟ ଦାୟିତ୍ୱରେ ଥିବା ସମୟରେ ୧୮୮୯ ମସିହାଠାରୁ ୧୯୨୬ ମସିହା ପର୍ଯ୍ୟନ୍ତ ମ୍ୟାନେଜରମାନେ ଶ୍ରୀମନ୍ଦିରର ପରିଚାଳନା ଦାୟିତ୍ୱରେ ରହିଥିଲେ - ୧୮୮୯ଠାରୁ ୧୮୯୦ ମସିହା - ଶ୍ରୀ ହରେକୃଷ୍ଣ ଦାସ, ୧୮୯୦ଠାରୁ ୧୮୯୩ ମସିହା - ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି, ୧୮୯୩ ମସିହା - ଶ୍ରୀ ଆର୍.କେ. କୁଣ୍ଡୁ, ୧୮୯୩ଠାରୁ ୧୮୯୫ ମସିହା - ଶ୍ରୀ ଜେ.ଏନ୍. ଚୌଧୁରୀ, ୧୮୯୫ ମସିହା - ଶ୍ରୀ ନିତ୍ୟାନନ୍ଦ ଦାସ (ଅଳ୍ପଦିନ ପାଇଁ), ୧୮୯୮ ମସିହା - ମିଷ୍ଟର ପ୍ରାଇସ୍ (ପୂର୍ବତନ ଆଇ.ସି.ଏସ୍.), ଅଳ୍ପଦିନ ପାଇଁ - ପୁନଶ୍ଚ ୧୯୦୦ ମସିହାରେ ଅଳ୍ପ ସମୟ ପାଇଁ ମିଷ୍ଟର ପ୍ରାଇସ୍ ମ୍ୟାନେଜର ରୂପେ କାର୍ଯ୍ୟ ତୁଲାଇଥିଲେ, ୧୯୦୦ (ମଇ ମାସ)ରୁ ଅକ୍ଟୋବର ୧୯୦୦ - ଶ୍ରୀ ଚିନ୍ତାମଣି ପଟ୍ଟନାୟକ, ୧୯୦୦ (ଅକ୍ଟୋବର) - ଶ୍ରୀ ରାସ ବିହାରୀ ନାୟକ (ଅଳ୍ପଦିନ ପାଇଁ), ୧୯୦୩ (ମଇ ମାସ)ଠାରୁ ୧୯୧୩ (ମଇ ମାସ) - ଶ୍ରୀ ରାଜ କିଶୋର ଦାସ, ୧୯୧୩ (ମଇ ମାସ)ଠାରୁ ୧୯୧୭ (ମଇ ମାସ) - ଶ୍ରୀ ଗୌରଶ୍ୟାମ ମହାନ୍ତି, ୧୯୧୭ (ମଇ ମାସ)ଠାରୁ ୧୯୨୧ (ମଇ ମାସ) - ଶ୍ରୀ ବାଳ ମୁକୁନ୍ଦ କାନୁନ୍‌ଗୋ, ୧୯୨୧ (ମଇ ମାସ)ଠାରୁ ୧୯୨୫ (ମଇ ମାସ) - ଶ୍ରୀ ସଖି ଚାନ୍ଦ, ୧୯୨୫ (ମଇ ମାସ)ଠାରୁ ୧୯୨୬ (ଅଗଷ୍ଟ) - ଲାଲା ଆଶୁତୋଷ,

ସୂଚନାଯୋଗ୍ୟ ଯେ, ୧୯୨୬ ମସିହାଠାରୁ ୧୯୬୦ ମସିହା ପର୍ଯ୍ୟନ୍ତ ପୁରୀ ରାଜା ଦେଓ୍ୱାନ ନିଯୁକ୍ତି କରି ଶ୍ରୀମନ୍ଦିର ପରିଚାଳନା କରୁଥିଲେ ।




**ଭାରତ ସ୍ୱାଧୀନତା ଲାଭ କରିବା ପରେ ବିଭିନ୍ନ କାରଣରୁ ଶ୍ରୀମନ୍ଦିର ନୀତି ଓ ପରିଚାଳନାରେ କ୍ରମାଗତ ବିଶୃଙ୍ଖଳା ସୃଷ୍ଟି ହୋଇ କେତେ ସମସ୍ୟା ଉପୁଜିବାରୁ ରାଜ୍ୟ ସରକାର ୧୯୫୨ ମସିହାରେ 'ପୁରୀ ଜଗନ୍ନାଥ ମନ୍ଦିର (ପ୍ରଶାସନ) ଆଇନ୍' ପ୍ରଣୟନ କଲେ ।** ଉକ୍ତ ଆଇନ୍ ଅନୁଯାୟୀ ଶ୍ରୀମନ୍ଦିରର ବିଭିନ୍ନ ଗୋଷ୍ଠୀର ସେବାୟତମାନଙ୍କର ସେବା, ପୂଜା, ଶ୍ରୀଜୀଉମାନଙ୍କ ଦୈନନ୍ଦିନ ନୀତି, ପର୍ବପର୍ବାଣି ଓ ନୀତି ସହ ସଂପୃକ୍ତ ବ୍ୟକ୍ତିଙ୍କ ଦାୟିତ୍ୱ ଓ ଅଧିକାର ସମ୍ବନ୍ଧରେ ଏକ ସ୍ୱତ୍ୱଲିପି ପ୍ରସ୍ତୁତ ହେଲା । ଏହି କାର୍ଯ୍ୟ ନିମନ୍ତେ ଜିଲ୍ଲା ଜଜ୍ ପାହ୍ୟାର ଜଣେ ସ୍ୱତନ୍ତ୍ର ପଦାଧିକାରୀ ନିଯୁକ୍ତ ରହି ୧୯୫୪ ମସିହା ମାର୍ଚ୍ଚ ୧୫ ତାରିଖରେ ରାଜ୍ୟ ସରକାରଙ୍କ ନିକଟରେ ତାଙ୍କର ରିପୋର୍ଟ ଦାଖଲ କଲେ । ତଦନୁଯାୟୀ ୧୯୫୫ ମସିହାରେ 'ଶ୍ରୀଜଗନ୍ନାଥ ମନ୍ଦିର ଆଇନ୍, ୧୯୫୪' ନାମକ ଏକ ବିଶେଷ ଆଇନ୍ ପ୍ରଣୀତ ହେଲା (Act XI of 1955) । ସୂଚନାଯୋଗ୍ୟ ଯେ, ୧୯୫୫ ମସିହାରେ ଏହି ଆଇନ୍ ପ୍ରଣୀତ ହେଲେ ମଧ୍ୟ ୧୯୬୦ ମସିହାଠାରୁ ବିଧିବଦ୍ଧ ଭାବେ କାର୍ଯ୍ୟକାରୀ ହୋଇ ଶ୍ରୀମନ୍ଦିର ପ୍ରଶାସନରେ ଜଣେ ବରିଷ୍ଠ ଓ.ଏ.ଏସ୍. ଅଫିସର ପ୍ରଶାସକ ରୂପେ ନିଯୁକ୍ତି ପାଇ ମନ୍ଦିର ପରିଚାଳନା ଦାୟିତ୍ୱ ନେଇଥିଲେ କାରଣ ଏହି ଆଇନ୍‌ର ବୈଧତା ସଂପର୍କରେ ତତ୍କାଳୀନ ଗଜପତି ମହାରାଜା ରାମଚନ୍ଦ୍ର ଦେବ (୪ର୍ଥ) ଓ ବୀର କିଶୋର ଦେବ, ଓଡ଼ିଶା ହାଇକୋର୍ଟ ଓ ସୁପ୍ରିମ୍ କୋର୍ଟର ଆଶ୍ରୟ ନେଇ ପରାଜିତ ହେବାଦ୍ୱାରା **ବିଧିବଦ୍ଧ ଭାବେ ରାଜ୍ୟ ସରକାର ତା୨୭.୧୦.୧୯୬୦ ରିଖରୁ ଶ୍ରୀମନ୍ଦିର ପରିଚାଳନାର ସଂପୂର୍ଣ୍ଣ ଦାୟିତ୍ୱ ନେଇ ଶ୍ରୀ ଆନନ୍ଦ ଚନ୍ଦ୍ର ମହାପାତ୍ରଙ୍କୁ ପ୍ରଥମ ପ୍ରଶାସକ ରୂପେ ନିଯୁକ୍ତି ଦେଇଥିଲେ ।** ୧୯୬୦ ମସିହାଠାରୁ ୨୦୦୪ ମସିହା ସୁଦ୍ଧା ବରିଷ୍ଠ ପଦାଧିକାରୀ ପ୍ରଶାସକ ରୂପେ ଶ୍ରୀମନ୍ଦିର ପ୍ରଶାସନରେ ଅବସ୍ଥାପିତ ହୋଇ କାର୍ଯ୍ୟ କରିଥିବା ଜଣାଯାଏ ।(୬)

୧୯୬୦ ମସିହାଠାରୁ ୨୦୦୫ ମସିହା ମଧ୍ୟରେ ପ୍ରକୃତପକ୍ଷେ ୨୪ ଜଣ ପ୍ରଶାସକ ନିଯୁକ୍ତି ପାଇ କାର୍ଯ୍ୟ ନିର୍ବାହ କରିଥିବା ଜଣାଯାଏ ।

୧୯୫୪ ମସିହା ଶ୍ରୀମନ୍ଦିର ପ୍ରଶାସନ ଆଇନ୍‌ର ପଞ୍ଚମ ଧାରା ଅନୁଯାୟୀ ଶ୍ରୀମନ୍ଦିର ଓ ତତ୍‌ସଂଲଗ୍ନ ସମସ୍ତ ଦେବୋତ୍ତର ସ୍ଥାବର ଅସ୍ଥାବର ସଂପତ୍ତିର ପରିଚାଳନା ଦାୟିତ୍ୱ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟି ଉପରେ ନ୍ୟସ୍ତ ରହିଲା । ଏହି ଆଇନ୍‌ର ଷଷ୍ଠ ଧାରା ଅନୁଯାୟୀ ପୁରୀ ରାଜାଙ୍କୁ ଉକ୍ତ କମିଟିର ବଂଶାନୁକ୍ରମିକ ଅଧ୍ୟକ୍ଷ ରୂପେ ସ୍ୱୀକୃତି ଦିଆଗଲା । ରାଜ୍ୟ ବିଧି ବିଭାଗ ତରଫରୁ ୧୯୬୦ ମସିହା ଅକ୍ଟୋବର ମାସ ୨୪ ତାରିଖ ଦିନ ଶ୍ରୀମନ୍ଦିର ପରିଚାଳନା ନିମିତ୍ତ ପ୍ରଥମ ପରିଚାଳନା କମିଟିର ସଦସ୍ୟମାନଙ୍କୁ ଉକ୍ତ କମିଟିରେ ନିଆଯାଇଥିଲା, ଯଥା- ୧) ପୁରୀ ରାଜା - ଅଧ୍ୟକ୍ଷ, ୨) ଶ୍ରୀ ଶ୍ରୀନିବାସ ରାମାନୁଜ ଦାସ - ମହନ୍ତ, ଏମାର ମଠ, ପୁରୀ-ସଭ୍ୟ, ୩) ଶ୍ରୀ ରାମଚନ୍ଦ୍ର ମହାପାତ୍ର - ସଂପାଦକ, ମୁକ୍ତିମଣ୍ଡପ-ସଭ୍ୟ, ୪) ସ୍ୱାମୀ ବିଚିତ୍ରାନନ୍ଦ ଦାସ - ଆଡ଼ଭୋକେଟ୍, ଡଗରପଡ଼ା, କଟକ-ସଭ୍ୟ, ୫) ଶ୍ରୀ ଦ୍ୱାରିକାନାଥ ପାଟ୍ଟଯୋଷୀ ମହାପାତ୍ର - ହରଚଣ୍ଡୀ ସାହି, ପୁରୀ-ସଭ୍ୟ, ୬) ଶ୍ରୀ ରମେଶ ଚନ୍ଦ୍ର ମିତ୍ର - ଅବସରପ୍ରାପ୍ତ ଜିଲ୍ଲା ଜଜ୍, ପୁରୀ-ସଭ୍ୟ, ୭) ଡଃ ପର୍ଶୁରାମ ମିଶ୍ର - ପୂର୍ବତନ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ-ସଭ୍ୟ, ୮) ଶ୍ରୀ ଜଗବନ୍ଧୁ ମହାପାତ୍ର (ଗରାବଡୁ) - ବାଲିସାହି, ପୁରୀ-ସଭ୍ୟ, ୯) ରାଜ୍ୟ ଦେବୋତ୍ତର କମିଶନର, ଓଡ଼ିଶା, କଟକ - ଏକ୍ସ ଅଫିସିଓ ସଭ୍ୟ, ୧୦) ଶ୍ରୀ ବିଶ୍ୱନାଥ ପାଢ଼ୀ - ସୁଆର, ମହାସୁଆର ନିଯୋଗ, ପୁରୀ-ମନୋନୀତ ସଭ୍ୟ, ୧୧) ପ୍ରଶାସକ - ଏକ୍ସ ଅଫିସିଓ ସଭ୍ୟ ।

ଶ୍ରୀମନ୍ଦିର ପରିଚାଳନା କମିଟିର ପ୍ରଥମ ବୈଠକ ତା.୨୭.୧୦.୧୯୬୦ ମସିହା ସକାଳ ୭ଟା ୩୦ ମିନିଟ୍‌ରେ ଗଜପତି ମହାରାଜାଙ୍କ ଅନୁପସ୍ଥିତିରେ ମହନ୍ତ ଶ୍ରୀନିବାସ ରାମାନୁଜ ଦାସଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ରାଜ୍ୟ ସରକାରଙ୍କ ବିଜ୍ଞପ୍ତି ୬୬୨୧/ଏଲ୍. ତା.୨୪.୧୦.୧୯୬୦ ଅନୁକ୍ରମେ ତଥା ଶ୍ରୀଜଗନ୍ନାଥ ମନ୍ଦିର ଆଇନ୍, ୧୯୫୪ ଅନୁଯାୟୀ ଶ୍ରୀମନ୍ଦିର ପରିଚାଳନା କମିଟି ଅକ୍ଟୋବର ୨୭ ତାରିଖ ସକାଳ ୭ଟା ୩୦ ମିନିଟ୍ ସମୟରେ ଶ୍ରୀମନ୍ଦିର କାର୍ଯ୍ୟାଳୟ ସମେତ ଶ୍ରୀମନ୍ଦିରର ସମସ୍ତ ଅସ୍ଥାବର ସଂପତ୍ତି, ରତ୍ନ ଭଣ୍ଡାର, ସମସ୍ତ କାଗଜାତ୍ ଦଖଲରେ ରହିଥିଲେ । ଏତଦ୍‌ବ୍ୟତୀତ ପ୍ରଥମ ବୈଠକରେ ଶ୍ରୀମନ୍ଦିର ନୀତି, ସେବାପୂଜା, ସତ୍ୱଲିପି ଅନୁସାରେ ପରିଚାଳନା କରିବାକୁ ପ୍ରଶାସକଙ୍କୁ କ୍ଷମତା ଅର୍ପଣ କରାଯାଇଥିଲା ।

ପରବର୍ତ୍ତୀ ସମୟରେ ଏହି କମିଟିର ଆଂଶିକ ସଂଶୋଧନ କରାଯାଇ ପୁରୀ ଜିଲ୍ଲାପାଳଙ୍କୁ ଉପାଧ୍ୟକ୍ଷ ଏବଂ ଶ୍ରୀମନ୍ଦିର ପ୍ରଶାସକ ସଭ୍ୟ-ସଂପାଦକ ରୂପେ ରହିବା ନିମନ୍ତେ ଆଇନ୍‌ରେ ବ୍ୟବସ୍ଥା କରାଯାଇଥିଲା । ପୁନଶ୍ଚ ଶ୍ରୀଜଗନ୍ନାଥ ମନ୍ଦିର (ସଂଶୋଧିତ) ଆଇନ୍, ୨୦୦୪ର ନୂତନ ବ୍ୟବସ୍ଥା ଅନୁଯାୟୀ ରାଜ୍ୟ ସରକାର ଭାରତୀୟ ପ୍ରଶାସନିକ ସେବାର ଜଣେ ବରିଷ୍ଠ ଅଧିକାରୀ ତଥା କମିଶନର ପାହ୍ୟାର ଅଧିକାରୀଙ୍କୁ ଶ୍ରୀମନ୍ଦିର ପ୍ରଶାସନରେ ମୁଖ୍ୟ




ପ୍ରଶାସକ ଭାବେ ନିଯୁକ୍ତି ଦିଆଯାଇଛି । ଶ୍ରୀମନ୍ଦିର ଇତିହାସରେ ପ୍ରଥମ ଥର ନିମନ୍ତେ ଜଣେ ଆଇ.ଏ.ଏସ୍. ଅଫିସର ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ର ତା.୨୪.୨.୨୦୦୫ରିଖରେ ମୁଖ୍ୟ ପ୍ରଶାସକ ରୂପେ ଦାୟିତ୍ୱ ଗ୍ରହଣ କରି ତା.୨୭.୦୫.୨୦୦୮ରିଖ ପର୍ଯ୍ୟନ୍ତ ଏହି ପଦବୀରେ ରହି କାର୍ଯ୍ୟ ତୁଲାଇଥିଲେ । ତାଙ୍କର ପ୍ରଗାଢ଼ ଉଦ୍ୟମରେ ଶ୍ରୀମନ୍ଦିରରେ ଯାତ୍ରୀନିବାସର ଶୁଭ ଉଦ୍‌ଘାଟନ, 'ଅନୁଭବଯାତ୍ରା'ରେ ଶ୍ରୀମନ୍ଦିର ସେବାୟତମାନଙ୍କର ଭାରତର ବିଭିନ୍ନ ମନ୍ଦିରକୁ ପରିଦର୍ଶନରେ ଯାଇ ଏକ ନୂତନ ସ୍ୱାଦର ଅନୁଭବ ଉପଲବ୍ଧି, ପୁଷ୍ପ ଉଦ୍ୟାନର ନବୀକରଣ, ଶ୍ରୀମନ୍ଦିର ପରିସର ଓ ବାହାର ଚତୁଃପାର୍ଶ୍ୱରେ ଉଜ୍ଜ୍ୱଳ ବିଦ୍ୟୁତ ଆଲୋକର ବ୍ୟବସ୍ଥା, ଶ୍ରୀମନ୍ଦିର ରୋଷଶାଳାର ନବୀକରଣ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଲୀଳାକ୍ଷେତ୍ର ଚିହ୍ନଟ, ଦିଲ୍ଲୀ ବାଳକ ରାମଦାସ ମଠ ପରିସରରେ ବୃହତ୍ ଆକାରର ଭକ୍ତ ନିବାସ ନିର୍ମାଣର ଶୁଭାରମ୍ଭ, ଜଗନ୍ନାଥ ବଲ୍ଲଭ ମଠ ପରିସରରେ ପାର୍କିଂ ପ୍ଲେସ୍ ନିର୍ମାଣ, ପୁରୀ ବଡ଼ଦାଣ୍ଡରେ ଉଜ୍ଜ୍ୱଳ ହାଇମାଷ୍ଟ ଆଲୋକ ବ୍ୟବସ୍ଥା, ପୁରୀ ଡାକ୍ତରଖାନା ଛକଠାରେ ଅତ୍ୟାଧୁନିକ ଟ୍ରାଫିକ୍ କଣ୍ଟ୍ରୋଲର ସୁବ୍ୟବସ୍ଥା, ଶ୍ରୀମନ୍ଦିର ଆନନ୍ଦବଜାର ନବୀକରଣ, ନୂତନ ଅଫିସ୍ କାର୍ଯ୍ୟାଳୟ ଉଦ୍‌ଘାଟନ, ଫ୍ରି ମୋବାଇଲ ଷ୍ଟାଣ୍ଡ, ଗୁଣ୍ଡିଚା ମନ୍ଦିରର ଜୀର୍ଣ୍ଣୋଦ୍ଧାର ଇତ୍ୟାଦି ବହୁ ଉନ୍ନୟନମୂଳକ କାର୍ଯ୍ୟ ସମ୍ଭବ ହୋଇପାରିଥିଲା । ତତ୍‌ପରେ କେନ୍ଦ୍ରାଞ୍ଚଳ ରାଜସ୍ୱ କମିଶନର ଶ୍ରୀ ଶୈଳେନ୍ଦ୍ର ନାରାୟଣ ଷଡ଼ଙ୍ଗୀ ତା.୨୭.୦୫.୨୦୦୮ରିଖରୁ ତା.୨୪.୦୨.୨୦୦୯ରିଖ ପର୍ଯ୍ୟନ୍ତ ଶ୍ରୀମନ୍ଦିରର ମୁଖ୍ୟ ପ୍ରଶାସକ ଭାବେ ସୂଚାରୁ ରୂପେ ଦାୟିତ୍ୱ ତୁଲାଇଥିଲେ । ସଂପ୍ରତି ଶ୍ରୀ ଅଶୋକ କୁମାର ମୀନା ଗତ ତା.୨୭.୦୨.୨୦୦୯ରିଖରୁ ଶ୍ରୀମନ୍ଦିରର ମୁଖ୍ୟ ପ୍ରଶାସକ ରୂପେ ଦାୟିତ୍ୱ ତୁଲାଇ ଆସୁଛନ୍ତି । ସଂଶୋଧିତ ଆଇନ୍, ୨୦୦୪ର ବିଧି ବ୍ୟବସ୍ଥା ପ୍ରକାରେ ୧୮ ଜଣିଆବିଶିଷ୍ଟ ପରିଚାଳନା କମିଟି ଗଠିତ ହୋଇଛି । ଏହି କମିଟିର କାର୍ଯ୍ୟକାଳ ୩ ବର୍ଷ ରହିଛି । ଏଥିରେ ନୂତନ ଭାବେ କେତେକ ଏକ୍ସ ଅଫିସିଓ ପଦାଧିକାରୀ ଓ ବ୍ୟକ୍ତି ବିଶେଷଙ୍କୁ ସାମିଲ କରାଯାଇଛି ।

୧୯୮୩ ମସିହାରେ ଶ୍ରୀଜଗନ୍ନାଥ ମନ୍ଦିର ଆଇନ୍‌ରେ ସଂଶୋଧନ ଅଣାଯାଇ 'ମୌଳିକ ପାଣ୍ଠି' ସୃଷ୍ଟି କରାଯିବା ସଂଗେସଂଗେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କ ଅଧକ୍ଷତାରେ ନିମ୍ନୋକ୍ତ ସଭ୍ୟମାନଙ୍କୁ ନେଇ ଏକ ମୌଳିକ ପାଣ୍ଠି କମିଟି ଗଠନ କରାଗଲା । ଏହି ଆଇନ୍ ଅନୁଯାୟୀ ମୁଖ୍ୟମନ୍ତ୍ରୀ ଅଧକ୍ଷ, ଆଇନ୍ ମନ୍ତ୍ରୀ-ଉପାଧକ୍ଷ, ଆଇନ୍ ସଚିବ-ସଭ୍ୟ, ଅର୍ଥ ସଚିବ-ସଭ୍ୟ, ଜିଲ୍ଲାପାଳ ପୁରୀ-ସଭ୍ୟ ଏବଂ ଶ୍ରୀମନ୍ଦିର ମୁଖ୍ୟ ପ୍ରଶାସକ ସଭ୍ୟ-ସଚିବ ରୂପେ ରହିଛନ୍ତି । ଏହି ଆଇନ୍‌ର ବ୍ୟବସ୍ଥା ଅନୁଯାୟୀ ୨୩.୮.୧୯୮୩ ତାରିଖ ଦିନ ଶ୍ରୀମନ୍ଦିର ଜଗମୋହନରେ 'ହୁଣ୍ଡି' ସ୍ଥାପନ କରାଗଲା ।

ଶ୍ରୀଜଗନ୍ନାଥ ମନ୍ଦିର ନୀତି, ସେବା, ପୂଜା, ଯାନିଯାତ୍ରାର ବ୍ୟାପକତା ଅଦ୍ୱିତୀୟ । **ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁଯାୟୀ ଦୈନିକ ପ୍ରାୟ ୮୫ ଜଣ ସେବକଙ୍କର ସାଧାରଣ ନୀତିରେ ସଂପୃକ୍ତି ରହିଛି । ବର୍ଷସାରା ପାଳି ଅନୁଯାୟୀ ସଂପୃକ୍ତ ସେବକଙ୍କ ସଂଖ୍ୟା ପ୍ରାୟ ୧୬୦୦ ।** ଏତଦ୍‌ବ୍ୟତୀତ ଶ୍ରୀଜଗନ୍ନାଥଙ୍କର କେତେକ ବିଶେଷ ନୀତି, ଦ୍ୱାଦଶ ଯାତ୍ରା, ପର୍ବପର୍ବାଣିମାନଙ୍କରେ ଅଧିକ ସଂଖ୍ୟକ ସେବକଙ୍କର ଆବଶ୍ୟକ ହୋଇଥାଏ । ଶ୍ରୀମନ୍ଦିର ପରିଚାଳନା କମିଟି ତରଫରୁ ଦୈନନ୍ଦିନ ଓ ବିଭିନ୍ନ ଯାନିଯାତ୍ରା ନିମନ୍ତେ ଆବଶ୍ୟକ ସମସ୍ତ ଜିନିଷାଦି, ଭୋଗଦ୍ରବ୍ୟ ଯୋଗାଇ ଦିଆଯିବା ସହିତ ପାଳିଆ ସେବାୟତମାନଙ୍କୁ ଆର୍ଥିକ ପୁରସ୍କାର ଓ କର୍ମଚାରୀମାନଙ୍କ ଦରମା ଇତ୍ୟାଦି ନିୟମିତ ଭାବେ ପ୍ରଦାନ କରିଥାନ୍ତି । ଏହାଛଡ଼ା ଶ୍ରୀମନ୍ଦିରର ସଂରକ୍ଷଣ ଓ ମରାମତି ଦାୟିତ୍ୱରେ ୧୯୭୯ ମସିହାଠାରୁ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ରହିଆସିଛନ୍ତି । ସଂପ୍ରତି ଶ୍ରୀମନ୍ଦିରର ବାର୍ଷିକ ଖର୍ଚ୍ଚ ଅଟକଳ ପ୍ରାୟ ୪୫ କୋଟି ଟଙ୍କାରେ ପହଞ୍ଚିଲାଣି । ଏଭଳି ବୃହତ୍ ଅନୁଷ୍ଠାନର ସାମଗ୍ରିକ ପରିଚାଳନା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିବାରୁ ରାଜ୍ୟ ସରକାରଙ୍କ ଅନେକ ଉଚ୍ଚପଦସ୍ଥ ଅଧିକାରୀ ଏହାର ସୁପରିଚାଳନା ତଥା ତଦାରଖ ଦାୟିତ୍ୱରେ ରହିଛନ୍ତି ।

**ପଦଟୀକା :**


୧. A History of Indian Literature, vol-II, p.550

୨. ପୁରୁଷୋତ୍ତମ ଶ୍ରୀଜଗନ୍ନାଥ (ପୁରୀର ପ୍ରାଚୀନ ନାମ ପୁରୁଷ-ମଣ୍ଡପ କି ? : ଡକ୍ଟର ସତ୍ୟନାରାୟଣ ରାଜଗୁରୁ), ପୃ.୧୦୩

୩. ଶ୍ରୀଜଗନ୍ନାଥ ଓ ଶ୍ରୀକ୍ଷେତ୍ର ସଂସ୍କୃତି, ଲେ- ଶରତ ଚନ୍ଦ୍ର ମହାପାତ୍ର, ପୃ.୧୨୨, ପ୍ରକାଶକ- ଶ୍ରୀଜଗନ୍ନାଥ ଗବେଷଣା କେନ୍ଦ୍ର, ପୁରୀ-୨

୪. ପୁରୁଷୋତ୍ତମ ଶ୍ରୀଜଗନ୍ନାଥ, ପୃ.୧୦୪

୫. ଶ୍ରୀଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ - ସୂର୍ଯ୍ୟନାରାୟଣ ଦାସ, ପୃ.୧୯୮

୬. ଶ୍ରୀଜଗନ୍ନାଥଙ୍କ ସାଂସ୍କୃତିକ ଇତିହାସ, ଲେ- ଭାସ୍କର ମିଶ୍ର, ପ୍ରକାଶକ- ଏସ୍.ବି. ପବ୍ଲିକେଶନ୍ସ, କଟକ, ପୃ.୪୧



ଉପପ୍ରଶାସକ
ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ, ପୁରୀ




# ଯୁଗେ ଯୁଗେ ଶ୍ରୀଧାମ ପୁରୁଷୋତ୍ତମ

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର



**ବି**ଶ୍ୱ ସମ୍ବିଧାନର ପ୍ରତୀକାତ୍ମକ ବିଗ୍ରହ ପୁରୁଷୋତ୍ତମ ଜଗନ୍ନାଥ ବିଶ୍ୱର ସର୍ବପ୍ରାଚୀନ କ୍ଷେତ୍ର ଶ୍ରୀଧାମ ପୁରୁଷୋତ୍ତମରେ ଅନାଦି କାଳରୁ ଦିବ୍ୟ ଲୀଳା ସଂରଚନାପୂର୍ବକ ଏହି ପାବନପୀଠକୁ ଭୂସ୍ୱର୍ଗ ମାନ୍ୟତା ପ୍ରଦାନ କରିଛନ୍ତି । ପୂର୍ବ ମହୋଦଧି ତଟରେ ଅବସ୍ଥିତ ତଥା ସୁଦୀର୍ଘ ବେଳାଭୂମି ପରିବେଷ୍ଟିତ ଏହି ପୁଣ୍ୟଧାମର ଶଙ୍ଖନାଭି ମଣ୍ଡଳରେ ନଭଶ୍ଚୁମ୍ବୀ ଶ୍ରୀମନ୍ଦିରରେ ରତ୍ନସିଂହାସନ ଉପରେ ବିଜେ କରିଛନ୍ତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା, ଶ୍ରୀସୁଦର୍ଶନ, ଶ୍ରୀଦେବୀ, ଭୂଦେବୀ ଓ ନୀଳମାଧବ । ମହନୀୟତା ହେଉଛି, ଶ୍ରୀଜଗନ୍ନାଥଙ୍କ ନାଭିଚକ୍ରରେ ରହିଛନ୍ତି ଗୋପନୀୟ ଜ୍ଞାନଗମ୍ୟ ଅନିର୍ବଚନୀୟ ବ୍ରହ୍ମ । ଶ୍ରୀମନ୍ଦିର ପରିସରରେ କ୍ଷେତ୍ରାଧିଶ୍ୱରୀ ବିମଳା, ଜଗଜ୍ଜନନୀ ମହାଲକ୍ଷ୍ମୀ, ଶ୍ରୀନୃସିଂହ, ପାତାଳେଶ୍ୱର, ଈଶାନେଶ୍ୱର, ମାତା ଶୀତଳା, ବେଢ଼ାକାଳୀ, ବଟଗଣେଶ, ଭଣ୍ଡଗଣେଶ, କୁତ୍ତାମଚଣ୍ଡୀ, ସରସ୍ୱତୀ, ଭଦ୍ରକାଳୀ, ସର୍ବମଙ୍ଗଳା, କ୍ଷେତ୍ରପାଳ, ଗୋପୀନାଥ, ରାମଚନ୍ଦ୍ର, କାଶୀବିଶ୍ୱନାଥ, ଉତ୍ତରାୟଣୀ, ନବଗ୍ରହ, ବରାଭୟ ହନୁମାନ ଓ ଷଡ଼ଭୁଜ ଗୌରାଙ୍ଗ ପ୍ରଭୃତି ଅଗଣିତ ଦେବଦେବୀ । ଶ୍ରୀକ୍ଷେତ୍ରର ବିଭିନ୍ନ ପୀଠରେ ଅର୍ଦ୍ଧାସିନୀ ମାଉସୀମା', ଆଦି ନୃସିଂହ, ମାର୍କଣ୍ଡେୟ, ଚକ୍ରନାରାୟଣ, ସପ୍ତମାତୃକା, ଶ୍ୟାମାକାଳୀ, ନୀଳକଣ୍ଠେଶ୍ୱର, ଚର୍ଚ୍ଚିକା, ବରାହୀ, ବିଶ୍ୱେଶ୍ୱରୀ, ମଙ୍ଗଳେଶ୍ୱରୀ, ଚାମୁଣ୍ଡେଶ୍ୱରୀ, ବନଦୁର୍ଗା, ବାସେଳୀ, ରାମଚଣ୍ଡୀ, ଶ୍ରୀଲୋକନାଥ, କାତ୍ୟାୟିନୀ, ସୁନାରଗୌରାଙ୍ଗ, ସିଦ୍ଧ ମହାବୀର, ବେଡ଼ିମହାବୀର ଓ ବାନାମ୍ବର ପ୍ରଭୃତି ବିରାଜମାନ ପୂର୍ବକ ଏହି କ୍ଷେତ୍ରକୁ ଐଶ୍ୱର୍ଯ୍ୟର କ୍ଷେତ୍ର ଅର୍ଥାତ୍ ଶ୍ରୀକ୍ଷେତ୍ର ନାମରେ ମହିମାବନ୍ତ କରିଛନ୍ତି । ମହନୀୟତା ହେଉଛି, ଅହର୍ନିଶି ଶ୍ରୀନୀଳଚକ୍ର ଉପରେ ପତିତପାବନ ବାନା ଫର୍ ଫର୍ ହୋଇ ଉଡ଼ି ପାପୀ, ପାମର, ପତିତ, ପଣ୍ଡିତ, ଭକ୍ତ, ସାଧକ, ଭାବୁକ, ଜ୍ଞାନୀ ଓ ଅଜ୍ଞାନୀ ସଭିଙ୍କୁ ଡାକୁଛି । ମାର୍କଣ୍ଡେୟ, ଶ୍ୱେତଗଙ୍ଗା, ରୋହିଣୀକୁଣ୍ଡ, ମହୋଦଧି ଓ ଇନ୍ଦ୍ରଦ୍ୟୁମ୍ନ ପ୍ରଭୃତି ପଞ୍ଚତୀର୍ଥ ଏହି କ୍ଷେତ୍ରକୁ ପାବନକ୍ଷେତ୍ରର ମର୍ଯ୍ୟାଦା ପ୍ରଦାନ କରୁଛନ୍ତି । ଭୋଗବର୍ଦ୍ଧନ ପୀଠ ସମେତ ସକଳ ସଂପ୍ରଦାୟର ମଠ ଓ ଆଶ୍ରମ ଏହାକୁ ସାରସ୍ୱତ ତୀର୍ଥ ଭାବରେ ଗୌରବାନ୍ୱିତ କରିଛନ୍ତି । ଯୁଗେ ଯୁଗେ ଏହି ପତିତପାବନ ଧାମ ନୀଳାଦ୍ରି, ନୀଳାଚଳ, ନୀଳଗିରି, ନୀଳକନ୍ଦର, ନୀଳଶୈଳ, ଶଙ୍ଖକ୍ଷେତ୍ର, ବ୍ରହ୍ମକ୍ଷେତ୍ର, ଭୌମକ୍ଷେତ୍ର, ଦଶାବତାର କ୍ଷେତ୍ର, ଅନ୍ନକ୍ଷେତ୍ର, ମୋକ୍ଷ କ୍ଷେତ୍ର, ଉଚ୍ଛିଷ୍ଟ କ୍ଷେତ୍ର, ଯାମନିକ କ୍ଷେତ୍ର, ଶ୍ରୀକ୍ଷେତ୍ର, କ୍ଷେତ୍ରୋତ୍ତମ, ଶ୍ରୀଧାମ, ବ୍ରହ୍ମଧାମ, ଜଗନ୍ନାଥଧାମ, ମହୋଦଧି ତୀର୍ଥ, ଜଗନ୍ନାଥ ତୀର୍ଥ, ଭୂସ୍ୱର୍ଗ, ମର୍ତ୍ତ୍ୟବୈକୁଣ୍ଠ, ପୁରଷୋତ୍ତମ, ପୁରୁଷୋତ୍ତମ ଓ ପୁରୀ ପ୍ରଭୃତି ବହୁ ନାମରେ ଖ୍ୟାତ । ପ୍ରାକ୍-ବୈଦିକ ଯୁଗରୁ ଏହି ପ୍ରାଚୀନ ପାବନ ଧାମରେ ଶାବର, ଅନାର୍ଯ୍ୟ, ବ୍ରାତ୍ୟ, ଦ୍ରାବିଡ଼, ଆର୍ଯ୍ୟ, ଶୈବ, ଶାକ୍ତ, ବୈଷ୍ଣବ, ଯୋଗ ଓ ତନ୍ତ୍ର ସଂସ୍କୃତିର ମଧୁର ସମନ୍ୱୟରେ ବିଶ୍ୱସଂସ୍କୃତିର ମହନୀୟତା ପ୍ରକଟିତ ତଥା ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ବିଶ୍ୱର ସକଳ ମତ ଓ ପଥର ମହାମେରୁ ସ୍ୱରୂପରେ ମହିମାମଣ୍ଡିତ । ଦାରୁବ୍ରହ୍ମଙ୍କର ଲୀଳାସ୍ଥଳୀ ଶ୍ରୀଧାମ ପୁରୁଷୋତ୍ତମର ମହିମା ଦିବ୍ୟ, ଶାଶ୍ୱତ, ଅଲୌକିକ ଓ ଅବର୍ଣ୍ଣନୀୟ ।

ବିଶ୍ୱର ପ୍ରାଚୀନତମ ସାହିତ୍ୟ ତଥା ଅକ୍ଷୟ ବିଚାରର ମାନସ ସରୋବର ବେଦରେ ପ୍ରଥମେ ଶ୍ରୀଧାମ ପୁରୁଷୋତ୍ତମ ଓ ଦାରୁବ୍ରହ୍ମ ପୁରୁଷୋତ୍ତମଙ୍କର ସୂଚନା ପରିଦୃଷ୍ଟ ହୋଇଥାଏ ।





ଅଦୌ ଯଦ୍‌ଦାରୁ ପ୍ଳବତେ ସିନ୍ଧୋଃ ପାରେ ଅପୁରୁଷମ୍
ତଦାରଭସ୍ୟ ଦୁର୍ଦଣୋ ତେନ ଗଚ୍ଛ ପରସ୍ତରମ୍ ।(୧)

ଏହି ମନ୍ତ୍ରଟି ଋଗ୍‌ବେଦର । ଅଥର୍ବ ବେଦରେ ମଧ୍ୟ ଅନୁରୂପ ମନ୍ତ୍ରଟିଏ ଦୃଷ୍ଟିଗୋଚର ହୋଇଥାଏ । ଏଥିରୁ ଅନୁଭୂତ ହୁଏ, ପ୍ରାକ୍-ବୈଦିକ କାଳରେ ଶ୍ରୀଧାମ ପୁରୁଷୋତ୍ତମରେ ଦାରୁ-ଉପାସନାର ଉନ୍ମେଷ ଘଟିଥିଲା ତଥା ବୈଦିକ ଯୁଗରେ ଆର୍ଯ୍ୟ ପ୍ରଚେତାବୃନ୍ଦଙ୍କ ଉପରେ ଏହା ସୁଦୂର ପ୍ରସାରୀ ପ୍ରଭାବ ବିସ୍ତାର କରିଥିଲା । ବିଭିନ୍ନ ବେଦଭାଷ୍ୟକାର ମନ୍ତ୍ରଟିକୁ ଦାରୁଉପାସନା ସୂଚକ ଭାବରେ ବିଚାର କରିଛନ୍ତି ।(୨) ମନ୍ତ୍ରଦ୍ରଷ୍ଟା ଋଷିଗଣ ମହୋଦଧି ତଟସ୍ଥ ଦାରୁଉପାସନା ସନ୍ଦର୍ଶନରେ ଏହି ମନ୍ତ୍ରଟିକୁ ବ୍ୟକ୍ତ କରିଛନ୍ତି ତଥା ଋଗ୍‌ବେଦର ଦଶମ ମଣ୍ଡଳରେ ଏହାକୁ ସଂକଳନ କରିଛନ୍ତି । ଅଧିକନ୍ତୁ, ନିର୍ଗୁଣ ବ୍ରହ୍ମଙ୍କର ସଗୁଣ ଦାରୁ ଉପାସନର ଦିବ୍ୟାନନ୍ଦରେ ପୁନର୍ବାର ଅଥର୍ବ ବେଦରେ ସଂକଳନ କରିଛନ୍ତି । ପ୍ରମାଣିତ ହୁଏ, ପ୍ରାଗ୍-ବୈଦିକ କାଳୀନ ଦାରୁ ଉପାସନା ସମଗ୍ର ବୈଦିକ ଯୁଗରେ ସ୍ୱତନ୍ତ୍ର ଆଧାତ୍ମିକ ମର୍ଯ୍ୟାଦାଲାଭ କରିଥିଲା । ଗୌରବର କଥା, ପରବର୍ତ୍ତୀ ପୁରାଣ ଯୁଗରେ ସ୍କନ୍ଦ ପୁରାଣରେ ଏହି ବୈଦିକ ମନ୍ତ୍ରର ପୌରାଣିକ ରୂପ ପରିଦୃଷ୍ଟ ହୋଇଥାଏ । ପ୍ରାକ୍-ବୈଦିକ, ବୈଦିକ ଓ ପୁରାଣ ଯୁଗରେ ଦାରୁ ଉପାସନାର ପାବନପୀଠ ପରମସ୍ଥଳ ବା ପରସ୍ତରମ୍ ସ୍ୱରୂପରେ ମନ୍ତ୍ରରେ ବ୍ୟକ୍ତ । ପରବର୍ତ୍ତୀ କାଳରେ ପରସ୍ତରମ୍ ଅପଭ୍ରଂଶ ହୋଇ ପୁରସ୍ତମ ବା ପୁରୀ ନାମରେ ଖ୍ୟାତ । ବେଦ ପରବର୍ତ୍ତୀ ପୁରାଣ ଯୁଗରେ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ପ୍ରାକ୍-ବୈଦିକ ଯୁଗରୁ ଉପାସିତ ସେହି ମହାଦାରୁଙ୍କୁ ବୈଦିକ ଯଜ୍ଞ ପ୍ରକ୍ରିୟାରେ ମୂର୍ତ୍ତିମନ୍ତ କଲେ ଏବଂ ମହୋଦଧି ତୀର୍ଥରେ ବୈକୁଣ୍ଠର ଶ୍ରୀବସ୍ତ ଖଣ୍ଡଶାଳ ରୀତିରେ ଶ୍ରୀମନ୍ଦିର ନିର୍ମାଣ କରିଥିଲେ । ପରିଣାମରେ ପୁରସ୍ତମ ବା ପୁରୀ ବିଶ୍ୱପ୍ରସିଦ୍ଧ ମର୍ତ୍ତ୍ୟବୈକୁଣ୍ଠର ମର୍ଯ୍ୟାଦାଲାଭ କଲା । ପ୍ରାଚୀନ ସାହିତ୍ୟ ସଂସ୍କୃତ ମହାଭାରତରେ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ଓ ମହାବେଦୀ ପ୍ରସଙ୍ଗ ବର୍ଣ୍ଣିତ ।

ତତଃ ପ୍ରସନ୍ନା ପୃଥିବୀ ତପସ୍ୟାତସ୍ୟ ପାଣ୍ଡବ,
ପୁନରୁନ୍ମାର୍ହ୍ୟ ସଲିଳାଦ୍ ବେଦୀରୂପା ସ୍ଥିତୌବଭୌ ।
ସୈଷା ପ୍ରକାଶତେ ରାଜନ୍ ବେଦୀ ସଂସ୍ଥାନ ଲକ୍ଷଣ,
ଆରୁହ୍ୟାତ୍ର ମହାରାଜ ବୀର୍ଯ୍ୟବାନ୍ ବୈ ଭବିଷ୍ୟତି ।
ସୌଷା ସାଗର ମାସାଦ୍ୟ ରାଜନ୍ ବେଦୀ ସମାଶ୍ରିତା,
ଏତା ମାରୁହ୍ୟ ଭଦ୍ରନ୍ତେ ତ୍ୱମେକସ୍ତର ସାଗରମ୍,
ଅହଞ୍ଚତୋ ସ୍ୱସ୍ତୟନ ପ୍ରୟୋକ୍ଷ୍ୟେ ତ୍ୱମେନ ମଧିରୋହସେହଦ୍ୟ,
ସ୍ପୃଷ୍ଟାହି ମର୍ତ୍ତ୍ୟେନ ତତଃ ସମୁଦ୍ର ମେଷାବେଦୀ ପ୍ରବିଶ ତ୍ୟାଜମୀଡ଼େ ।(୩)

ବନପର୍ବର ଏହି ବର୍ଣ୍ଣନାନୁସାରେ ଲୋମଶଋଷିଙ୍କ ଉପଦେଶକ୍ରମେ ପାଣ୍ଡବମାନେ ବନବାସ କାଳରେ ବୈତରଣୀ ନଦୀ ଅତିକ୍ରମ ପୂର୍ବକ ମହେନ୍ଦ୍ରଗିରି ଯିବାପଥରେ ମହୋଦଧି ତୀରରେ ଏକ ପବିତ୍ର ବେଦୀକା ଆରୋହଣ କରିଥିଲେ । ଏହି ବେଦୀକା ହିଁ ପ୍ରାକ୍‌ବୈଦିକ କାଳୀନ ଦାରୁ ଉପାସନା ପୀଠ, ଯାହାକୁ ବେଦମନ୍ତ୍ରରେ ପରମସ୍ଥାନର ମର୍ଯ୍ୟାଦା ପ୍ରଦାନ କରାଯାଇଛି । ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ମନ୍ଦିର ନିର୍ମାଣ ପୂର୍ବକ ଠାକୁରଙ୍କୁ ରତ୍ନସିଂହାସନରେ ବିଜେ କରାଇଥିଲେ ହେଁ ପ୍ରାଚୀନ ବେଦୀକା ମହାଭାରତ ଯୁଗ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ସେହି ପ୍ରାଚୀନ ଉପାସନାପୀଠ ବା ବେଦୀର ମହିମାରେ ଆର୍ଯ୍ୟ ପ୍ରଚୋବୃନ୍ଦ ଶତମୁଖ ଥିଲେ । ଲୋମଶ ଋଷିଙ୍କ ମତରେ ସେହି ବେଦୀ ଆରୋହଣ କଲେ ସକଳ ପାପ ବିଧ୍ୱଂସ୍ତ ହୋଇ ଐଶ୍ୱର୍ଯ୍ୟ ଓ ପରମଲୋକ ପ୍ରାପ୍ତି ହୋଇଥାଏ । ସେଥିନିମିତ୍ତ ସେ ପାଣ୍ଡବଭ୍ରାତାଙ୍କ ବେଦୀକା ଆରୋହଣର ସନ୍ଦେଶ ପ୍ରଦାନ କରିଥିଲେ । ଆର୍ଯ୍ୟଋଷିବୃନ୍ଦ ସେହି ପ୍ରାଚୀନ ବେଦୀର ପ୍ରଶଂସା କରିଥିଲେ ହେଁ ପ୍ରକୃତରେ ଅଣଆର୍ଯ୍ୟ ଗୋଷ୍ଠୀ ହିଁ ଥିଲେ ଏହାର ନିର୍ମାତା । ଆର୍ଯ୍ୟଗୋଷ୍ଠୀଙ୍କଦ୍ୱାରା ଉତ୍ତର-ପଶ୍ଚିମ ଭାରତରେ ସପ୍ତସିନ୍ଧୁ ସଭ୍ୟତା ବିସ୍ତାର ହେବାର ବହୁପୂର୍ବରୁ ପୂର୍ବ ମହୋଦଧି ତଟରେ ଏକ ଉନ୍ନତ ବ୍ରାତ୍ୟସଭ୍ୟତାର ବିକାଶ ଘଟି ପ୍ରସ୍ତର ବେଦୀକା ଉପରେ ଦାରୁଉପାସନା ଅବ୍ୟାହତ ରହିଥିଲା । ବ୍ରାତ୍ୟ ପ୍ରଚେତାବୃନ୍ଦ ଉତ୍ତୁଙ୍ଗପୀଠ ସଦୃଶ ପ୍ରସ୍ତର ବେଦୀକା ନିର୍ମାଣପୂର୍ବକ ଏକ ଚତୁଃଶାଖାଯୁକ୍ତ ବିଶାଳ ବ୍ରହ୍ମଦାରୁ ସେହି ବେଦୀ ଉପରେ ପୂଜା କରୁଥିଲେ । ସେହି ବେଦୀ ଏକ ବିଶାଳକାୟ ପିରାମିଡ଼ ସଦୃଶ ଥିଲା, ଯାହା ଉପରେ ବର୍ତ୍ତମାନର ଶ୍ରୀମନ୍ଦିର ନିର୍ମିତ ।

ବ୍ରାତା ବା ଦୈତ୍ୟମାନେ ମହୋଦଧି ତଟରେ ନଗରୀ ସ୍ଥାପନା ପୂର୍ବକ ପିରାମିଡ୍ ସଦୃଶ ବିଶାଳ ପ୍ରସ୍ତରବେଦୀ ନିର୍ମାଣ କରିଥିଲେ । ମହାଭାରତ ଯୁଗ ପର୍ଯ୍ୟନ୍ତ ସେହି ବେଦୀରେ ଦାରୁ ପୂଜା ପାଉଥିଲେ ତଥା ମହର୍ଷି ବ୍ୟାସଦେବ ସ୍ୱରଚିତ ମହାଭାରତରେ ଏହାକୁ ପବିତ୍ର ବେଦୀ ସ୍ୱରୂପରେ ବର୍ଣ୍ଣନା କରିଛନ୍ତି ।(୪) ଗବେଷକମାନଙ୍କର ମତ ଯେ ମିଶରୀୟ, ସୁମେରୀୟ ଓ ମୟସଭ୍ୟତାରୁ ପିରାମିଡ଼ର ପ୍ରମାଣ ଉପଲବ୍ଧ । ସେହି ସମୟରେ ବ୍ରାତ୍ୟସଭ୍ୟତାରେ ମଧ୍ୟ ପୁର, ନଗର ଓ ବେଦୀ ନିର୍ମାଣ କରାଯାଉଥିଲା । ପୁରୀ ଅଞ୍ଚଳର ଭୂଖନନ ଓ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ହୋଇନଥିବାରୁ ଏ ସଂପର୍କରେ ସବିଶେଷ ତଥ୍ୟ ଅନୁପଲବ୍ଧ । ତଥାପି ହୃଦ୍‌ବୋଧ ହୁଏ, ପ୍ରାଚୀନ କାଳରୁ ବିକଶିତ ବ୍ରାତ୍ୟ ସଭ୍ୟତା ବା ପୁରୁଷୋତ୍ତମ ସଭ୍ୟତାର ଅଧିବାସୀମାନଙ୍କ ଉନ୍ନତ କାରିଗରୀ




କୌଶଳ ଜ୍ଞାତ ଥିଲା ଏବଂ ସେମାନେ ପ୍ରାୟ ସାତହଜାର ବର୍ଷ ତଳେ ନିର୍ମାଣ କରିଥିବା ବିଶାଳ ପ୍ରସ୍ତରବେଦୀକା ଅଦ୍ୟାବଧି ଅକ୍ଷୁଣ୍ଣ ଅବସ୍ଥାରେ ରହିଅଛି । ଏହି ପ୍ରାଚୀନ ବେଦୀକା ଥିଲା ପରମସ୍ଥଳ ବା ଧର୍ମପୀଠ । ପୁରୁଷୋତ୍ତମ ସଭ୍ୟତାର ଅଧିବାସୀମାନଙ୍କୁ ଆର୍ଯ୍ୟମାନେ ବ୍ରାତ୍ୟ ବା ଦୈତ୍ୟ କହୁଥିଲେ ହେଁ ସେମାନେ ସାର୍ବଜନୀନ ଉପାସନା ପୀଠ ସ୍ୱରୂପରେ ବିଶାଳ ପ୍ରସ୍ତରବେଦୀ ନିର୍ମାଣ କରି ତହିଁ ଉପରେ ଦାରୁ ଉପାସନା କରୁଥିଲେ । ପାରମ୍ପରିକ ଭାବୋଚ୍ଛ୍ୱାସରେ ତାହା ପରମ ସ୍ଥଳ, ପରସ୍ତରମ୍, ପୁରୁଷୋତ୍ତମ ଓ ପୁରୀ ନାମରେ ଲୋକ ପ୍ରସିଦ୍ଧ ଲାଭ କରିଥିଲା । ବିଶ୍ୱର ଏହି ସର୍ବପ୍ରାଚୀନ ଧର୍ମପୀଠର ମୌଳିକତା ହେଉଛି 'ଧର୍ମ କ୍ଷେତ୍ରରେ ସଭିଁଏ ସମାନ' । ଏହି ଦିବ୍ୟ ଉପାସନା ଧାରାରେ ନିର୍ଗୁଣବାଦୀ ଆର୍ଯ୍ୟମାନେ ଅନୁପ୍ରାଣିତ ହୋଇ ପରବର୍ତ୍ତୀ କାଳରେ ସେହି ପ୍ରସ୍ତରବେଦୀକା ଉପରେ ମନ୍ଦିର ନିର୍ମାଣ ପୂର୍ବକ ମହାଦାରୁରୁ ନିର୍ମିତ ଚତୁର୍ଦ୍ଧାମୂର୍ତ୍ତିଙ୍କର ଉପାସନା କରିଥିଲେ । ଏଥିରୁ ପ୍ରମାଣିତ ହୁଏ, ପ୍ରାକ୍-ବୈଦିକ ଯୁଗରୁ ଶ୍ରୀଧାମ ପୁରୁଷୋତ୍ତମ ସମନ୍ୱୟର ମହାପୀଠ ରୂପେ ମହିମାମଣ୍ଡିତ ।

> ପ୍ରାକ୍-ବୈଦିକ ଯୁଗରୁ ଶ୍ରୀଧାମ ପୁରୁଷୋତ୍ତମ ସମନ୍ୱୟର ମହାପୀଠ ରୂପେ ମହିମାମଣ୍ଡିତ ।

ବୈଦିକ ପ୍ରକ୍ରିୟାରେ ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠିତ ହେବାପରେ ବ୍ରାହ୍ମଣ ଓ ଋଷିଗଣ ଏହି କ୍ଷେତ୍ରରେ ଆସି ନିବାସ କଲେ ତଥା ପୁରୁଷୋତ୍ତମ କ୍ଷେତ୍ରର ପ୍ରସିଦ୍ଧ ସମଗ୍ର ଭାରତ ଉପମହାଦେଶରେ ପରିବ୍ୟାପ୍ତ ହୋଇଥିଲା । ଆର୍ଯ୍ୟଗଣଙ୍କ ଦୃଷ୍ଟିରେ ପୁରୁଷୋତ୍ତମ ଜଗନ୍ନାଥ ଥିଲେ ପରମପୁରୁଷ ଏବଂ ବେଦବର୍ଣ୍ଣିତ ସହସ୍ରଶୀର୍ଷା ପୁରୁଷ । ତାଙ୍କ ନୀଳାଚଳରେ ଦାରୁବ୍ରହ୍ମ, ଲୀଳାରେ ବେଦର ପୁରୁଷୋତ୍ତମତତ୍ତ୍ୱ ସାକାର ସଗୁଣ ଲୀଳା ଭାବରେ ପରିପ୍ରକାଶ । ସେହି ମାନ୍ୟତାରେ ମୁନିଋଷି ଓ ବ୍ରାହ୍ମଣଗଣ ପ୍ରତ୍ୟହ ପ୍ରାଚୀନ ବେଦୀକା ଉପରେ ପୁରୁଷସୂକ୍ତ ମନ୍ତ୍ରପାଠ କରୁଥିଲେ । ଫଳରେ ସେହି ବେଦୀକା ପୁରୁଷମଣ୍ଡପ ନାମ ଧାରଣ କରିଥିଲା । **ଡକ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ମତରେ ପୁରୀର ପ୍ରାଚୀନ ନାମ ପଞ୍ଚଯଜ୍ଞ ତପୋବନ ।** ସେଠାରେ ବହୁ ମୁନିଋଷିଙ୍କର ଆଶ୍ରମ ରହିଥିଲା, ଯାହାକି ଅଙ୍ଗିରା ଆଶ୍ରମ, ମାର୍କଣ୍ଡେଶ୍ୱର, ଯମେଶ୍ୱର, ନୀଳକଣ୍ଠେଶ୍ୱର, ପାତାଳେଶ୍ୱର, ଈଶାନେଶ୍ୱର ପ୍ରଭୃତି ମନ୍ଦିର ଓ ପୀଠରେ ପରିଣତ ହୋଇଛି ।(୫) ସଂସ୍କୃତିର ଉତ୍ତରଣରେ ପୁରୁଷମଣ୍ଡପର ଖ୍ୟାତି ବୃଦ୍ଧି ହୋଇ ଏହାର ସନ୍ନିକଟ ଜନବସତି ପୁରୁଷପୁର ନାମ ଧାରଣ କରିଥିଲା । କେତେକ ବିଦ୍ୱାନ୍ ପୁରୁଷପୁରର ଅବସ୍ଥିତ ଉତ୍ତର-ପଶ୍ଚିମ ଭାରତରେ ବିଚାରପୂର୍ବକ ଆଧୁନିକ ପେଷାୱାରକୁ ପ୍ରାଚୀନ ପୁରୁଷପୁର ଭାବରେ ଚିହ୍ନିତ କରିଥାନ୍ତି । କିନ୍ତୁ ସୋମବଂଶୀ ରାଜା ଜନ୍ମେଜୟ ମହାଭବଗୁପ୍ତଙ୍କ ନାଗପୁର ତାମ୍ରଶାସନରୁ ଉପଲବ୍ଧ ହୁଏ ସେ ଓଡ୍ର ଦେଶସ୍ଥ ପୁରୁଷମଣ୍ଡପ ଗ୍ରାମନିବାସୀ ସନ୍ଥକରଙ୍କୁ ଏକ ଗ୍ରାମଦାନ କରିଥିଲେ ।(୬) ଏଥିରୁ ପ୍ରମାଣିତ ହେଉଛି, ପୁରୁଷମଣ୍ଡପ ବା ପୁରୁଷପୁର ଗ୍ରାମ ହିଁ ଓଡ଼ିଶାର ଶ୍ରୀଧାମ ପୁରୁଷୋତ୍ତମ । **ମନେହୁଏ, ପୁରୁଷପୁର ଶବ୍ଦରୁ ପୁରସ୍ତମ ଓ ପୁରୀ ନାମର ଉଦ୍ଭବ ।** ଡକ୍ଟର ରାଜଗୁରୁଙ୍କ ମତରେ ପ୍ରସିଦ୍ଧ ବୌଦ୍ଧ ଦାର୍ଶନିକ ବସୁବନ୍ଧୁ ପୁରୁଷପୁର ନିବାସୀ କୌଶିକ ଗୋତ୍ରୀୟ ବ୍ରାହ୍ମଣ ଥିଲେ । ସେ ପ୍ରଜ୍ଞା ପାରମିତା ଅବତଂସକର ଭାଷ୍ୟ ରଚନା କରିଥିଲେ । ପରବର୍ତ୍ତୀ କାଳରେ ଓଡ଼ିଶାର ଭୌମକର ବଂଶୀୟ ରାଜା ଶୁଭାକର ଦେବ ବୌଦ୍ଧଭିକ୍ଷୁ ପ୍ରଜ୍ଞାଙ୍କ ହସ୍ତରେ ଏହି ଭାଷ୍ୟ ଚୀନଦେଶର ରାଜାଙ୍କ ନିକଟକୁ ଅଷ୍ଟମ ଶତାବ୍ଦୀରେ ପ୍ରେରଣ କରିଥିଲେ, ଯାହା ଅଦ୍ୟାବଧି ଚୀନରେ ସଂରକ୍ଷିତ । ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ ପୁରୀ ହିଁ ପୁରୁଷପୁର ନାମରେ ବହୁକାଳ ଧରି ଖ୍ୟାତିଲାଭ କରିଥିଲା ଏବଂ ସର୍ବଧର୍ମ ସମନ୍ୱୟ ଭାବଧାରାରେ ବିଶ୍ୱବାସୀଙ୍କୁ ଅନୁପ୍ରାଣିତ କରୁଥିଲା । ପ୍ରାକ୍-ବୈଦିକ ଯୁଗରୁ ବିଶ୍ୱର ଏହି ପ୍ରାଚୀନତମ କ୍ଷେତ୍ରର ଅଭ୍ୟୁଦୟ ଘଟିଥିଲେ ହେଁ ବୈଦିକ ଯୁଗ ପରେ ଏହା ଧର୍ମକ୍ଷେତ୍ର, ଶିକ୍ଷାକେନ୍ଦ୍ର, ସାଧୁସନ୍ଥ ନିବାସସ୍ଥଳୀ ଓ ବେଦାଧ୍ୟାନର ପ୍ରକୃଷ୍ଟ ପୀଠରେ ପରିଣତ ହୋଇଥିଲା । ବିଶ୍ୱପ୍ରସିଦ୍ଧି ଲାଭ କଲାପରେ ଏହାର ସମନ୍ୱୟ ଭାବଧାରାରେ ଆକୃଷ୍ଟ ହୋଇ ବିଶ୍ୱର ବିଭିନ୍ନ ଅଞ୍ଚଳରୁ ସାଧୁସନ୍ଥ ମହାତ୍ମା ଏହି ପୀଠକୁ ଆଗମନ କରିଥିଲେ ତଥା ଏଠାରେ ଆଶ୍ରମ ନିର୍ମାଣ ପୂର୍ବକ ସ୍ଥାୟୀ ଭାବରେ ବସବାସ କରିଥିଲେ । ଭାରତୀୟ ପ୍ରଚେତାବୃନ୍ଦଙ୍କ ସମେତ ଖ୍ରୀଷ୍ଟଧର୍ମର ସଂସ୍ଥାପକ ପ୍ରଭୁ ଯୀଶୁଖ୍ରୀଷ୍ଟ ମଧ୍ୟ ଏହି ପୀଠରେ ପଦାର୍ପଣ କରିଥିଲେ । ସେ ଦୀର୍ଘ ଚାରିବର୍ଷ ଏହି ପୀଠରେ ନିବାସ କରିଥିବାର ପ୍ରମାଣ ବିଦ୍ୟମାନ ।

ଖ୍ରୀଷ୍ଟପୂର୍ବ କାଳରୁ ରଚିତ ପୁରାଣ ସାହିତ୍ୟରେ ଶ୍ରୀଧାମ ପୁରୁଷୋତ୍ତମର ଭୂୟସୀ ପ୍ରଶଂସା କରାଯାଇଛି । ଐତିହାସିକ ଓ ଗବେଷକଙ୍କ ମତରେ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରୁ ପୁରାଣ ସାହିତ୍ୟର ସୃଷ୍ଟି ।(୭) ପ୍ରାଚ୍ୟ ବିଦ୍ୟା ବିଶାରଦ ବଳଦେବ ଉପାଧ୍ୟାୟଙ୍କ ମତରେ ମତ୍ସ୍ୟପୁରାଣ ଦ୍ୱିତୀୟରୁ ଚତୁର୍ଥ ଶତାବ୍ଦୀ ମଧ୍ୟରେ ରଚିତ ।(୮) କିନ୍ତୁ ମହାକବି କାଳିଦାସ ମତ୍ସ୍ୟ ପୁରାଣ ବର୍ଣ୍ଣିତ ଉର୍ବଶୀ ଉପାଖ୍ୟାନରୁ ଉପାଦାନ ସଂଗ୍ରହପୂର୍ବକ

'ବିକ୍ରମୋର୍ବଶୀୟ' ନାଟକ ଲେଖିଥିବାରୁ ଏବଂ ତାଙ୍କର ସମୟ ପ୍ରଥମ ଶତାବ୍ଦୀ ସ୍ଥିରୀକୃତ ହୋଇଥିବାରୁ ପ୍ରମାଣିତ ହୁଏ ମତ୍ସ୍ୟ ପୁରାଣ ପ୍ରଥମ ଶତାବ୍ଦୀ ପୂର୍ବରୁ ରଚିତ ।(୯) ଏହି ମତ୍ସ୍ୟ ପୁରାଣରେ 'ଗୟାୟାଂ ମଙ୍ଗଳାନାମ ବିମଳୀ ପୁରୁଷୋତ୍ତମ'(୧୦) ଏବଂ 'ଗୋକର୍ଣ୍ଣଂ ଗଜକର୍ଣ୍ଣଂଚ ତଥାଚ ପୁରୁଷୋତ୍ତମ'(୧୧) ଉଲ୍ଲିଖିତ ଥିବାରୁ ହୃଦ୍‌ବୋଧ ହୁଏ ପ୍ରଥମ ଶତାବ୍ଦୀ ପୂର୍ବରୁ ଶ୍ରୀଧାମ ପୁରୁଷୋତ୍ତମ ପ୍ରସିଦ୍ଧିଲାଭ କରିସାରିଥିଲା । ସେହି ପ୍ରଥମ ଶତାବ୍ଦୀରେ ରଚିତ ପଦ୍ମପୁରାଣରେ ବହୁସ୍ଥଳରେ 'ପୁରୁଷୋତ୍ତମ କ୍ଷେତ୍ର' ନାମ ଉଲ୍ଲିଖିତ । ଏହି ପୁରାଣରେ ପ୍ରାଚୀନ ପୁରୁଷମଣ୍ଡପକୁ ସର୍ବପ୍ରଥମେ ନୀଳପର୍ବତ ବୋଲି କୁହାଯାଇଛି ।

ପରମେକ ମହଚ୍ଚିତ୍ରଂ ଯଦ୍‌ଦୃଷ୍ଟେ ନୀଳପର୍ବତେ,<br>
ପୁରୁଷୋତ୍ତମ ସାନ୍ନିଧ୍ୟେ ତନକ୍ୱାପ୍ୟକ୍ଷିଗୋଚରମ୍ ।(୧୨)

କେତେକ ଗବେଷକଙ୍କ ମତରେ ପଦ୍ମପୁରାଣର ରଚନାକାଳ ଦ୍ୱିତୀୟ-ତୃତୀୟ ଶତାବ୍ଦୀ । ଅର୍ଥାତ୍ ଦ୍ୱିତୀୟ ଶତାବ୍ଦୀ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ର ନୀଳଶୈଳ, ନୀଳପର୍ବତ ଓ ନୀଳଗିରି ନାମରେ ଖ୍ୟାତି ଲାଭ କରି ସାରିଥିଲା । **ପଦ୍ମପୁରାଣ ବର୍ଣ୍ଣନାରୁ ପ୍ରମାଣ ମିଳେ ସେ ସମୟରେ ପୁରୀରେ ମନ୍ଦିର ନିର୍ମିତ ହୋଇଥିଲା ଏବଂ ଏହାକୁ ପୁରୁଷୋତ୍ତମ ମନ୍ଦିର କୁହାଯାଉଥିଲା । ସେହି ସମୟରେ ଶ୍ରୀକ୍ଷେତ୍ରରେ ଅନ୍ନଭୋଗର ମଧ ବ୍ୟବସ୍ଥା ରହିଥିଲା ।** ପଦ୍ମପୁରାଣର ସମସାମୟିକ ହେଉଛି ବିଷ୍ଣୁପୁରାଣ । ଏହି ପୁରାଣରେ ପୁରୁଷୋତ୍ତମ କ୍ଷେତ୍ର ଓ ବିଷ୍ଣୁ ମନ୍ଦିର ପ୍ରସଙ୍ଗ ବର୍ଣ୍ଣିତ ।

ପୁରୁଷୋତ୍ତମାଖ୍ୟଂ ମୈତ୍ରେୟ ବିଷ୍ଣୋରାୟତନଂ ଯଯୌ,<br>
ତତ୍ରୈକାଗ୍ରମତି ଭୁକ୍ତା ଚକାରାରାଧନଂ ହରେଃ ।(୧୩)

ବର୍ଣ୍ଣନାରୁ ଜଣାଯାଉଛି ଯେ ଦ୍ୱିତୀୟ-ତୃତୀୟ ଶତାବ୍ଦୀ ସମୟକୁ ପୁରୀର ଶ୍ରୀମନ୍ଦିର ବିଷ୍ଣୁ ମନ୍ଦିରର ମାନ୍ୟତା ଲାଭ କରିଥିଲା । ଅଧିକନ୍ତୁ ଏହା ସେସମୟରେ ସାଧନାପୀଠ ଥିବାର ପ୍ରମାଣ ମିଳେ । ବିଷ୍ଣୁପୁରାଣର ଅନ୍ୟ ଏକ ଆଖ୍ୟାୟିକାରେ ବର୍ଣ୍ଣନା ରହିଛି ଯେ ମହର୍ଷି କଣ୍ଡୁଙ୍କର ତପସ୍ୟା କ୍ଷୀଣ ହେବାରୁ ସେ ତପଃସାଧନ ନିମିତ୍ତ ଏହି କ୍ଷେତ୍ରକୁ ଆସିଥିଲେ ।

ସ ଚାପି ଭଗବାନ୍ କଣ୍ଡୁ କ୍ଷୀଣେ ତପସି ସତ୍ତମଃ<br>
ପୁରୁଷୋତ୍ତମ ମାଖ୍ୟାତଂ ବିଷ୍ଣୋରାୟତନଂ ଯଯୌ ।(୧୪)

ଉପରୋକ୍ତ ଉଦାହରଣମାନଙ୍କରୁ ପ୍ରମାଣ ମିଳେ ଯେ ବିଷ୍ଣୁପୁରାଣ, ପଦ୍ମପୁରାଣ ଓ ମତ୍ସ୍ୟପୁରାଣ ରଚନା ସମୟକୁ ଅର୍ଥାତ୍ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀ ବେଳକୁ ପ୍ରାଚୀନ ପ୍ରସ୍ତରବେଦୀ ବା ପୁରୁଷମଣ୍ଡପ ଉପରେ ମନ୍ଦିର ନିର୍ମାଣ ହୋଇ ପୁରୁଷୋତ୍ତମ କ୍ଷେତ୍ରର ମହିମା ସର୍ବଭାରତୀୟ ସ୍ତରରେ ପ୍ରଚାର ହୋଇ ସାରିଥିଲା । ତୃତୀୟ ଶତାବ୍ଦୀରେ ରଚିତ ବାୟୁ ପୁରାଣରେ ପୁରୁଷୋତ୍ତମ କ୍ଷେତ୍ରକୁ ଭୂସ୍ୱର୍ଗ ବୋଲି କୁହାଯାଇଛି । ଷଷ୍ଠ ଶତାବ୍ଦୀରେ ରଚିତ ନାରଦ ପୁରାଣରେ ଏହା ଦଶଯୋଜନ ବିସ୍ତୃତ ପରମକ୍ଷେତ୍ର ନାମରେ ଅଭିହିତ ।

ଦଶଯୋଜନ ବିସ୍ତୀର୍ଣ୍ଣଂ କ୍ଷେତ୍ରଂ ପରମଦୁର୍ଲଭଂ<br>
ନକ୍ଷତ୍ରାଣାଂ ଯଥା ସୋମଃ ସରସାଂ ସାଗରୋଯଥା<br>
ତଥା ସମସ୍ତ ତୀର୍ଥାନାଂ ବରିଷ୍ଟଂ ପୁରୁଷୋତ୍ତମଃ ।(୧୫)

ଏହି ଶ୍ଳୋକରେ ଶ୍ରୀଧାମ ପୁରୁଷୋତ୍ତମକୁ ସକଳତୀର୍ଥମାନଙ୍କ ମଧ୍ୟରେ ବରିଷ୍ଠ ବୋଲି କୁହାଯାଇଛି । ବ୍ରହ୍ମପୁରାଣକୁ ଅଷ୍ଟାଦଶ ପୁରାଣମାନଙ୍କ ମଧ୍ୟରେ ପ୍ରଥମ ପୁରାଣର ମାନ୍ୟତା ପ୍ରଦାନ କରାଯାଏ । ଏହି ପୁରାଣରେ ପୁରୁଷୋତ୍ତମ କ୍ଷେତ୍ରର ପ୍ରଶଂସା କରି କୁହାଯାଇଛି-

ଆସ୍ତେ ତତ୍ର ମୁନିଶ୍ରେଷ୍ଠ ବିଖ୍ୟାତ ପୁରୁଷୋତ୍ତମଃ,<br>
ଯାବତ୍ ଉତ୍କଳ ମର୍ଯ୍ୟାଦା ଦିକ୍ କ୍ରମେଣ ପ୍ରକୀର୍ତ୍ତିତଃ ।<br>
ତାବତ୍ କୃଷ୍ଣ ପ୍ରସାଦେନ ଦେଶଃ ପୁଣ୍ୟ ତମୋହିସଃ,<br>
ଯତ୍ର ତିଷ୍ଠତି ବିଶ୍ୱାତ୍ମା ଦେଶେସ ପୁରୁଷୋତ୍ତମ ।

ଏତଦ୍‌ଭିନ୍ନ ଅଗ୍ନିପୁରାଣ, ଲିଙ୍ଗ ପୁରାଣ, ଶିବପୁରାଣ, ଭବିଷ୍ୟ ପୁରାଣ, ବାମନ ପୁରାଣ ଓ ସ୍କନ୍ଦପୁରାଣ ପ୍ରଭୃତିରେ ପୁରୁଷୋତ୍ତମ କ୍ଷେତ୍ରର ଅଭ୍ୟୁଦୟ, କ୍ରମବିକାଶ ଓ ମହାତ୍ମ୍ୟ ବର୍ଣ୍ଣିତ ।(୧୬)

ପୁରାଣ ସାହିତ୍ୟ ସଦୃଶ ଚତୁର୍ଥ ଶତାବ୍ଦୀଠାରୁ ଦଶମ ଶତାବ୍ଦୀ ମଧ୍ୟରେ ରଚିତ ତନ୍ତ୍ରଶାସ୍ତ୍ର ସମୂହରେ ମଧ ପୁରୁଷୋତ୍ତମ କ୍ଷେତ୍ରକୁ ପ୍ରଥମ ତନ୍ତ୍ରପୀଠର ମାନ୍ୟତା ପ୍ରଦାନ କରାଯାଇଛି । କାଳିକା ପୁରାଣ ବର୍ଣ୍ଣନା ଅନୁଯାୟୀ ଓଡ୍ରାଖ୍ୟ ହେଉଛି ପ୍ରଥମ ତନ୍ତ୍ରପୀଠ ।

ଓଡ୍ରାଖ୍ୟଂ ପ୍ରଥମଂ ପୀଠଂ ଦ୍ୱିତୀୟଂ ଜାଳଶୈଳକମ୍<br>
ତୃତୀୟଂ ପୂର୍ଣ୍ଣପୀଠନ୍ତୁ କାମରୂପଂ ଚତୁର୍ଥକମ୍ ।<br>
ଓଡ୍ରପୀଠଂ ପଶ୍ଚିମେତୁ ତଥୈବୋଡ୍ରେଶ୍ୱରୀ ଶିବାଂ<br>
କାତ୍ୟାୟିନୀଂ ଜଗନ୍ନାଥ ମୋଡ୍ରେଶଚ ପ୍ରପୂଜୟେତ୍ ।(୧୭)

ପ୍ରସିଦ୍ଧ ତନ୍ତ୍ରଶାସ୍ତ୍ର ତନ୍ତ୍ରଯାମଳରେ ଭାରତବର୍ଷର ଉତ୍କଳ ଦେଶସ୍ଥ ପୁରୁଷୋତ୍ତମ କ୍ଷେତ୍ରକୁ ଭୂସ୍ୱର୍ଗ ବୋଲି ଉଲ୍ଲେଖ କରାଯାଇଛି ।

ଭାରତେତୋତ୍କଳଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମ
ଦାରୁରୂପୀ ଜଗନ୍ନାଥୋ ଭକ୍ତନାମ ଭୟପ୍ରଦଃ ।(୧୮)

ତନ୍ତ୍ରଯାମଳର ସମସାମୟିକ ରୁଦ୍ରଯାମଳରେ ପୁରୁଷୋତ୍ତମ ଜଗନ୍ନାଥ ଓ ଶ୍ରୀକ୍ଷେତ୍ରର ପ୍ରଶଂସା କରାଯାଇଛି ।

ମହାଖଣ୍ଡବାସୀ ମହାନନ୍ଦବାସୀ ପୁରଗ୍ରାମବାସୀ ମହାପୀଠ ଦେଶୋ,
ଜଗନ୍ନାଥ ବକ୍ଷସ୍ଥଳସ୍ଥୋ ବରେଣ୍ୟା ବୃତ୍ତାନନ୍ଦକର୍ତ୍ତା ଶିବାନନ୍ଦ କର୍ତ୍ତା ।

ସଂକ୍ଷେପରେ ଉଲ୍ଲେଖ କଲେ ତନ୍ତ୍ରଯୁଗରେ ଶ୍ରୀଜଗନ୍ନାଥଙ୍କଠାରେ ତନ୍ତ୍ରଧାରା ଆରୋପିତ ହୋଇ ଶ୍ରୀଧାମ ପୁରୁଷୋତ୍ତମରେ ସାର୍ବଜନୀନ ଉପାସନାର ମହନୀୟତା ପ୍ରକଟିତ ହୋଇଥିଲା । ତନ୍ତ୍ର ସଂସ୍କୃତିର ଉତ୍ତରଣରେ ଏହି ଧାମର କୋଣେ ଅନୁକୋଣେ ତନ୍ତ୍ରମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲେ । ଶ୍ରୀଜନ୍ନାଥଙ୍କ ନିତ୍ୟପୂଜା ଓ ଉପାସନାରେ ତାନ୍ତ୍ରିକ ପ୍ରକ୍ରିୟା ପ୍ରୟୋଗ ହେଲା । ବିଶେଷତଃ ତାନ୍ତ୍ରିକ ପଦ୍ଧତିରେ ମହାପ୍ରସାଦ ସମର୍ପିତ ହୋଇ ସମନ୍ୱୟାତ୍ମକ ସେବା ରୂପେ ପ୍ରତିଭାତ ହେଲା । **ତନ୍ତ୍ର ପରମ୍ପରାରେ ଏହା ସମର୍ପିତ ହୋଇ ବ୍ରାହ୍ମଣଚାଣ୍ଡାଳ ଏକତ୍ରବସି ମହାପ୍ରସାଦ ସେବନ କଲେ । ତନ୍ତ୍ରବିଚାରରେ ଏହା ଭୈରବୀ ଚକ୍ରରେ ସଂସ୍ଥାପିତ ହୋଇ ଜାତିବର୍ଣ୍ଣ ବିଚାରରୁ ଉର୍ଦ୍ଧ୍ୱରେ ପ୍ରତିଷ୍ଠିତ ହେଲା ।**

ପ୍ରବୃତ୍ତେ ଭୈରବୀଚକ୍ରେ ସର୍ବେ ବର୍ଣ୍ଣ ଦ୍ୱିଜୀତୟଃ
ନିବୃତ୍ତେ ଭୈରବୀ ଚକ୍ରେ ସର୍ବେ ବର୍ଣ୍ଣାଃ ପୃଥକ୍ ପୃଥକ୍ ।

ମହନୀୟତା ହେଉଛି, ତନ୍ତ୍ର ବର୍ଣ୍ଣିତ ଏକାଦଶ ସଂସ୍କାରରେ ନିର୍ଜୀବ ପଦବାଚ୍ୟ ତଣ୍ଡୁଳ ପରଂବ୍ରହ୍ମ ପଦବାଚ୍ୟ ହେଲା । ତଣ୍ଡୁଳ ସେବା ନିମିତ୍ତ ସରଘରକୁ ଆସିବା ପରେ ପ୍ରଥମ ସଂସ୍କାରରେ ଅମୁଣିଆ, ଦ୍ୱିତୀୟ ସଂସ୍କାରରେ ଷଟ୍‌କୋଣାକୃତି ଅଗ୍ନିଯନ୍ତ୍ରରେ ନଅଗୋଟି ମୃତ୍ତିକା ପାତ୍ରରେ ସିଦ୍ଧହେବା ପରେ ଅନ୍ନ, ତୃତୀୟ ସଂସ୍କାରରେ ଭୈରବୀଚକ୍ର ଅଭିମୁଖୀ ହେଲେ ଛେକ, ଚତୁର୍ଥ ସଂସ୍କାରରେ ଭୈରବୀ ଚକ୍ରରେ ସଂସ୍ଥାପିତ ହେଲେ ଭୋଗ, ପଞ୍ଚମ ସଂସ୍କାରରେ ନିବେଦନ ହୋଇ ନୈବେଦ୍ୟ, ଷଷ୍ଠ ସଂସ୍କାରରେ ବଳୀ ପ୍ରଦାନ ପରେ ପ୍ରସାଦ, ସପ୍ତମ ସଂସ୍କାରରେ ମହାଭୈରବୀ ବିମଳାଙ୍କୁ ସମର୍ପଣ ପରେ ମହାପ୍ରସାଦ, ଅଷ୍ଟମ ସଂସ୍କାରରେ ଆନନ୍ଦବଜାରକୁ ଆସି ମୋକ୍ଷ ପ୍ରଦାନକାରୀ କୈବଲ୍ୟ, ନବମ ସଂସ୍କାରରେ ଜାତି-ବର୍ଣ୍ଣ-ନିର୍ବିଶେଷରେ ସଭିଁଏ ସେବନ କରିବା ସମୟରେ ଅବଢ଼ା, ଦଶମ ସଂସ୍କାରରେ ଅବଢ଼ାରୁ ଉଚ୍ଛିଷ୍ଟ ହୋଇ ନିର୍ମାଲ୍ୟ ଏବଂ ଏକାଦଶ ସଂସ୍କାରରେ ଏହି ନିର୍ମାଲ୍ୟ ପରଂବ୍ରହ୍ମ ଜଗନ୍ନାଥଙ୍କ ସାଥୀରେ ସମାନ ହେଲା । ଶ୍ରୀଜଗନ୍ନାଥଙ୍କ ନିତ୍ୟସେବାରେ ତନ୍ତ୍ରର ଏହି ମହତ ପରମ୍ପରା ପ୍ରଚଳନ ହୋଇ ପୁରୁଷୋତ୍ତମ କ୍ଷେତ୍ରରୁ ଜାତିବର୍ଣ୍ଣର ପ୍ରାଚୀର ଉଠିଗଲା । ଅଦ୍ୟାବଧି ସେହି ପରମ୍ପରା ପ୍ରଚଳିତ ।

ଉଲ୍ଲେଖଯୋଗ୍ୟ ଯେ, ଶ୍ରୀଧାମ ପୁରୁଷୋତ୍ତମର ମହାତ୍ମ୍ୟ ବୃଦ୍ଧି ହୋଇ ଦରିଆପାରି ଦେଶମାନଙ୍କରେ ଏହାର ପ୍ରସିଦ୍ଧି ବୃଦ୍ଧି ପାଇଥିଲା । ଓଡ଼ିଆମାନେ ଜଳପଥ ଓ ସ୍ଥଳପଥରେ ଗମନପୂର୍ବକ ପୂର୍ବ ଭାରତୀୟ ଦୀପପୁଞ୍ଜ ଓ ବ୍ରହ୍ମଦେଶରେ ବସବାସ କରିଥିଲେ । ଐତିହାସିକଙ୍କ ମତରେ ପ୍ରଥମ ଶତାବ୍ଦୀରୁ ଏହି ପ୍ରକ୍ରିୟା ଆରମ୍ଭ ହୋଇଥିଲା ତଥା ସପ୍ତମ ଶତାବ୍ଦୀ ବେଳକୁ ଓଡ଼ିଶାର ରାଜା ସମୁଦ୍ର ପାରି ଦେଶମାନଙ୍କରେ ଉପନିବେଶ ସ୍ଥାପନପୂର୍ବକ ଶୈଳେନ୍ଦ୍ର ସାମ୍ରାଜ୍ୟ ସୃଷ୍ଟି କରିଥିଲେ । ଚୀନ୍ ପରିବ୍ରାଜକ ଇତ୍‌ସିଂଙ୍କ ବିବରଣୀ ଅନୁଯାୟୀ ପୁରୀ ଅଞ୍ଚଳରୁ ବହୁବ୍ୟକ୍ତି ବ୍ରହ୍ମଦେଶରେ ନିବାସ ପୂର୍ବକ ନିଜ ଦେଶ ସଦୃଶ ଅନେକ ପୁର ବା ନଗର ବସାଇଥିଲେ । ଗୌରବର କଥା, ସେମାନେ ବ୍ରହ୍ମଦେଶରେ ଦ୍ୱିତୀୟ ପୁରୀ ନଗର ବା ପ୍ରୋମ୍‌ନଗରୀ ସ୍ଥାପନ କରିଥିଲେ, ଯାହାକୁ ମଧ ଶ୍ରୀକ୍ଷେତ୍ର କୁହାଯାଉଥିଲା ।(୧୯) ବ୍ରହ୍ମଦେଶର ସେହି ନଗରୀର ଭୂଖୋଦନରୁ ଅନେକ ପ୍ରତ୍ନବିଭବ, ମୂର୍ତ୍ତି ଓ ସଂସ୍କୃତ ତଥା ପାଲି ଭାଷାର ଶିଳାଲେଖ ମିଳିଅଛି । ଏଥିରୁ ପ୍ରମାଣିତ ହୁଏ, ପ୍ରଥମ ଶତାବ୍ଦୀ ପୂର୍ବରୁ ପୁରୁଷୋତ୍ତମଧାମ ଶ୍ରୀକ୍ଷେତ୍ର ରୂପେ ବିଶ୍ୱଦରବାରରେ ପରିଚିତ ଥିଲା ଏବଂ ନୌବହର ଓଡ଼ିଆ ଜାତି ସାଗରପାରି ଦେଶରେ ନିବାସପୂର୍ବକ ଦ୍ୱିତୀୟ ଶ୍ରୀକ୍ଷେତ୍ର ପ୍ରତିଷ୍ଠା କରିଥିଲେ ।

ପ୍ରାକ୍‌ବୈଦିକ ଯୁଗରୁ ପ୍ରତିଷ୍ଠିତ ତଥା ଖ୍ରୀଷ୍ଟପୂର୍ବ କାଳରୁ ସୁବିଖ୍ୟାତ ଶ୍ରୀଧାମ ପୁରୁଷୋତ୍ତମ ଭୌମକର ରାଜତ୍ୱରେ କିଛିକାଳ ବୌଦ୍ଧ ଅଧ୍ୟୁଷିତ ହୋଇ ପଡ଼ିଥିଲା । ବୌଦ୍ଧ ମହାଯାନ ପନ୍ଥୀଗଣ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ଭାବରେ ଉପାସନା କଲେ । ସିଦ୍ଧାଚାର୍ଯ୍ୟ ଅନଙ୍ଗବଜ୍ର ସ୍ୱରଚିତ ଶାସ୍ତ୍ରରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ଭାବରେ ପ୍ରତିପାଦନ କଲେ ।(୨୦) ତଦୀୟଶିଷ୍ୟ ବ୍ରଜଯାନୀ ଇନ୍ଦ୍ରଭୂତି ସ୍ୱରଚିତ ଜ୍ଞାନସିଦ୍ଧି ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧଙ୍କ ଅବତାର ଭାବରେ ଚିତ୍ରଣ କଲେ ।(୨୧) ଏହି ସମୟରେ କୌଣସି ବୌଦ୍ଧ ବିଦ୍ୱେଷୀ ରାଜା ପୁରୀ ଆକ୍ରମଣ କରିବାରୁ ସେବକଗଣ ଠାକୁରଙ୍କୁ ନେଇ ସୁଦୂର ପଶ୍ଚିମାଞ୍ଚଳରେ ପାତାଳୀ କରିଥିଲେ । ଏହାର ୧୪୪ ବର୍ଷ ପରେ ସୋମବଂଶୀ ଯଯାତି ପାତାଳୀ ଦିଅଁଙ୍କ ବ୍ରହ୍ମଙ୍କୁ ଉଦ୍ଧାର କରି ଠାକୁରମାନଙ୍କର ନବକଳେବର ଓ ପୁନଃ ପ୍ରତିଷ୍ଠା କରାଯାଇଥିଲେ ।(୨୨) ପରିଣାମ ସ୍ୱରୂପ ପୁରୁଷୋତ୍ତମ କ୍ଷେତ୍ରର




ହୃତଗୌରବ ଫେରି ଆସିଥିଲା । ଇତିମଧରେ ଅଦ୍ୱୈତବେଦାନ୍ତର ମହାନ୍ ପ୍ରବକ୍ତା ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ରରେ ଭୋଗବର୍ଦ୍ଧନ ମଠ ପ୍ରତିଷ୍ଠାପୂର୍ବକ ପୁରୁଷୋତ୍ତମ କ୍ଷେତ୍ରକୁ ଭାରତର ପ୍ରମୁଖ ଚାରିଧାମ ମଧ୍ୟରେ ପ୍ରଥମ ଧାମର ମର୍ଯ୍ୟାଦା ପ୍ରଦାନ କରିଥିଲେ । ଏହାପରେ ଅନ୍ୟାନ୍ୟ ସଂପ୍ରଦାୟର ସାଧୁସନ୍ଥ ବୃନ୍ଦ ପୁରୀରେ ମଠ ସ୍ଥାପନା କଲେ ଏବଂ ପୁରୀ ଏକ ପ୍ରମୁଖ ସାରସ୍ୱତ ତୀର୍ଥର ମର୍ଯ୍ୟାଦା ଲାଭ କଲା । ଭାରତର ବିଭିନ୍ନ ପ୍ରାନ୍ତରରୁ ବିଦ୍ୟାର୍ଥୀବୃନ୍ଦ ଏଠାରେ ନିବାସପୂର୍ବକ ବେଦ ବେଦାନ୍ତ, ଯୋଗ, ନ୍ୟାୟ, ଦର୍ଶନ, ସାଂଖ୍ୟ, ବ୍ୟାକରଣ ଓ ଜ୍ୟୋତିଷ ପ୍ରଭୃତି ଶିକ୍ଷାଲାଭ କଲେ । ଏହି ସମୟରେ ଦାମୋଦର ନାମକ ଜନୈକ ଛାତ୍ର ପୁରୀ ମହୋଦଧିରେ ନବମ ଶତାବ୍ଦୀରେ ଜଳସମାଧି ଲାଭ କରିଥିଲା ବୋଲି ମଧ୍ୟପ୍ରଦେଶର ମହୀୟାରଠାରେ ଥିବା ସରସ୍ୱତୀ ମନ୍ଦିର ଶିଳାଲେଖାରୁ ଜଣାଯାଏ ।

ସମୁଦ୍ର ମଜ୍ଜନାନ୍ନୂନଂ ଉଡ୍ରେଷୁ ପୁରୁଷୋତ୍ତମମ୍
ଦୃଷ୍ଟ୍ୱା ତବ୍ୟନ୍ତିକେ ଭୂୟଃ ପୁରାଗଚ୍ଛତ୍ୟୟଂ ଶିଶୁ ।(୨୩)

ନବମ ଶତାବ୍ଦୀରେ ପୁରୁଷୋତ୍ତମ କ୍ଷେତ୍ରର ପ୍ରସିଦ୍ଧି ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ହୋଇଥିଲା । ସେହି ସମୟରେ ପୁରୀ ପଣ୍ଡିତମାନଙ୍କର ନିବାସସ୍ଥଳୀ ଥିଲା । ତନ୍ମଧ୍ୟରୁ ପଣ୍ଡିତ ମୁରାରୀ ମିଶ୍ର ଅନର୍ଘରାଘବ ନାଟକ ରଚନା କରିଥିଲେ ଏବଂ ନାଟକଟି ତମାଳତରୁ ପରିପୂରିତ ବେଳା ଭୂମିରେ ଅଭିନୀତ ହୋଇଥିଲା ।

ଭୋ-ଭୋ-ଲବଣୋଦ ବେଳାବନାଳୀ, ତମାଳତରୁ କନ୍ଦଳସ୍ୟ
ତ୍ରିଭୁବନ-ମୌଳିମଣ୍ଡନ-ମହାନୀଳମଣେଃ-କମଳାକୁଚ କଳସ୍ୟକେଳି
କସ୍ତୁରିକା-ପତ୍ରାଙ୍କୁରସ୍ୟ ଭଗବତଃ ପୁରୁଷୋତ୍ତମସ୍ୟ ଯାତ୍ରାୟାଂ ସଭାସଦଃ ।(୨୪)

ଏତଦ୍‌ଭିନ୍ନ ଏକାଦଶ ଶତାବ୍ଦୀର ରାଜା କୀର୍ତ୍ତି ବର୍ମାଙ୍କ ରାଜସଭାରେ ପଣ୍ଡିତ କୃଷ୍ଣ ମିଶ୍ରଙ୍କଦ୍ୱାରା ରଚିତ 'ପ୍ରବୋଧ ଚନ୍ଦ୍ରୋଦୟ' ନାଟକ ଅଭିନୀତ ହୋଇଥିଲା । ପ୍ରୋକ୍ତ ନାଟକର ଦ୍ୱିତୀୟ ଅଙ୍କରେ ମହୋଦଧିତଟସ୍ଥ ପୁରୁଷୋତ୍ତମ ମନ୍ଦିର ପ୍ରସଙ୍ଗ ଉଲ୍ଲିଖିତ ।

'ଅହଂ ଉତ୍କଳ ଦେଶାଦ୍ ଆଗତେସ୍ମି-ଅସ୍ତି ତତ୍ର ସାଗରତୀରେ
ସଂନିବେଶେ ପୁରୁଷୋତ୍ତମ ଶବ୍ଦିତଂ ଦେବାୟତନଂ ।'(୨୫)

ସୂଚନାଯୋଗ୍ୟ ଯେ ମଧ୍ୟପ୍ରଦେଶର ପୂଜାରୀପାଲି ଗ୍ରାମରୁ ପ୍ରାପ୍ତ ଗୋପାଳ ଦେବଙ୍କ ଏକାଦଶ ଏକ ଶିଳାଲେଖରୁ ଜଣାଯାଏ ଭାରତର ତୀର୍ଥମାନଙ୍କ ମଧ୍ୟରେ ଶ୍ରୀଧାମ ପୁରୁଷୋତ୍ତମ ପ୍ରଧାନତୀର୍ଥ ଥିଲା ।

ଶ୍ରୀକେଦାର ପ୍ରୟାଗେ ଚ ପୁଷ୍କରେ ପୁରୁଷୋତ୍ତମ,
ଭୀମେଶ୍ୱରେ ନର୍ମଦାୟାଂ ଶ୍ରୀଗୋପାଳ ପୁରେ ତଥା ।(୨୬)

୧୧୦୪ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ମାଳବରାଜାଙ୍କ ନାଗପୁର ଶିଳାଲେଖରେ ମଧ ମହୋଦଧି ତଟରେ ପୁରୁଷୋତ୍ତମ ଓ ମହାଲକ୍ଷ୍ମୀଙ୍କ ଅବସ୍ଥାନ ପ୍ରସଙ୍ଗ ବର୍ଣ୍ଣିତ ।

ଦେବୋସୌ ପୁରୁଷୋତ୍ତମଃ ସ ଭଗବାନ ଶିଶ୍ରୟେଯଃ ଶ୍ରିୟା ।(୨୭)

ଏଥିରୁ ପ୍ରମାଣିତ ହେଉଛି ଏକାଦଶ ଶତାବ୍ଦୀରେ ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥଙ୍କ ସହିତ ମହାଲକ୍ଷ୍ମୀଙ୍କ ମନ୍ଦିର ରହିଥିଲା । ୧୧୩୭ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ଗୟା ସନ୍ନିକଟ ଗୋବିନ୍ଦପୁର ନାମକ ସ୍ଥାନର ଶିଳାଲେଖରୁ ଜଣାଯାଏ ଗୟା ଅଞ୍ଚଳରେ ରାଜତ୍ୱ କରୁଥିବା ରାଜା ରୁଦ୍ରଙ୍କର ସଭାକବି ଗଙ୍ଗାଧରଙ୍କ ପିତା ମନୋରଥ ପୁରୁଷୋତ୍ତମ କ୍ଷେତ୍ରକୁ ତୀର୍ଥ କରିବାକୁ ଆସିଥିଲେ ।

ଗତ୍ୱା ଶ୍ରୀପୁରୁଷୋତ୍ତମଂ ଭଗବୟୋହୃଦ୍ୟଃ ପ୍ରତିଷ୍ଠା ପଦଂ
ପାରାବାର ତଟେ ପଟ୍ଟୀୟସି ଲସଚ୍ଚନ୍ଦ୍ର ଗ୍ରହାନେହସି ।(୨୮)

ଏଥିରୁ ପ୍ରତିପାଦିତ ହେଉଛି ସୋମବଂଶୀ ରାଜତ୍ୱରେ ପୁରୁଷୋତ୍ତମ କ୍ଷେତ୍ର ଏକ ଭାରତ ପ୍ରସିଦ୍ଧ ତୀର୍ଥ ସ୍ୱରୂପରେ ଲୋକଖ୍ୟାତି ଲାଭ କରିଥିଲା । ଏହି ସମୟରେ ଭାରତର ବିଭିନ୍ନ ଅଞ୍ଚଳରୁ ଯାତ୍ରୀ, ଭକ୍ତ, ସାଧୁସନ୍ଥ ଓ ବିଦ୍ୱାନ ପୁରୁଷୋତ୍ତମ କ୍ଷେତ୍ରକୁ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଆଗମନ କରୁଥିଲେ ।

ସୋମବଂଶୀ ଯଯାତିଙ୍କଦ୍ୱାରା ନିର୍ମିତ ମନ୍ଦିର ଜୀର୍ଣ୍ଣ ହୋଇଯିବାରୁ ଗଙ୍ଗବଂଶୀ ଚୋଡ଼ଗଙ୍ଗ ଦେବ ଦ୍ୱାଦଶ ଶତାବ୍ଦୀରେ ବର୍ତ୍ତମାନର ଶ୍ରୀମନ୍ଦିର ଶ୍ରୀବତ୍ସ ଖଣ୍ଡଶାଳ ରୀତିରେ ପୁନଃନିର୍ମାଣ କରିଥିଲେ । ଏଥିସହିତ ସେ ମହାଲକ୍ଷ୍ମୀଙ୍କର ଏକ ଭବ୍ୟ ମନ୍ଦିର ଶ୍ରୀମନ୍ଦିର ପରିସରରେ ମଧ ନିର୍ମାଣ କରିଥିଲେ । ଏହାପରେ ପୁରୁଷୋତ୍ତମ କ୍ଷେତ୍ରର ଖ୍ୟାତି ବଢ଼ିବାକୁ ଲାଗିଲା । ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱରେ ବିଶିଷ୍ଟଦ୍ୱୈତର ପ୍ରଧାନ ଆଚାର୍ଯ୍ୟ ରାମାନୁଜ ୧୧୨୨-୧୧୩୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ରରେ ଏମାର ମଠ ସ୍ଥାପନା କରିଥିଲେ ।(୨୯) ତାଙ୍କ ପରେ ଦ୍ୱୈତବାଦର ପ୍ରବର୍ତ୍ତକ ମଧ୍ୱାଚାର୍ଯ୍ୟ ବା ଆନନ୍ଦ ତୀର୍ଥ ଏବଂ ଦ୍ୱୈତାଦ୍ୱୈତର ପ୍ରତିଷ୍ଠାତା ବିଷ୍ଣୁସ୍ୱାମୀ ନିମ୍ବାକାଚାର୍ଯ୍ୟ ପୁରୁଷୋତ୍ତମ କ୍ଷେତ୍ରକୁ ଆଗମନ କରି ସ୍ୱମତ ପ୍ରଚାର ନିମିତ୍ତ ମଠ ପ୍ରତିଷ୍ଠା କରିଥିଲେ । ପୂର୍ବରୁ ଜ୍ୟୋତିର୍ବିଦ୍ୟା ଗବେଷଣା ନିମିତ୍ତ ଭାରତର





କେନ୍ଦ୍ରରେ ଅବସ୍ଥିତ ଉଜ୍ଜୟିନୀକୁ କେନ୍ଦ୍ର ଭାବରେ ଗ୍ରହଣ କରାଯାଇଥିଲା । କିନ୍ତୁ ପୁରୀ ନିବାସୀ ଶତାନନ୍ଦ ଜ୍ୟୋତିଷ ଗବେଷଣାର କେନ୍ଦ୍ରସ୍ଥଳ ଉଜ୍ଜୟିନୀ ପରିବର୍ତ୍ତେ ପୁରୀକୁ ସ୍ଥିର କରିଥିଲେ ଏବଂ ପ୍ରସିଦ୍ଧ ଜ୍ୟୋତିଷଗ୍ରନ୍ଥ 'ଭାସ୍ୱତୀ' ରଚନାପୂର୍ବକ ଜ୍ୟୋତିଷ ବିଦ୍ୟାରେ ଆଲୋଡ଼ନ ସୃଷ୍ଟି କଲେ । ଫଳରେ ପୁରୀକୁ ଭାରତର ବିଭିନ୍ନ ପ୍ରାନ୍ତରରୁ ଜ୍ୟୋତି ବିଜ୍ଞାନୀବୃନ୍ଦ ଗବେଷଣା ନିମିତ୍ତ ଆଗମନ କରିଥିଲେ ।

ଗଙ୍ଗବଂଶୀ ତୃତୀୟ ଅନଙ୍ଗଭୀମଦେବ ସମଗ୍ର ଓଡ଼ିଶା ସାମ୍ରାଜ୍ୟକୁ ଶ୍ରୀଜଗନ୍ନାଥଙ୍କ ଚରଣରେ ସମର୍ପଣ କରି ରାଉତ ପଣରେ ରାଜ୍ୟ ଶାସନ କରିଥିଲେ । ଗଙ୍ଗ ରାଜତ୍ୱରେ ମହାକବି ଜୟଦେବ, ଆଚାର୍ଯ୍ୟ ଗୋବର୍ଦ୍ଧନ, ଜଗତ୍‌ଗୁରୁ ଶ୍ରୀଧର ସ୍ୱାମୀ, ସନ୍ଧିବିଗ୍ରହ ଚନ୍ଦ୍ରଶେଖର, କବିରାଜ ବିଶ୍ୱନାଥ, କବିବିଦ୍ୟାଧର ପ୍ରଭୃତି କବି କୋବିଦବୃନ୍ଦ ଓଡ଼ିଶାରେ ଜନ୍ମଲାଭ କରି ଅଗଣିତ ଶାସ୍ତ୍ର ରଚନା କରିବା ସହିତ ପୁରୁଷୋତ୍ତମ କ୍ଷେତ୍ରର ସାରସ୍ୱତ ମହତ୍ତ୍ୱ ପ୍ରତିପାଦନ କରିଥିଲେ । ବିଶେଷତଃ ଜୟଦେବଙ୍କ ଲେଖନୀ ନିଃସୃତ ଗୀତଗୋବିନ୍ଦ ସମଗ୍ର ଭାରତରେ ଲୋକପ୍ରିୟତା ଅର୍ଜନ କରିବା ସହିତ ପୁରୁଷୋତ୍ତମ କ୍ଷେତ୍ର ଦଶାବତାର କ୍ଷେତ୍ରର ମାନ୍ୟତା ଲାଭ କଲା । ଅନଙ୍ଗଭୀମ ଦେବ ପୁରୀ ଶ୍ରୀମନ୍ଦିର ଜଗମୋହନ, ନାଟମଣ୍ଡପ ତଥା କଟକଠାରେ ଏକ ପୁରୁଷୋତ୍ତମ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ତଦୀୟପୁତ୍ର ଲାଙ୍ଗୁଳା ନରସିଂହଦେବ କୋଣାର୍କର ବିଶ୍ୱବିଖ୍ୟାତ ସୂର୍ଯ୍ୟ ମନ୍ଦିର, କପିଳାସର ଶିଖରେଶ୍ୱର ମନ୍ଦିର, ରେମୁଣାର କ୍ଷୀରଚୋରା ଗୋପୀନାଥ ମନ୍ଦିର ଓ ସୀମାଞ୍ଚଳର ଲକ୍ଷ୍ମୀନୃସିଂହ ମନ୍ଦିର ପ୍ରଭୃତି ନିର୍ମାଣ କରିଥିଲେ । ତତ୍କାଳୀନ ଶାସ୍ତ୍ରରୁ ଜଣାଯାଏ, ସେହି ସମୟରେ ଓଡ଼ିଶାର ପୁରୁଷୋତ୍ତମକ୍ଷେତ୍ର ସମେତ କୋଣାର୍କ, ଭୁବନେଶ୍ୱର, କପିଳାସ, ଯାଜପୁର ଓ ରେମୁଣା ପ୍ରଭୃତି ସର୍ବଭାରତୀୟ ସ୍ତରରେ ତୀର୍ଥ ଓ କ୍ଷେତ୍ରର ମାନ୍ୟତା ଲାଭ କରିଥିଲା । ଗଙ୍ଗରାଜତ୍ୱରେ ଓଡ଼ିଶାରେ ରଚିତ କପିଳାସଂହିତା, ବାମଦେବ ସଂହିତା, ନୀଳାଦ୍ରି ମହୋଦୟ, ଇନ୍ଦ୍ର ନୀଳମଣି ପୁରାଣ, ପୁରୁଷୋତ୍ତମ ମହାତ୍ମ୍ୟ ଓ ଯାତ୍ରା ଭାଗବତ ପ୍ରଭୃତି ଗ୍ରନ୍ଥରେ ପୁରୁଷୋତ୍ତମ କ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କ ପୂଜାପାର୍ବଣ ସଂପର୍କୀୟ ନୀତିନିୟମମାନ ପ୍ରଣୟନ କରାଯାଇଥିଲା ।

ଗଙ୍ଗବଂଶ ପରେ ଓଡ଼ିଶାରେ ସୂର୍ଯ୍ୟବଂଶ ରାଜତ୍ୱ କରିଥିଲେ । ସୂର୍ଯ୍ୟବଂଶ ରାଜତ୍ୱର ପ୍ରାରମ୍ଭରେ ମାଟିର ମହାକବି ସାରଳା ଦାସ ଓଡ଼ିଆରେ ମହାଭାରତ ରଚନା ପୂର୍ବକ ଏହି ବିଶାଳ ଗ୍ରନ୍ଥରେ ପୁରୁଷୋତ୍ତମ କ୍ଷେତ୍ର ଓ ଜଗନ୍ନାଥଙ୍କ ଅଭ୍ୟୁଦୟ ପ୍ରତିଷ୍ଠା ଓ ପ୍ରଶସ୍ତି ରଚନା କରିଥିଲେ । ସେହି ସମୟରେ ପୁରୀ ଉତ୍ତର ଭାରତ ଓ ଦକ୍ଷିଣ ଭାରତର ଏକ ସଂଯୋଗ କ୍ଷେତ୍ରରେ ପରିଣତ ହୋଇଥିଲା । ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ର ଦେବ ଦାକ୍ଷିଣାତ୍ୟ ରାଜ୍ୟ ଜୟକରି ଷୋହଳ ଗୋଟି ହାତୀରେ ଅପର୍ଯ୍ୟାପ୍ତ ସ୍ୱର୍ଣ୍ଣ ଅଳଙ୍କାର ଆଣି ଶ୍ରୀଜଗନ୍ନାଥଙ୍କୁ ସମର୍ପଣ କରିଥିଲେ । ଘୋଷଯାତ୍ରାର ଉଦ୍‌ଯାପନୀ ଦିବସ ଅର୍ଥାତ୍ ହରିଶୟନ ଏକାଦଶୀରେ ରଥ ଉପରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସ୍ୱର୍ଣ୍ଣ ଓ ଅନ୍ୟାନ୍ୟ ରତ୍ନ ଆଭୂମଷଣରେ ବିଭୂଷିତ କରାଯାଇଥିଲା । ଅଦ୍ୟାବଧି ସେହି ପରମ୍ପରା ଅନୁସୃତ । କପିଳେନ୍ଦ୍ର ଦେବ ସ୍ୱରଚିତ 'ପରଶୁରାମ ବିଜୟ' ନାଟକ ପୁରୀରେ ଅଭିନୀତ କରାଇଥିଲେ । ତଦୀୟପୁତ୍ର ପୁରୁଷୋତ୍ତମ ଦେବଙ୍କ ସ୍ୱର୍ଣ୍ଣ ସମାର୍ଜନୀରେ ରଥ ଉପରେ ଛେରାପହଁରା ଓ କାଞ୍ଚି ବିଜୟ ସମଗ୍ର ଭାରତରେ ଆଲୋଡ଼ନ ସୃଷ୍ଟି କରିଥିଲା । ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱରେ କବି ଡିଣ୍ଡିମ ଜୀବଦେବ ଆଚାର୍ଯ୍ୟଙ୍କ 'ଭକ୍ତିବୈଭବ', ତଦୀୟପୁତ୍ର ଜୟଦେବ ଆଚାର୍ଯ୍ୟଙ୍କ 'ପୀୟୂଷ ଲହରୀ' ଏବଂ ପରମବୈଷ୍ଣବ ରାୟରାମାନନ୍ଦଙ୍କ 'ଜଗନ୍ନାଥ ବଲ୍ଲଭ' ନାଟକ ପୁରୁଷୋତ୍ତମ କ୍ଷେତ୍ରରେ ଅଭିନୀତ ହୋଇ ଅଗଣିତ ଦର୍ଶକଙ୍କୁ ଭକ୍ତି ଧାରାରେ ଅନୁପ୍ରାଣିତ କରିଥିଲା । ଏହି ସମୟରେ ପୁରୀ ବୈଷ୍ଣବ କ୍ଷେତ୍ରର ମାନ୍ୟତା ଲାଭ କରିଥିଲା । ପ୍ରତାପଦେବଙ୍କ ରାଜତ୍ୱରେ ପ୍ରେମାବତାର ଗୌରାଙ୍ଗ ମହାପ୍ରଭୁ ପୁରୀ ଆଗମନ କରିଥିଲେ । ଗୌରବର କଥା, ସେହି ସମୟରେ ଓଡ଼ିଶାରେ ପଞ୍ଚସଖା ଜନ୍ମଗ୍ରହଣ କରି ଉତ୍କଳୀୟ ବୈଷ୍ଣବଧାରାରେ ଏକ ନୂତନ ଯୁଗ ସୃଷ୍ଟି କରିଥିଲେ । ବଳରାମ ଦାସଙ୍କ ଦାଣ୍ଡୀ ରାମାୟଣ ଓ ଜଗନ୍ନାଥ ଦାସଙ୍କ ଭାଗବତ ପୁରୁଷୋତ୍ତମ କ୍ଷେତ୍ରରୁ ଜନ୍ମନେଇ ସମଗ୍ର ଭାରତବର୍ଷରେ ଧାର୍ମିକ ଆଲୋଡ଼ନ ସୃଷ୍ଟି ହୋଇଥିଲା । ସନ୍ଥଗୋସ୍ୱାମୀ ତୁଳସୀ ଦାସ ପୁରୀ ଶ୍ରୀମନ୍ଦିରର ଜଗମୋହନରେ ଦାଣ୍ଡୀ ରାମାୟଣ ଶ୍ରବଣପୂର୍ବକ ଆଞ୍ଚଳିକ ଭାଷାରେ ଶ୍ରୀରାମ ଚରିତ ମାନସ ରଚନା କରିଥିଲେ । ସେହି ସମୟରେ ବାସୁଦେବ ଭଟ୍ଟାଚାର୍ଯ୍ୟ, ଗୁରୁନାନକ, ଭକ୍ତକବୀର, ଶଙ୍କର ଦେବ ପ୍ରଭୃତି ଅଗଣିତ ମହାତ୍ମା ପୁରୀ ଆଗମନ କରିଥିଲେ । ଶ୍ରୀଚୈତନ୍ୟ, ରାୟରାମାନନ୍ଦ, ପଞ୍ଚସଖା ଓ ଅନ୍ୟାନ୍ୟ ବୈଷ୍ଣବବୃନ୍ଦଙ୍କ ଲୀଳାରେ ପୁରୁଷୋତ୍ତମ କ୍ଷେତ୍ର ପ୍ରକମ୍ପିତ ହୋଇଥିଲା । ଏହି ଲୀଳାମୃତ କବି ମାଧବ ପଟ୍ଟନାୟକଙ୍କଦ୍ୱାରା ରଚିତ । ଏହି ସମୟରେ ରାମକୃଷ୍ଣ ଭଟ୍ଟ, ବଳଭଦ୍ର ରାୟଗୁରୁ, ଶମ୍ଭୁକର ବାଜପେୟୀ, ବିଦ୍ୟାକର ବାଜପେୟୀ ପ୍ରଭୃତି ବହୁପଣ୍ଡିତ ଦୁର୍ଲଭ ସ୍ମୃତି ଶାସ୍ତ୍ର ରଚନା କରିଥିଲେ । ଶ୍ରୀମନ୍ଦିର ପରିଚାଳନା, ଧର୍ମୀ ମୀମାଂସା ଓ ସାମାଜିକ ନ୍ୟାୟ ବ୍ୟବସ୍ଥା ବିଚାର କାମନାରେ ପୁରୀରେ ମୁକ୍ତିମଣ୍ଡପ ସ୍ଥାପିତ





ହୋଇଥିଲା । ଯଥାର୍ଥରେ, ଗଙ୍ଗ ଓ ସୂର୍ଯ୍ୟବଂଶ ରାଜତ୍ୱରେ ପୁରୀର ଆଧ୍ୟାତ୍ମିକ, ସାରସ୍ୱତ ଓ ସାଂସ୍କୃତିକ ପରମ୍ପରା ସମୃଦ୍ଧ ହୋଇଥିଲା ।

୧୫୬୮ ମସିହାରୁ ଓଡ଼ିଶାର ଗୌରବ ରବି ଅସ୍ତମିତ ହୋଇ ଆଫ୍‌ଗାନ୍‌ମାନେ ଓଡ଼ିଶା ଅଧିକାର କଲେ । ଏହାପରେ ପୁରୁଷୋତ୍ତମ କ୍ଷେତ୍ର ଓ ଶ୍ରୀମନ୍ଦିର ଉପରେ ବାରମ୍ବାର ବିଧର୍ମୀମାନେ ଆକ୍ରମଣ କରିଥିଲେ । ଓଡ଼ିଶାରେ କିଛିକାଳ ଅରାଜକତା ଘଟିବା ପରେ ମହାବାହୁଙ୍କ କରୁଣାରୁ ଭୋଇବଂଶର ରାମଚନ୍ଦ୍ର ଦେବ ଗଜପତି ଆସନ ଅଳଙ୍କୃତ କଲେ । ସେ ମନ୍ଦିର ସଂସ୍କାର ପୂର୍ବକ ନବକଳେବର ମାଧ୍ୟମରେ ଠାକୁରଙ୍କୁ ପୁନଃପ୍ରତିଷ୍ଠା କରାଇଥିଲେ । ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ରାଜତ୍ୱରେ ପୁରୁଷୋତ୍ତମ କ୍ଷେତ୍ରକୁ ଯେଉଁ ସୁରକ୍ଷା ବ୍ୟବସ୍ଥା ପ୍ରଦାନ କରାଯାଇଥିଲା, ଓଡ଼ିଶା ପରାଧୀନ ହେବାପରେ ତାହା ସମ୍ଭବ ହେଲା ନାହିଁ । ତେଣୁ ଶ୍ରୀକ୍ଷେତ୍ରର ସୁରକ୍ଷା ନିମିତ୍ତ ପୁରୀରେ ଜାଗାଆଖଡ଼ା ପ୍ରତିଷ୍ଠିତ ହୋଇ ଯୁବକମାନଙ୍କୁ କୁସ୍ତି, ମଲ୍ଲଯୁଦ୍ଧ ଓ ଅନ୍ୟାନ୍ୟ ଯୁଦ୍ଧକୌଶଳ ଶିକ୍ଷା ଦିଆଗଲା, ତଥାପି ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିର ଉପରେ ବହୁବାର ଆକ୍ରମଣ ହୋଇଥିଲା । ଆଫଗାନ୍‌ଙ୍କ ପରେ ମୋଗଲ, ମହରଟ୍ଟା ଓ ଇଂରେଜମାନେ ଓଡ଼ିଶା ଶାସନ କଲେ । ଓଡ଼ିଶାର ରାଜା କେବଳ ଗଜପତି ଓ ଶ୍ରୀମନ୍ଦିର ତତ୍ତ୍ୱାବଧାରକ ଭାବରେ ପୁରୀରେ ନିବାସ କଲେ । ମହନୀୟତା ହେଉଛି, ଦୀର୍ଘକାଳ ଓଡ଼ିଶାର ପରାଧୀନତା ଓ ବିଧର୍ମୀମାନଙ୍କ ଆକ୍ରମଣ ସତ୍ତ୍ୱେ ଶ୍ରୀଧାମ ପୁରୁଷୋତ୍ତମ ତାହାର ଔଜ୍ଜ୍ୱଲ୍ୟ ହରାଇନଥିଲା । ସେହି ସମୟରେ ଅଗଣିତ ପଣ୍ଡିତ ଓ ଭକ୍ତକବି ପୁରୀରେ ନିବାସ କରି ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଅନେକ ଭକ୍ତି ସାହିତ୍ୟ ରଚନା କରିଥିଲେ । ସେମାନଙ୍କ ମଧ୍ୟରେ ଭକ୍ତକବି ଦୀନକୃଷ୍ଣ ଦାସ, ଚୈତନ୍ୟ ଦାସ, ଲୋକନାଥ ବିଦ୍ୟାଧର, ସାଲବେଗ, ଭୂପତି ପଣ୍ଡିତ, ବିପ୍ର ନୀଳଭାନୁ ଦାସ, ବିଶ୍ୱନାଥ ଖୁଣ୍ଟିଆ, ବନମାଳୀ ଦାସ, ଲକ୍ଷ୍ମଣ ମିଶ୍ର, ବ୍ରଜନାଥ ବଡ଼ଜେନା ପ୍ରଭୃତି ପ୍ରଧାନ । ସେହି ସମୟରେ ଯେଉଁ ମହାତ୍ମାବୃନ୍ଦ ଶ୍ରୀକ୍ଷେତ୍ରରେ ପଦାର୍ପଣ କରିଥିଲେ ସେମାନଙ୍କ ମଧ୍ୟରେ ଗଣପତି ଭଟ୍ଟ, ଲକ୍ଷ୍ମୀଧର ଗିରି, ରାମକୃଷ୍ଣ ଦେବ, ନିଗମାନନ୍ଦ, ଯୋଗୀ ଅରବିନ୍ଦ, ଓଁକାରନାଥ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ସେହି ଦୁର୍ଦ୍ଦିନରେ ମଧ୍ୟ ଅଗଣିତ ସାଧୁସନ୍ଥ ବୈଷ୍ଣବ ଶ୍ରୀକ୍ଷେତ୍ରକୁ ଆସି ଅନେକ ମଠ ଓ ମନ୍ଦିର ସ୍ଥାପନ କରିଥିଲେ । ଏଗୁଡ଼ିକ ମଧ୍ୟରୁ ବଡ଼ଆଖଡ଼ା, ବଳଭଦ୍ର ଛତା, ବଳରାମ କୋଟ, ରାଘବ ଦାସ ମଠ, ଉତ୍ତରପାର୍ଶ୍ୱ ମଠ, ଦକ୍ଷିଣପାର୍ଶ୍ୱ ମଠ, ଗିରିସ୍ୱାମୀ ମଠ, ରାମଦାସ ମଠ, ଛାଉଣୀ ମଠ, କାପୁଡ଼ିଆ ମଠ, ଶ୍ୟାମ କୁଞ୍ଜମଠ, ବାଡ଼ି ଆଖେଡ଼ା, ନରସିଂହ ଆଚାରୀ ମଠ, ହରିଦାସ ମଠ, ଭେଙ୍କେଟାଚାରୀ ମଠ, ଘୁମୁସର ମଠ, ନଳିନୀ ମଠ, ଗଙ୍ଗାମାତା ମଠ ପ୍ରଭୃତି ମୁଖ୍ୟ । ଏତଦ୍‌ଭିନ୍ନ ଅନେକ ବଦାନ୍ୟ ବ୍ୟକ୍ତି ଶ୍ରୀକ୍ଷେତ୍ରରେ ଯାତ୍ରୀମାନଙ୍କ ରହଣୀ ନିମିତ୍ତ ଧର୍ମଶାଳା ଓ ଯାତ୍ରୀ ନିବାସ ନିର୍ମାଣ କରିଥିଲେ ।

ସ୍ୱାଧୀନୋତ୍ତର କାଳରେ ପୁରୀରେ ଅନେକ ହୋଟେଲ, ଧର୍ମଶାଳା, ଯାତ୍ରୀନିବାସ, ଅବସର ନିବାସ ପ୍ରଭୃତି ନିର୍ମାଣ ହୋଇଛି । ଏହାର ସୁଦୀର୍ଘ ବେଳାଭୂମି, ସମୁଦ୍ରତଟସ୍ଥ ଜଳାଶୟ ସମୂହର ମଧୁର ଜଳ ଓ ସ୍ୱାସ୍ଥ୍ୟକର ପରିବେଶ ଅନ୍ୟତ୍ର ବିରଳ । ତେଣୁ ଅନ୍ୟ ଧାମ, କ୍ଷେତ୍ର ଓ ତୀର୍ଥ ଅପେକ୍ଷା ପୁରୀକୁ ଅଧିକ ଯାତ୍ରୀ, ଭକ୍ତ ଓ ପର୍ଯ୍ୟଟକ ଆସୁଛନ୍ତି । ସଂପ୍ରତି ଶ୍ରୀଧାମ ପୁରୁଷୋତ୍ତମ ଏକ ଆନ୍ତର୍ଜାତୀୟ ପର୍ଯ୍ୟଟନ କେନ୍ଦ୍ର । ସେଠାକୁ ସକଳଧର୍ମ ଓ ମତବାଦୀ ପଦାର୍ପଣ କରୁଛନ୍ତି । ଶ୍ରୀଧାମ ପୁରୁଷୋତ୍ତମ ଅଦ୍ୟାବଧି ତାହାର ମୌଳିକତା ହରାଇ ନାହିଁ । ଯିଏ ଯେଉଁ ସଂପ୍ରଦାୟ, ଧର୍ମ ବା ମତର ହୋଇଥାନ୍ତି, ପୁରୀ ବଡ଼ଦାଣ୍ଡର ଶରଧାବାଲିରେ ପାଦ ପକାଇବା ମାତ୍ରେ ଆପଣାର ଧର୍ମ, ସଂପ୍ରଦାୟ ଓ ମତକୁ ଭୁଲି ପୁରୁଷୋତ୍ତମ ଚେତନାରେ ଏକାକାର ହୋଇଯା'ନ୍ତି । ସଭିଙ୍କୁ ମହାବାହୁ ଶ୍ରୀଜଗନ୍ନାଥ ଦୁଇବାହୁ ପ୍ରସାରଣ ପୂର୍ବକ ଆପଣେଇ ନେଉଛନ୍ତି । ଆବ୍ରାହ୍ମଣ ଚାଣ୍ଡାଳ ସଭିଁଏ ଏକତ୍ର ମହାପ୍ରସାଦ ସେବନ କରି ପରମାନନ୍ଦ ଲାଭ କରୁଛନ୍ତି । ଏହା ହିଁ ଶ୍ରୀଧାମ ପୁରୁଷୋତ୍ତମର ବୈଚିତ୍ର୍ୟ ।

ଶ୍ରୀଧାମ ପୁରୁଷୋତ୍ତମ ସାମ୍ୟ, ମୈତ୍ରୀ, ଉଦାରତା, ପ୍ରେମ, ଏକତା ଓ ଭ୍ରାତୃତ୍ୱର ପାବନ ପୀଠ ରୂପେ ବିଶ୍ୱବିଦିତ । ହିନ୍ଦୁ, ଖ୍ରୀଷ୍ଟିଆନ୍, ମୁସଲମାନ, ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ସାଧୁ, ପଣ୍ଡିତ, ଧର୍ମାତ୍ମା, ଦଳିତ, ପତିତ, ନିଷ୍ପେଷିତ ସଭିଁଏ ଏହି ପୀଠରେ ସମାନ । ଛୁଆଁ, ଅଛୁଆଁ, ଜାତି, ଅଜାତିର ଊର୍ଦ୍ଧ୍ୱରେ ଏହି ପାବନ କ୍ଷେତ୍ର । ବିଶ୍ୱର ସକଳ ମତବାଦ, ଧର୍ମଧାରା, ସିଦ୍ଧାନ୍ତ ଓ ଦର୍ଶନ ଏହି ପାବନ କ୍ଷେତ୍ରରେ ସମନ୍ୱୟର ମହାଭାବରେ ରୂପାନ୍ତରିତ । ଏହି ପ୍ରାଚୀନ ପୀଠର ଘୋଷଯାତ୍ରା ବିଶ୍ୱର ସର୍ବବୃହତ୍ ଲୋକ କଲ୍ୟାଣକାରୀ ମାନବବାଦୀ ମହୋତ୍ସବ । ବିଶ୍ୱର କୋଣ ଅନୁକୋଣରୁ ଲକ୍ଷ ଲକ୍ଷ ଯାତ୍ରୀ ଓ ଭକ୍ତମଣ୍ଡଳୀ ରଥାରୂଢ଼ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରି ବିଶ୍ୱଭ୍ରାତୃତ୍ୱର ମହାମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇଥାନ୍ତି । ଏହି ପ୍ରାଚୀନ ତଥା ପାବନ କ୍ଷେତ୍ରର ଅନୁକରଣରେ ବିଶ୍ୱର କୋଣେ ଅନୁକୋଣେ ଅନେକ ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିର ନିର୍ମିତ ହୋଇ ସଂହତି ଓ ସଂପ୍ରତିର ସୌରଭରେ ସମଗ୍ର ବିଶ୍ୱ ସୁରଭିତ ।

**ପାଦଟୀକା**


୧. ରଗ୍‌ବେଦ, ୧୦ମ ମଣ୍ଡଳ, ୧୫୫ ସୂକ୍ତ, ୩ୟ ମନ୍ତ୍ର

୨. ପୁରୁଷୋତ୍ତମ ଜଗନ୍ନାଥଙ୍କ ମୌଳିକତା - ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର (ଉତ୍କଳ ପ୍ରସଙ୍ଗ, ଜୁଲାଇ, ୨୦୦୬)

୩. ସଂସ୍କୃତ ମହାଭାରତ, ବନପର୍ବ, ୧୧୪ ଅଧ୍ୟାୟ, ଶ୍ଳୋକ ୨୨-୨୫

୪. ଅନ୍ୟଦେଶର ଇତିହାସରୁ ଶ୍ରୀକ୍ଷେତ୍ର ଓ ତା'ର ଅତୀତ ଧର୍ମାଚାର ପରିଚୟ ଡକ୍ଟର ଆଶୁତୋଷ ପ୍ରସାଦ ପଟ୍ଟନାୟକ (ଝଙ୍କାର, ରଥସଂଖ୍ୟା ଜୁଲାଇ-୨୦୦୦)

୫. ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ପ୍ରାଚୀନତା ଓ ମନ୍ଦିର ପ୍ରତିଷ୍ଠା - ଡକ୍ଟର ସତ୍ୟନାରାୟଣ ରାଜଗୁରୁ (ଉତ୍କଳ ପ୍ରସଙ୍ଗ, ଜୁଲାଇ, ୨୦୦୨)

୬. Epigraphica Indica, Vol-III, pp.138-143

୭. ଓଡ଼ିଶାରେ ବୌଦ୍ଧଧର୍ମ - ଡକ୍ଟର ନବୀନ କୁମାର ସାହୁ, ପୃ.୬୦

୮. ପୁରାଣ ବିମର୍ଷ - ବଳଦେବ ଉପାଧ୍ୟାୟ, ପୃ.୫୬୬

୯. ଶ୍ରୀଜଗନ୍ନାଥ ତତ୍ତ୍ୱ - ଡକ୍ଟର ଗୋପୀନାଥ ମହାପାତ୍ର, ପୃ.୪୬

୧୦. ମତ୍ସ୍ୟ ପୁରାଣ, ୧୩ ଅଧ୍ୟାୟ, ୩୫ ଶ୍ଳୋକ

୧୧. ମତ୍ସ୍ୟ ପୁରାଣ, ୨୨ ଅଧ୍ୟାୟ, ୩୮ ଶ୍ଳୋକ

୧୨. ପଦ୍ମପୁରାଣ, ପାତାଳ ଖଣ୍ଡ, ୧୭ ଅଧ୍ୟାୟ, ୮୨ ଶ୍ଳୋକ

୧୩. ବିଷ୍ଣୁପୁରାଣ, ପ୍ରଥମ ଭାଗ, ୧୫/୫୨

୧୪. ବିଷ୍ଣୁପୁରାଣ, ପ୍ରଥମ ଭାଗ, ୧୫/୫୬

୧୫. ନାରଦ ପୁରାଣ, ୫୨/୧୨-୧୩

୧୬. ବେଦ ଓ ପୁରାଣରେ ପୁରୁଷୋତ୍ତମ ଜଗନ୍ନାଥ - ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର (ଉତ୍କଳ ପ୍ରସଙ୍ଗ, ଜୁନ୍-ଜୁଲାଇ, ୨୦୦୭)

୧୭. କାଳିକା ପୁରାଣ, ୬୪ ଅଧ୍ୟାୟ

୧୮. ତନ୍ତ୍ରଯାମଳ, ୧୭ଶ ଖଣ୍ଡ

୧୯. A record of Budhist Practices (Takakusund) by Itsingh, Oxford-1896, p.p.9-10

୨୦. ପ୍ରଜ୍ଞୋପାୟ ବିନିଶ୍ଚୟ ସିଦ୍ଧି - ଅନଙ୍ଗବଜ୍ର ୨ୟ/୨୬, ୩ୟ/୯

୨୧. ଜ୍ଞାନସିଦ୍ଧି-ଇନ୍ଦ୍ରଭୂତି, ୧/୧, ୨୭ ୯୨, ୨/୨୩ ଓ ୫/୮

୨୨. ଶ୍ରୀଜଗନ୍ନାଥଙ୍କ ନବକଳେବର ଐତିହ୍ୟ-ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର (ଉତ୍କଳ ପ୍ରସଙ୍ଗ, ଜୁଲାଇ, ୧୯୯୬)

୨୩. Epigraphica Indica - Vol.XXXV, p.171

୨୪. ଅନର୍ଘ ରାଘବ - ପଣ୍ଡିତ ମୁରାରୀ ମିଶ୍ର ୧ମ ଅଙ୍କ, ପୃ.୮

୨୫. ପ୍ରବୋଧ ଚନ୍ଦ୍ରୋଦୟ-ପଣ୍ଡିତ କୃଷ୍ଣ ମିଶ୍ର, ୨ୟ ଅଙ୍କ

୨୬. Mahakosal Historical Society's Papers, vol-II, p.65

୨୭. Epigraphica Indica, Vol.II, p.180

୨୮. Epigraphica Indica, Vo.II, p.330

୨୯. ଓଡ଼ିଶା ଇତିହାସ-ଡକ୍ଟର ହରେକୃଷ୍ଣ ମହତାବ, ପୃ.୧୫୦



ପୋଷ୍ଟ ବକ୍ସ ନଂ-୧୬
ଢେଙ୍କାନାଳ


---

# ପହଣ୍ଡି ବିଜେ

ବିମଳା ସିଂହ

ଭକତ ହେଲେଣି ବାଇ,
ବିଳମ୍ବ ନକରି ଉଠ ଜଗନ୍ନାଥ
ପହଣ୍ଡିରେ ବିଜେ କର ଯାଇ ।
ସୁନା ଖଡ଼ିକାକୁ ଧରି ହାତରେ,
ଗଜପତି ରାଜା ଉଭା ଛାମୁରେ,
ପଣ୍ଡା ପଡ଼ିହାରୀ ସଜ ହୋଇଲେଣି
ଭକ୍ତ ନେବା ପାଇଁ ରଥକୁ ଟାଣି,
ଭାଇ ବଳରାମ ଭଉଣୀ ସୁଭଦ୍ରା
ରଥେ ବସିଲେଣି ଉଚ୍ଛନ୍ନ ହୋଇ ।
ଭକତ ହେଲେଣି ... ।





କେତେ ଯେ ଅଧୀର ଦାସିଆ ତୁମର
ଆଣିଅଛ ଟାଣି ଲଗାଇଣ ଡୋର
କିଏ ଦେବ ଫୁଲ ତୁଳସୀର ହାର
ଲୁହ ଦୁଇଠୋପା ଢାଳିବ ପୟର
ତୁମେ ଦେଖୁଥିବ ଭକ୍ତ ଚାହୁଁଥିବ
ଆତ୍ମା ପରମାତ୍ମା ମିଳନ ପାଇଁ ।
ଭକତ ହେଲେଣି ... ।


ଶିକ୍ଷୟିତ୍ରୀ
ସରକାରୀ ଉଚ୍ଚ ବିଦ୍ୟାଳୟ
ଖଣ୍ଡଗିରି, ଭୁବନେଶ୍ୱର-୩୦

# ତ୍ରିମୂର୍ତ୍ତିଙ୍କ ପ୍ରତ୍ନତାତ୍ତ୍ୱିକ ଭିତ୍ତି

ରଜତ କୁମାର କର

**ସ୍ୱ**ର୍ଗତ ସତ୍ୟନାରାୟଣ ରାଜଗୁରୁ ନୃସିଂହ ମନ୍ଦିରର ସମସ୍ତ ଶିଳାଲିପି ପାଠ କରି ସଂସ୍କୃତ ବିଶ୍ୱବିଦ୍ୟାଳୟ ଜରିଆରେ 'ଶ୍ରୀମନ୍ଦିର ଶିଳାଲିପି ଓ ପୁରୁଷୋତ୍ତମ ଜଗନ୍ନାଥଙ୍କ ମୂର୍ତ୍ତିରେ ଇତିହାସ' ପୁସ୍ତକ ଲେଖି ଅନେକ ଚମକପ୍ରଦ ତଥ୍ୟ ପ୍ରକାଶ କଲେ । ତାହା ଜଗନ୍ନାଥ ଚିନ୍ତନ ରାଜ୍ୟରେ ନିଶ୍ଚିତ ଭାବରେ ତରଙ୍ଗ ସୃଷ୍ଟି କରି, ବହୁ ପ୍ରତିଷ୍ଠିତ ଧାରଣା ସହ ସଂଘର୍ଷ ସୃଷ୍ଟି କଲା । ଏହାର ସପକ୍ଷ ବିପକ୍ଷ ଆଲୋଚନାରେ ଏ ପ୍ରବନ୍ଧ ଲେଖକ ଭାଗ ନେଇ କିଛି ପ୍ରବନ୍ଧ ମଧ୍ୟ ପ୍ରକାଶ କରିଛି । ଏହା ନିଶ୍ଚିତ ସତ୍ୟ ଯେ ସ୍ୱର୍ଗତଃ ରାଜଗୁରୁ ଇତିହାସର ଅନ୍ଧାର ଘରୁ ବହୁ ତଥ୍ୟ ଆଲୋକକୁ ଆଣିଛନ୍ତି ।


ତେନ୍ତୁଳିଖୁଣ୍ଟିଠାରେ ଶ୍ରୀ-ଠାକୁର ପୂଜା ପାଉଥିବା ଭଙ୍ଗା କୁଡିଆ

ତାଙ୍କର ସମସ୍ତ ମତ ସହ ଏକମତ ନ ହେଲେ ମଧ୍ୟ ତାଙ୍କର ନେତୃତ୍ୱ ଏ ଦିଗରେ ଗବେଷଣା ପାଇଁ ସହାୟକ ହୋଇଛି ବୋଲି ମୁକ୍ତ କଣ୍ଠରେ କହିବାକୁ ହେବ । ନୃସିଂହ ମନ୍ଦିର ଶିଳାଲିପିସବୁ ପାଠ କଲା ପରେ ସ୍ୱର୍ଗତଃ ରାଜଗୁରୁ କହିଲେ ମୂର୍ତ୍ତି ତ୍ରୟ ପ୍ରଥମରୁ ହସ୍ତ ପଦାଦି ଯୁକ୍ତ ଥିଲେ ଓ ପରବର୍ତ୍ତୀ କାଳରେ ଏ ଭଳି ମୂର୍ତ୍ତି ବାଦ ଦେଇ ବ୍ରହ୍ମଙ୍କ ପ୍ରତୀକ ରୂପ ଦାରୁ ନିର୍ମିତ ତ୍ରିମୂର୍ତ୍ତି ନିର୍ମାଣ କରିବା ନିଷ୍ପତ୍ତି ନିଆଗଲା ।

ପ୍ରଥମେ ଏହା ଅନଙ୍ଗଭୀମଙ୍କ ବେଳେ ହୋଇଥିଲା ବୋଲି କହିବା ପରେ ମତ ପରିବର୍ତ୍ତନ କରି ଏହା ଅନଙ୍ଗଭୀମଙ୍କ ନାତି ଭାନୁଦେବଙ୍କ ବେଳେ ହେଲା ବୋଲି କହିଲେ ।

ବର୍ତ୍ତମାନ ଶ୍ରୀଜଗନ୍ନାଥ ନାମରେ ପରିଚିତ ଶ୍ରୀମନ୍ଦିରର ପ୍ରଭୁ ବହୁକାଳରୁ ପୁରୁଷୋତ୍ତମ ନାମରେ ପରିଚିତ ଥିଲେ । ପୁରୁଷୋତ୍ତମଙ୍କ ନାମାନୁସାରେ କ୍ଷେତ୍ର ମଧ୍ୟ ପୁରୁଷୋତ୍ତମ ଭାବେ ପରିଚିତ ହୋଇ ଲୋକମାନଙ୍କ ଉକ୍ତିରେ 'ପୁରସ୍ତମ' ଭାବେ ପରିଚିତ । ସ୍କନ୍ଦ ପୁରାଣାନୁସାରେ 'ବିଷ୍ଣୋଃ କଳେବରଃ ଯସ୍ମିନ' ଭାବରେ ଏହା ବିଷ୍ଣୁଙ୍କ କଳେବର ରୂପେ ଗୃହୀତ ହେଉଥିଲା । ଏହି ଅର୍ଥରେ କବି ସମ୍ରାଟ ଉପେନ୍ଦ୍ରଭଞ୍ଜ କହିଲେ, 'ଯେଣୁ ନାରାୟଣ ଦେହି, ତେଣୁ ସେହି ନାମ ।' କିଏ ଏହି ପୁରୁଷୋତ୍ତମ ? ପୁରୁଷୋତ୍ତମ ଭାବରେ ବିଷ୍ଣୁ ସମ୍ବୋଧିତ ହୁଅନ୍ତି । ଦ୍ୱାପର ଯୁଗୀୟ କୃଷ୍ଣ ଯେତେବେଳେ ବିଷ୍ଣୁଙ୍କ ସହ ଏକୀଭୂତ ହୋଇଗଲେ, ସେତେବେଳେ ପୁରୁଷୋତ୍ତମ କହିଲେ କେବଳ କୃଷ୍ଣଙ୍କୁ ବୁଝାଇଲା । ଗୀତାର ଶ୍ରୀକୃଷ୍ଣ କିନ୍ତୁ ପୁରୁଷୋତ୍ତମ ଅର୍ଥରେ ଚିହ୍ନିତ କଲେ ସେଇ ସତ୍ତାଙ୍କୁ, ଯେ କ୍ଷର ଓ ଅକ୍ଷର ସ୍ତରର ଉର୍ଦ୍ଧ୍ୱରେ । ତେବେ କ'ଣ ଗୀତା ବର୍ଣ୍ଣିତ ଏଇ ସର୍ବୋଚ୍ଚ ସ୍ତରର ଅବ୍ୟକ୍ତ, ନିରାକାର ସର୍ବବ୍ୟାପୀ ବ୍ରହ୍ମଙ୍କୁ ପୁରୁଷୋତ୍ତମ ଭାବେ ନାମିତ କରି ପ୍ରତୀକ ବିଗ୍ରହ ଭାବେ ତଥା ବ୍ୟକ୍ତ ଓ ଅବ୍ୟକ୍ତର ସଙ୍କେତ ବହନ କରୁଥିବା ଏକ ଦାରୁ ନିର୍ମିତ ପ୍ରତିମା ରୂପେ ପ୍ରଥମରୁ ପୂଜା କରାଗଲା, ଯିଏ ଦେଖିବାକୁ ଅଧାଗଢ଼ା ଅସମ୍ପୂର୍ଣ୍ଣ, କିନ୍ତୁ ପ୍ରକୃତରେ ସ୍ୱୟଂ ସମ୍ପୂର୍ଣ୍ଣ ?

ଏ ଯୁକ୍ତିର ଉପସ୍ଥାପନାକୁ ଆମେ ତଥାକଥିତ ବିଚକ୍ଷଣତାର ସହ ଜନମାନସରେ ସଞ୍ଚାର କରିବାକୁ ପ୍ରୟାସ କରିଛୁ ବୋଲି କହିବାରେ ଦ୍ୱିଧା ନାହିଁ । ପ୍ରତ୍ନତତ୍ତ୍ୱ କିନ୍ତୁ ଏହାକୁ ବଳିଷ୍ଠ ସମର୍ଥନ ଦେଉନାହିଁ ।

ବର୍ତ୍ତମାନର ପୂଜା ପଦ୍ଧତିର ମନ୍ତ୍ର ତାନ୍ତ୍ରିକ ଚିନ୍ତାର ଲକ୍ଷ୍ମୀନାରାୟଣଙ୍କ ପ୍ରଣୟକାଳୀନ ଯୁଗଳ ମୂର୍ତ୍ତିଙ୍କୁ ପୁରୁଷୋତ୍ତମ ଭାବେ ଚିହ୍ନିତ କରୁଛି । କାମ ମୋହିତ ପ୍ରଭୁ ପୁରୁଷୋତ୍ତମଙ୍କର ପତ୍ନୀଙ୍କ ଅଂଗସୁଖ ଆସ୍ୱାଦନ, ଏ ତାନ୍ତ୍ରିକ ଧ୍ୟାନର ସ୍ୱରୂପ ।

ପୂର୍ବେ ଲକ୍ଷ୍ମୀନାରାୟଣ ମୂର୍ତ୍ତି କ'ଣ ପୂଜିତ ହେଉଥିଲେ ? ସେହି ଯୁଗଳ ମୂର୍ତ୍ତି କ'ଣ ପୁରୁଷୋତ୍ତମ ଭାବେ ସ୍ୱତନ୍ତ୍ର ପ୍ରତିଷ୍ଠାର ଅଧିକାରୀ ଥିଲେ ? ସେ କ'ଣ ପ୍ରଥମେ ଥିଲେ ଚତୁର୍ଭୁଜ ମାଧବ ଓ ପରେ ସର୍ବଭାରତୀୟ ପଦ୍ଧତିରେ ପ୍ରସ୍ତର ନିର୍ମିତ ତ୍ରିମୂର୍ତ୍ତିରେ ରୂପାୟିତ ହେଲେ ? ତେବେ କ'ଣ ଦାରୁବିଗ୍ରହ ବହୁ ପରବର୍ତ୍ତୀ କାଳର ?

ଏ ଶଙ୍କା ସକଳ ପ୍ରତ୍ନତାତ୍ତ୍ୱିକ ଅନୁଧ୍ୟାନ ଦ୍ୱାରା ସମ୍ପୂର୍ଣ୍ଣ ରୂପେ ଦୂରୀଭୂତ ହୋଇ ପାରିନାହିଁ । ନୃସିଂହ ଶିଳାଲିପିର ସ୍ୱର୍ଗତଃ ସତ୍ୟନାରାୟଣ ରାଜଗୁରୁଙ୍କଦ୍ୱାରା ଅନୁଶୀଳନ ଏକ ଦିଗକୁ ନିର୍ଦ୍ଦେଶ ଦେବାବେଳେ, ବଲାଙ୍ଗୀର ଜିଲ୍ଲାର ତେନ୍ତୁଳିଖୁଣ୍ଟି ଗ୍ରାମର ନବମ ଶତାବ୍ଦୀର ପ୍ରସ୍ତର ତ୍ରିମୂର୍ତ୍ତି ଆବିଷ୍କାର, ଅନ୍ୟ ଏକ ସଙ୍କେତ ଦିଏ । ଏ ତ୍ରିମୂର୍ତ୍ତି ବର୍ତ୍ତମାନର ଦାରୁମୂର୍ତ୍ତି ଭଳି ଅସମ୍ପୂର୍ଣ୍ଣ ବିଗ୍ରହ ।

ଏ ଆବିଷ୍କାର ପରେ କିପରି କୁହାଯାଇପାରିବ ସାଙ୍କେତିକ ବିଗ୍ରହ ମୂର୍ତ୍ତି ପ୍ରଥମେ ଦାରୁରେ ନିର୍ମିତ ହେଲେ ଓ ପୂର୍ବର ପ୍ରସ୍ତର ବିଗ୍ରହ ସମ୍ପୂର୍ଣ୍ଣ ଅବୟବ ସହ ବିଦ୍ୟମାନ ଥିଲେ ? 'ସମାଜ'ରେ ୨୦୦୭ ମସିହାର ସେପ୍ଟେମ୍ବର ଦୁଇ ତାରିଖରେ ଏକ ବିଶଦ ବିବରଣୀ ସମ୍ବଳିତ ସମ୍ବାଦ ପ୍ରକାଶ ପାଇଲା ଯେ, ତିନି ବର୍ଷ ତଳେ ଅର୍ଥାତ୍ ୨୦୦୪ ମସିହାରେ ବଲାଙ୍ଗୀର ଜିଲ୍ଲା ଗୁଡ଼ଭେଲା ବ୍ଲକ୍‌ର ତେନ୍ତୁଳିଖୁଣ୍ଟି (ତେଲ ନଦୀ ନିକଟସ୍ଥ) ଗ୍ରାମରୁ ସ୍ଥାନୀୟ କନ୍ଧ ସମ୍ପ୍ରଦାୟ ଯୁବକ ତ୍ରିଲୋଚନ ଭୋଇ ମାଟି ଖୋଳୁଥିବା ସମୟରେ ନବମ ଶତାବ୍ଦୀର ଏକ ମନ୍ଦିରର ଧ୍ୱଂସାବଶେଷ ପ୍ରାପ୍ତ ହୋଇଥିଲେ । ସେହି ଧ୍ୱଂସାବଶେଷର ପ୍ରସ୍ତରଗଦା ମଧ୍ୟରେ ଥିଲେ ଶୟନରତ ବିଷ୍ଣୁ ପ୍ରତିମା, ଯାହା ମନ୍ଦିରର ପ୍ରବେଶ ଦ୍ୱାରବନ୍ଧ ଉପରେ ଖୋଦିତ । ଠିକ୍ ଏହିଭଳି ଶୟନରତ ପ୍ରାଚୀନ ପରମ୍ପରାର ଅନନ୍ତ ଶୟନ ମୂର୍ତ୍ତି ମିଳିଥିଲା, କେଶରୀ ବଂଶର ପୂର୍ବତନ ନାମ ବହନ କରିଥିବା ପଣ୍ଡୁବଂଶୀ ରାଣୀ ବାସଠା ଦେବୀଙ୍କ ଇଟା ନିର୍ମିତ ଲକ୍ଷ୍ମଣ ମନ୍ଦିରର ଦ୍ୱାରବନ୍ଧରେ ଏହା ଥିଲା ବର୍ତ୍ତମାନର ଛତିଗଡ଼ର ମହାନଦୀ ଉପତ୍ୟକାର ଶିରିପୁରଠାରେ । ଏହା ଥିଲା କେଶରୀବଂଶଙ୍କ ପୂର୍ବପୁରୁଷ ପଣ୍ଡୁବଂଶୀଙ୍କର ରାଜଧାନୀ । ସେଠାରେ ଜନ୍ମେଜୟଙ୍କ ପିତା ବାଲାର୍ଜୁନଙ୍କ ମାତା ବାସଠା ଦେବୀଙ୍କଦ୍ୱାରା ପ୍ରତିଷ୍ଠିତ ମନ୍ଦିରର ଶିଳାଲିପିରେ 'ଓଁ ନମଃ ପୁରୁଷୋତ୍ତମାୟ' କହି ନୃସିଂହଙ୍କୁ ପ୍ରଶସ୍ତି କରାଯାଇଥିବାରୁ ପୁରୁଷୋତ୍ତମ ଅର୍ଥରେ ନୃସିଂହଙ୍କୁ ଗ୍ରହଣ କରାଯିବ । ଏହି ନୃସିଂହଙ୍କ ମୁଖ ସହ ସାଦୃଶ୍ୟ ରଖି, ପରବର୍ତ୍ତୀ କାଳରେ ଯଯାତି ପ୍ରଥମ ଶ୍ରୀମନ୍ଦିରରେ ପୁରୁଷୋତ୍ତମ ମୂର୍ତ୍ତି ଗଢ଼ାଇ, ସର୍ବଭାରତୀୟ ବୈଷ୍ଣବ ପରମ୍ପରାର ବାସୁଦେବ ସଙ୍କର୍ଷଣ ଏକାନଂଶା ଦୁର୍ଗାଙ୍କ ସାଙ୍କେତିକ ମୂର୍ତ୍ତି ଏଇ ତେନ୍ତୁଳିଖୁଣ୍ଟି ଗ୍ରାମରେ ତଥା ଅନ୍ୟ ସ୍ଥାନରେ ନିର୍ମାଣ କରାଇଥିବା ବର୍ତ୍ତମାନ ଅନୁମାନକୁ ଆସୁଛି ।

ସମାଜ ପ୍ରତିନିଧି ବିକାଶ ରଞ୍ଜନ ଜେନା ଫଟୋ ସହ ଯେଉଁ ମୂର୍ତ୍ତିଙ୍କୁ ଛାପି ଥିଲେ, ତାକୁ ଦେଖିଲା ପରେ, ମନକୁ ଏହା ଆସିଛି । ଏ ପ୍ରବନ୍ଧର ଲେଖକ, ଏହା ପୂର୍ବରୁ ଅନ୍ୟ ଏକ ପ୍ରବନ୍ଧରେ ଦର୍ଶାଇଛି ଯେ, ଭୁବନେଶ୍ୱରର ରାଜରାଣୀ ମନ୍ଦିରଗାତ୍ରର ଏକ ସ୍ଥାନରେ ଜଗନ୍ନାଥ ମୂର୍ତ୍ତି ସହ ସାଦୃଶ୍ୟ ଥିବା ନୃସିଂହଙ୍କ ମୁଖ ଖୋଦିତ ହୋଇଛି । ତାହା କେଶରୀ ବଂଶୀୟ ନୃସିଂହ ପୁରୁଷୋତ୍ତମଙ୍କ ମୂର୍ତ୍ତି ଅନୁକରଣରେ ନିରାକାର ପୁରୁଷୋତ୍ତମ ମୂର୍ତ୍ତି ନିର୍ମାଣର ପ୍ରାରମ୍ଭିକ ଉଦ୍ୟମ ବୋଲି ଦର୍ଶାଯାଇଛି ।

> ଭୁବନେଶ୍ୱରର ରାଜରାଣୀ ମନ୍ଦିରଗାତ୍ରର ଏକ ସ୍ଥାନରେ ଜଗନ୍ନାଥ ମୂର୍ତ୍ତି ସହ ସାଦୃଶ୍ୟ ଥିବା ନୃସିଂହଙ୍କ ମୁଖ ଖୋଦିତ ହୋଇଛି ।

ପୁରୁଷୋତ୍ତମ କୃଷ୍ଣ ହୋଇପାରନ୍ତି, କିନ୍ତୁ ମୁଖ୍ୟତଃ ସେ ବିଷ୍ଣୁ । ସେହି ବିଷ୍ଣୁ, ପୁରୁଷୋତ୍ତମ ଭାବେ ଚତୁର୍ଭୁଜଧାରୀ ମାଧବ ରୂପରେ ପୁରୀରେ ପୂଜିତ ହେଉଥିଲେ । ଯଯାତି ଯେତେବେଳେ ପୁରୀରେ ପୁରୁଷୋତ୍ତମ ମନ୍ଦିର ନିର୍ମାଣ କଲେ, ସେଠାରେ ପୂର୍ବ ପରମ୍ପରାର ଚତୁର୍ଭୁଜ ମାଧବରୂପୀ ପୁରୁଷୋତ୍ତମଙ୍କୁ ସ୍ଥାପନା କରାଇଥିବେ ।

ଭୁବନେଶ୍ୱରରେ ଯେତେବେଳେ ସେ ମନ୍ଦିର ନିର୍ମାଣରେ ମନ ବଳେଇଲେ ସେତେବେଳେ ସେଠାରେ ପୂର୍ବ ସର୍ବଭାରତୀୟ ପରମ୍ପରା ସମ୍ମତ ତ୍ରିମୂର୍ତ୍ତି ଉପାସନା ପ୍ରଚଳିତ ଥିଲା । ପଞ୍ଚମ ଶତାବ୍ଦୀରୁ ପ୍ରଭଞ୍ଜନ ବର୍ମାଙ୍କ ସମୟରୁ ବିନ୍ଦୁ ସରୋବର ତୀରରେ ବାସୁଦେବ, ସଙ୍କର୍ଷଣ ପୂଜା ଚାଲିଥିଲା । ବରାହ ମିହିରଙ୍କ ବ୍ୟବସ୍ଥାନୁଯାୟୀ ପରବର୍ତ୍ତୀ କାଳରେ ଏକାନଂଶା ଦୁର୍ଗାଙ୍କ ମୂର୍ତ୍ତି ଏ ଦୁଇ ମୂର୍ତ୍ତିଙ୍କ ସହ ବିରାଜିତା ହେଲେ । ଯଯାତି ସମ୍ଭବତଃ ନିଜ ଭଗ୍ନୀ ଜନ୍ମେଜୟ କନ୍ୟା ତଥା ପରମ ବୈଷ୍ଣବୀ ତ୍ରିଭୁବନ ମହାଦେବୀଙ୍କୁ ଖୁସି କରିବା ପାଇଁ ତାଙ୍କ ରାଜଧାନୀ ଭୁବନେଶ୍ୱରରେ ଏହି ତ୍ରିମୂର୍ତ୍ତିଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କଲେ । ତାହା ବର୍ତ୍ତମାନର ଅନନ୍ତ ବାସୁଦେବ ମନ୍ଦିର କଡ଼ରେ ଥିବା ଭଗ୍ନ ମଣିଭଦ୍ରେଶ୍ୱର ଶିବ ମନ୍ଦିର ସମ୍ଭବତଃ ଏହି ମନ୍ଦିର ଓ ଧ୍ୱଂସାବଶେଷ ରୂପେ ଏହା ରହିଛି । ଏହାର ଭିତରେ ମଣିଭଦ୍ରେଶ୍ୱର ଶିବଲିଙ୍ଗ ପରବର୍ତ୍ତୀ କାଳରେ ସ୍ଥାପିତ ହୋଇଥିଲେ ହେଁ ଏହାର ପାର୍ଶ୍ୱଦେବତା ସବୁ ବିଷ୍ଣୁ ମନ୍ଦିର ମୂର୍ତ୍ତି ଭଳି ଅକ୍ଷୁଣ୍ଣ ରହିଛନ୍ତି । ଏହି ମନ୍ଦିରରେ ଥିବା

ସଙ୍କର୍ଷଣ ବାସୁଦେବ ମୂର୍ତ୍ତି, ସମ୍ମୁଖରେ ଥିବା ବିନ୍ଦୁସରୋବର ତୀରରେ ରଖାଯାଇଛନ୍ତି । ରାସ୍ତା ତିଆରିବେଳେ ଜଣେ ଇଂରାଜୀ ଇଞ୍ଜିନିୟର ପରିତ୍ୟକ୍ତ ମୂର୍ତ୍ତିଦ୍ୱୟଙ୍କୁ ପାଇ ସେଠାରେ ରଖିଥିଲେ । ସେହି ଦୁଇମୂର୍ତ୍ତିଙ୍କ ସହ ସମ୍ପୂର୍ଣ୍ଣ ସାଦୃଶ୍ୟ ଥିବା ଦୁଇମୂର୍ତ୍ତି ପୁନର୍ବାର ଏକ ସ୍ଥାନରେ ରଖି ତତ୍‌ସହ ନୂତନ ଭାବେ ସୁଭଦ୍ରା ମୂର୍ତ୍ତି ଯୋଗ କଲେ ଅନଙ୍ଗଭୀମ କନ୍ୟା ଚନ୍ଦ୍ରିକା । ସେ କେବଳ ନୂତନ ମନ୍ଦିର (ମୂର୍ତ୍ତି ନୁହେଁ) ନିର୍ମାଣ କରାଇଲେ ବୋଲି ଏହି ପ୍ରବନ୍ଧ ଲେଖକ ଅନ୍ୟତ୍ର ଦର୍ଶାଇଛି ।

ଏସବୁ ବର୍ଣ୍ଣନା କରିବାର ଉଦ୍ଦେଶ୍ୟ ହେଲା, ପ୍ରଥମ ଯଯାତି ଉତ୍କଳରେ ପୂର୍ବ ପରମ୍ପରା ଅନୁସରଣ କରି ସମ୍ପୂର୍ଣ୍ଣ ଅବୟବ ସମ୍ପନ୍ନ ବିଗ୍ରହ ନିର୍ମାଣ କରାଇଲେ । କୋଶଳ ଅଞ୍ଚଳରେ କିନ୍ତୁ ସାଙ୍କେତିକ ପୁରୁଷୋତ୍ତମ ବା ଜଗନ୍ନାଥଙ୍କ ତ୍ରିମୂର୍ତ୍ତି ଉପାସନା କରାଇଥିଲେ ବୋଲି ଅନୁମାନ ହେଉଛି ।

ଚୋଡ଼ଗଙ୍ଗ ଓ ତାଙ୍କ ପୁତ୍ରମାନେ ଉତ୍କଳ ଜୟ କଲେ ମଧ୍ୟ କୋଶଳକୁ ନିଜ ଅଧିକାରକୁ ଆଣିବାରେ ଅକ୍ଷମ ହୋଇଥିଲେ । ଚୋଡ଼ଗଙ୍ଗଙ୍କ ନାତି ତୃତୀୟ ଅନଙ୍ଗ ଭୀମଦେବଙ୍କ ସମୟରେ କୋଶଳ ତାଙ୍କ ଅଧୀନକୁ ଆସିଲା ଓ କୋଶଳ ଉତ୍କଳକୁ ସେ ଏକ ଶାସନାଧୀନ କଲେ । ତାଙ୍କର କନ୍ୟା ଚନ୍ଦ୍ରିକାଙ୍କ ସ୍ୱାମୀ ପରମାର୍ଦ୍ଦି ଦେବ ଏହି କୋଶଳର ହୈହୟ ରାଜବଂଶଜ ଥିଲେ ।

କୋଶଳ ବିଜୟ ପରେ, ଅନଙ୍ଗଭୀମ ଦେବ ପଶ୍ଚିମାଞ୍ଚଳର ପ୍ରସ୍ତର ନିର୍ମିତ ପୁରୁଷୋତ୍ତମ ଜଗନ୍ନାଥ ମୂର୍ତ୍ତି ଦେଖିଥିବେ । ତାଙ୍କ ପୁତ୍ର ଲାଙ୍ଗୁଳା ନରସିଂହ ଦେବ କୋଣାର୍କ ମନ୍ଦିର ଗାତ୍ରରେ ଦୁର୍ଗା ଓ ଶିବଙ୍କ ସହ ବିଷ୍ଣୁଙ୍କ ପ୍ରତୀକ ଭାବେ ସାଙ୍କେତିକ ଜଗନ୍ନାଥ ମୂର୍ତ୍ତି ପ୍ରବର୍ତ୍ତନ କଲେ ।

ପରେ ଯେତେବେଳେ ଆବଶ୍ୟକ ପଡ଼ିଲା ଦାରୁମୂର୍ତ୍ତିଙ୍କର, ସେତେବେଳେ ଏହି ପ୍ରସ୍ତର ପ୍ରତୀକ ମୂର୍ତ୍ତି ରୂପେ ନବମ ଶତାବ୍ଦୀରୁ ପୂଜିତ ବିଗ୍ରହ ଅନୁକରଣରେ ଦାରୁ ପ୍ରତିମା ନିର୍ମାଣ କରାଗଲା । ଏହାଙ୍କୁ ଅନାୟାସରେ ସ୍ଥାନାନ୍ତରିତ କରି ରଥଯାତ୍ରାକୁ ସର୍ବୋତ୍ତମ ଉତ୍ସବରେ ପରିଣତ କରାଯାଇପାରିଲା ।

ଇତିହାସ ତଥା ପ୍ରତ୍ନତାତ୍ତ୍ୱିକ ତଥ୍ୟର ବିଶ୍ଳେଷଣରୁ ପ୍ରବନ୍ଧର ଲେଖକ ଏଇ ଭାବନା ପ୍ରକଟ କରୁଛି ।

ଏନ୍.-୧/୧୮୩
ନୂଆପଲ୍ଲୀ, ଅନନ୍ୟ ନିକେତନ
ଭୁବନେଶ୍ୱର-୧୫

---

# ମହାପ୍ରଭୁ

ଗୁରୁକଲ୍ୟାଣ ମହାପାତ୍ର

ଯେଉଁଠି, କେହି କାହାରିକୁ ସହଜରେ
ବିଶ୍ୱାସ କରିପାରନ୍ତି ନାହିଁ କି
ସହଜରେ ବି ବାଟ ଛାଡ଼ନ୍ତି ନାହିଁ ।
ଯେଉଁଠି, ଖାଲି ସଂଶୟର ଅନ୍ଧାର ଭିତରେ
ଚାଣ୍ଡେ ଚାଣ୍ଡେ ଦରାଣ୍ଡି ଚାଲୁ ଚାଲୁ ସଭିଏଁ
ବାଟବଣା ହୋଇ ଯାଆନ୍ତି ।
ସେଇଠି, ହଁ ସେଇଠି ମହାପ୍ରଭୁ
ତମେ ମୋ' ପରିକଳ୍ପିତ କାବ୍ୟର
ଆଶୟ ଓ ବିଷୟ ।
ଆପଣା ଅହଂକାରରେ ଯିଏ ଅନ୍ଧ ହୋଇ
ଧୃତରାଷ୍ଟ୍ର ପରି ଅସ୍ଥିରମନା ହୋଇପଡ଼େ
ମହାପ୍ରଭୁ ହେ ! ତମେ ତାକୁ ଅବିଳମ୍ବେ
କ୍ଷମା କରି ଦିଅ ।



ଆଉ ନିଜ ଭିତରେ ନିଜକୁ ଦେଖିବାର
ଆତ୍ମସ୍ଥ ଭାବ ଓ ଆକାଂକ୍ଷାରୁ
ସୃଷ୍ଟି ହେଉ ପ୍ରଜ୍ଞାନ କେବଳ,
ପୁଣି ନିଜ ନିଜ ଭିତରେ ଅନ୍ୟମାନଙ୍କୁ
ଦେଖି ପାରିବାର ଶକ୍ତି ଦିଅ
ଆମ ସମସ୍ତଙ୍କୁ ମହାପ୍ରଭୁ-
ଯାହା ପ୍ରକୃତରେ ଅଭିଜ୍ଞାନ ।
ତମରି ଜୟଗାନରେ ଆହୁରି ମୁଖରିତ
ହୋଇଉଠୁ ବଡ଼ଦାଣ୍ଡ ମହାପ୍ରଭୁ -
ଏଇ ରଥଦିନ । କି ସୁନ୍ଦର
ତୁମରି ଦର୍ଶନ !

ଡି-୧୦/୫, ୟୁନିଟ୍-୮
ଭୁବନେଶ୍ୱର-୭୫୧୦୧୨

# ଜଗତ ଜଗନ୍ନାଥମୟ

ମହେନ୍ଦ୍ର କୁମାର ପଣ୍ଡା

**ଜ**ଗନ୍ନାଥ ଚେତନା ହେଉଛି ବିଶୁଦ୍ଧ ବିଶ୍ୱଚେତନା ଓ ଭାବପ୍ରେମର ଚେତନା । ଏହା ହେଉଛି ଅନ୍ତରର ଆଲୋକ, ଘନଆନନ୍ଦ, ଜ୍ଞାନ ଓ ଶାନ୍ତିର ଅକ୍ଷୟ ସ୍ରୋତ । ରତ୍ନ ସିଂହାସନରେ ବିଜେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଅଦ୍ଭୁତ ବିଗ୍ରହ ମନ, ବୁଦ୍ଧି, ଚିତ୍ତ ଓ ଅହଙ୍କାରର ଅତୀତ, ଦେଶ, କାଳ ଓ କାରଣର ଅତୀତ ଅଚିନ୍ତନୀୟ, ଅଜ୍ଞେୟ ଓ ଘନ ରହସ୍ୟାବୃତ । ଯେଉଁ ବିଗ୍ରହ ପୂର୍ଣ୍ଣ କିମ୍ବା ଅପୂର୍ଣ୍ଣ ନୁହେଁ, ଯାହାଙ୍କଠାରେ ମୂର୍ତ୍ତି ଗଠନର କୌଣସି ଶୈଳୀ ପରିଲକ୍ଷିତ ହୁଏ ନାହିଁ, ସେହି ବିଗ୍ରହଙ୍କ ଦର୍ଶନ ପାଇଁ ଶ୍ରୀକ୍ଷେତ୍ରକୁ ଆସିଛନ୍ତି ଅଗଣିତ ସାଧୁ, ସନ୍ଥ, ଯୋଗୀ, ଭୋଗୀ, ଆସ୍ତିକ ଓ ନାସ୍ତିକ । ବିଗ୍ରହମାନ ଯୁଗ ଯୁଗ ଧରି ଆକର୍ଷିତ କରିଛନ୍ତି ଅଗଣିତ ଭକ୍ତଜନଙ୍କୁ । ତ୍ରିବିଗ୍ରହଙ୍କର ରୂପ ଓ ଆକୃତି କେବଳ ଯେ ସାଙ୍କେତିକ ତାହା ନୁହେଁ, ସେ ରୂପ ମନୁଷ୍ୟର ବୋଧଗମ୍ୟତାର ଅତୀତ, ଅନନ୍ତ ରହସ୍ୟମୟ । ଆକାର ମଧ୍ୟରେ ଥାଇ ବି ସେ ନିରାକାର । ରୂପ ମଧ୍ୟରେ ସେ ଅରୂପ । ହସ୍ତ, ପଦ, ନାସା, କର୍ଣ୍ଣ ଓ ଚକ୍ଷୁର ପ୍ରକାଶ ନଥାଇ ସେହି ବିଗ୍ରହମାନେ ଯେପରି ଇନ୍ଦ୍ରିୟାତୀତ ରୂପର ପ୍ରତୀକ ।



ନିରାକାର ସେହି ପରମସତ୍ତା ଯେତେବେଳେ ରକ୍ତମାଂସର ଶରୀର ଧରି ଆସିଛନ୍ତି ଲୀଳା କରିବା ପାଇଁ, ସେ ଅବତାର ଗ୍ରହଣର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ରହିଛି । ସେହି ଉଦ୍ଦେଶ୍ୟ ସାଧନ ପରେ ଅବତାରୀମାନେ ଫେରିଯାଇଛନ୍ତି ପରମଧାମକୁ କିନ୍ତୁ ଶ୍ରୀଜଗନ୍ନାଥ ଆବିର୍ଭାବ ହୋଇଛନ୍ତି ଦାରୁବ୍ରହ୍ମ ଭାବରେ, ତାହା ପୁଣି ତ୍ରିମୂର୍ତ୍ତି ରୂପରେ । କେଉଁ ତତ୍ତ୍ୱ କହେ ସେହି ତ୍ରିମୂର୍ତ୍ତି ସତ, ରଜ ଓ ତମ ଗୁଣର ପ୍ରତୀକ । କେଉଁ ତତ୍ତ୍ୱ କହେ ତାହାସବୁ ପରଂବ୍ରହ୍ମଙ୍କର ସୃଷ୍ଟି, ସ୍ଥିତି ଓ ଧ୍ୱଂସ ଭାବର ପ୍ରତୀକ । ସ୍ଥୂଳ ଦୃଷ୍ଟିରେ ଦର୍ଶନ କଲେ ସେମାନେ କେବଳ ଦାରୁମୂର୍ତ୍ତି । ଭାବମୟ ହୋଇ ଦେଖିଲେ ସେ ପ୍ରତିଭାତ ହୁଅନ୍ତି ଘନଆନନ୍ଦ ଭାବରେ । ଭାବ ଘନୀଭୂତ ହେଲେ ଭାବଗ୍ରାହୀ ନିତ୍ୟ ନୂତନ ଆନନ୍ଦ ଭାବରେ ପ୍ରକାଶିତ ହୁଅନ୍ତି ଭକ୍ତର ଅନ୍ତଃଚେତନାରେ । କାହିଁକି ମହାପ୍ରଭୁଙ୍କର ତ୍ରିବିଧ ନୀରବ ଦାରୁବ୍ରହ୍ମ ରୂପ ତା' ଜ୍ଞାନର ଅଗୋଚର । ସେହି ପରମସତ୍ତା ହେଉଛନ୍ତି ଅନନ୍ତ, ଅଚଳ ଅଖଣ୍ଡ ଓ ଅବ୍ୟୟ । ନୀରବତା ହିଁ ତାଙ୍କର ଭାଷା, ଶୁଦ୍ଧ ଚେତନା ତାଙ୍କର ନିବାସ । ସମସ୍ତ ଜାଗତିକ କୋଳାହଳ ବନ୍ଦ ହୋଇଯାଇ ଯୋଗୀ ବା ଭକ୍ତ ଯେତେବେଳେ ଗଭୀର ନୀରବତାରେ ବୁଡ଼ିଯାଏ, ଅନ୍ତରର ନିଭୃତରୁ ଭାସିଆସେ ଆତ୍ମାର ସ୍ୱର । ଦୈହିକ ଓ ମାନସିକ ଚେତନାରୁ ମୁକ୍ତ ହୋଇ ସେ ସେତେବେଳେ ଅନୁଭବ କରେ ସ୍ୱର୍ଗୀୟ ପୁଲକ ଓ ଅବ୍ୟକ୍ତ ଆନନ୍ଦ । ବ୍ରହ୍ମ ହେଉଛନ୍ତି ସତ୍, ଚିତ୍ ଓ ଆନନ୍ଦ । ତିନି ଦାରୁବିଗ୍ରହ ହେଉଛନ୍ତି ସଚ୍ଚିଦାନନ୍ଦ ବ୍ୟକ୍ତ ସ୍ୱରୂପ । ଶ୍ରୀଜଗନ୍ନାଥ ହେଉଛନ୍ତି ଅନାମ, ଅରୂପ, ଓ ଅଶବ୍ଦ । ସେ ହେଉଛନ୍ତି ଚେତନା, ଚୈତନ୍ୟ, ଚିଦ୍‌ଘନ ଓ ଚିନ୍ମୟ । ଭକ୍ତର ଭକ୍ତିରେ ଭଗବାନ ହୋଇଯାଆନ୍ତି ନିର୍ଗୁଣରୁ ଗୁଣମୟ ଓ ଅରୂପରୁ ରୂପଧାରୀ ।

ଭକ୍ତ ଯେତେବେଳେ ଭାବର ଆତିଶଯ୍ୟରେ ଭଗବାନଙ୍କର ସଙ୍ଗେ ସମ୍ପର୍କ ଯୋଡ଼ିଦିଏ, ଭାବଗ୍ରାହୀ ସେତେବେଳେ ଭକ୍ତର ମନୋରଞ୍ଜନ ପାଇଁ କରନ୍ତି ମାନବୀୟ ଲୀଳା କେତେ ରଙ୍ଗରେ କେତେ ଢଙ୍ଗରେ ସେ ହୋଇଯାଆନ୍ତି ଭକ୍ତର ଅନ୍ତରଙ୍ଗ । କେତେବେଳେ ହସାନ୍ତି ତ କେତେବେଳେ କନ୍ଦାନ୍ତି । କେତେବେଳେ ପ୍ରଭୁ ତ କେତେବେଳେ ଭୃତ୍ୟ ହୋଇଯାଆନ୍ତି । କାହାକୁ ସବୁକିଛି

ଦେଇ ଦିଅନ୍ତି ତ କାହାଠାରୁ ସବୁକିଛି ନେଇଯାଆନ୍ତି । ବୌଦ୍ଧିକ ବିଶ୍ଳେଷଣର ବହୁ ଉର୍ଦ୍ଧ୍ୱରେ ସେ ଦ୍ୱନ୍ଦ୍ୱହୀନ କାମନା ବାସନାରହିତ ନିର୍ମଳ ସମ୍ପର୍କ ଯେଉଁଠି ରହିଛି କେବଳ ଆତ୍ମନିବେଦନର ମାଧୁର୍ଯ୍ୟ । ଶ୍ରୀଜଗନ୍ନାଥ ହେଉଛନ୍ତି ପ୍ରେମର ପୂଜାରୀ ପ୍ରେମିକ ଶେଖର, ଭାବ ବିନୋଦିଆ ଭାବଗ୍ରାହୀ ଓ ନଟବର ନାଗର ହଟିଆ ଠାକୁର । ଜ୍ଞାନୀ ଜନଙ୍କ ପାଇଁ ସେ ହେଉଛନ୍ତି ପରଂବ୍ରହ୍ମ, ଯୋଗୀଜନଙ୍କର ସେ ହେଉଛନ୍ତି ପରମଆତ୍ମା ହେଲେ ଭକ୍ତଜନଙ୍କର ସେ ହେଉଛନ୍ତି ସବୁକିଛି । ସେ ସମ୍ପର୍କ ସ୍ୱାମୀ-ସ୍ତ୍ରୀ କିମ୍ବା ପ୍ରେମିକ ଓ ପ୍ରେୟସୀର ସମ୍ପର୍କ ହୋଇପାରେ, ପିତାପୁତ୍ର ବା ମାଆପୁଅର ସମ୍ପର୍କ ବି ହୋଇପାରେ ଓ ପ୍ରଭୁ ସେବକର ସମ୍ପର୍କ ମଧ ହୋଇପାରେ । ଭଗବାନଙ୍କ ପାଇଁ ଆସକ୍ତି ବଢ଼ିଲେ ସାଂସାରିକ ଆସକ୍ତି ନଷ୍ଟ ହୋଇଯାଇ ଆରମ୍ଭ ହୁଏ ଗଭୀର ଅନୁରାଗ । ସବୁ ସମ୍ପର୍କରେ ରହିଛି ଅତି ଆପଣାର ଭାବ ଓ ଚରମ ଆନନ୍ଦ । ଭକ୍ତ ସେହି ସମ୍ପର୍କର ଡୋରରେ ଭଗବାନଙ୍କୁ ବାନ୍ଧିଦିଏ । ସେ କେବେ ଭାବେନା ତା' ପ୍ରଭୁ ନିରାକାର, ନିର୍ଗୁଣ ଶୂନ୍ୟ ପୁରୁଷ । ସେ କେବେ କହେନା 'ଅହଂ ବ୍ରହ୍ମୋସ୍ମି' । ସେ ଚାହେଁନା ମୁକ୍ତି, ସେ ଚାହେଁ ପ୍ରୀତି । ଭକ୍ତପାଇଁ ଜଗତ ଜଗନ୍ନାଥମୟ ।

> ଶ୍ରୀଜଗନ୍ନାଥ ହେଉଛନ୍ତି ପୁରୁଷ ଓ ପ୍ରକୃତି । ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ ହେଉଛନ୍ତି ତାଙ୍କର ତ୍ରିଗୁଣ ବା ତ୍ରିଭାବ ।

ଭକ୍ତ ଜନଙ୍କ ପାଇଁ ପ୍ରଭୁଙ୍କର ରାମ ରୂପ, କୃଷ୍ଣ ରୂପ, ଶିବ ରୂପ ଓ କାଳୀ ରୂପ । କାହା ପାଇଁ ସେ ଗଣେଶ ତ କାହାପାଇଁ ସେ ହନୁମାନ । ସବୁ ନାମ ଓ ରୂପ ମଧରେ ରହିଛନ୍ତି ଜଗତର ନାଥ ଶ୍ରୀଜଗନ୍ନାଥ ।

ପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ମର୍ଯ୍ୟାଦା ପୁରୁଷୋତ୍ତମ । ସେ ହିଁ ଲୀଳା ପୁରୁଷୋତ୍ତମ । ବଡ଼ଭାଇଙ୍କୁ ମର୍ଯ୍ୟାଦା ଦେଇ ସର୍ବଶେଷରେ ଆସନ୍ତି ବଡ଼ଦାଣ୍ଡକୁ । ଆଗରେ ଗଡ଼ିଚାଲେ ବଡ଼ଭାଇଙ୍କ ତାଳଧ୍ୱଜ ରଥ । ସାନ ଭଉଣୀକୁ ମର୍ଯ୍ୟାଦା ଦେଇ ସୁଦର୍ଶନଙ୍କୁ ରଖିଦିଅନ୍ତି ସୁଭଦ୍ରାଙ୍କ ପାଖରେ । ଆଉ ସବାଶେଷରେ ଚହଳ ପକାଇ ଗଡ଼ିଚାଲେ ଜଗନ୍ନାଥଙ୍କ ନନ୍ଦିଘୋଷ ରଥ । ସ୍ତ୍ରୀଙ୍କ ଅଭିମାନ ଭାଙ୍ଗନ୍ତି ବାଧ ସ୍ୱାମୀଟି ପରି । ପତିତ ଜନଙ୍କ ପାଇଁ ରତ୍ନ ସିଂହାସନରୁ ଓହ୍ଲାଇ ଆସନ୍ତି ବଡ଼ଦାଣ୍ଡକୁ । ଭକ୍ତର ମର୍ଯ୍ୟାଦା ପାଇଁ ତ ଅସମ୍ଭବକୁ ସମ୍ଭବ କରିଦିଅନ୍ତି କାଳିଆ ଠାକୁର । ପ୍ରଭୁଙ୍କ ଲୀଳାର ଅନ୍ତ ନାହିଁ, ତାହା ଅବର୍ଣ୍ଣନୀୟ । ଭକ୍ତ ମୁଖରୁ ନିସୃତ ଗୀତଗୋବିନ୍ଦର ମଧୁର ରସରେ ବିମୋହିତ ଜଗଦାନନ୍ଦ ନିଜେ ଲେଖିଦିଅନ୍ତି 'ଦେହି ପଦ ପଲ୍ଲବ ମୁଦାରଂ' । ଗୀତଗୋବିନ୍ଦର ଲାଳିତ୍ୟ ଆକର୍ଷଣ କରିଥାଏ ରସଗ୍ରାହୀ ପ୍ରଭୁଙ୍କୁ । ରତ୍ନସିଂହାସନରୁ ଚାଲିଯାଆନ୍ତି ବାଇଗଣ କିଆରୀକୁ ଭକ୍ତ କଣ୍ଠରୁ ଝରି ପଡୁଥିବା ଭାବଭିଜା ଗୀତଗୋବିନ୍ଦ ଶୁଣିବା ପାଇଁ । କେତେବେଳେ ବନ୍ଧୁ ମହାନ୍ତିର ଭୋକିଲା ପରିବାର ପାଇଁ ମହାପ୍ରସାଦ ମୁଣ୍ଡେଇ ପହଞ୍ଚି ଯାଆନ୍ତି ତ କେତେବେଳେ ଭକ୍ତ ସାଲବେଗ ପାଇଁ ବଡ଼ଦାଣ୍ଡରେ ଅଟକି ଯାଆନ୍ତି । କେତେବେଳେ ଭକ୍ତ ବଳରାମ ଦାସର ବାଲିରଥରେ ବିଜେ କରି ଭକ୍ତିର ଗାରିମା ଦେଖେଇଛନ୍ତି ତ କେତେବେଳେ ଦାସିଆ ବାଉରୀର ନଡ଼ିଆ ଗ୍ରହଣ କରିଛନ୍ତି ସ୍ୱହସ୍ତରେ । କେବଳ ସାଧୁ, ସନ୍ଥ ଓ ଭକ୍ତ ପାଇଛନ୍ତି ତାଙ୍କ ଲୀଳାର ମାଧୁର୍ଯ୍ୟ, ତା' ନୁହେଁ । ସଂସାର ଜଞ୍ଜାଳରେ ଆଉଟି ହୋଇଯାଉଥିବା ଅଗଣିତ ସଂସାରୀ ପାଇଛନ୍ତି ତାଙ୍କ ଲୀଳାର ଦିବ୍ୟ ଅନୁଭୂତି । ନିର୍ମଳ ହୃଦୟରୁ ଝରି ପଡୁଥିବା ପ୍ରାର୍ଥନା ଅବିଳମ୍ବେ ଶୁଣନ୍ତି କରୁଣାମୟ ଶ୍ରୀଜଗନ୍ନାଥ ।

ଶ୍ରୀଜଗନ୍ନାଥ ହେଉଛନ୍ତି ପୁରୁଷ ଓ ପ୍ରକୃତି । ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ ହେଉଛନ୍ତି ତାଙ୍କର ତ୍ରିଗୁଣ ବା ତ୍ରିଭାବ । ମହାକାଳୀ ହେଉଛନ୍ତି ତାଙ୍କର କ୍ରିୟାଶକ୍ତି । ସମସ୍ତ ମହାଜାଗତିକ ପରିବର୍ତ୍ତନ ସଂଘଟିତ ହୁଏ ଏହି କ୍ରିୟାଶକ୍ତି ଦ୍ୱାରା । ମହାଲକ୍ଷ୍ମୀ ସକଳ ଭୌତିକ ଓ ଆଧାତ୍ମିକ ଐଶ୍ୱର୍ଯ୍ୟ ଓ ଆନନ୍ଦର ଆଧାର । ସେ ହେଉଛନ୍ତି ମହାପ୍ରଭୁଙ୍କର ମୋକ୍ଷ ପ୍ରଦାୟିନୀ ଶକ୍ତି । ମହାସରସ୍ୱତୀ ବୁଦ୍ଧି, ଜ୍ଞାନ ଓ ଚେତନାର ଆଧାର । ପରମପୁରୁଷ ହେଉଛନ୍ତି ଅକର୍ତ୍ତା, ଅଭୋକ୍ତା, ନିର୍ଲିପ୍ତ ଓ ନିର୍ଗୁଣ । ତାଙ୍କର ମହାଜାଗତିକ ଶକ୍ତି ହିଁ ସୃଷ୍ଟି, ସ୍ଥିତି ଓ ଧ୍ୱଂସର କାରଣ । ତେଣୁ ବସ୍ତୁର ଅନ୍ତିମ ଅବସ୍ଥା ହେଉଛି ଶକ୍ତି । ବସ୍ତୁର ବସ୍ତୁତ୍ୱ ଯେତେବେଳେ ଲୋପ ପାଇଥାଏ, ସେଥିରେ ଲୁକ୍କାୟିତ ଶକ୍ତି ସେତେବେଳେ ତେଜରେ ପରିଣତ ହୋଇଯାଏ । ଏହି ଭୌତିକ ଜଗତ ପରମପୁରୁଷଙ୍କ ସୃଜନଶୀଳ ଆଲୋକରେ ହିଁ ସୃଷ୍ଟି ହୋଇଛି । କିନ୍ତୁ ଭୌତିକ ଜଗତର ଅନ୍ତରାଳରେ ଯେଉଁ ଶୁଦ୍ଧ ଚୈତନ୍ୟ ସତ୍ତା ରହିଛି, ତାହା ହିଁ ସର୍ବକାରଣର କାରଣ । ସକଳ ପ୍ରାଣୀ ଓ ଜଡ଼ବସ୍ତୁ ମଧରେ ରହିଛି ସେହି ଚେତନା ଶକ୍ତି, ତାହା ସକ୍ରିୟ ବା ସୁପ୍ତ ହେଉ । ସେହି ଶୁଦ୍ଧ ଚୈତନ୍ୟ ସତ୍ତା ହିଁ ଶ୍ରୀଜଗନ୍ନାଥ । ଯେତେବେଳେ ସାଧକର ଅନ୍ତଃଚେତନା ସର୍ବବ୍ୟାପୀ ଚୈତନ୍ୟ ସତ୍ତା ସଂଗେ ଏକାକାର ହୋଇଯାଏ, ସେତେବେଳେ ମାୟାର ଅବଗୁଣ୍ଠନ ଖୋଲିଯାଏ । ସାଧକ ଦେଖେ ଏ ଜଗତ କେବଳ ଜଗନ୍ନାଥମୟ ।

ଅବସରପ୍ରାପ୍ତ ଉପଶାସନ ସଚିବ
ଏମ୍.ଆଇ.ଜି.-୮୦
ଖଣ୍ଡଗିରି ହାଉସିଂ ବୋର୍ଡ଼ କଲୋନୀ, ଭୁବନେଶ୍ୱର

# ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ

ଡକ୍ଟର ଜନ୍ମେଜୟ ଚୌଧୁରୀ

**ଦା**ରୁବ୍ରହ୍ମ କହିଲେ ଶ୍ରୀଜଗନ୍ନାଥଙ୍କ ବିନା ଆଉ କେହି ନୁହନ୍ତି । ସମଗ୍ର ଭାରତବର୍ଷର ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ପ୍ରାଚୀନ କାଳରୁ ଯେତେ ଦେବଦେବୀ ଉପାସିତ ହୋଇଆସୁଅଛନ୍ତି, ସେମାନଙ୍କ ମଧ୍ୟରୁ କେହି ହେଲେ ଦାରୁ ବା କାଷ୍ଠରେ ନିର୍ମିତ ନୁହନ୍ତି । କେବଳ ଶ୍ରୀଜଗନ୍ନାଥ ହିଁ ଦାରୁଦେବତା ରୂପେ କେଉଁ ଅନାଦି କାଳରୁ ପୂଜା ପାଇ ଆସୁଅଛନ୍ତି । ସମଗ୍ର ବିଶ୍ୱରେ ଅନେକ ଦେବତା କଳ୍ପନା କରାଯାଇଥିଲେ ହେଁ ଶ୍ରୀଜଗନ୍ନାଥଙ୍କ ସଦୃଶ କାହାରିଠାରେ ବହୁ ଆରୋପଣ କରାଯାଇନଥାଏ । ସେ ବ୍ରହ୍ମ ଇନ୍ଦ୍ର ନୀଳମଣି ନିର୍ମିତ ନୀଳମାଧବ ବିଗ୍ରହ, ଶ୍ରୀକୃଷ୍ଣଙ୍କ ଅଦାହ୍ୟ ନାଭିକମଳ, ପୂର୍ଣ୍ଣବ୍ରହ୍ମବିଶିଷ୍ଟ ପଞ୍ଚଭୂତାତ୍ମକ ଶରୀରସ୍ଥ ଏକ ମଣିବିଗ୍ରହ, ଇନ୍ଦ୍ରଦ୍ୟୁମ୍ନ କର୍ତ୍ତୃକ ବେଦବର୍ଣ୍ଣିତ ପ୍ଲବମାନ ଅପୁରୁଷେୟ ଦାରୁନିର୍ମିତ ପ୍ରଥମ ବିଗ୍ରହର ଅଂଶାବଶେଷ, ଚନ୍ଦନସିକ୍ତ ତୁଳସୀ ସ୍ତବକ, ଜୀବନ୍ତ ଶାଳଗ୍ରାମ, ଚୈତ୍ୟଶିଳା, ବୁଦ୍ଧଦନ୍ତ, ସ୍ୱର୍ଣ୍ଣନିର୍ମିତ ଶୟନ ଠାକୁର, ତନ୍ତ୍ର ପ୍ରଭାବିତ ଅଷ୍ଟଧାତୁ ନିର୍ମିତ ଏକ ଯନ୍ତ୍ରଫଳକ, ପାରଦ ଆଧାରିତ ଏକ ଧାତବ ପେଟିକା କିମ୍ବା ଏକ ମୂଲ୍ୟବାନ ଆକର୍ଷଣୀୟ ମଣିଖଣ୍ଡ ବିଶେଷ ଆଦି ଯାହା ହେଉନା କାହିଁକି ଅନୁପଲଭ୍ୟ ଓ ଅକଳ୍ପନୀୟ ଶ୍ରୀଜଗନ୍ନାଥଙ୍କ ବ୍ରହ୍ମ ପଦାର୍ଥ ଅଦ୍ୟାବଧି ଏକ ରହସ୍ୟମୟ ବସ୍ତୁ ରୂପେ ପରିକଳ୍ପିତ ହେଉଛି । ସେ ସମସ୍ତଙ୍କ ଚକ୍ଷୁରେ 'ମଦନ ସୁନ୍ଦର' ନୁହନ୍ତି - 'କାଳିଆ', 'ପଦ୍ମଲୋଚନ' ନୁହନ୍ତି - 'ଚକାଡ଼ୋଳା', 'ଚତୁର୍ଭୁଜ' ନୁହନ୍ତି - 'ବଳିଆରଭୁଜ' । ଏ ଦେଶରେ ଜୈନ, ବୌଦ୍ଧ, ବୈଷ୍ଣବ, ଶାକ୍ତ ପ୍ରଭୃତି କେତେ ଧର୍ମବାଦର ବନ୍ୟା ପ୍ରଭାବିତ ହୋଇ କେତେ କେତେ ଧର୍ମଗୁରୁ ଓ ମତ ପ୍ରଚାରକ ଆସି ସ୍ୱ ସ୍ୱ ମତବାଦ ପ୍ରଚାର କରିଯାଇଛନ୍ତି, ତଥାପି ଶ୍ରୀଜଗନ୍ନାଥଙ୍କୁ ନିଜର କରିପାରିନାହାନ୍ତି, ଦାରୁକୁ ପଥର କରିପାରି ନାହାନ୍ତି କିମ୍ବା ରୂପରେ କୌଣସି ପରିବର୍ତ୍ତନ କରାଇପାରିନାହାନ୍ତି । **କୌଣସି ନିର୍ଦ୍ଦିଷ୍ଟ ପ୍ରବକ୍ତାଙ୍କଦ୍ୱାରା ଶ୍ରୀଜଗନ୍ନାଥ ଧର୍ମ ଦର୍ଶନ ପ୍ରତିଷ୍ଠା ଲାଭ କରି ନଥିବାରୁ ଶ୍ରୀଜଗନ୍ନାଥ କୌଣସି ଧର୍ମ କୈନ୍ଦ୍ରିକ ଦେବତା ନ ହୋଇ ସେ ସର୍ବତୋଭାବେ ଏକ ସାଂସ୍କୃତିକ ଦେବତା ଅଟନ୍ତି ।**



ତୀର୍ଥରାଜ ମହୋଦଧି ବେଳା ସଂଲଗ୍ନ କ୍ଷେତ୍ରରାଜ ପୁରୁଷୋତ୍ତମ ଦେବରାଜ ଶ୍ରୀଜଗନ୍ନାଥ ବିରାଜିତ ଥିବାରୁ ଏହି କ୍ଷେତ୍ର ବିଶ୍ୱର କ୍ଷେତ୍ର ଶ୍ରେଷ୍ଠ ଭାବରେ ପରିଚିତ । ତେଣୁ 'କପିଳ ସଂହିତା'ରେ ବର୍ଣ୍ଣିତ ଅଛି 'କ୍ଷେତ୍ର ନୀଳାଚଳଂ ପୁଣ୍ୟ ଦାରୁବ୍ରହ୍ମସ୍ୱରୂପିଣଃ' । ପୁଣ୍ୟ ନୀଳାଚଳ କ୍ଷେତ୍ର ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ଶରୀର ସଦୃଶ ଅଟେ । କ୍ଷେତ୍ର ଓ କ୍ଷେତ୍ରଜ୍ଞ ମଧ୍ୟରେ ଏତାଦୃଶ ଏକାତ୍ମଭାବ ଶ୍ରୀନୀଳାଚଳ କ୍ଷେତ୍ର ବ୍ୟତୀତ ଅନ୍ୟ କୁତ୍ରାପି ପରିଦୃଷ୍ଟ ହୁଏ ନାହିଁ । ଜଗତ ଓ ଜଗନ୍ନାଥ ଅଭିନ୍ନ । ସେ ଜଗତନାଥ ହେତୁ ସଭା ତାଙ୍କର ଜଗନ୍ମୟ । ଯଃ ଗତ, ଯଃ ସ୍ଥିତ ଓ ଯଃ ଆୟାତ ଏହି ତ୍ରିକାଳ ନାଥ ହିଁ ଶ୍ରୀଜଗନ୍ନାଥ । ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ନିର୍ମାଣ ଉପାଦାନର ସ୍ୱାତନ୍ତ୍ର୍ୟ ଅନନ୍ୟ ଅଟେ । କାରଣ ସାକାରବାଦୀମାନେ ମୂର୍ତ୍ତିକା, ପ୍ରସ୍ତର, ସ୍ୱର୍ଣ୍ଣ ଓ ରୌପ୍ୟ ପ୍ରଭୃତି ମୂଲ୍ୟବାନ ଧାତବ ମୂର୍ତ୍ତି ସହିତ ବିଶ୍ୱାସ ଅନୁଯାୟୀ ଶ୍ରୀଶାଳଗ୍ରାମ, ବାଣ ଲିଙ୍ଗ, ଗୋବର୍ଦ୍ଧନ ଗିରିର ଶିଳାଖଣ୍ଡ, ଉଇହୁଙ୍କା, ନାରିକେଳ, ମୁବାକ୍, କୁଶନିର୍ମିତ ବିଷ୍ଟର ଓ କଳସାଦି




ପ୍ରତୀକ ପୂଜା କରିବା ସହିତ ବିଭିନ୍ନ ଜୀବଜନ୍ତୁ ତଥା ଜଳ ବାୟୁ-ଅଗ୍ନି-ସୂର୍ଯ୍ୟ-ଚନ୍ଦ୍ର ପ୍ରଭୃତି ପ୍ରାକୃତିକ ଉପାଦାନଗୁଡ଼ିକୁ ଯଥାବିଧି ପୂଜାକରି ଆସୁଛନ୍ତି । ଉପାସନା ପଦ୍ଧତିରେ ପାର୍ଥକ୍ୟ ପରିଦୃଷ୍ଟ ହେଉଥିଲେ ମଧ କେବଳ ବିଶ୍ୱାସ ହେଉଛି ଏ ସମସ୍ତ ଉପାସନାର ନିର୍ଯ୍ୟାସ । ଏ ସମସ୍ତ ମଧ୍ୟରେ ବୃକ୍ଷ ବା ଦାରୁ ଉପାସନା ବିଶ୍ୱର ଉପାସନା ପରମ୍ପରାର ଏକ ଅନ୍ତଃରାଷ୍ଟ୍ରୀୟ ଦର୍ଶନ ଉପରେ ପର୍ଯ୍ୟବସିତ ।

ହିନ୍ଦୁ ଶାସ୍ତ୍ରରେ ଅନେକ ଦେବଦେବୀ ଉପାସିତ ହେଉଥିଲେ ମଧ କେବଳ ଶ୍ରୀଜଗନ୍ନାଥ ଦାରୁ ଉପାସନକୁ ସ୍ୱୀକୃତି ତଥା ସମ୍ମାନ ଦେଇ ଦାରୁଦେବତା ରୂପେ ଉପାସିତ ହୋଇଆସୁଛନ୍ତି । ଓଡ଼ିଆ ସଂସ୍କୃତିରେ ବର, ଅଶ୍ୱତ୍ଥ, ବିଲ୍ୱ, ଅଶୋକ, ଅଁଳା, ନିମ୍ବ ଓ ତୁଳସୀ ବୃକ୍ଷର ଉପାସନା ଆଦିମକାଳରୁ ଆଦର ଲାଭ କରିଛି । ଏହି ବୃକ୍ଷ ଉପାସନା ମୁଖ୍ୟତଃ ଶବର ସଂସ୍କୃତିରୁ ସୃଷ୍ଟି । ତେଣୁ ଶବରମାନେ ସାଧାରଣତଃ ବୃକ୍ଷପୂଜାର ମର୍ଯ୍ୟାଦାଲାଭ କରିଥିଲେ । 'ସବଦା' ସମ୍ପ୍ରଦାୟର ଶବରମାନଙ୍କ ମତରେ ଜଗତ୍‌କର୍ତ୍ତା ପ୍ରଥମେ ବୃକ୍ଷ ସୃଷ୍ଟି କରିଥିବାରୁ ଶବରମାନେ ବୃକ୍ଷକୁ ନିଜର ଗୋତ୍ର ସଂକେତ ହିସାବରେ ଉପାସନା କରୁଥିଲେ । ଶବରମାନେ ଜାଣିଥିଲେ ଯେ ଏ ସଂସାର ବୃକ୍ଷ ସଦୃଶ । ମନୁଷ୍ୟର ଶରୀର ତଥା ମନ ଏକ ବୃକ୍ଷ ତୁଲ୍ୟ ଓ ପଞ୍ଚଇନ୍ଦ୍ରିୟ ଏହି ଶରୀର ରୂପକ ବୃକ୍ଷର ଶାଖା ପ୍ରଶାଖା ସଦୃଶ । ବୃକ୍ଷ ପ୍ରକୃତିର ସକଳ ତାଡ଼ନାକୁ ପ୍ରତିହତ କରି ସ୍ୱାଧୀନ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ସ୍ୱୀୟ ଅଭିବୃଦ୍ଧି ଅବ୍ୟାହତ ରଖିଥାଏ । ପୁନଶ୍ଚ ଉଦ୍ଭିଦଜଗତ ମାନବ ସମାଜକୁ ଶ୍ୱାସକ୍ରିୟା ନିମିତ୍ତ ଅମ୍ଳଜାନ, କ୍ଷୁଧା ନିବାରଣ ନିମିତ୍ତ ଖାଦ୍ୟ, ପରିଧାନ ନିମିତ୍ତ ବସ୍ତ୍ର, ରୋଗ ଦୂରୀକରଣ ନିମିତ୍ତ ଔଷଧ, ଗୃହୋପକରଣ ପ୍ରସ୍ତୁତି ନିମିତ୍ତ କାଷ୍ଠ, ରନ୍ଧନ ନିମିତ୍ତ ଇନ୍ଧନ ଯୋଗାଇବା ସହିତ ବିଶ୍ୱରେ ବୃଷ୍ଟି ନିମିତ୍ତ ଉପଯୁକ୍ତ ବାତାବରଣ ସୃଷ୍ଟି କରିଥାଏ । ସହନଶୀଳତା ବୃକ୍ଷର ଏକ ମହାନ୍ ପ୍ରବୃତ୍ତି । ସର୍ବୋପରି ପ୍ରାଣୀ ନିଜର ପ୍ରାଣରକ୍ଷା ନିମିତ୍ତ ସର୍ବତୋଭାବେ ବୃକ୍ଷ ଉପରେ ନିର୍ଭର କରୁଥିବାରୁ ମାନବ ସର୍ବପ୍ରଥମେ ବୃକ୍ଷ ପୂଜା କରିଥିବା ସମୀଚୀନ । ଏତଦ୍‌ବ୍ୟତୀତ ବୃକ୍ଷ ଉପାସନାଦ୍ୱାରା ଆୟୁ, ବଳ, ଯଶ, ବୃଦ୍ଧି ପ୍ରାପ୍ତ ହୋଇଥାଏ । ଅଥର୍ବ ବେଦରେ ବୃକ୍ଷକୁ ଦେବସଦନ ବୋଲି କୁହାଯାଇଛି । ବୃକ୍ଷପୂଜା କ୍ରମବିବର୍ତ୍ତନ ମଧ ଦେଇ ଗତି କରି ପରିଣତିରେ ଦାରୁ ଉପାସନାରେ ରୂପାୟିତ ହୋଇଛି । 'ଜନ୍ମଜନ୍ମାନ୍ତର ପାତକାନି ଦାରୟତି ଇତି ଦାରୁଃ' - ପାପ ଦୂରୀକରଣ କ୍ଷମତା ଥିବାରୁ ତାହା ଦାରୁ ।

ଶ୍ରୀଜଗନ୍ନାଥ ଦାରୁମୂର୍ତ୍ତି ସଂସ୍କୃତିର ପ୍ରତୀକ ଭାବରେ ଇତିହାସ, ପୁରାଣ ସର୍ବୋପରି ବେଦର ଯେ ଅଗ୍ରଜ ଏହା କେହି ଅସ୍ୱୀକାର କରିବେ ନାହିଁ । ଏହି ଦୃଷ୍ଟିରୁ ବେଦ ପରବର୍ତ୍ତୀ ଅନେକ ପୁରାଣରେ ଦାରୁମୂର୍ତ୍ତିଙ୍କର ବର୍ଣ୍ଣନା କରାଯାଇ ବେଦୋକ୍ତ ସେହି ଅପୁରୁଷେୟ ଦାରୁ ଯେ ଶ୍ରୀଜଗନ୍ନାଥ ଏହା ପ୍ରତିପାଦନ କରିବାର ପ୍ରୟାସ ହୋଇଛି । ଆଦିବାସୀ ଗଣ୍ଡ ସମାଜରେ ଦଙ୍ଗା ଦେବତା ନାମରେ 'ଛ' ଫୁଟ ଉଚ୍ଚତା ବିଶିଷ୍ଟ ଯେଉଁ ଦୁଇଗୋଟି କୃଷ୍ଣଦାରୁ ପୂଜା କରାଯାଏ ତାହା ଶ୍ରୀଜଗନ୍ନାଥଙ୍କ ଦାରବୀୟ ବିଗ୍ରହ ଶ୍ରୀଅଙ୍ଗର ନିମ୍ନାଂଶ ବୋଲି ବିଶ୍ୱାସ କରାଯାଏ । ଖଡ଼ିଆ ଓ ସଉରାମାନେ ବଡାସ ବା ବଳମ୍ ନାମରେ ଯେଉଁ ଦେବତାଙ୍କୁ ଉପାସନା କରନ୍ତି ତାହା ବଳଭଦ୍ର ବା ବଡ଼ଠାକୁରଙ୍କର ପ୍ରାକ୍ତନ ସଂସ୍କରଣ । ସୁଭଦ୍ରା ଶବରମାନଙ୍କର ଗ୍ରାମଦେବୀ ସ୍ତମ୍ଭେଶ୍ୱରୀଙ୍କ ରୂପାନ୍ତର ମାତ୍ର । ଆଦିବାସୀ ଉପାସିତ ବିଭିନ୍ନ ଦେବଦେବୀ ମଧ୍ୟରେ ଜାଗାରାଜୁ, କେରାରାଜୁ ଓ ସୁଭଦ୍ରା ମା' ପ୍ରଧାନ । ଶବରମାନେ ଚାଳରେ ଶିକାବାନ୍ଧି ଏକ କୋଡୁଆ ଟାଙ୍ଗି କଳା, ଧଳା, ଲାଲରଙ୍ଗରେ ଚିତ୍ରିତ ତିନୋଟି କାଷ୍ଠ ମୂର୍ତ୍ତି ପୂଜା କରନ୍ତି । ସେମାନେ ଯଥାକ୍ରମେ କିତୁଙ୍ଗ, ଧର୍ମବୋଦ ଓ ବଳିଆ ନାମରେ ନାମିତ । ଶବର ଭାଷାରେ କିତୁଙ୍ଗର ଅର୍ଥ ଜଗନ୍ନାଥ । ପୁନଶ୍ଚ କୋୟାର ଜଗାରାଜୁ, ଗଦବାର ଜଗତ, କନ୍ଧମାନଙ୍କର ନଗୟା ଏମାନେ ସମସ୍ତେ ଶବରର । କିନ୍ତୁ କଣ୍ଡୁ ଜଗନ୍ତା ବା ଳନଙ୍ଗଲୁ ଅର୍ଥାତ୍ ଜଗତର ନାଥ ଶ୍ରୀଜଗନ୍ନାଥ । ତନ୍ମଧ୍ୟରୁ ଆଦିବାସୀ କନ୍ଧମାନେ ଗାଁମୁଣ୍ଡ ବରଗଛ ମୂଳେ ତିନିଖଣ୍ଡ ପଥରକୁ ଏକଧାଡ଼ିରେ ରଖି ସେମାନଙ୍କ ଉପରେ ଖଣ୍ଡିଏ ପଥର ଛାତ ଭଳି ସ୍ଥାପନ କରି ସେମାନଙ୍କୁ ଯଥାକ୍ରମେ ମୁରବି ପେନୁ, ଜାକେରି ପେନୁ ଓ ତାନାପେନୁ ନାମରେ ଉପାସନା କରନ୍ତି । ଏହିମାନେ ହିଁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ।

ଶବର ଭାଷାରେ କିତୁଙ୍ଗର ଅର୍ଥ ଜଗନ୍ନାଥ ।

ଶବରର ଆଦିମ ବୃକ୍ଷ ଦେବତା କାଳକ୍ରମେ ଦାରୁରୂପେ ଉପାସକଙ୍କ ମଧ୍ୟରେ ପୂଜା ପାଇ ଆସିଲେ । ପରମ୍ପରାନିଷ୍ଠ ଶବର ପୁରାକାଳରୁ ଚଳି ଆସୁଥିବା ବୃକ୍ଷ ଶୁଷ୍କ ହେଲେ ମଧ ତାକୁ ଦାରୁ ରୂପେ ପୂଜା କରି ଆସୁଥିଲା । ମୂଳବୃକ୍ଷର ପରିବର୍ତ୍ତନ ହେଲେ ମଧ ତା'ର ପୂଜା ଉପାସନାର କୌଣସି ପରିବର୍ତ୍ତନ ଘଟି ନଥିଲା । ଋତୁଚକ୍ରରେ ଆଘାତ ଲାଗି ମୂଳ ଦାରୁଟି ବିକୃତ ଓ ଶୁଷ୍କ ହେଲେ ମଧ ଶବରମାନେ ତାକୁ ମାଦଳ ଭାବରେ ପୂଜା କରୁଥିଲେ । ଏବେ ମଧ କେତେକ ଖାଣ୍ଟି ଶବରମାନଙ୍କ ମଧ୍ୟରେ ମାଦଳ ପୂଜା ପ୍ରଚଳିତ ଅଛି । ମାଦଳର ଅର୍ଥ ହେଉଛି ହସ୍ତଗୋଡ଼ି ବିହୀନ ମୁଣ୍ଡ

ଗଣ୍ଡି ଥିବା ଏକ କାଠ ଗଣ୍ଡି । ବଙ୍ଗଳା ଭାଷାରେ ମାଦଳ କହିଲେ କେବଳ ବୃକ୍ଷର ଗଣ୍ଡିକି ବୁଝାଏ । ବୋଧହୁଏ ଏହି କାରଣରୁ ପରବର୍ତ୍ତୀ ଯୁଗରେ ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ବିଧିବିଧାନ ଲିପିବଦ୍ଧ ହୋଇଥିବା ପାଞ୍ଜି ପ୍ରାଚୀନ ଶବର ଦେବତା 'ମାଦଳା'ଙ୍କ ନାମରେ 'ମାଦଳା ପାଞ୍ଜି' ବୋଲି ଅଭିହିତ ହୋଇ ଆସୁଛି । ଓଡ଼ିଶାର ସୀମାନ୍ତ ପ୍ରଦେଶ ଗଞ୍ଜାମ-ମାଳ ଅଞ୍ଚଳରେ 'ସୌରା' ନାମରେ ଅଭିହିତ ଶବର ଜାତି ଅଦ୍ୟାପି ମୁଖ ଓ ଚକ୍ଷୁ ବିଶିଷ୍ଟ କାଷ୍ଠଖଣ୍ଡ ପୂଜା କରନ୍ତି ଓ ଏ ସମସ୍ତ ମୂର୍ତ୍ତିମାନଙ୍କ ପାଖରେ ବଳି ବିଧାନ ରହିଛି । ଏଥିରୁ ଜଣାଯାଏ 'ଜଗନ୍ନାଥ' ପୂଜାଗଣ୍ଡି ବା ମାଦଳା ପୂଜାର ପରିବର୍ତ୍ତିତ ରୂପ ମାତ୍ର ।

ଏଥିରୁ ପ୍ରମାଣିତ ହୁଏ ଯେ ଦାରୁମୂର୍ତ୍ତି ବିକାଶର ପରମ୍ପରା ଓ ସଂସ୍କୃତି ଶବର ସଭ୍ୟତାରୁ ଜନ୍ମଲାଭ କରିଛି । ଆଧ୍ୟାତ୍ମିକ ଚିନ୍ତାଧାରାର ଅପୂର୍ବ ସମନ୍ୱୟର ଫଳସ୍ୱରୂପ ଦାରବୀୟ ଶ୍ରୀଜଗନ୍ନାଥ ଶବର ଉପାସିତ ଦାରୁ ଦେବତାରେ ରୂପାନ୍ତରିତ ହୋଇଛନ୍ତି । ଶବରମାନଙ୍କର ଦଶ ପ୍ରକାର ଦେବତା ଯଥା- ନିତୁଙ୍ଗ, ଦିଗନ୍ତ, ତୋଡ଼, ତୁମନ, ଭୀମ, ଗରସିନ୍ଦ୍, ରାମନ୍, ଯୋଯପେନ, ମଉ ଓ ତିତ ପ୍ରଭୃତି ସହ ଶ୍ରୀଜଗନ୍ନାଥଙ୍କ ଦଶାବତାର ସହିତ ସମ୍ବନ୍ଧ ରହିଥିବା ପରିଲକ୍ଷିତ ହୁଏ । ଅନାର୍ଯ୍ୟ ଶବର ଦେବତା କିତୁଙ୍ଗ ଓ ଆର୍ଯ୍ୟମାନଙ୍କ ଜଗନ୍ନାଥ ଯେ କି ଦାରୁମୂର୍ତ୍ତି ସଂସ୍କୃତିର ପ୍ରତୀକ ସେ ଏକ ଓ ଅଭିନ୍ନ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଜୈନମାନେ ଯେପରି ମୂଳ 'ଜଗନ୍ତ' ସହିତ ସ୍ୱ-ଧର୍ମର ସର୍ବୋତ୍କର୍ଷ ପ୍ରତିପାଦକ 'ନାଥ' ଶବ୍ଦ ଯୋଗ କରି ଦାରୁକୁ ଜଗନ୍ତନାଥ ବା ଜଗନ୍ନାଥ ବୋଲି ଅଭିହିତ କଲେ, ସେହିପରି ଆର୍ଯ୍ୟମାନେ ମୂଳ 'ଦାରୁ' ସହିତ ପରମ-ଭାବ-ଦ୍ୟୋତକ 'ବ୍ରହ୍ମ' ଶବ୍ଦ ଯୋଗ କରି 'ଦାରୁବ୍ରହ୍ମ' ବୋଲି ଆଖ୍ୟା ଦେଲେ । ଏହିପରି ପ୍ରାଚୀନ କାଳରୁ ଉପାସିତ ହୋଇ ଆସୁଥିବା ଅଷ୍ଟିକ୍ ଶବରର 'ଦାରୁ'କୁ 'ବ୍ରହ୍ମ' ଭାବେ ନିଜର କରି ବୈଦିକ ଆର୍ଯ୍ୟ ଋଗ୍‌ବେଦ କାଳରୁ ମନରେ ପୋଷଣ କରି ଆସିଥିବା ଅଭିଳାଷକୁ ଚରିତାର୍ଥ କଲା । ଫଳରେ ସେହିଦିନଠାରୁ ଦାରୁ ଦେବତା 'ଦାରୁବ୍ରହ୍ମ' ତଥା 'ପୁରୁଷୋତ୍ତମ' ନାମରେ ବ୍ରାହ୍ମଣ୍ୟ ଧର୍ମର ପ୍ରତୀକରୂପେ ଉପାସିତ ହୋଇ ଆସୁଛନ୍ତି ।

ଅଧ୍ୟାପକ, ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା

---

# ଅନନ୍ୟ

ଶ୍ୟାମ ପ୍ରକାଶ ସେନାପତି



ଅଖିଳ ବିଶ୍ୱର ନାଥ
ପୁରୁଷୋତ୍ତମ-ଜଗନ୍ନାଥ ।
ତୁମେ ତ ସାକ୍ଷାତ ଓଁକାର
ଆକାର ଓ ନିରାକାର
ସକଳ ସମନ୍ୱୟର ସୂଚକ ।
ତୁମ ଚକାଆଖିରେ
ସଭିଏଁ ସନ୍ତାନ ଆଉ ସଭିଏଁ ସମାନ ।
ତୁମେ ବାହୁ ପ୍ରସାରି, ହୃଦୟ ଖୋଲି
ଆପଣାର କର ସଭିଙ୍କୁ ।
ତୁମଠାରେ ନାହିଁ
ଜାତି-ଅଜାତିର ଭେଦ
ଅବା ଦେଶୀ-ବିଦେଶୀର ଭାବ
ତୁମେ ନୁହଁ ଜଣଙ୍କର,
ତୁମେ ଗଣଦେବତା ଅଖିଳବିଶ୍ୱର ।

ଘୋଷଯାତ୍ରା ସେଥିଲାଗି ହୋଇଯାଏ
ଗଣ ମହୋତ୍ସବ ।
ଗଣଦେବତା ନାମକୁ ସାର୍ଥକ କରି
ତୁମେ ଓହ୍ଲାଇ ଆସ ରତ୍ନବେଦୀରୁ,
ମାନବ ଧର୍ମର ମହାପୀଠ
ବଡ଼ଦାଣ୍ଡ ଓ ଶରଧାବାଲିକୁ ।
ଦର୍ଶନ କରି ତୁମକୁ
ଜୀବନ ହୁଏ ଧନ୍ୟ,
ତୁମେ ଏକାଧାରରେ
ଅସାଧାରଣ ଓ ଅନନ୍ୟ ।



ସଂପାଦକ 'ଅଭିନନ୍ଦନିକା'
ସେନାପତି ଭବନ,
ବଡ଼ଦାଣ୍ଡ, ପୁରୀ-୧

# ଇତିହାସରେ 'ଶ୍ରୀଜଗନ୍ନାଥ'

କଲ୍ୟାଣ କୁମାର ପଣ୍ଡା

**ଓ**ଡ଼ିଆର ଜାତୀୟତା, ଧର୍ମ, ସାହିତ୍ୟ ଓ ସଂସ୍କୃତିର ମୂଳରେ ରହିଛନ୍ତି ଆମ ଜାତି ତଥା ଜଗତର ଇଷ୍ଟଦେବତା ଶ୍ରୀଜଗନ୍ନାଥ । ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥଙ୍କ ବିଷୟରେ ବହୁତ କଥା କୁହାଯାଇଛି । କହିବାକୁ ଗଲେ ସାହିତ୍ୟ ତ ବର୍ତ୍ତମାନର, କିନ୍ତୁ ଶ୍ରୀଜଗନ୍ନାଥ ବହୁପ୍ରାଚୀନ ଯାହାଙ୍କର ଇତିହାସ କହିହେବ ନାହିଁ । ପୁରୀର ଶ୍ରୀଜଗନ୍ନାଥଙ୍କ ମନ୍ଦିରକୁ ଆମେ ଯାହା ଆଜି ଦେଖୁଛୁଁ, ପୁରାଣ କଥା ଅନୁସାରେ ଏହା ଯୁଗଯୁଗର ଅନୁଷ୍ଠାନ । କେଉଁ ଯୁଗରେ ତାହା ବାଲିରେ ପୋତି ହୋଇପଡ଼ିଥିଲା, ପୁଣି ବାହାରିଲା, ତା'ପରେ ପୁଣି ଦେଉଳ ଗଢ଼ା ହେଲା, ସେ ସବୁର ଇତିହାସ କହିବ କିଏ ?



ଶ୍ରୀଜଗନ୍ନାଥ ଧର୍ମ ବହୁ ପ୍ରାଚୀନ କାଳର ସନାତନ ଧର୍ମ । କାଳକ୍ରମେ ତହିଁରେ ବୌଦ୍ଧ, ଜୈନ, ଶୈବ, ଶାକ୍ତ ପ୍ରଭୃତି ଧର୍ମର ପ୍ରଭାବ ପଡ଼ିଛି । ସମୟର ସିକତା ଉପରେ ସେ ସବୁ ଲହଡ଼ିର ଚିହ୍ନମାତ୍ର ରହିଛି ସ୍ତର ସ୍ତର ହୋଇ ଏବଂ ଶ୍ରୀନୀଳାଚଳନାଥ ଶ୍ରୀଜଗନ୍ନାଥ ପୂର୍ବପରି ରହିଛନ୍ତି । ସେ କେବଳ ନୁହନ୍ତି ବୁଦ୍ଧ, ନୁହନ୍ତି ସେ ଜୀନ, ନୁହନ୍ତି ସେ ଆଦିବାସୀ ଶବରର କୌଣସି ଏକ ଦେବତା - ସେ ହେଉଛନ୍ତି ସନାତନ ଧର୍ମର ପରମାତ୍ମା, ପରଂବ୍ରହ୍ମ ବା ଭଗବାନ - ପୃଥିବୀ ବକ୍ଷରେ ସବୁ ଜାତି ବର୍ଣ୍ଣର ଭଗବାନ ସେ । ଆମର ମୂଳ କେଉଁଠି, ବହୁଦେଶ, ବହୁଜାତି, ବର୍ଣ୍ଣ ଭିତର ଦେଇ କିପରି ଆମେ ଗତିକରି ଆସିଛୁ, ତାହା କହିବା ଯେପରି ଅସମ୍ଭବ, ସେହିପରି ଶ୍ରୀଜଗନ୍ନାଥଙ୍କର ଠିକ୍ ଆବିର୍ଭାବ ଶ୍ରୀକ୍ଷେତ୍ରରେ କେବେ ହେଲା, ତାହା ଆମର ସୀମାବଦ୍ଧ ଗବେଷଣାରେ ଆମେ କିପରି କହିପାରିବା ?

ଶ୍ରୀଜଗନ୍ନାଥଙ୍କ ମନ୍ଦିର କେତେ ପ୍ରାଚୀନ ମନ୍ଦିର ତାହା ଇତିହାସ ମଧ୍ୟ କହିବାକୁ ଅସମର୍ଥ । ତଥାପି ନୀଳାଚଳରେ ଶ୍ରୀଜଗନ୍ନାଥଙ୍କ ପ୍ରାଚୀନ ମନ୍ଦିରକ୍ରମେ ନଷ୍ଟ ହେବାକୁ ବସନ୍ତେ, ନବମ ଶତାବ୍ଦୀରେ ସୋମବଂଶୀ ରାଜା ଯଯାତି କେଶରୀ ଏକ ନୂତନ ମନ୍ଦିର ତୋଳାଇଥିଲେ । ସମୁଦ୍ରର ଲୁଣି ପବନରେ କେତେକ ବର୍ଷ ପରେ ସେ ମନ୍ଦିର ପୁଣି ନଷ୍ଟ ହେବାକୁ ବସିଲା । ତେଣୁ ଚୋଡ଼ଗଙ୍ଗ ଦେବ ଖ୍ରୀ: ୧୧୯୦-୯୮ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ପାଇଁ ଏକ ବିରାଟ ମନ୍ଦିର ନିର୍ମାଣ କଲେ । ଆଜିର ଯେଉଁ ବିଶାଳ ମନ୍ଦିର, ତାହା ହେଉଛି ପରମବୈଷ୍ଣବ ଚୋଡ଼ଗଙ୍ଗ ଦେବଙ୍କ ଅକ୍ଷୟ କୀର୍ତ୍ତି । ଚୋଡ଼ଗଙ୍ଗ ଦେବଙ୍କର ବହୁପୂର୍ବରୁ ଶ୍ରୀଜଗନ୍ନାଥଙ୍କ ମହିମା ଭାରତ ତଥା ଭାରତ ବାହାରେ ଥିଲା । ଶ୍ରୀମନ୍ଦିରର ଇତିହାସରେ ଗଙ୍ଗ ଓ ସୂର୍ଯ୍ୟବଂଶଙ୍କର ରାଜତ୍ୱ ଥିଲା ଗୌରବମୟ ସୁବର୍ଣ୍ଣଯୁଗ । ଗଙ୍ଗରାଜା ଭାନୁଦେବ ଲେଖିଛନ୍ତି ଯେ, ସେ ରାଉତ ଭାବରେ ଶ୍ରୀଜଗନ୍ନାଥଙ୍କ ରାଜ୍ୟ ବା ଦେଶର ଶାସନମାତ୍ର ପରିଚାଳନା କରୁଥିଲେ । ଦେଶର ଯାହାକିଛି ରାଜସ୍ୱ, ଧନରତ୍ନ ସବୁଥିଲା ଶ୍ରୀଜଗନ୍ନାଥଙ୍କର । ଶ୍ରୀଜଗନ୍ନାଥଙ୍କର ସମୃଦ୍ଧି ଥିଲା ରାଜ୍ୟର ତଥା ରାଜ୍ୟବାସୀଙ୍କ ସମୃଦ୍ଧି । କ୍ରମେ କ୍ରମେ ଗଙ୍ଗ ରାଜତ୍ୱର ଶେଷ ଭାଗକୁ ଓଡ଼ିଶାରେ ଯବନ ଆକ୍ରମଣର ସତର୍କ ଘଣ୍ଟି ବାଜି ଉଠିଥିଲା । ଖ୍ରୀ: ୧୬୩୦ ବେଳକୁ ଦିଲ୍ଲୀର ଫିରୋଜଶାହ ତୋଗଲୋକ ଏକ ବିଶାଳ ସୈନ୍ୟବାହିନୀ ନେଇ ଶ୍ରୀମନ୍ଦିର ଲୁଣ୍ଠନ କରିଥିଲେ । ମାତ୍ର ଶ୍ରୀମନ୍ଦିର ଓ ଅନ୍ୟାନ୍ୟ ବଡ଼ ବଡ଼ ମନ୍ଦିର ଭାଙ୍ଗିବାକୁ ଅକ୍ଷମ ହୋଇ ସେ ଓଡ଼ିଶାର ଅନ୍ୟାନ୍ୟ ବହୁମନ୍ଦିର ନଷ୍ଟ କରିଥିବାର ଜଣାଯାଏ ।





ସୂର୍ଯ୍ୟବଂଶ ରାଜତ୍ୱରେ ବିଶେଷକରି କପିଳେନ୍ଦ୍ର ଦେବ, ପୁରୁଷୋତ୍ତମ ଦେବ ଓ ପ୍ରତାପ ରୁଦ୍ରଦେବଙ୍କ ରାଜତ୍ୱରେ ଶ୍ରୀଜଗନ୍ନାଥଙ୍କ ସେବାପୂଜାରେ ସର୍ବୋପରି ଶ୍ରୀକ୍ଷେତ୍ରରେ ଘଟିଲା ଅନେକ ଉନ୍ନତି । ଏମାନେ ଶ୍ରୀଜଗନ୍ନାଥଙ୍କ ସେବାପୂଜାରେ ଭୋଗରାଗ, ବସନଭୂଷଣ ପାଇଁ କୋଟି କୋଟି ଟଙ୍କାର ମୂଲ୍ୟର ଜମିବାଡ଼ି ଖଞ୍ଜି ଦେଇଗଲେ । ରାଜା ଓ ପ୍ରଜାମାନଙ୍କର ଅକଳନୀୟ ଭକ୍ତିମତ୍ତାରେ ଶ୍ରୀଜଗନ୍ନାଥ ହେଲେ ଅଭିଷିକ୍ତ । ଆମେ ବର୍ତ୍ତମାନ ଯେଉଁ ପରିସ୍ଥିତିରେ ଅଛୁଁ ଭବିଷ୍ୟତରେ ତାହାର ସ୍ଥିତି କ'ଣ ହେବ - ତାହା ଯେତେବେଳେ ଆମେ କହିବାକୁ ଅକ୍ଷମ, ସେପରି ସ୍ଥଳେ ଭଗବାନଙ୍କ ମହାନ୍ ରହସ୍ୟ ସାମାନ୍ୟ ମଣିଷ ଭେଦ କରିବା ଓ ତା'ର ଇତିହାସ ଲେଖିବା ବିଡ଼ମ୍ବନା ମାତ୍ର ।

ତେବେ କେତେକ ଐତିହାସିକଙ୍କ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି ବୁଦ୍ଧଙ୍କର ଅବତାର । ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ହେଉଛନ୍ତି, ବୌଦ୍ଧଧର୍ମର ତ୍ରିରତ୍ନ ଯଥାକ୍ରମେ- ବୁଦ୍ଧ, ଧମ ଓ ସଂଘର ପ୍ରତୀକ । ହିନ୍ଦୁଧର୍ମର 'ପଞ୍ଚରାତ୍ର' ମତରେ ଶ୍ରୀକୃଷ୍ଣ ବାସୁଦେବ ହେଉଛନ୍ତି ଶ୍ରୀଜଗନ୍ନାଥ ଓ ବଳରାମ ହେଉଛନ୍ତି ବଳଭଦ୍ର ସଙ୍କର୍ଷଣ । ଓଡ଼ିଶାର ଭକ୍ତଗଣ ଶ୍ରୀଜଗନ୍ନାଥଙ୍କୁ ନିତ୍ୟସ୍ଥଳର କୃଷ୍ଣ ଓ ଭଗବାନ ବୋଲି କହିଛନ୍ତି । ଆହୁରି ମଧ୍ୟ କହିଛନ୍ତି ଯେ ସେ ଶୂନ୍ୟରୂପୀ ନିରାକାରଙ୍କର ସ୍ୱରୂପ ପ୍ରକାଶ । ତାଙ୍କର ପାଦ, ପାଣି, ନାସା ଓ କର୍ଣ୍ଣ ନାହିଁ - ନାହିଁ ତାଙ୍କର ଆଦି ଅନ୍ତ, ତେଣୁ ସେ ହିଁ ପରଂବ୍ରହ୍ମ । ସେ ପୁଣି ଶବର ଉପାସିତ ନୀଳମାଧବ । ଓଡ଼ିଆ ପୁରାଣମାନଙ୍କରେ କୁହାଯାଇଛି ଯେ ଶ୍ରୀଜଗନ୍ନାଥ ହେଉଛନ୍ତି ପୁରୁଷୋତ୍ତମ ବିଷ୍ଣୁ । ବଳରାମ ହେଉଛନ୍ତି ଶିବ ଓ ସୁଭଦ୍ରା ହେଉଛନ୍ତି ଦୁର୍ଗା । ଏହି ବିଷୟ କୋଣାର୍କର ଏକ ସୁନ୍ଦର ବିଗ୍ରହରେ ଖୋଦିତ ହୋଇ ରହିଛି । ଅନ୍ୟ ଏକ ମତ ହେଉଛି ଏହି ତ୍ରିମୂର୍ତ୍ତି ହେଉଛନ୍ତି ସୁପ୍ରାଚୀନ କୃଷ୍ଣ, ବଳରାମ ଓ ଏକାନଂଶା । ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରର ଏକ ପାଖରେ ଅନନ୍ତ ଫଣା ଶୋଭିତ ବଳରାମ, ଏକାନଂଶା ଓ ବିଷ୍ଣୁଙ୍କର ମୂର୍ତ୍ତି ଆମେ ଦେଖିବାକୁ ପାଇଥାଉଁ । ଏହି ତ୍ରିମୂର୍ତ୍ତିଙ୍କ ବ୍ୟତୀତ ସୁଦର୍ଶନ ମଧ୍ୟ ରହିଛନ୍ତି, ଯାହାଙ୍କର ଆକାର ଏକ ଦଣ୍ଡ ସ୍ୱରୂପ । ପୁରାଣରେ ସୁଦର୍ଶନ ହେଉଛନ୍ତି ଶ୍ରୀଜଗନ୍ନାଥଙ୍କର ଚକ୍ର । ଦଣ୍ଡ ସ୍ୱରୂପୀ ସୁଦର୍ଶନଙ୍କୁ କେତେକ କହନ୍ତି ଯେ ସେ ହେଉଛନ୍ତି ପ୍ରାଚୀନ ଓଡ଼ିଶାର ସ୍ତମ୍ଭେଶ୍ୱରୀ ଦେବୀ ଯାହାଙ୍କର ଆକାର ଥିଲା ଏକ ଖମ୍ବ ସ୍ୱରୂପ । ଅନେକ ଐତିହାସିକ ମତ ଦିଅନ୍ତି ଯେ ଓଡ଼ିଶାର ଗଡ଼ଜାତ ଓ ଅନ୍ୟାନ୍ୟ ଅଞ୍ଚଳରେ ଏହି ସ୍ତମ୍ଭେଶ୍ୱରୀଙ୍କ ପୂଜାରୁ କ୍ରମେ ହୋଇଛି ଦାରୁପୂଜାର ଜନ୍ମ । ଓଡ଼ିଆ ପୁରାଣ ଓ ଓଡ଼ିଶାର ଲୋକଶ୍ରୁତି ପରମ୍ପରା କହେ ଯେ ଶ୍ରୀକୃଷ୍ଣଙ୍କ ଶରୀର ଦହନ ପରେ ଯେଉଁ ଅଂଶ ଦଗ୍ଧ ହୋଇପାରିଲା ନାହିଁ, ତାହାକୁ ବ୍ରହ୍ମ ରୂପେ ରଖାଯାଇ ଶ୍ରୀଜଗନ୍ନାଥ ବିଗ୍ରହର ହେଲା ସୃଷ୍ଟି । ତେଣୁ ଶ୍ରୀଜଗନ୍ନାଥ ଆଉ କେହି ନୁହନ୍ତି, ସେ ହେଉଛନ୍ତି ସାକ୍ଷାତ କୃଷ୍ଣ-ଭଗବାନ ।

ତନ୍ତ୍ର ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି ଭୈରବ ଓ ବିମଳା ହେଉଛନ୍ତି ଭୈରବୀ ବା ତାଙ୍କର ଶକ୍ତି । ଶ୍ରୀକ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ବିମଳା । ଆଜି ମଧ୍ୟ ଶ୍ରୀମନ୍ଦିର ବେଢ଼ାରେ ବିମଳା ମନ୍ଦିରରେ ତନ୍ତ୍ର ପଦ୍ଧତିରେ ସେବାପୂଜା ହୋଇଥାଏ ଓ ଦୁର୍ଗାଷ୍ଟମୀରେ ବହୁ ସତର୍କତାର ସହିତ ବିମଳା ମନ୍ଦିରରେ ବଳିପଡ଼ି ସଂଗେସଂଗେ ମନ୍ଦିର ସଂଶୋଧିତ ହୋଇଥାଏ । ତେଣୁ ଏଥିରୁ ସ୍ପଷ୍ଟ ଯେ ଶ୍ରୀଜଗନ୍ନାଥଙ୍କ ସେବାପୂଜାରେ ତନ୍ତ୍ରର ମଧ୍ୟ ବହୁ ପ୍ରଭାବ ରହିଛି ।

ଶ୍ରୀଜଗନ୍ନାଥଙ୍କ ମନ୍ଦିର ଇତିହାସରେ ଅନେକ ଝଡ଼ଝଞ୍ଜା ଦେଖାଦେଇଛି । ଶ୍ରୀଜଗନ୍ନାଥ ମନ୍ଦିର, ଶ୍ରୀଜଗନ୍ନାଥ ବିଗ୍ରହ ଓ ତାହାର ଧନରତ୍ନ ମଣିମାଣିକ୍ୟପୂର୍ଣ୍ଣ ଭଣ୍ଡାର ଉପରେ ସବୁବେଳେ ପଡ଼ିଛି ଯବନ ଓ ବାହ୍ୟ ଶତ୍ରୁମାନଙ୍କର ଲୋଲୁପ ଦୃଷ୍ଟି । କଳାପାହାଡ଼ର ଆକ୍ରମଣର ବହୁ ପୂର୍ବରୁ ଦିଲ୍ଲୀ ସୁଲତାନ ଫିରୋଜଶାହ ତୋଗଲୋକ୍ ଶ୍ରୀମନ୍ଦିର ଧ୍ୱଂସ ଲକ୍ଷ୍ୟରେ ଆସିଥିଲେ ହେଁ ସେ ତାହା ସାଧନ କରିପାରିନଥିଲେ । ମୁସଲମାନ ଇତିହାସ ଗ୍ରନ୍ଥରୁ ଜଣାଯାଏ ଯେ ମୁକୁନ୍ଦଦେବଙ୍କ ମୃତ୍ୟୁପରେ କଳାପାହାଡ଼ ଶ୍ରୀଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିଲା ଓ ତାଙ୍କ ଆଦେଶରେ ସେଠାରେ ଥିବା ବିଗ୍ରହକୁ ଖଣ୍ଡ ଖଣ୍ଡ କରାଯାଇ ନାଳରେ ଫିଙ୍ଗା ଯାଇଥିଲା । ଆଉ କେତେକ ଐତିହାସିକ କହନ୍ତି ଯେ, କଳାପାହାଡ଼ର ଭୟଙ୍କର ଆକ୍ରମଣରେ ଦେଶର ଶହ ଶହ ଦେବଦେବୀ ମନ୍ଦିର ଭଗ୍ନସ୍ତୂପରେ ପରିଣତ ହୋଇଥିଲା । ଶ୍ରୀମନ୍ଦିର ପଞ୍ଜିକା 'ମାଦଳାପାଞ୍ଜି'ରେ ବର୍ଣ୍ଣିତ ଅଛି ଯେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିକୁ କଳାପାହାଡ଼ ଧ୍ୱଂସ କରିବା ପୂର୍ବରୁ ଦାରୁ ମଧ୍ୟସ୍ଥ ବ୍ରହ୍ମଙ୍କୁ ଗୁପ୍ତରେ କୁଜଙ୍ଗଗଡ଼ ନିଆଯାଇ ନିରାପଦ ସ୍ଥାନରେ ରଖାଯାଇଥିଲା । ଗଜପତି ରାଜା ରାମଚନ୍ଦ୍ରଦେବ କଳାପାହାଡ଼ ଆକ୍ରମଣ ପରେ ଶ୍ରୀମନ୍ଦିରକୁ ପୁନର୍ବାର ମରାମତି କରାଇ ଶ୍ରୀଜଗନ୍ନାଥଙ୍କୁ ପୁନଃପ୍ରତିଷ୍ଠା କରିଥିଲେ । ତେଣୁ ସମଗ୍ର ଓଡ଼ିଆ ଜାତି ତାଙ୍କୁ ଉପାଧି ଦେଇଥିଲା 'ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ' । ଆଜି ଶ୍ରୀମନ୍ଦିର ଓ ଶ୍ରୀଲକ୍ଷ୍ମୀଙ୍କ ମନ୍ଦିରରୁ ଚୂନ ଛଡ଼ା ଯିବାରେ କାରୁକାର୍ଯ୍ୟ ଶୋଭିତ ଶ୍ରୀଜଗନ୍ନାଥ ମନ୍ଦିରର ଯେଉଁ ବିରାଟ ଶିଳ୍ପନୈପୁଣ୍ୟ ପ୍ରକାଶ ପାଇଛି ତାହା ସମଗ୍ର ଭାରତ ଓ ପୃଥିବୀରେ ଅଦ୍ୱିତୀୟ । ଶ୍ରୀମନ୍ଦିରର ଇତିହାସରେ ଏହିପରି କେତେ ଯେ ଓଡ଼ିଶାର ଗୌରବମୟ ଇତିହାସ ଲୁଚି ରହିଛି ତାହା କହିହେବ ନାହିଁ ।





ସମୁଦ୍ରରେ ଲହରୀ ପରେ ଲହରୀ ଆସିବାପରି ଭାରତରେ ମୁସଲମାନ ରାଜତ୍ୱରେ ଶ୍ରୀଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣର ତରଙ୍ଗ ମାଡ଼ି ଆସିଥିଲା । ଜାହାଙ୍ଗୀରଙ୍କ ସମୟରେ ମଧ୍ୟ ପୁରୀ ମନ୍ଦିର ଯବନ ସୈନ୍ୟମାନଙ୍କଦ୍ୱାରା ଆକ୍ରମଣ ହୋଇଥିଲା । ମାଦଳାପାଞ୍ଜିରେ ଲେଖାଅଛି ଯେ ମୁସଲମାନ ସୈନ୍ୟଙ୍କ ଆକ୍ରମଣ ଭୟରେ ଶ୍ରୀଜଗନ୍ନାଥଙ୍କୁ ସେବକମାନେ ପୁରୀ ନିକଟବର୍ତ୍ତୀ କପିଳେଶ୍ୱର ଶାସନ ପର୍ଯ୍ୟନ୍ତ ନେଇଯାଇ ଥିଲେ ଓ ପରେ ସୈନ୍ୟମାନଙ୍କର ପ୍ରତ୍ୟାବର୍ତ୍ତନ ପରେ ପୁଣି ଠାକୁର ଶ୍ରୀମନ୍ଦିରକୁ ଆସିଥିଲେ । ସେହିପରି ଖ୍ରୀ:୧୬୨୦ରେ ପୁଣି ମୋଗଲ ସେନାପତି ଅହମ୍ମଦ ବେଗ୍‌ଙ୍କ ଆକ୍ରମଣ ଭୟରେ ସେବକମାନେ ପରମେଶ୍ୱରଙ୍କଠାରୁ ବ୍ରହ୍ମ ବାହାର କରି ପୁରୀ ଜିଲ୍ଲା ଅଦୂରବର୍ତ୍ତୀ ବାଣପୁର ଅଞ୍ଚଳରେ ଲୁଚାଇ ରଖିଥିଲେ - ସେହି ସ୍ଥାନ ହେଉଛି ବାଣପୁରର ଗଡ଼ମାଣିତ୍ରି । ଏହାପରେ ହିନ୍ଦୁ ସେନାପତି ଭୀମଙ୍କ ସାହାଯ୍ୟରେ ଶ୍ରୀଜଗନ୍ନାଥ ପୁନର୍ବାର ଶ୍ରୀମନ୍ଦିରକୁ ଆସିଥିଲେ ।

ଏହିସବୁ ଦୁଃଖଦାୟକ ଘଟଣାଗୁଡ଼ିକୁ ବାଦ୍‌ଦେଲେ ଶ୍ରୀମନ୍ଦିରର ଇତିହାସରେ ବହୁ ଗୌରବମୟ ଘଟଣା ଲିପିବଦ୍ଧ ହୋଇରହିଛି । ଗଜପତି ପୁରୁଷୋତ୍ତମ ଦେବଙ୍କ ରାଜତ୍ୱରେ ନିଜେ ଶ୍ରୀଜଗନ୍ନାଥ ଭକ୍ତର ମାନ ରକ୍ଷା କରିବା ନିମନ୍ତେ କାଞ୍ଚି ଅଭିଯାନରେଯାଇଥିବା କଥା ମଧ୍ୟ ଓଡ଼ିଶାର ଅତି ଲୋକପ୍ରିୟ କାହାଣୀ । ଏହିପରି ଅନେକ କିମ୍ୱଦନ୍ତୀ ଅଛି ଯାହାକି ଆଜିର ମାନବକୁ ବିସ୍ମୟାଭିଭୂତ କରିଥାଏ ।

ନୀଳଚକ୍ର ଶୋଭିତ ନୀଳାଚଳନାଥ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଉପରେ ମୁକ୍ତ ନୀଳ ଆକାଶ ତଳେ ଅନନ୍ତ ନୀଳ ସମୁଦ୍ର ଯୁଗ ଯୁଗ ଧରି ଶ୍ରୀଜଗନ୍ନାଥଙ୍କ ମହିମା ଗାନରେ ବ୍ୟସ୍ତ । ଶ୍ରୀଜଗନ୍ନାଥ ମନ୍ଦିରର ଇତିହାସ ଓଡ଼ିଆ ଜାତିର, ଓଡ଼ିଆ ସଂସ୍କୃତିର ବିରାଟ ଇତିହାସ । ଓଡ଼ିଆ ଜାତିର, ସର୍ବୋପରି ଭାରତୀୟ ଜନତାର ଶ୍ରେଷ୍ଠ ଗର୍ବ ଏହି ବିଶାଳ ମନ୍ଦିର ଓ ତନ୍ମଧ୍ୟସ୍ଥ ଜଗତର ଦେବତା ଶ୍ରୀଜଗନ୍ନାଥ । ଯୁଗ ଯୁଗ ଧରି କୋଟି କୋଟି ଜନତାର ମସ୍ତକ ଅବନତ ହେଉଥିବ ସେହି ନୀଳାଦ୍ରି ବିହାରୀ ଶ୍ରୀଜଗନ୍ନାଥଙ୍କ ପାଦ-ପଦ୍ମରେ କେବଳ ଦୁଃଖ କଷ୍ଟରୁ ମୁକ୍ତି ପାଇଁ । ତାଙ୍କର କୈବଲ୍ୟ ଓ ଦୟାର କଣିକାରେ ସେ ପାଇବ ସ୍ୱର୍ଗ । ଯୁଗ ଯୁଗ ଧରି ଶ୍ରୀଜଗନ୍ନାଥ ଓଡ଼ିଆ ତଥା ଭାରତୀୟ ଜନତାର ହୋଇଛନ୍ତି ଭକ୍ତି, ବିଶ୍ୱାସ, ଜ୍ଞାନ, ପ୍ରେମ, ସାମ୍ୟ, ମୈତ୍ରୀ ପୁଣି ଦୟା, କ୍ଷମା, ସତ୍ୟ ଓ ଶାନ୍ତିର ଏକ ବିରାଟ ପ୍ରତୀକ, ଏକ ବିରାଟ ଅନୁଷ୍ଠାନ । ସତରେ ଶ୍ରୀଜଗନ୍ନାଥ ହେଉଛନ୍ତି ସମଗ୍ର ପୃଥିବୀର ଏକ ସୁପ୍ରାଚୀନ, ଅଦ୍ୱିତୀୟ ଅପୂର୍ବ ଅନୁଷ୍ଠାନ ।

ଅଧ୍ୟାପକ, ଇତିହାସ ବିଭାଗ
ବନମାଳିପୁର ମହାବିଦ୍ୟାଳୟ
ବନମାଳିପୁର, ଖୋର୍ଦ୍ଧା-୭୫୨୧୦୩

---

# ବଡ଼ପ୍ରଭୁ

ବିକ୍ରମ କେଶରୀ ବର୍ମା

ପ୍ରତିବର୍ଷ ପ୍ରଭୁ !
ତୁମ ନନ୍ଦିଘୋଷ ଚାଲିଛି ଚାଲିବ
ଲକ୍ଷ ଲକ୍ଷ ଭକ୍ତଙ୍କର ସମାବେଶ
ହୋଇଛି ହୋଇବ
ତେବେ କେବେ ଏ ଜାତିଟା ଉଠିବ ?
ହୃତ ଗୌରବ ଆମର ପୁନଶ୍ଚ ଫେରିବ ?

ଖଣ୍ଡ ବିଖଣ୍ଡିତ ଓଡ଼ିଶାକୁ
ତୁମେ ତ ଦେଖିଛ
ସୁପ୍ରାଚୀନ ଏ ଭାଷାକୁ
ମାରିବାର ହୀନ ଚକ୍ରାନ୍ତ ଜାଣିଛ ।

ମହା ମହା ବିପତ୍ତି ଆସିଛି
ତଥାପି ଏ ଜାତିଟା ବଞ୍ଚିଛି



ପ୍ରତିବର୍ଷ ତବ ଘୋଷଯାତ୍ରା
ମହା ଜାକଜମକେ ହେଉଛି ।
ହେ ଜଗା ବଳିଆ ଦୁଇ ଭାଇ
ସାଥେ ତୁମ ଭଗିନୀ ସୁଭଦ୍ରା
ବିଶ୍ୱ ବିଖ୍ୟାତ ଅଟଇ ପ୍ରଭୁ
ତୁମର ଏ ଘୋଷଯାତ୍ରା
ଏତିକି ମାଗୁଛି ବଡ଼ପ୍ରଭୁ
ତୁମ ରଥଚକ ଛୁଇଁ
ପ୍ରଗତିର ନନ୍ଦିଘୋଷ ଯାତ୍ରା
ବନ୍ଦ କେବେ ହେବ ନାହିଁ ।

ପୂର୍ବତନ ବିଧାୟକ
ମାହାଙ୍ଗା

# ଶ୍ରୀଜଗନ୍ନାଥ ସହସ୍ରନାମ ଓ ଶ୍ରୀବିଷ୍ଣୁ ସହସ୍ରନାମ ସ୍ତୋତ୍ରମ୍

ମହୀମୋହନ ତ୍ରିପାଠୀ



ମହର୍ଷି ବ୍ୟାସଦେବ କୃତ ମହାଭାରତ ଜ୍ଞାନରତ୍ନର ଏକ ପରିପୂର୍ଣ୍ଣ ଭଣ୍ଡାର । ଏହି ମହାନ୍ ଗ୍ରନ୍ଥରୁ ଶ୍ରୀମଦ୍ ଭଗବଦ୍ ଗୀତା, ଶ୍ରୀବିଷ୍ଣୁ ସହସ୍ର ନାମ ସ୍ତୋତ୍ର, ଶ୍ରୀଶିବ ସହସ୍ର ନାମ ସ୍ତୋତ୍ର, ଭୀଷ୍ମ ସ୍ତବରାଜ ଇତ୍ୟାଦି ଅମୂଲ୍ୟ ରତ୍ନ ଉଦ୍‌ଭବ ହୋଇଅଛି । ଭଗବଦ୍ ଗୀତା ଓ ବିଷ୍ଣୁ ସହସ୍ର ନାମ ସ୍ତୋତ୍ର ସ୍ୱତନ୍ତ୍ର ପୁସ୍ତକ ଆକାରରେ ଉପଲବ୍ଧ । ହିନ୍ଦୁଧର୍ମର ପବିତ୍ର ଗ୍ରନ୍ଥ ମଧ୍ୟରେ ଏହି ଦୁଇଟିର ସ୍ଥାନ ଅନନ୍ୟ, ଅସାଧାରଣ । ଭଗବଦ୍ ଗୀତାକୁ ସାଧାରଣତଃ ନିଷ୍କାମ ଭାବେ ପଠନ କରାଯାଏ । କିନ୍ତୁ ବିଷ୍ଣୁ ସହସ୍ର ନାମ ସ୍ତୋତ୍ରକୁ ନିଷ୍କାମ ଭାବେ ପାଠ କରାଯିବା ସଂଗେସଂଗେ ଫଳ କାମନାରେ ମଧ୍ୟ ପାଠ କରାଯାଏ । ଅନ୍ୟାନ୍ୟ କେତେକ ଦେବାଦେବୀମାନଙ୍କ ସହସ୍ର ନାମ ସ୍ତୋତ୍ର ଅପେକ୍ଷା ବିଷ୍ଣୁ ସହସ୍ରନାମ ସ୍ତୋତ୍ର ଅଧିକ ପରିଚିତ ତଥା ଆଦୃତ । ମହାନ୍ ସନ୍ଥ ଶିରିଡ଼ିର ସାଇବାବା ଏହି ସ୍ତୋତ୍ରକୁ ଅଧିକ ପ୍ରାଧାନ୍ୟ ଦେଉଥିଲେ ଏବଂ ତାଙ୍କର ଶିଷ୍ୟମାନଙ୍କୁ ଏହା ପଠନ କରିବାକୁ କହୁଥିଲେ ।

ବିଷ୍ଣୁ ସହସ୍ର ନାମ ସ୍ତୋତ୍ର ମହାଭାରତର ଅନୁଶାସନ ପର୍ବରେ ରହିଅଛି । ଏହି ସ୍ତୋତ୍ରର ଏକ ଉଚ୍ଚକୋଟିର ସଂପାଦନା ଓ ବ୍ୟାଖ୍ୟା ପୁରୀର ବିଖ୍ୟାତ ପଣ୍ଡିତ ସ୍ୱର୍ଗତଃ କୁଳମଣି ମିଶ୍ର ୧୯୮୫ ମସିହାରେ ପ୍ରକାଶ କରିଥିଲେ । ତାଙ୍କର ଦେହାନ୍ତ ପରେ ଏହି ପୁସ୍ତକ ପୁରୀର 'ସଦ୍‌ଗ୍ରନ୍ଥ ନିକେତନ'ଦ୍ୱାରା ପୁନଃ ପ୍ରକାଶିତ ହୋଇଛି । ସ୍ୱର୍ଗତଃ ପଣ୍ଡିତ ମିଶ୍ର ତାଙ୍କର 'ଅଗ୍ରଲେଖ'ରେ ଲେଖିଛନ୍ତି - 'ବିଷ୍ଣୁ ସହସ୍ରନାମରେ କେତେକ ପ୍ରଥମାନ୍ତ ନୂତନ ଶବ୍ଦ, ଅନପେକ୍ଷିତ ବିଶେଷଣ ଓ ସମାସର ଅନ୍ତର୍ଭୁକ୍ତ ହୋଇ ରହିଅଛି, ଅନ୍ୟଥା ଆଉ ୧୫ ଗୋଟି ନାମ ବଢ଼ି ଯାଇଥାନ୍ତା । ... ଯଦି ପ୍ରତ୍ୟେକ ପ୍ରଥମାନ୍ତ ପଦ ନାମ ରୂପେ ଗଣାଯାନ୍ତା ତେବେ ... ୧୩ଟି ନାମ ବାହାରି ସର୍ବମୋଟ ୧୦୨୮ ନାମ ହୋଇଯାନ୍ତା ।' ବିଷ୍ଣୁ ସହସ୍ରନାମ ସ୍ତୋତ୍ରର ନାମମାଳାରେ 'ଜଗନ୍ନାଥ' ଶବ୍ଦ ନାହିଁ । କିନ୍ତୁ 'ବିଷ୍ଣୁ' ନାମ ତିନି ଜାଗାରେ ରହିଛି । 'ଜଗନ୍ନାଥ' ଶବ୍ଦ ନାମମାଳା ମଧ୍ୟରେ ନଥିଲେ ମଧ୍ୟ ସ୍ତୋତ୍ରର ପୂର୍ବରୁ ରହିଛି । ପିତାମହ ଭୀଷ୍ମ ଯୁଧିଷ୍ଠିରଙ୍କୁ କହିଛନ୍ତି -

ପବିତ୍ରାଣାଂ ପବିତ୍ରଂ ଯୋ ମଙ୍ଗଳାନାଂ ଚ ମଙ୍ଗଳମ୍ ।
ଦୈବତଂ ଦେବତାନାଂ ଚ ଭୂତାନାଂ ଯୋ□ବ୍ୟୟଃ ପିତା ॥
ଯତଃ ସର୍ବାଣି ଭୂତାନି ଭବନ୍ତ୍ୟାଦି ଯୁଗାଗତମ ।
ଯସ୍ମିଂଶ୍ଚ ପ୍ରଳୟଂ ଯାନ୍ତି ପୁନରେବ ଯୁଗକ୍ଷୟେ ॥
ତସ୍ୟ ଲୋକ ପ୍ରଧାନସ୍ୟ ଜଗନ୍ନାଥସ୍ୟ ଭୂପତେ ।
ବିଷ୍ଣୋର୍ନାମ ସହସ୍ରଂ ତମ ଶୃଣୁ ପାପ ଭୟାପହମ୍ ॥

[ଯେ ସମସ୍ତ ପବିତ୍ର ପଦାର୍ଥ ମଧ୍ୟରେ ପବିତ୍ର, ଯେ ସମସ୍ତ ମଙ୍ଗଳର ମଙ୍ଗଳ, ଯେ ଦେବତାମାନଙ୍କର ଦେବତା, ସର୍ବ ଭୂତଗଣଙ୍କର ଯେ ଅବିନାଶୀ ପିତା, ସୃଷ୍ଟିର ଆରମ୍ଭରେ ସର୍ବବିଧ ଭୂତ (ପଞ୍ଚ ମହାଭୂତ ଓ ଜୀବଜନ୍ତୁ) ଯାହାଙ୍କଠାରୁ ଜାତ ହୁଅନ୍ତି ଏବଂ ଯୁଗକ୍ଷୟ (ପ୍ରଳୟ) ସମୟରେ ଯାହାଙ୍କଠାରେ ବିଲୀନ ହୁଅନ୍ତି, ହେ ଭୂପତେ ! ସେହି ଲୋକ ପ୍ରଧାନ ଜଗନ୍ନାଥଙ୍କର ପାପ ଭୟନାଶକ ବିଷ୍ଣୁ ସହସ୍ରନାମ ମୋ'ଠାରୁ ଶ୍ରବଣ କର ।]

ବାସ୍ତବିକ 'ଶ୍ରୀବିଷ୍ଣୁ ସହସ୍ରନାମ' ହେଉଛି ଶ୍ରୀଜଗନ୍ନାଥ - ବିଷ୍ଣୁଙ୍କ ସହସ୍ର ନାମ । ନାମାବଳୀରେ ଯଦିଓ ନାହିଁ, ନାମାବଳୀର ପୂର୍ବରୁ 'ଜଗନ୍ନାଥ' ଶବ୍ଦର ପ୍ରୟୋଗରେ ତାତ୍ପର୍ଯ୍ୟ ରହିଛି !





ବ୍ୟାସଦେବଙ୍କ ମହାଭାରତର ଶାନ୍ତିପର୍ବର ୪୩ ଅଧ୍ୟାୟରେ ମଧ୍ୟ ଶ୍ରୀବିଷ୍ଣୁଙ୍କର କେତୋଟି ନାମ ଉଲ୍ଲେଖ ଅଛି । ଏହି ନାମମାନଙ୍କ ମଧ୍ୟରେ ମଧ୍ୟ 'ଜଗନ୍ନାଥ' ନାମ ନାହିଁ । ଉଦ୍‌ଯୋଗ ପର୍ବର ୭୦ ଅଧ୍ୟାୟରେ ମଧ୍ୟ ଶ୍ରୀକୃଷ୍ଣଙ୍କର ବିଭିନ୍ନ ନାମ ମଧ୍ୟରେ 'ଜଗନ୍ନାଥ' ନାମ ନାହିଁ । ଏଥିରେ ଶ୍ରୀକୃଷ୍ଣଙ୍କର ଏକ ନାମ 'ମହାବାହୁ' ଉଲ୍ଲେଖ ଅଛି । ମହାବାହୁ ନାମ ଶ୍ରୀବିଷ୍ଣୁ ସହସ୍ରନାମ ସ୍ତୋତ୍ରରେ ନାହିଁ । ଶ୍ରୀଜଗନ୍ନାଥଙ୍କର ଏକ ନାମ ମହାବାହୁ । 'ବାହୁଦ୍ୱୟଦ୍ୱାରା ସ୍ୱର୍ଗ ଓ ପୃଥିବୀକୁ ଧରି ଥିବା ହେତୁ ସେ ମହାବାହୁ ନାମରେ ଖ୍ୟାତ ହୋଇଅଛନ୍ତି' (ମୂଳ ସଂସ୍କୃତରୁ ଗଦ୍ୟାନୁବାଦ - ଗୋବିନ୍ଦ ଚନ୍ଦ୍ର ମହାପାତ୍ର) ।

'ଶ୍ରୀଜଗନ୍ନାଥ ସହସ୍ରନାମ ସ୍ତୋତ୍ରମ' ନାମକ ଏକ ପୁସ୍ତିକା ୧୮୯୩ ମସିହାରେ 'କଟକ ପ୍ରିଣ୍ଟିଙ୍ଗ୍ କମ୍ପାନୀ' ପ୍ରେସ୍‌ରେ ପ୍ରଥମେ ମୁଦ୍ରିତ ହୋଇଥିଲା । ଏହା ପୁନର୍ବାର ସାଥୀ ପ୍ରିଣ୍ଟର୍ସ, ପୁରୀରେ ମୁଦ୍ରିତ ହୋଇଥିବା ଜଣାଯାଏ । ଏ ପୁସ୍ତିକାର ଶେଷରେ ଲେଖାଅଛି -

'ଇତି ବ୍ରହ୍ମ ପୁରାଣେ ଭୀଷ୍ମ ଯୁଧିଷ୍ଠିର ସମ୍ବାଦେ
ଜଗନ୍ନାଥ ସହସ୍ରନାମ ସ୍ତୋତ୍ରଂ ସମାପ୍ତମ୍ ।'

'ଶ୍ରୀଜଗନ୍ନାଥ ସହସ୍ରନାମ ସ୍ତୋତ୍ରମ୍' ନାମରେ ଆଉ ଏକ ପୁସ୍ତିକା ପ୍ରକାଶ ପାଇଛି । ଏହାର ସଂକଳକ ହେଉଛନ୍ତି ବିଶିଷ୍ଟ ଲେଖକ ଶ୍ରୀ ରବୀନ୍ଦ୍ର ନାରାୟଣ ମିଶ୍ର ଏବଂ ପ୍ରକାଶକ ହେଉଛନ୍ତି ବସନ୍ତ ପବ୍ଲିକେସନ୍ସ, କଟକ । ଏହା କେଉଁ ପୁରାଣରୁ ଗୃହୀତ ପୁସ୍ତିକାରେ ଉଲ୍ଲେଖ ନାହିଁ, ଏହାର ପ୍ରକାଶନ ବର୍ଷ ମଧ୍ୟ ଉଲ୍ଲେଖ ନାହିଁ ।

ଏହି ଆଲୋଚକ ଏହି ଦୁଇଟି ସହସ୍ରନାଥ ସ୍ତୋତ୍ରମ୍‌କୁ ମିଳାଇ ଦେଖିବାରୁ ଏକ ଜଣାଗଲା । ଠାଏଁ ଠାଏଁ ଅବଶ୍ୟ ସାମାନ୍ୟ ଫରକ୍ ରହିଛି । ସୁତରାଂ ଶ୍ରୀ ମିଶ୍ରଙ୍କଦ୍ୱାରା ସଂକଳିତ ସ୍ତୋତ୍ରମ୍‌ଟି ବ୍ରହ୍ମ ପୁରାଣରୁ ଆନୀତ ।

ଶ୍ରୀବିଷ୍ଣୁ ସହସ୍ରନାମ ସ୍ତୋତ୍ରମ୍ ଅନୁରୂପ ଶ୍ରୀଜଗନ୍ନାଥ ସହସ୍ରନାମ ସ୍ତୋତ୍ରମ୍‌ରେ ମଧ୍ୟ ଯୁଧିଷ୍ଠିରଙ୍କୁ ପିତାମହ ଭୀଷ୍ମ ଜଗନ୍ନାଥ ମହାପ୍ରଭୁଙ୍କର ସହସ୍ରନାମ ଶୁଣାଉଛନ୍ତି । ଭୀଷ୍ମ କହିଛନ୍ତି-

'ଯୁଧିଷ୍ଠିର ! ମହାବାହୋ କଥୟାମି ଶୃଣୁଷ୍ୱ ମେ ।
ଜଗନ୍ନାଥସ୍ୟ ନାମାନି ପବିତ୍ରାଣି ଶୁଭାନି ଚ ॥
ସତ୍ୟଧର୍ମ ବିଭୋସ୍ତସ୍ୟ ଜଗନ୍ନାଥସ୍ୟ ସର୍ବତଃ ।
କଥୟାମି ସହସ୍ରାଣି ନାମାନି ତବ ଚାନଘ ॥'

ସାଥୀ ପ୍ରିଣ୍ଟିରର୍ସ, ପୁରୀଦ୍ୱାରା ମୁଦ୍ରିତ ପୁସ୍ତିକାରେ 'ସତ୍ୟଧର୍ମ ବିଭୋସ୍ତସ୍ୟ' ଜାଗାରେ 'ସତ୍ୟଧର୍ମ ବିଭୂଷସ୍ୟ' ଅଛି । ବାକି ସବୁ ସମାନ ।

'ଶ୍ରୀଜଗନ୍ନାଥ ସହସ୍ରନାମ ସ୍ତୋତ୍ରମ୍'ଟି ଶ୍ରୀବିଷ୍ଣୁ ସହସ୍ରନାମ ସ୍ତୋତ୍ରମ୍ ଢାଞ୍ଚାରେ ରଚିତ ହୋଇଥିବା ମନେହୁଏ । ଏହା ବ୍ରହ୍ମପୁରାଣର ଏକ ପ୍ରକ୍ଷେପାଂଶ ! ବ୍ରହ୍ମପୁରାଣରେ ପୁରୁଷୋତ୍ତମ କ୍ଷେତ୍ର, ଗୁଣ୍ଡିଚା ଶବ୍ଦ, କୋଣାର୍କର ଉଲ୍ଲେଖ ଅଛି । ବ୍ରହ୍ମପୁରାଣର ଏହି ପରିପୂରକ ଅଂଶ ତ୍ରୟୋଦଶ ଶତାବ୍ଦୀ ପରେ ରଚିତ କୁହାଯାଇଛି ।

ଶ୍ରୀବିଷ୍ଣୁ ସହସ୍ରନାମରେ କୃଷ୍ଣ, ଯଦୁଶ୍ରେଷ୍ଠ, ମାଧବ, ବାସୁଦେବ, ଦେବକୀ ନନ୍ଦନ ଇତ୍ୟାଦି ଯଦୁବଂଶ ସୂଚକ ନାମ ଉଲ୍ଲେଖ ଥିବାସ୍ଥଳେ, ନନ୍ଦ, ଯଶୋଦା, ଗୋପଗୋପୀ ସମ୍ପର୍କୀୟ ନାମ ନାହିଁ । ଶ୍ରୀଜଗନ୍ନାଥ ସହସ୍ରନାମରେ କୃଷ୍ଣ, ମାଧବ, ବାସୁଦେବ, ଦେବକୀ ପୁତ୍ର, ଦେବକୀନନ୍ଦନ, ଦ୍ୱାରିକାପତି, ରାମକୃଷ୍ଣ, ବଳଭଦ୍ର ନାମ ଅଛି । ନନ୍ଦରାଜା ଓ ଯଶୋଦାଙ୍କ ନାମାନ୍ୱିତ ନାମ ନାହିଁ, କିନ୍ତୁ ଗୋପଗୋବତ୍ସପାଳକ, ଗୋପବଲ୍ଲଭ, ବୃନ୍ଦାବନ ବିହାରୀ, କଂସାରି, କେଶିନାଶୀ, ମଥୁରାପୁରବାସୀ ନାମ ରହିଛି ।

ଶ୍ରୀବିଷ୍ଣୁ ସହସ୍ରନାମରେ ବିଷ୍ଣୁ ନାମ (ବିଭିନ୍ନ ଅର୍ଥ ଥାଇ) ତିନିଥର ଆସିଛି । ଶ୍ରୀଜଗନ୍ନାଥ ସହସ୍ରମାନରେ ଜଗନ୍ନାଥ ନାମ ଚାରିଥର ଉଲ୍ଲେଖ ଅଛି । ଉଭୟ ସ୍ତୋତ୍ରରେ କୃଷ୍ଣ ଓ ତାଙ୍କର ଅନ୍ୟାନ୍ୟ ଅନେକ ନାମ ରହିଛି । କେତେକ ଧର୍ମଶାସ୍ତ୍ରରେ ବିଷ୍ଣୁ ଓ କୃଷ୍ଣଙ୍କୁ ଏକ ଓ ଅଭିନ୍ନ ଦର୍ଶାଯାଇଛି । ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁ ଶ୍ରୀକୃଷ୍ଣ-ବାସୁଦେବ ଭାବରେ ଅଗ୍ରଜ ଶ୍ରୀବଳଭଦ୍ର ଓ ଅନୁଜା ଦେବୀ ସୁଭଦ୍ରା ସମେତ ବିରାଜିତ ଓ ପୂଜିତ ହେଉଛନ୍ତି ।

ଆଲୋଚ୍ୟ ଶ୍ରୀଜଗନ୍ନାଥ ସହସ୍ରନାମ ସ୍ତୋତ୍ରରେ କେତୋଟି ନାମ ରହିଛି ଯାହାକି କେବଳ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପାଇଁ ପ୍ରଯୁଜ୍ୟ । ତାହା ହେଉଛି- ନୀଳାଦ୍ରୀଶ, ନୀଳାଚଳପତି ନାଥ, ନୀଳାଦ୍ରିସଂରୁଦ୍ଧ, ବିମଳା ପ୍ରୀତିବର୍ଦ୍ଧନ ଏବଂ ଦାରୁରୂପଶ୍ଚନ୍ଦ୍ର ସୂର୍ଯ୍ୟ ବିଲୋଚନ ।

ଏମ୍.-ଏ/୨, ବ୍ରିଟ୍ କଲୋନୀ
ନୟାପଲ୍ଲୀ, ଭୁବନେଶ୍ୱର-୧୨



# 'ଜଗନ୍ନାଥ' ଶବ୍ଦର ସୃଷ୍ଟି ରହସ୍ୟ

ଡକ୍ଟର ଅଶୋକ କୁମାର ମହାନ୍ତି

ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥଙ୍କୁ ଆମେ ସାଧାରଣତଃ ଭଗବାନ ବିଷ୍ଣୁ ବୋଲି ବୁଝିଥାଉଁ । ଅମରସିଂହଙ୍କ କୃତ 'ଅମରକୋଷ'ରେ ଭଗବାନ ବିଷ୍ଣୁଙ୍କର ଅଣଚାଳିଶି ନାମୋଲ୍ଲେଖ ମଧ୍ୟରେ 'ଜଗନ୍ନାଥ' ଶବ୍ଦର ବ୍ୟବହାର ପରିଲକ୍ଷିତ ହୁଏ ନାହିଁ । ଉଡ୍ଡୀୟାନର ତଥା ସମ୍ବଲକ (ସମ୍ବଲପୁର)ର ରାଜା ଇନ୍ଦ୍ରଭୂତି (ଖ୍ରୀଷ୍ଟିୟ ୭୧୭)ଙ୍କଦ୍ୱାରା ରଚିତ 'ଜ୍ଞାନସିଦ୍ଧି' ନାମକ ଗ୍ରନ୍ଥରେ ସନ୍ନିବସିତ ମଙ୍ଗଳାଚରଣରେ 'ଜଗନ୍ନାଥ' ନାମର ପ୍ରଥମ ପ୍ରୟୋଗ ହୋଇଥିବାର ପଣ୍ଡିତମାନେ ପରିକଳ୍ପନା କରିଅଛନ୍ତି । ଯଥା-

'ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜୀନ - ବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ, ଗଗନୋପମଂ ।'
(ଜ୍ଞାନସିଦ୍ଧି-ପ୍ରଥମ ସର୍ଗ-ପ୍ରଥମ ଶ୍ଳୋକ)

'ସର୍ବଦଂ ସର୍ବସତ୍ୱୋ ଯଃ ସର୍ବଜ୍ଞଂ ବରବଜିନଂ
ଭକ୍ତ୍ୟାହଂ ସର୍ବଭାବେନ ବକ୍ଷେତତ୍ ସାଧନଂ ପରମ୍ ।'
(ତତ୍ରୈବ - ଦ୍ୱିତୀୟ ଶ୍ଳୋକ)

ଏଠାରେ କେହି କେହି ବିଦ୍ୱାନ 'ଜଗନ୍ନାଥ' ଶବ୍ଦଟି ବିଶେଷଣ ରୂପେ ବ୍ୟବହୃତ ହୋଇଥିବାର ଯୁକ୍ତି କରିଥାନ୍ତି । କେହି କେହି ବିଦ୍ୱାନ 'ସର୍ବଜୀନ' ସ୍ଥାନରେ 'ସର୍ବଜନ' ହେବାର ପ୍ରାସଙ୍ଗିକତାକୁ ଗୁରୁତ୍ୱ ଦେଇଥାନ୍ତି ।

କେହି କେହି ବିଦ୍ୱାନ ରାଜା ଇନ୍ଦ୍ରଭୂତି ଜଗନ୍ନାଥଙ୍କୁ ଭଗବାନ ବୁଦ୍ଧ ରୂପରେ ସ୍ତୁତିଗାନ କରିଥିବାର କହିଥିବାବେଳେ କେହି କେହି ଶ୍ରୀଜଗନ୍ନାଥ ଜୈନମାନଙ୍କର ଉପାସ୍ୟ ରୂପରେ ପୂଜା ପାଉଥିବାର ଯୁକ୍ତି କରିଥାନ୍ତି ।

ପ୍ରାଚୀନ ଓଡ୍ର ଦେଶରେ ମୁଖ୍ୟତଃ ଓଡ୍ର, ଶବର, ପାଣ, କନ୍ଧ, କୋହ୍ଲ, ସଉରା, ଗଣ୍ଡ, ଜୁଆଙ୍ଗ, ମୁଣ୍ଡା, ମହ୍ଲାର, ହୋ, ଭୂୟାଂ, ବାଥୁଡ଼ି, ହାଡ଼ି, ଡମ, ଚମାର, କୋୟା, ଓରାମ୍, ଖଇରା, ଡଅଁଳା, ସାନ୍ତାଳ ପ୍ରଭୃତି ଜନଜାତି ବାସ କରୁଥିଲେ । ଏ ସଂପର୍କରେ ପଣ୍ଡିତ ନୀଳକଣ୍ଠ ଦାସ କହନ୍ତି- 'ଖ୍ରୀଷ୍ଟୀୟ ସପ୍ତମ କିମ୍ବା ଅଷ୍ଟମ ଶତାବ୍ଦୀ ବେଳକୁ ମୟୂରଭଞ୍ଜ, କେନ୍ଦୁଝର, ସମ୍ବଲପୁର, ସୋନପୁର, ପାଟଣା ଓ ଘୁମୁସର ତଥା ଅନ୍ୟାନ୍ୟ ସୀମାନ୍ତ ଅଞ୍ଚଳକୁ ଉଡ୍ଡୀୟାନ କୁହାଯାଉଥିଲା । ଏଠାରେ ଶବରମାନେ ହିଁ ବହୁସଂଖ୍ୟାରେ ବସତି ସ୍ଥାପନ କରିଥିଲେ । ସେମାନେ ଆବହମାନ କାଳରୁ ନିମ୍ବକାଠ ନିର୍ମିତ ଶବରୀ ନାରାୟଣ ମୂର୍ତ୍ତି ଉପାସନା କରିଆସୁଥିଲେ । ବୋଧହୁଏ ଏହିମାନେ ପୁରୀ ଜଗନ୍ନାଥଙ୍କୁ ନିମ୍ବକାଠରେ ଗଢ଼ି ନିଜର କରି ରଖିଥିଲେ ।

ବିଶ୍ୱାବସୁ ଶବର ପୂଜିତ ନୀଳମାଧବ ପରବର୍ତ୍ତୀ 'ଜଗନ୍ନାଥ' ବୋଲି ଅନେକଙ୍କ ମତ । ଡଃ ସତ୍ୟନାରାୟଣ ରାଜଗୁରୁ ଜନଜାତିମାନଙ୍କର ଧର୍ମ ଧାରଣା ସଂପର୍କରେ ମତାମତ ଦେବାକୁ ଯାଇ କହନ୍ତି, 'ପାର୍ବତ୍ୟ ଜାତି କାଷ୍ଠ ବା ପାଷାଣରେ ଦେବତ୍ୱ ଆରୋପ କରି ପୂଜା କରୁଥିଲେ । ଖ୍ରୀ:ପୂ: ୧୫୦୦ ବା ୧୦୦୦ ବର୍ଷ ମଧ୍ୟରେ ପାର୍ବତ୍ୟ ଜାତିମାନଙ୍କ ମଧ୍ୟରେ ଯେଉଁ କାଷ୍ଠ ନିର୍ମିତ ସ୍ତମ୍ଭ ଭୂମିରେ ପ୍ରୋଥିତ ହୋଇ ପୂଜା ପାଉଥିଲେ ତାହା କେତେକ





ନିର୍ଦ୍ଦିଷ୍ଟ ବୃକ୍ଷର ଅଂଶ ବିଶେଷ । ସାଧାରଣତଃ ବଟ, ଅଶ୍ୱତ୍ଥ, ରୋହିଣୀ, ନିମ୍ବ ପ୍ରଭୃତି ବୃକ୍ଷ ହିଁ ଆରାଧନା ପାଇଁ ପ୍ରକୃଷ୍ଟ ଉପାଦାନ ରୂପେ ଗୃହୀତ ହେଉଥିଲା ।'

ଏହି ସ୍ତମ୍ଭ ବା ଖମ୍ବ ଉପାସକ ଆଦିମ ଆଦିବାସୀ ତଥା ଶବରମାନଙ୍କ ଆରାଧ୍ୟ ଦେବତାଙ୍କୁ 'ଜଗନ୍ତ' ବୋଲି କୁହାଯାଏ । ଶୈବଧର୍ମର ପ୍ରତୀକ ଲିଙ୍ଗ ଉପାସନା ବୋଧହୁଏ ଏହି ପାଷାଣ ବା କାଠ ସ୍ତମ୍ଭ ଉପାସନାରୁ ହିଁ ସୃଷ୍ଟି ହୋଇଛି ବୋଲି ଅନେକଙ୍କ ମତ ।

ହରପ୍ପା, ମହେଞ୍ଜୋଦାରୋ ମାଟିତଳୁ ଜୈନତୀର୍ଥଙ୍କରଙ୍କର ମୂର୍ତ୍ତି ଦୃଷ୍ଟିଗୋଚର ହୁଏ । ବେଦରେ ମୂର୍ତ୍ତି ପୂଜାର ଉଲ୍ଲେଖ ନଥିଲାବେଳେ ଜୈନମାନେ ଯେ ମୂର୍ତ୍ତି ପୂଜା କରୁଥିଲେ, ଏହା ତାହାର ବଳିଷ୍ଠ ପ୍ରମାଣ । ପାର୍ଶ୍ୱନାଥ ନାମକ ଜୈନ ସନ୍ନ୍ୟାସୀ ଖ୍ରୀ:ପୂ:୮ମ ଶତାବ୍ଦୀରେ ଓଡ଼ିଶାର ଖଣ୍ଡଗିରିଠାରୁ ଜୈନଧର୍ମର ପ୍ରଚାର କରିଥିବାର ପ୍ରମାଣ ମିଳେ । ପାର୍ଶ୍ୱନାଥଙ୍କ ଶିଷ୍ୟ କଳିଙ୍ଗ ରାଜା କରକଣ୍ଡୁ ପୁରୁଷୋତ୍ତମ କ୍ଷେତ୍ରରେ ଅନ୍ୟତମ ଜୈନ ତୀର୍ଥଙ୍କର ଋଷଭନାଥଙ୍କ ମୂର୍ତ୍ତି ସ୍ଥାପନା କରିବା ଓ ତାଙ୍କର ପରବର୍ତ୍ତୀ ନାମ 'ଜୀନନାଥ' ଥିବାର ପ୍ରମାଣ ମିଳେ । ଋଷଭନାଥ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଗର୍ଭସ୍ଥ ହୋଇଥିଲେ ବୋଲି ଜୈନ ସଂସ୍କୃତିରେ ଏହି ଦିବସର ମହତ୍ୱ ରହିଛି । ଏହିଦିନ ମଧ୍ୟ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ପାଳନ କରାଯାଉଅଛି । ଖ୍ରୀ:ପୂ: ଚତୁର୍ଥ ଶତାବ୍ଦୀରେ ମଗଧର ରାଜା ମହାପଦ୍ମନନ୍ଦ 'ଜୀନାସନ' ବା 'ବିଗ୍ରହ'କୁ ପାଟଳିପୁତ୍ର ନେଇଯିବା ଓ ଖ୍ରୀ:ପୂ: ପ୍ରଥମ ଶତାବ୍ଦୀରେ ଖାରବେଳ ମଗଧର ରାଜା ବୃହସ୍ପତି ମିତ୍ରଙ୍କୁ ପରାସ୍ତ କରି 'ଜୀନାସନ'କୁ ଉତ୍କଳକୁ ଫେରାଇ ଆଣିବା, ହାତୀଗୁମ୍ଫା ଶିଳାଲେଖରୁ ଜଣାଯାଏ । ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀରେ ମହାବୀର ବର୍ଦ୍ଧମାନ କୁମାର ଗିରି (ଉଦୟଗିରି)ରୁ ଜୈନଧର୍ମ ପ୍ରଚାର କରିଥିବାର ପ୍ରମାଣ ମିଳେ । ଦ୍ୱାବିଂଶ ଜୈନତୀର୍ଥଙ୍କରଙ୍କୁ ନେଇ 'ବାଇଶିପାହାଚ'ର ପରିକଳ୍ପନା ଓ 'କଳ୍ପବଟ' ବା 'ବାଞ୍ଛାବଟ'ର ପରିକଳ୍ପନା ଉତ୍କଳରେ ଜୈନଧର୍ମର ପ୍ରାଚୀନତାକୁ ସୁସ୍ପଷ୍ଟ କରେ । 'ନାଥ' ଶବ୍ଦଟି ଜୈନମାନଙ୍କର ତୀର୍ଥଙ୍କରମାନଙ୍କ ନାମସହ ଯୋଡ଼ା ଯାଇଥାଏ । ଏଣୁ ଶାବର ବା ଅଷ୍ଟ୍ରିକ୍ ଶବ୍ଦ 'ଜଗନ୍ତ' ପରବର୍ତ୍ତୀ ସମୟରେ ତତ୍ସମ ଶବ୍ଦ 'ଜଗତ'ରେ ପରିଣତ ହୋଇ ଜୈନମାନଙ୍କ ନାଥ ଶବ୍ଦ ଯୋଗରେ 'ଜଗନ୍ନାଥ' ଶବ୍ଦ ହୋଇଥିବାରେ କୌଣସି ଅପ୍ରାସଙ୍ଗିକତା ନାହିଁ ।

ଜଗନ୍ତ (ଅଷ୍ଟ୍ରିକ) > ଜଗତ (ତତ୍ସମ) । ଜଗତ + ନାଥ = ଜଗନ୍ନାଥ

ଅନ୍ୟପକ୍ଷରେ ରାଜା ଇନ୍ଦ୍ରଭୂତି ବଜ୍ରଯାନୀ ବୌଦ୍ଧ ଥିବାରୁ ବୌଦ୍ଧ ଧର୍ମାବଲମ୍ବୀମାନେ ଜଗନ୍ନାଥଙ୍କୁ ନିଜର ଉପାସ୍ୟ ଦେବତା ରୂପେ ଗ୍ରହଣ କରି ନେଇଥିବା କୁହାଯାଇପାରେ । ବୌଦ୍ଧ ତାନ୍ତ୍ରିକ ବଜ୍ରଯାନରେ ଉଡ୍ଡୀୟାନ ଆଦି ପୀଠ ରୂପେ ଗୃହୀତ ହୋଇଥିବା କଥା ଗବେଷକମାନେ ସ୍ୱୀକାର କରନ୍ତି । ପଣ୍ଡିତ ନୀଳକଣ୍ଠ ଦାସ 'ଗୀତା ପ୍ରବେଶ'ରେ ଉଲ୍ଲେଖ କରିଛନ୍ତି, 'ଏଠାରେ ମନେ ରଖିବାକୁ ହେବ ଜଗନ୍ନାଥ କଥାଟି ବୁଦ୍ଧଙ୍କ ନିଜ ଉକ୍ତି ।' ବୁଦ୍ଧ ହେଲାବେଳେ ଓ ଦେହତ୍ୟାଗ କଲାବେଳେ ବୁଦ୍ଧ କହି ପକାଇଥିଲେ, 'ମୁଁ ଜଗତର ନାଥ - ଜଗତର ଦୁଃଖନାଶର ଉପାୟ ମୁଁ ପାଇଛି ।' ସେହିଦିନଠାରୁ ବୌଦ୍ଧ ଧର୍ମାବଲମ୍ବୀମାନେ ବୁଦ୍ଧଙ୍କ ଉପାସନା କଲାବେଳେ ତାଙ୍କୁ 'ଜଗନ୍ନାଥ' ଓ 'ଜଗନ୍ନାଥ' କହିଲେ 'ବୌଦ୍ଧାବତାର'ଙ୍କୁ ହିଁ ବୁଝନ୍ତି ।

ମହାଯାନ ବୌଦ୍ଧ ଧର୍ମରେ କାଳକ୍ରମେ ଦୁଇଟି ମତ ଦେଖାଦେଇଥିଲା । ପାରମିତାନୟ ଓ ମନ୍ତ୍ରନୟ । ମନ୍ତ୍ରନୟରେ ତାନ୍ତ୍ରିକ ସାଧନାର ବିକାଶ ଘଟିଲା । ମହାଯାନ ସିଦ୍ଧାନ୍ତ ସମ୍ମତ ବୁଦ୍ଧକାୟାର ତିନୋଟି ସତ୍ତା ଧର୍ମକାୟା, ସମ୍ଭୋଗ କାୟା ଓ ନିର୍ମାଣ କାୟା ସହ ବଜ୍ରକାୟା ସଂଯୁକ୍ତ ହେଲା ଏବଂ ଶୂନ୍ୟତା ଓ ବିଜ୍ଞାନ ସଂଗେ ମହାସୁଖ ବିକଶିତ ହେଲା । ଶୂନ୍ୟର ରୂପାନ୍ତର ହୋଇ ବଜ୍ରଯାନର ଭିତ୍ତି ପଡ଼ିଲା ।

ସାରଳା, ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଆଦି ଓଡ଼ିଶାର ପ୍ରାଚୀନ କବିମାନେ ଜଗନ୍ନାଥଙ୍କୁ ପାଦପାଣିବିହୀନ ଶୂନ୍ୟର ପ୍ରତୀକ ବୁଦ୍ଧମୂର୍ତ୍ତି ରୂପେ ଗ୍ରହଣ କରିଛନ୍ତି । ବଜ୍ରଯାନ ପ୍ରବର୍ତ୍ତନ ସମୟ କାଳ ଠିକଣା ଭାବେ ଜଣାନଥିଲେ ମଧ୍ୟ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ମଧ୍ୟରେ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରି ପରମ ବଜ୍ରୀ ବୌଦ୍ଧାବତାର ରୂପେ ଉପାସନା କରିଆସୁଥିଲେ ।

ମନ୍ତ୍ର, ମୁଦ୍ରାମଣ୍ଡଳ, ଦେବଦେବୀ ପୂଜା, ଧ୍ୟାନ ଧାରଣା, ଗୁହ୍ୟ ଯୋଗସାଧନାର ପ୍ରବର୍ତ୍ତନ ହୋଇ କାଳଚକ୍ରଯାନ ଓ ସହଜ ଯାନର ପ୍ରବର୍ତ୍ତନ ହେଲା । ଇନ୍ଦ୍ରଭୂତିଙ୍କର ଭଉଣୀ ଲକ୍ଷ୍ମୀଙ୍କର ଉଡ୍ଡୀୟାନ ପୀଠରେ ସହଜ ଯାନର ସାଧିକା ଥିଲେ । ସହଜ ଯାନରେ ମନୁଷ୍ୟ ମହାସୁଖ ଲାଭ ପାଇଁ ତା'ର ସ୍ୱାଭାବିକ ବୃତ୍ତି ସମୂହକୁ କଷ୍ଟପୂର୍ବକ ଅବଦମିତ ନକରି ସେ ସବୁର ରୂପାନ୍ତର ଓ ଉଦ୍‌ଗତିଦ୍ୱାରା ସତ୍ୟ ଉପଲବ୍‌ଧି କରିପାରେ ବୋଲି ବିଶ୍ୱାସ ଜନ୍ମିଲା ।

ବୌଦ୍ଧ ଧର୍ମର କେତେକ ବିଶିଷ୍ଟ ତଥ୍ୟ ଓ ସଂଜ୍ଞାସହ ନାଥପନ୍ଥୀମାନଙ୍କର ଅନେକ ସାଦୃଶ୍ୟ ପରିଲକ୍ଷିତ ହୁଏ । ବସ୍ତୁତଃ ନାଥଧର୍ମ ମଧ୍ୟରେ ବୌଦ୍ଧଧର୍ମ ଆତ୍ମରକ୍ଷା ପାଇଁ ଶେଷ ଉଦ୍ୟମ କରି ନାଥ ଧର୍ମର 'ନାଥ' ଶବ୍ଦ, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ଯୋଗ ଆଦି ଗ୍ରହଣ କରିଥିଲା । ନାଥଗୁରୁମାନଙ୍କ ମଧ୍ୟରେ ଅନେକ ସହଜିଆ - ସିଦ୍ଧ ସମାଜର ଅନ୍ତର୍ଭୁକ୍ତ ଥିଲେ । ଗୋରକ୍ଷନାଥ, ମୀନନାଥ, ଚୌରଙ୍ଗୀନାଥ ଇତ୍ୟାଦି ନାଥଗୁରୁମାନଙ୍କ ନାମରୁ 'ନାଥ' ଶବ୍ଦ ଗ୍ରହଣ କରି ଆଦିବାସୀ ବା ଶବରମାନଙ୍କ ଆରାଧ୍ୟ ଦେବତା 'ଜଗନ୍ତ'ଙ୍କ ସହ ସମନ୍ୱୟ ରକ୍ଷାକରି ଜଗତନାଥ ବା 'ଜଗନ୍ନାଥ' ଶବ୍ଦ ସୃଷ୍ଟି ହେବା ଅନୁମେୟ ।

ଜଗନ୍ତ > ଜଗତ + ନାଥ = ଜଗନ୍ନାଥ

ତେଣୁ 'ଜ୍ଞାନସିଦ୍ଧି'ର ମଙ୍ଗଳାଚରଣରେ ବର୍ଣ୍ଣିତ ଜଗନ୍ନାଥ ଶବ୍ଦ ନାମବାଚକ ବିଶେଷ୍ୟ । ଇନ୍ଦ୍ରଭୂତିଙ୍କ ସମୟକୁ ଓଡ଼ିଶାରେ ଜୈନ ଓ ବୌଦ୍ଧ ଧର୍ମର ପ୍ରସାର ଘଟିସାରି ନାଥ ସମ୍ପ୍ରଦାୟର ଉଦ୍ଭବ ହୋଇଯାଇଛି । ତେଣୁ ରାଜା ଇନ୍ଦ୍ରଭୂତି ବଜ୍ରଯାନୀ ବୌଦ୍ଧ ଥାଇ ମଧ୍ୟ 'ସର୍ବଜୀନ - ବରାର୍ଚ୍ଚିତ' କହିବାରେ ଆପତ୍ତି ନାହିଁ । ଯଦି ବ୍ରାହ୍ମଣମାନେ ପରବର୍ତ୍ତୀ ସମୟରେ ଶ୍ରୀଜଗନ୍ନାଥଙ୍କୁ ବୌଦ୍ଧାବତାର ବୋଲି ଗ୍ରହଣ କରିପାରିଲେ ତେବେ ଇନ୍ଦ୍ରଭୂତି ଜଗନ୍ନାଥଙ୍କୁ ଜୈନମାନଙ୍କଦ୍ୱାରା ଅର୍ଚ୍ଚିତ କହିବାରେ ଆପତ୍ତି କାହିଁକି ରହିବ ? ସୁତରାଂ 'ସର୍ବଜୀନ' ସ୍ଥାନରେ 'ସର୍ବଜନ' ଲେଖି ଶାସ୍ତ୍ରକୁ ଅଶୁଦ୍ଧ ଦର୍ଶାଇ ଆମେ ଆମର ବିଜ୍ଞତା ଦର୍ଶାଇବା ଧୃଷ୍ଟତା ମାତ୍ର । ବରଂ ଇନ୍ଦ୍ରଭୂତି ନିଜର ଆରାଧ୍ୟଙ୍କର କୃପା ଭିକ୍ଷାକରି କହିଛନ୍ତି, 'ଯିଏ ଶ୍ରେଷ୍ଠ ଜୀବମାନଙ୍କ ଦ୍ୱାରା ଅର୍ଚ୍ଚିତ, ଯିଏ ସର୍ବ ବୁଦ୍ଧମୟ, ଯାହାଙ୍କ ସିଦ୍ଧି ଗଗନତୁଲ୍ୟ ପରିବ୍ୟାପ୍ତ, ଯିଏ ସବୁ ଦାନ କରନ୍ତି, ଯିଏ ସର୍ବ ସତ୍ତ୍ୱରେ ପ୍ରକାଶିତ, ସବୁ ଜାଣନ୍ତି, ବଜ୍ରଯାନୀଙ୍କ ମଧ୍ୟରେ ଶ୍ରେଷ୍ଠ ସେହି ଜଗନ୍ନାଥଙ୍କୁ ମୁଁ ଭକ୍ତିରେ ପ୍ରଣାମ କରି ତାହାଙ୍କ ସାଧନାର ଉପାୟ କହୁଅଛି ।'

ରାଜା ଇନ୍ଦ୍ରଭୂତି ଜୈନ ଓ ବୌଦ୍ଧମାନଙ୍କର ଆରାଧ୍ୟ ବୋଲି 'ଜଗନ୍ନାଥ'ଙ୍କୁ ସମ୍ବୋଧନ କରିବାରେ 'ଜଗନ୍ନାଥ' ସମଗ୍ର ଓଡ୍ର ଜନଜାତି ସମେତ ସର୍ବଜନମାନ୍ୟ ରାଷ୍ଟ୍ରଦେବତାର ସ୍ୱୀକୃତି ଓ ସମ୍ମାନ ପାଇ ପୂଜିତ ହୋଇଥିଲେ ।

**ସହାୟକ ଗ୍ରନ୍ଥସୂଚୀ**


୧. ଓଡ଼ିଆ ସାହିତ୍ୟର କ୍ରମ ପରିଣାମ - ପଣ୍ଡିତ ନୀଳକଣ୍ଠ ଦାସ

୨. ଓଡ଼ିଶାର ରାଷ୍ଟ୍ର ଦେବତା ଶ୍ରୀଜଗନ୍ନାଥ - ଡଃ ସତ୍ୟନାରାୟଣ ରାଜଗୁରୁ - ଆମ ଜଗନ୍ନାଥ ଆମ ସଂସ୍କୃତି-ସଂ, ପରମା ନନ୍ଦ ଅଧିକାରୀ

୩. ଓଡ଼ିଶା ଇତିହାସ (ପ୍ରଥମ ଭାଗ) - ଡଃ ଯଜ୍ଞ କୁମାର ସାହୁ

୪. ଓଡ଼ିଶା ଇତିହାସ - ଡଃ ହରେକୃଷ୍ଣ ମହତାବ

୫. ଗୀତା ପ୍ରବେଶ - ପଣ୍ଡିତ ନୀଳକଣ୍ଠ ଦାସ

୬. ଆଶ୍ଚର୍ଯ୍ୟଚର୍ଯ୍ୟାଚୟ - ଡଃ କରୁଣାକର କର

୭. ଚର୍ଯ୍ୟା ଗୀତିକା - ଡଃ ଖଗେଶ୍ୱର ମହାପାତ୍ର

୮. ଓଡ଼ିଆ ସାହିତ୍ୟର ଆଦିପର୍ବ - ସୁରେନ୍ଦ୍ର ମହାନ୍ତି

୯. ଶ୍ରୀଜଗନ୍ନାଥ ଓ ଜୈନଧର୍ମ - ଗଙ୍ଗୋତ୍ରୀ ଦେବୀ, ଉତ୍କଳ ପ୍ରସଙ୍ଗ, ରଥଯାତ୍ରା ବିଶେଷାଙ୍କ-୨୦୦୮

୧୦. ଶ୍ରୀଜଗନ୍ନାଥଙ୍କ ଉତ୍ପତ୍ତି - ଡଃ ହରିହର କାନୁନ୍‌ଗୋ - ତତ୍ରୈବ

୧୧. Buddhism in Orissa - Dr. Naveen Kumar Sahu

୧୨. The Cult of Jagannath - Dr. Kanhu Charan Mishra.


ଅଧ୍ୟାପକ
ଡେଲାଙ୍ଗ ମହାବିଦ୍ୟାଳୟ
ଡେଲାଙ୍ଗ, ପୁରୀ







# ଦେବ ଦେବ ଜଗନ୍ନାଥ ସର୍ବତୀର୍ଥ ପ୍ରବର୍ତ୍ତକ

ମଧୁସୂଦନ ପଟ୍ଟନାୟକ

**ଭା**ରତର ମୁଖ୍ୟ ଚାରିଧାମ ଭିତରେ କଳିଯୁଗର ଶ୍ରେଷ୍ଠଧାମ ପୁରୁଷୋତ୍ତମ କ୍ଷେତ୍ର କିମ୍ବା ଜଗନ୍ନାଥ ଧାମର ସେବାପୂଜାରେ ସାମାଜିକ ଦୃଢ଼ତାକୁ ସ୍ୱୀକାର କରାଯାଇନାହିଁ । ପ୍ରତ୍ୟେକ ଜାତିକୁ ସମ୍ମାନ ଦେବା ପୁରୁଷୋତ୍ତମ ଚେତନାର ମୂଳ ନୀତି । ଘୃଣା, ଅସମ୍ମାନକୁ ଏଠାରେ ଜଘନ୍ୟ ଅପରାଧ ମନେ କରାଯାଏ । ସେବାପୂଜାରେ ଏକ ନିର୍ଦ୍ଦିଷ୍ଟ ଉଚ୍ଚ ଜାତିର ଅଧିକାର ସାବ୍ୟସ୍ତ ଜଗନ୍ନାଥଧାମରେ ନଥାଏ । ସମନ୍ୱୟ ଭାବକୁ ହୃଦୟରେ ଧାରଣ କରି ଏହି ଭାବ ଉଜ୍ଜୀବିତ ହୋଇଅଛି । ଏହା ହିଁ ପବିତ୍ର ମାର୍ଗ ।



ପୁରୁଷୋତ୍ତମ କ୍ଷେତ୍ରରେ ପ୍ରତ୍ୟେକ ଜାତିକୁ ସ୍ୱଧର୍ମ ପରିସର ମଧ୍ୟରେ ପୃଥକ୍ ମନେ କରାଯାଏ ସିନା, ଭଗବାନଙ୍କ ଦରବାରରେ ପ୍ରତ୍ୟେକ ଜାତିର ମର୍ଯ୍ୟାଦା ସମାନ । ବୈଦିକ ବ୍ରାହ୍ମଣ ପୂଜାର୍ଚ୍ଚନା ସମୟରେ ବୈଶ୍ୟ ହାତରୁ ଜଳ ଗ୍ରହଣ କରେ । ନିକୃଷ୍ଟ ବ୍ରାହ୍ମଣ ପୂଜା ଦ୍ରବ୍ୟ ପୂଜାରେ ବିନିଯୋଗ କରେ । ବୈଶ୍ୟ ଚନ୍ଦନ ଘୋରି ଭଗବାନଙ୍କ ପାଇଁ ପ୍ରସ୍ତୁତ କରେ । ପରିଚ୍ଛା ବ୍ରାହ୍ମଣ ଉତ୍ସବ କାଳରେ ଅନ୍ୟମାନଙ୍କ ସହିତ ସମାନ ସମାନ ଭାବେ ଭଗବାନଙ୍କ ଆଗରେ ଯାଏ । ଏହା ଏକ ସମନ୍ୱୟ ଭାବର ନିଦର୍ଶନ, ଏଥିରେ ସନ୍ଦେହ ନାହିଁ ।

ଭିତରେ ପୂଜା ବସିଥିବା ସମୟରେ ବ୍ରାହ୍ମଣ ଇତର ବ୍ୟକ୍ତି ମନ୍ଦିର ଉପରେ ପତାକା ବାନ୍ଧୁଥାଏ । ବେଦ ଏହାକୁ ସମର୍ଥନ କରେ ନାହିଁ । ଭଗବାନଙ୍କ ଅଙ୍ଗରୁ ଶୃଙ୍ଖଳ ବସ୍ତ୍ର ବାରିକ ଖୋଲେ । ଭଗବାନଙ୍କ ଶୋଭାଯାତ୍ରାରେ ପୂର୍ଣ୍ଣକୁମ୍ଭ ନେଇ ଆଗେ ଆଗେ ଚାଲେ । ଭଗବାନଙ୍କ ପୂଜା ସମୟରେ ଇତର ବ୍ରାହ୍ମଣ ଯାଇପାରିବ ନାହିଁ । କିନ୍ତୁ ଏଠାକୁ ଚିରାଚରିତ ଦେବଦାସୀ ଯାଇ ସେବା କରିପାରିବ । ଭଗବାନଙ୍କ ପ୍ରସିଦ୍ଧ ପବିତ୍ର ରଥ ନିର୍ମାଣରେ 'ଭୋଇ' ମୁଖ୍ୟାଧିକାରୀ ହୋଇଥାଏ । ଗୁପ୍ତପୂଜାର ଆବରଣ ନିର୍ମାଣରେ 'ଡମ'କୁ ସେବାଧିକାର ମିଳିଥାଏ । ସେବାର ମର୍ଯ୍ୟାଦାର ଅଭିବୃଦ୍ଧି ପାଇଁ ଗୋପାଳ ଭଗବାନଙ୍କ ବନ୍ଦାପନା ନିଜ ହାତରେ କରେ । ସଫା ଓ ଓଳାଇବା କାର୍ଯ୍ୟରେ ଖଡ଼ିକାସେବା ନୀଚ ଜାତିର ସେବା ହେଲେ ମଧ ସେମାନଙ୍କୁ ଯଥୋଚିତ ସମ୍ମାନ ଦିଆଯାଇଥାଏ । ଶବରଧର୍ମ ଶାସ୍ତ୍ରରେ ନିକୃଷ୍ଟ ହେଲେ ମଧ ଜଗନ୍ନାଥ ମନ୍ଦିରରେ ଶବର ଜାତିକୁ ଏତେ ପ୍ରାଧାନ୍ୟ ଦିଆଯାଏ ଯେ ଉଚ୍ଚ ଜାତିକୁ ଏତେ ଦିଆଯାଇନଥାଏ ।

କ୍ଷତ୍ରୀୟକୁ ମାର୍ଜନୀୟ କାର୍ଯ୍ୟ କିମ୍ବା ହାତରେ ଖଡ଼ିକାଝାଡୁ ଧରିବା ମନା, କିନ୍ତୁ ଜଗନ୍ନାଥ ମନ୍ଦିରରେ ଶ୍ରେଷ୍ଠ ସେବକ ଗଜପତି ମହାରାଜା ଏବଂ ନେପାଳରାଜା ସେବକକାର୍ଯ୍ୟରେ ନିଯୁକ୍ତ ହୋଇଥାନ୍ତି । ସାମନ୍ତ ଶ୍ରେଷ୍ଠ ଗଜପତି ମହାରାଜା ଝାଡୁ ନେଇ ଭଗବାନଙ୍କ ସମ୍ମୁଖରେ ରଥ ଉପରେ ସଫା କରନ୍ତି । କି ସମ୍ମୁନ୍ନତ ଚିନ୍ତାଧାରା ! ସର୍ବଶ୍ରେଷ୍ଠ ଅଧିକାରୀ ବ୍ୟକ୍ତି ମଧ ସର୍ବ ନିକୃଷ୍ଟ କାର୍ଯ୍ୟସେବାରେ ନିୟୋଜିତ ହୋଇଥାନ୍ତି ।

ପ୍ରଭୁ ଜଗନ୍ନାଥଙ୍କର ଅପାର ମଧୁର ନାମ ପତିତପାବନ ଅଟେ । ଏହି ନାମର ଅନ୍ତରାଳରେ (ପତିତପାବନ) ଦୁଇଟିର ସମୃଦ୍ଧ ଭାବ ନିହିତ ଅଛି । ଏହି ଭାବକୁ ନେଇ ଓଡ଼ିଶାରେ ଦଶ ପ୍ରତିଶତ ନାମକରଣ ହୋଇଥାଏ । ଯେପରିକି ହାଡ଼ିବନ୍ଧୁ, ଦୀନବନ୍ଧୁ, ଧୋବୀ ନାମ ସୁବିଦିତ । ମୂର୍ତ୍ତିଗୁଡ଼ିକୁ ଦେଖନ୍ତୁ ତ । ବେଦକାର

କହନ୍ତି - ଉଲଗ୍ନ ଭଗ୍ନ ମୂର୍ତ୍ତି ଅପୂଜନୀୟ । କିନ୍ତୁ ପୁରୁଷୋତ୍ତମ କ୍ଷେତ୍ରରେ ତ୍ରିମୂର୍ତ୍ତି ଏହି ଦୃଷ୍ଟିକୋଣରୁ ଅପୂର୍ଣ୍ଣତା ଭିତରେ ପୂର୍ଣ୍ଣତା ଲାଭ କରିଛନ୍ତି । ମନ୍ଦିରର ଚତୁଃପାର୍ଶ୍ୱରେ ଉଲଗ୍ନ ମୂର୍ତ୍ତିମାନ ଅସ୍ଥାନିତ । ଏହା କ'ଣ ଧର୍ମଶାସ୍ତ୍ରକୁ ଉଲଙ୍ଘନ କରୁ ନାହିଁ ? ନା ।

ସୂର୍ଯ୍ୟୋପରାଗ ଓ ଚନ୍ଦ୍ରଗ୍ରହଣ ଲାଗିଥିବା ସମୟରେ ସାରା ଭାରତରେ ଦେବସେବା ବନ୍ଦଥାଏ । କିନ୍ତୁ ଜଗନ୍ନାଥ କ୍ଷେତ୍ରରେ ଭଗବାନଙ୍କ ନେତ୍ର ଯୁଗଳକୁ ଚନ୍ଦ୍ର ସୂର୍ଯ୍ୟ ମାନି ସ୍ନାନ ଓ ନୈବେଦ୍ୟ ଏହି ସମୟରେ ସମର୍ପିତ ହୁଏ । କ'ଣ ଏହା ଧର୍ମଶାସ୍ତ୍ର ନିର୍ଦ୍ଦେଶିତ ମାର୍ଗ ? ବିଶିଷ୍ଟ ଦ୍ୱୈତବାଦାଚାର୍ଯ୍ୟ ଶ୍ରୀ ରାମାନୁଜ ଦ୍ୱାଦଶ ଶତାବ୍ଦୀରେ ପୁରୁଷୋତ୍ତମ କ୍ଷେତ୍ରରେ ବେଦ ବିରୁଦ୍ଧ ଭାବକୁ ପରିବର୍ତ୍ତନ କରିବାକୁ ପ୍ରଗାଢ଼ ଉଦ୍ୟମ କରିଥିଲେ ।

ଭଗବାନଙ୍କ ପାଖରେ ଭେଦାଭେଦ ମୂଲ୍ୟହୀନ । ଗୀତାର ଏହି ଧର୍ମ ପୁରୁଷୋତ୍ତମ କ୍ଷେତ୍ରରେ ପ୍ରତିଭାତ ହୁଏ । ପ୍ରତ୍ୟେକ ଉପଜାତି ଜଗନ୍ନାଥଙ୍କର ସେବକ । ବ୍ରାହ୍ମଣ ଇତର ପଦଧାରୀ ବ୍ୟକ୍ତି ମଧ୍ୟ ଉପବୀତ ଗ୍ରହଣ କରିଥାଏ । ଉପସଂହାରରେ ଭଗବାନଙ୍କ କୈବଲ୍ୟ ଅର୍ଥାତ୍ ମହାପ୍ରସାଦକୁ ପ୍ରଣାମ କରି କହୁଛି ଯେ ଅନ୍ନକୁ ଧର୍ମଶାସ୍ତ୍ର ଶୌଚାଶୌଚରେ ମୁଖ୍ୟସ୍ଥାନ ଦେଲେ ମଧ୍ୟ ପୁରୁଷୋତ୍ତମ କ୍ଷେତ୍ରରେ ଭୋଜନ ସମୟରେ ଜାତି ବିଚାରକୁ ସମ୍ପୂର୍ଣ୍ଣ ରୂପରେ ବିଲୋପ କରାଯାଇଛି । କଥିତ ଅଛି - 'ଜଗନ୍ନାଥଙ୍କର ଭାତ, ଜଗତ ପ୍ରସାରେ ହାତ ।'

ପୌରାଣିକ ସାହିତ୍ୟ ବାରମ୍ବାର ହାତ ଠାରି କହୁଛି - ଜଗନ୍ନାଥଙ୍କ ମହାପ୍ରସାଦରେ ଜାତି ବିଚାର ସ୍ପୃଶ୍ୟ ଅସ୍ପୃଶ୍ୟ ଭାବ ନାହିଁ । ପ୍ରାଚୀନ କାଳରେ ଆର୍ଯ୍ୟ ସଂସ୍କୃତି ଭାରତବର୍ଷରେ ପ୍ରତିଷ୍ଠିତ ଥିଲା । ଯାହାକି ପ୍ରାଚୀନ କାଳରୁ ଅଦ୍ୟାବଧି ନୂତନ ସଂସ୍କାରକୁ ପ୍ରୋତ୍ସାହିତ କରୁଛି । ସେବାପୂଜାର ପରମ୍ପରାରେ ଏହି ଭାବ ସ୍ପଷ୍ଟ ବିଦିତ । ପୁରୁଷୋତ୍ତମଙ୍କୁ ଭକ୍ତ ଉପାସକ ଭାବବିହ୍ୱଳିତ ହୋଇଯିବା ହେତୁ ଧର୍ମଶାସ୍ତ୍ର ଆଚାରକୁ ମଧୁର ବିଦ୍ରୂପ କରାଯାଇଛି । ଦୃଷ୍ଟାନ୍ତ ସ୍ୱରୂପ ଯାହାର ନାମ ଜପକଲେ ବ୍ୟକ୍ତି ଜ୍ୱରମୁକ୍ତ ହୋଇଯାଏ, ତାଙ୍କୁ କ'ଣ କେବେ ଜ୍ୱର ଆକ୍ରାନ୍ତ କରିପାରେ ? କିନ୍ତୁ ଜ୍ୟେଷ୍ଠ ପୂର୍ଣ୍ଣିମାଠାରୁ ଆଷାଢ଼ ଅମାବାସ୍ୟା ପର୍ଯ୍ୟନ୍ତ ଜଗନ୍ନାଥ ଜ୍ୱରଗ୍ରସ୍ତ ଯୋଗୁଁ ଦର୍ଶନ ବନ୍ଦ ରହେ । ଏହି ସମୟତକ ଶବର ଅର୍ଚ୍ଚକଗଣ ବିନାମନ୍ତ୍ରରେ ଆଦିମ ପୂଜା କରନ୍ତି ।

ପ୍ରତି ୧୨ ବର୍ଷରୁ ୧୮ ବର୍ଷ ମଧ୍ୟରେ କଳେବର ଆଡ଼ମ୍ବର ସହକାରେ ଭଗବାନଙ୍କର ଗୋଲକ ଗମନଲୀଳା ଶବର ଜାତି ବଡ଼ ଆତ୍ମୀୟ ଭାବରେ ପାଳନ କରେ । ଯେପରିକି ସାଧାରଣ ମନୁଷ୍ୟ ଶରୀର ତ୍ୟାଗ କରେ, ଆତ୍ମୀୟସ୍ୱଜନ ଶୋକାକୁଳ ହୁଅନ୍ତି । ସେହି ପ୍ରକାର ଶବର ସେବକଗଣ ଶୋକ ସାଗରରେ ନିମଜ୍ଜିତ ରହି ଅନ୍ତ୍ୟେଷ୍ଟିକ୍ରିୟାର ସମାପନ କରନ୍ତି । ଯେପରିକି କୃଷ୍ଣଙ୍କର ତିରୋଧାନ ପରେ ପାଣ୍ଡବମାନେ ଶ୍ରାଦ୍ଧାଦି କ୍ରିୟା କରିଥିଲେ । ଧର୍ମଶାସ୍ତ୍ରରେ ଏହି ବିଚାର ସଂପୂର୍ଣ୍ଣ ପୃଥକ୍ ଅଟେ । ଶବରମାନେ ଭାବାବେଶ ହୋଇ ସେବା ସମୟରେ ନମସ୍କାର ପରିବର୍ତ୍ତେ ବିଗ୍ରହଙ୍କୁ ପ୍ରଗାଢ଼ ଆଲିଙ୍ଗନ କରନ୍ତି । ସାଧାରଣ ଯାତ୍ରୀଗଣଙ୍କୁ ମଧ୍ୟ ଆଲିଙ୍ଗନ କରେଇ ନିଅନ୍ତି । ସେବାପୂଜା ପରମ୍ପରାରେ ଏହି ଭାବ ଅତି ସୁସ୍ପଷ୍ଟ । ଏହି ସ୍ଥଳାଚାର ଶାସ୍ତ୍ରାନୁମୋଦିତ ।

ଶବରମାନେ ଭାବାବେଶ ହୋଇ ସେବା ସମୟରେ ନମସ୍କାର ପରିବର୍ତ୍ତେ ବିଗ୍ରହଙ୍କୁ ପ୍ରଗାଢ଼ ଆଲିଙ୍ଗନ କରନ୍ତି । ସାଧାରଣ ଯାତ୍ରୀଗଣଙ୍କୁ ମଧ୍ୟ ଆଲିଙ୍ଗନ କରେଇ ନିଅନ୍ତି ।

ସମସ୍ତ ପୁରାଣ ସାହିତ୍ୟରେ ଜଗନ୍ନାଥ କ୍ଷେତ୍ରରେ ଅନ୍ନଭୋଜନରେ ଜାତି ବିଚାରକୁ ସମ୍ପୂର୍ଣ୍ଣ ଅସ୍ୱୀକାର କରାଯାଇଛି । ଜଗନ୍ନାଥ କ୍ଷେତ୍ରରେ ହରିବାସର ଏକାଦଶୀ ମଧ୍ୟ ସ୍ୱୀକାର କରାଯାଇନାହିଁ । ଏଥିପାଇଁ ପ୍ରଚଳିତ ବିଧି ଅନୁସାରେ ମୂଳମନ୍ଦିରର ପଶ୍ଚିମ ଦିଗରେ ଏକାଦଶୀ ଦେବୀ ଆବଦ୍ଧ ରୂପରେ ପୂଜିତ ହେଉଛନ୍ତି । ଜଗନ୍ନାଥ ସଂସ୍କୃତିରେ ଆଚାର ପ୍ରାଧାନ୍ୟ ଅଟେ, କିନ୍ତୁ ନୀଚ ଜାତିକୁ ଘୃଣାଭାବ ପ୍ରଦର୍ଶନ କରିବା ଅନୁଚିତ, ଏହାକୁ ଗ୍ରହଣ କରାଯାଇଛି ।

ପୁରୁଷୋତ୍ତମ କ୍ଷେତ୍ରରେ ଥରେ ଗୋଟିଏ କୁଆ ଭଗବାନ ନୀଳମାଧବ ଜଗନ୍ନାଥଙ୍କୁ ଦର୍ଶନ କରି ପକ୍ଷୀ ଜନ୍ମରୁ ଉଦ୍ଧାର ପାଇଥିଲା । ଆଜି ରୋହିଣୀକୁଣ୍ଡରେ ଏହି କାକସ୍ନାନ ଜଳ ସ୍ପର୍ଶ କରି ମନୁଷ୍ୟ ଧନ୍ୟ ହୁଏ । ଏହି କ୍ଷେତ୍ରରେ କାହାକୁ ଘୃଣା ଭାବବଶତଃ ହତାଦର ଅନାଦର କରିବା ପୁରୁଷୋତ୍ତମ ଚେତନାରେ ସଂପୂର୍ଣ୍ଣ ନିଷେଧ ଗ୍ରହଣ କରାଯାଇଛି ।

କୈବଲ୍ୟ
ଦଉଡୋଟା, ପୁରୀ

# ସମନ୍ୱୟର ଦେବତା ଶ୍ରୀଜଗନ୍ନାଥ

ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

ଶ୍ରୀଜଗନ୍ନାଥଙ୍କୁ ନେଇ ବହୁ ଆଲୋଚନା ହେଲାଣି ଏବଂ ଭବିଷ୍ୟତରେ ମଧ୍ୟ ହେବ । ନାନା ମତ, ତତ୍ତ୍ୱ, ଧର୍ମ, ଦର୍ଶନ, ବୈଚିତ୍ର୍ୟ ଏବଂ ବିରୋଧାଭାସ ମଧ୍ୟରେ ଜଗନ୍ନାଥ ହୋଇ ଉଠିଛନ୍ତି ଆହୁରି ଅବ୍ୟକ୍ତ, ଅଚିନ୍ତ୍ୟ ଓ କଳନାତୀତ । ଶ୍ରୀଜଗନ୍ନାଥଙ୍କୁ ନେଇ ସୃଷ୍ଟି ହୋଇଛି ଅନେକ ପୁରାଣ, ଇତିହାସ, ସାହିତ୍ୟ, ସଂସ୍କୃତି, କାହାଣୀ ଓ କିମ୍ବଦନ୍ତୀ । ତଥାପି ଏଥିରେ ପୂର୍ଣ୍ଣଚ୍ଛେଦ ପଡ଼ିନାହିଁ ।



ତତ୍ତ୍ୱଦର୍ଶୀମାନଙ୍କ ନିକଟରେ ସେ ଶୂନ୍ୟ, ନିର୍ଗୁଣ ଓ ନିରାକାର । କିନ୍ତୁ ସାଧାରଣ ଭକ୍ତ ନିକଟରେ ସେ ସଗୁଣ, ସାକାର । ସେ ପୁଣି ପରମପୁରୁଷ, ପୁରୁଷୋତ୍ତମ, ପତିତପାବନ, ଆର୍ତ୍ତତ୍ରାଣ, କୃପାସିନ୍ଧୁ, ଅନାଥର ନାଥ ସର୍ବମଙ୍ଗଳ ଶ୍ରୀଜଗନ୍ନାଥ ।

ଶ୍ରୀଜଗନ୍ନାଥଙ୍କ ଅମୃତମୟ ଚେତନାରେ ବିଶ୍ୱର ସବୁଧର୍ମ, ଦର୍ଶନ ତତ୍ତ୍ୱ ଓ ମତର ସମନ୍ୱୟ ଘଟିଛି । ଆଦ୍ୟରେ ଶବର ଉପଜାତିର ଠାକୁର ଭାବେ ପୂଜା ପାଉଥିବା ଜଗନ୍ନାଥ ପରେ ପରେ ଜୈନ, ବୌଦ୍ଧ, ଶୈବ, ଶାକ୍ତ, ବୈଷ୍ଣବ, ଗାଣପତ୍ୟ ଓ ସୌର ଆଦି ନାନା ଧର୍ମ ତଥା ସମ୍ପ୍ରଦାୟର ଠାକୁର ଭାବେ ବିବେଚିତ ହୋଇଛନ୍ତି । ଶ୍ରୀଜଗନ୍ନାଥ ପୁଣି ହେଉଛନ୍ତି ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ମିଳନ କ୍ଷେତ୍ର । ଏପରି କି କେହି କେହି ଗବେଷକ ଯଥା- ଡକ୍ଟର ହରେକୃଷ୍ଣ ମହତାବ, ସଚ୍ଚିଦାନନ୍ଦ ମିଶ୍ର ଓ ରାଜକିଶୋର ରାୟ ପ୍ରମୁଖ ଯୀଶୁଖ୍ରୀଷ୍ଟ ଓଡ଼ିଶାକୁ ଆସି କିଛି ଦିନ ପୁରୀରେ ଅବସ୍ଥାନ କରିଥିଲେ ବୋଲି ମତବ୍ୟକ୍ତ କରିଛନ୍ତି । ତେବେ ଏହି ଉକ୍ତିର ସତ୍ୟତା ଥାଉ ବା ନଥାଉ ଏ କଥା ସ୍ୱୀକାର୍ଯ୍ୟ ଯେ ଶ୍ରୀଜଗନ୍ନାଥଙ୍କ ଚିନ୍ତା ଓ ଚେତନାରେ ବହୁ ଧର୍ମ, ସଂସ୍କୃତି ତଥା ମତବାଦ ପ୍ରଭାବିତ ହୋଇଛନ୍ତି । ସୁତରାଂ ଜଗନ୍ନାଥ ଧର୍ମ କୁହନ୍ତୁ ବା ସଂସ୍କୃତି କୁହନ୍ତୁ ଅଥବା ଦର୍ଶନ କିମ୍ବା ତତ୍ତ୍ୱ କୁହନ୍ତୁ, ଏସବୁ ଚିନ୍ତାଧାରାର ସୃଷ୍ଟି ଓ ସ୍ଥିତି କହିଲେ କିଛି ଭୁଲହେବ ନାହିଁ । ଯିଏ ତାଙ୍କୁ ଯେଉଁ ଭାବରେ ଦେଖିଛି ସେ ତାଙ୍କୁ ସେହି ଭାବରେ ଉପଲବ୍ଧି କରିଛି । ସେ ସକାମ ହୋଇପାରନ୍ତି ବା ନିଷ୍କାମ ହୋଇପାରନ୍ତି । ଏଥିରେ ଯୁକ୍ତିତର୍କର ଆବଶ୍ୟକତା ନାହିଁ । ଏ କଥା ମଧ୍ୟ କୁହାଯାଇ ପାରେ ଯେ ଏସବୁ ମତବାଦ ସଂସ୍କୃତି ବା ଧର୍ମର ଗରିଷ୍ଠ ସାଧାରଣ ଗୁଣନୀୟକ (ଗ.ସା.ଗୁ.) ହେଉଛନ୍ତି ଶ୍ରୀଜଗନ୍ନାଥ ।

ବୌଦ୍ଧ ଧର୍ମର ତ୍ରିରତ୍ନ ତଥା ବୁଦ୍ଧ, ଧମ ଓ ସଂଘରୁ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସୃଷ୍ଟି । ଏଲୋରାର ବୁଦ୍ଧ ମୂର୍ତ୍ତିର ନାମ ଜଗନ୍ନାଥ । ଚତୁର୍ଦ୍ଧାମୂର୍ତ୍ତିଙ୍କ ଅଂପୂର୍ଣ୍ଣ ଗଢ଼ଣ ବିଷୟରେ ଯେଉଁ କିମ୍ବଦନ୍ତୀ ଅଛି ତାହାର ଅନୁରୂପ କିମ୍ବଦନ୍ତୀ ବୁଦ୍ଧଗୟାର ଅସଂପୂର୍ଣ୍ଣ ମୂର୍ତ୍ତି ସମ୍ପନ୍ଧରେ ଅଛି । ଫାହିୟାନ ବର୍ଣ୍ଣିତ ରଥଯାତ୍ରା ସହ ଜଗନ୍ନାଥଙ୍କ ରଥଯାତ୍ରାର ସାମ୍ୟ ଇତ୍ୟାଦି ବହୁ ଉଦାହରଣ ଦେଇ କେହି କେହି ଗବେଷକ ଶ୍ରୀଜଗନ୍ନାଥ ଧର୍ମକୁ ପ୍ରଚ୍ଛନ୍ନ ବୌଦ୍ଧ ଧର୍ମ ବୋଲି ମତବ୍ୟକ୍ତ କରନ୍ତି । ଏତଦ୍‌ବ୍ୟତୀତ ସାରଳା ଦାସ, ଅଚ୍ୟୁତାନନ୍ଦ, ଯଶୋବନ୍ତ, ଚୈତନ୍ୟ ଦାସ ଇତ୍ୟାଦି ବହୁ ଓଡ଼ିଆ କବି ସେମାନଙ୍କ ରଚିତ ବିଭିନ୍ନ ଗ୍ରନ୍ଥରେ ଜଗନ୍ନାଥ ଓ ବୁଦ୍ଧ ଦେବ ଯେ ଏକ ଓ ଅଭିନ୍ନ ଏକଥା ପ୍ରତିପାଦନ କରିଛନ୍ତି । ଏପରି କି ଦ୍ୱାଦଶ ଶତାବ୍ଦୀର ପ୍ରଖ୍ୟାତ ସଂସ୍କୃତ କବି ଜୟଦେବ ତାଙ୍କ 'ଗୀତଗୋବିନ୍ଦ' କାବ୍ୟରେ କହିଛନ୍ତି 'କେଶବ ଧୃତ ବୁଦ୍ଧ ଶରୀର ଜୟ ଜଗଦୀଶ ହରେ' ।

ସେହିପରି ଜୈନଧର୍ମ ପକ୍ଷପାତି ପଣ୍ଡିତମାନଙ୍କ ଯୁକ୍ତି ମଧ୍ୟ ଅକାଟ୍ୟ । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦର ଅନ୍ୟନାମ ହେଉଛି କୈବଲ୍ୟ । ଏହି କୈବଲ୍ୟ ପ୍ରାପ୍ତି ସ୍ୱୟଂ ପୁରୁଷୋତ୍ତମ ପ୍ରାପ୍ତି ସଂଗେ ସମାନ ବୋଲି ବିବେଚନା କରାଯାଏ । ଜୈନଧର୍ମରେ ଜୀବ ଓ ଅଜୀବର ସମନ୍ୱୟରେ ଯେଉଁ ନିର୍ବାଣର ପରିକଳ୍ପନା କରାଯାଇଛି, ତାହା ଏହି କୈବଲ୍ୟ ପ୍ରାପ୍ତିରୁ ସମ୍ଭବ ହୁଏ ବୋଲି କୁହାଯାଇଛି । ଜୈନମାନଙ୍କ ମତରେ ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ତିଥି ହେଉଛି ଜୈନମାନଙ୍କ ପ୍ରଥମ ତୀର୍ଥଙ୍କର ଋଷଭଦେବଙ୍କ ଗର୍ଭ କଲ୍ୟାଣ ଦିନ । ତେଣୁ ଏହି ଦିନ ଶୁଭ । ଋଷଭନାଥଙ୍କ ପ୍ରତୀକ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଅନୁଷ୍ଠିତ ହୁଏ । ପୁଣି ଜୈନଧର୍ମର ୨୨ ଜଣ ତୀର୍ଥଙ୍କର ସ୍ଥିତି ଅନୁସାରେ ଶ୍ରୀମନ୍ଦିରର ବାଇଶ ପାହାଚ । ଏହି ବାଇଶ ପାହାଚକୁ ଅତିକ୍ରମ କଲେ ହିଁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିହୁଏ ।

ସାଂଖ୍ୟ ଦର୍ଶନର ପ୍ରକୃତି ପୁରୁଷତତ୍ତ୍ୱ ମଧ୍ୟ ଶ୍ରୀଜଗନ୍ନାଥଙ୍କ ତତ୍ତ୍ୱରେ ନିହିତ । ଯେ ପୁରୁଷ, ସେ ହିଁ ପ୍ରକୃତି । ସୁତରାଂ ପ୍ରକୃତି ଓ ପୁରୁଷ ଏକ ଓ ଅଭିନ୍ନ । ଶାବର ତନ୍ତ୍ର, ବୌଦ୍ଧ ତନ୍ତ୍ର ଓ ପରେ ହିନ୍ଦୁ ତନ୍ତ୍ର ବା ବ୍ରାହ୍ମଣ୍ୟ ତନ୍ତ୍ର ଜଗନ୍ନାଥ ଧର୍ମ ବା ସଂସ୍କୃତିକୁ ପ୍ରଭାବିତ କରିଛି କହିଲେ କିଛି ଭୁଲ ହେବ ନାହିଁ । ଶବର ତନ୍ତ୍ର ଯୁଗରେ ସେ ଶବରୀ ନାରାୟଣ, ମହାଯାନ ବୌଦ୍ଧ ଯୁଗରେ ବୁଦ୍ଧ ନାରାୟଣ ଏବଂ ହିନ୍ଦୁ ତନ୍ତ୍ର ଯୁଗରେ ସେ ହେଉଛନ୍ତି ବିଷ୍ଣୁ ବା ଶ୍ରୀଜଗନ୍ନାଥ ।

ଶ୍ରୀଜଗନ୍ନାଥ ସେତେବେଳକୁ ବୌଦ୍ଧ ଦେବତା ଭାବେ ପରିଚିତ । ଏହି ସମୟରେ ଅର୍ଥାତ୍ ନବମ ଶତାବ୍ଦୀରେ ବିଶିଷ୍ଟ ଅଦ୍ୱୈତ ଧର୍ମ ପ୍ରଚାରକ ଶଙ୍କରାଚାର୍ଯ୍ୟଙ୍କ (ଖ୍ରୀ:ଅ: ୭୮୮-୮୨୦)ଙ୍କ ଶ୍ରୀକ୍ଷେତ୍ର ଆଗମନ ଏବଂ ନିଜର ପାଣ୍ଡିତ୍ୟ ଓ ଅକାଟ୍ୟ ଯୁକ୍ତିଦ୍ୱାରା ପ୍ରମାଣ କଲେ ଯେ ଶ୍ରୀଜଗନ୍ନାଥ ହିଁ ଗୀତାର ପୁରୁଷୋତ୍ତମ ବିଷ୍ଣୁ । 'ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବ ତୁମେ' ସ୍ତୋତ୍ରରେ ସେ ତାଙ୍କୁ ଆପଣାର କରିନେଲେ । କେବଳ ସେତିକି ନୁହେଁ ସେ ପୁରୀ ବା ଶ୍ରୀକ୍ଷେତ୍ରକୁ ପ୍ରସିଦ୍ଧ ଚତୁର୍ଦ୍ଧାମ ମଧ୍ୟରେ ଏକ ବୋଲି ବିବେଚନା କଲେ ଏବଂ ଏଠାରେ ଗୋବର୍ଦ୍ଧନ ମଠ ସ୍ଥାପନା କଲେ ।

ଶଙ୍କରାଚାର୍ଯ୍ୟଙ୍କ ପରେ ବିଶିଷ୍ଟାଦ୍ୱୈତ ମତର ପ୍ରଚାରକ ଶ୍ରୀରାମାନୁଜଙ୍କ ଶ୍ରୀକ୍ଷେତ୍ରରେ ପଦାର୍ପଣ । ସେତେବେଳକୁ ଦ୍ୱାଦଶ ଶତାବ୍ଦୀ ଏବଂ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ । ସ୍ମାର୍ତ୍ତ ଓ ସ୍ମୃତି ଶାସ୍ତ୍ର ଅନୁସାରେ ବୈଷ୍ଣବ ମତରେ ଶ୍ରୀଜଗନ୍ନାଥଙ୍କ ପୂଜା ବିଧି ପାଇଁ ସେ ପ୍ରଚେଷ୍ଟା କଲେ । ବୈଷ୍ଣବ ଧର୍ମ ଓଡ଼ିଶାରେ ପ୍ରତିଷ୍ଠା ହେଲା । ଲକ୍ଷ୍ମୀଙ୍କ ମନ୍ଦିର ନିର୍ମାଣ ଓ ଏମାରମଠ ଏହି ସମୟରେ ପ୍ରତିଷ୍ଠିତ ।

ରାମାନୁଜଙ୍କ ପରେ ଅଦ୍ୱୈତ ମତବାଦର ପ୍ରଚାରକ ମାଧ୍ୱାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କ ଚିନ୍ତା ଓ ଚେତନାରେ ପ୍ରଭାବିତ ହୋଇ ପୁରୀକୁ ଆସିଥିଲେ । ଏହିପରି ଭାବେ ଶ୍ରୀକ୍ଷେତ୍ରରେ ଶଙ୍କରଙ୍କ ଅଦ୍ୱୈତ, ରାମାନୁଜଙ୍କ ବିଶିଷ୍ଟାଦ୍ୱୈତ ଓ ମାଧ୍ୱଙ୍କ ଦ୍ୱୈତର ମହାମିଳନ ଘଟିଥିଲା ।

ଏମାନଙ୍କ ପରେ ରାଧାକୃଷ୍ଣ ମଧୁର ଭକ୍ତିର ପ୍ରଚାରକ ଶ୍ରୀଚୈତନ୍ୟ ନିଜ ଅବଶିଷ୍ଟ ଜୀବନର ଦୀର୍ଘ ୧୮ ବର୍ଷ ଶ୍ରୀକ୍ଷେତ୍ରରେ ଅତିବାହିତ କରିଛନ୍ତି । ପୁରୀ ବଡ଼ଦାଣ୍ଡରେ ରଥଯାତ୍ରା ସମୟରେ ଶ୍ରୀଚୈତନ୍ୟ ଏବଂ ତାଙ୍କ ଅନୁଗାମୀମାନେ କୀର୍ତ୍ତନ କରି ଗଡ଼ିଛନ୍ତି, ପଡ଼ିଛନ୍ତି ଓ ଉଠିଛନ୍ତି । ଶ୍ରୀଚୈତନ୍ୟଙ୍କ ପ୍ରଭାବରେ ମଧୁର ଭକ୍ତିର ବନ୍ୟା ଓଡ଼ିଶାକୁ ପ୍ଳାବିତ କରିଥିଲା ।

ଏହାପରେ ଶିଖ୍ ଧର୍ମର ପ୍ରବର୍ତ୍ତକ ଗୁରୁନାନକ ପୁରୀ ଆସିଛନ୍ତି ଏବଂ ଜଗନ୍ନାଥଙ୍କ ଚରଣାଶ୍ରିତ ହୋଇଅଛନ୍ତି ।

ରାମଭକ୍ତ ତୁଳସୀଦାସ ସମସ୍ତ ବିଷ୍ଣୁତୀର୍ଥ ଦର୍ଶନ ଉଦ୍ଦେଶ୍ୟରେ ପୁରୀ ଶ୍ରୀମନ୍ଦିରରେ ଉପସ୍ଥିତ ହେବାମାତ୍ରେ ଏ କ'ଣ ହେଲା ! ପ୍ରଭୁ ଶ୍ରୀରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତାଙ୍କ ପରିବର୍ତ୍ତେ ସେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କୁ ଦେଖୁଛନ୍ତି ! ତେଣୁ ସେ ନିରାଶ ହୋଇ ଶ୍ରୀକ୍ଷେତ୍ର ନିକଟବର୍ତ୍ତୀ ମାଳତିପାଟପୁର ଗ୍ରାମରେ ରାତ୍ରିଯାପନ କଲେ । ସେତେବେଳେ ତାଙ୍କୁ ସ୍ୱପ୍ନାଦେଶ ହେଲା ଯେ ରାମ ସେ ହିଁ ଜଗନ୍ନାଥ । ତୁଳସୀଦାସ ଆଉ କାଳବିଳମ୍ବ ନକରି ଶ୍ରୀମନ୍ଦିର ଧାଇଁଲେ । ଭାବାବିଷ୍ଟ ହୋଇ ଗାଇ ଉଠିଲେ 'ଜୟ ଜଗନ୍ନାଥ ଜଗଦେବା, ଶିବ ବିରଞ୍ଚି ନାରଦ କରେ ସେବା ।' ଏହା ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କ ପହୁଡ଼ ସମୟରେ ଗାନ କରାଯାଏ ।

ତୁଳସୀଦାସ ଆଉ କାଳବିଳମ୍ବ ନକରି ଶ୍ରୀମନ୍ଦିର ଧାଇଁଲେ । ଭାବାବିଷ୍ଟ ହୋଇ ଗାଇ ଉଠିଲେ 'ଜୟ ଜଗନ୍ନାଥ ଜଗଦେବା, ଶିବ ବିରଞ୍ଚି ନାରଦ କରେ ସେବା ।' ଏହା ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କ ପହୁଡ଼ ସମୟରେ ଗାନ କରାଯାଏ ।

ଗଣେଶ ଭକ୍ତ ଗଣପତି ଭଟ୍ଟ ଶ୍ରୀଜଗନ୍ନାଥଙ୍କୁ ଗଣେଶ ଭାବେ ଦେଖିଛନ୍ତି । ତେଣୁ ଏହି ମତକୁ ସମ୍ମାନ ଦେବା ଉଦ୍ଦେଶ୍ୟରେ ସ୍ନାନପୂର୍ଣ୍ଣିମା ଦିନ ମହାପ୍ରଭୁ ଗଜାନନ ବେଶ ଧାରଣ କରନ୍ତି ।

ଆମ କଥାଟି ଏତିକିରେ ସରିନାହିଁ । ସନାତନ ହିନ୍ଦୁଧର୍ମର ଭିନ୍ନ ଭିନ୍ନ ଗୋଷ୍ଠୀ ବା ସଂପ୍ରଦାୟ ପାଇଁ ଶ୍ରୀଜଗନ୍ନାଥ ସର୍ବତୋଭାବେ ଗ୍ରହଣୀୟ । ବୈଷ୍ଣବମାନଙ୍କ ମତରେ ସେ ଶ୍ରୀପତି । ଶୈବମାନଙ୍କ ପାଇଁ ସେ ଭୈରବ । ବଳଭଦ୍ରଙ୍କ ଅନ୍ୟନାମ ତ 'ଶଙ୍କର୍ଷଣ' । ଶାକ୍ତମାନଙ୍କ ପାଇଁ ତାଙ୍କ ବାମପାଖରେ ଶକ୍ତି ସ୍ୱରୂପିଣୀ ମା' ଦୁର୍ଗା, ଭୁବନେଶ୍ୱରୀ ସୁଭଦ୍ରା ପୂଜା ପାଉଛନ୍ତି । ଏହାଙ୍କୁ ଭୁବନେଶ୍ୱରୀ ମନ୍ତ୍ରରେ ପୂଜା କରିବା ଏବଂ ଶ୍ରୀଜଗନ୍ନାଥଙ୍କ ପ୍ରସାଦ ବିମଳାଙ୍କ ନିକଟରେ ପୁନଃ ସମର୍ପିତ ହେବାପରେ, ମହାପ୍ରସାଦ ରୂପେ ବିବେଚିତ ହେବା ଶ୍ରୀଜଗନ୍ନାଥ ସଂସ୍କୃତିରେ ଶାକ୍ତ ପ୍ରଭାବର ସୂଚନା ଦିଏ ।

ଶ୍ରୀଜଗନ୍ନାଥ ଧର୍ମ ବିଶ୍ୱବ୍ୟାପକତା ଲାଭ କରିଛି । ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥଙ୍କ ପ୍ରଶଂସାରେ ଶତମୁଖ ହୋଇଛନ୍ତି ଯବନ କବି ହରିଦାସ, କବୀର ଓ ସାଲବେଗ । ସାଲବେଗଙ୍କ ପ୍ରାର୍ଥନାରେ ବଡ଼ଦାଣ୍ଡରେ ଶ୍ରୀଜଗନ୍ନାଥଙ୍କ ରଥ ଅଟକି ଯାଇଛି । ଅବସ୍ଥା ଚକ୍ରରେ ପଡ଼ି ଓଡ଼ିଶାର ଗଜପତି ତକି ଖାଁର ଅତ୍ୟାଚାରରୁ ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିର ସୁରକ୍ଷା ପାଇଁ ସେହି ତକି ଖାଁ ଭଉଣୀ ରିଜିଆଙ୍କ ପାଣିଗ୍ରହଣ କରିଛନ୍ତି । ଗଜପତି ରାମଚନ୍ଦ୍ରଙ୍କ ପାଇଁ ପତିତପାବନ ମୂର୍ତ୍ତି ସିଂହଦ୍ୱାର ପାଖରେ ଦେଉଳ ଆଗରେ ଗଢ଼ା ଯାଇଥିଲା ଏବଂ ଏହା ଆଜି ମଧ୍ୟ ବିଦ୍ୟମାନ । ଖ୍ରୀଷ୍ଟ ଧର୍ମାବଲମ୍ବୀ କ୍ୟାପ୍‌ଟେନଙ୍କ ପ୍ରାର୍ଥନାରେ ଜାହାଜକୁ ପ୍ରବଳ ଝଡ଼ ବତାସରୁ ଶ୍ରୀଜଗନ୍ନାଥ ରକ୍ଷା କରିଥିବା କଥା ଆଜି ମଧ୍ୟ ଆମେ ଶୁଣିଥାଉଁ । ଏହା କେବଳ କାହାଣୀ ବା ଆଖ୍ୟାୟିକା ନୁହେଁ, ଏହାର ପ୍ରମାଣ ଏବେ ମଧ୍ୟ ଶ୍ରୀମନ୍ଦିରରେ ଅଛି ।

ତେଣୁ ଶ୍ରୀଜଗନ୍ନାଥ କେବଳ ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ସମ୍ପ୍ରଦାୟର ଠାକୁର ଭାବେ ବିବେଚନା କରିବା ଠିକ୍ ନୁହେଁ । ସର୍ବଧର୍ମ ତଥା ସଂସ୍କୃତିର ସମନ୍ୱୟର ପ୍ରତୀକ ଭାବେ ଶ୍ରୀଜଗନ୍ନାଥ ସାର୍ବଜନୀନ ଶକ୍ତି, ମୈତ୍ରୀ ଓ ପ୍ରୀତି ରଜ୍ଜୁରେ ଯୁଗ ଯୁଗ ଧରି ବନ୍ଧାହୋଇ ଆସିଛନ୍ତି ।

ଅନୁଶାସନ ସଚିବ
ଅର୍ଥ ବିଭାଗ, ଭୁବନେଶ୍ୱର

---

# ଅମୃତ ମଣୋହି

ଡାଃ ସରୋଜିନୀ ଷଡ଼ଙ୍ଗୀ





ଅମୃତ ମଣୋହି ନୁହେଁ
ତୋ' ରୂପର ଦର୍ଶନରେ
ନୀଳାଂଜନ !
ମୋ' ଭୋକିଲା ଆଖି ମନ
ଏଇ ଦେଖ ଏକାଥରେ
ପରିପୂର୍ଣ୍ଣ
ସ୍ୱୟଂଭୂ ... ସଂପୂର୍ଣ୍ଣ ...
ଷାଠିଏ ପଉଟି ଭୋଗ
ନୁହେଁ .. ନୁହେଁ ..
ତୋ' ବିଗ୍ରହ ଥରେ ମାତ୍ର
ଦେଖି ନେଲେ
ଏ କେଉଁ ଅପୂର୍ବ ଭାବେ ଉଚ୍ଛୁଳଇ
ସାରା ଅବୟବ !

ଏତେ ଅପରୂପ ରସ ଭରିଥାଏ
ତୋ' ନିର୍ମାଲ୍ୟ କଣିକାରେ,
ଏମିତି ଅଖଣ୍ଡ ଦୃଶ୍ୟ
ଭରିଥାଏ
ତୋ' ନେତରେ,
ଏମିତି ଅନନ୍ତ ଆଭା
ଭରିଥାଏ
ତୋ' କଉସ୍ତୁଭ ମଣିର ହାରରେ
ଦେଖୁ ଦେଖୁ ମନ ପ୍ରାଣ
ଭରିଯାଏ ଅଖଣ୍ଡ ଭକ୍ତିରେ ।

ଏମିତି ନିରୁତା ସ୍ନେହ
ଭରିଥାଏ ତୋ' ଧୂଳିରେ
ତୋ' ବଡ଼ଦାଣ୍ଡରେ ।

ଲିଙ୍କରୋଡ଼
କଟକ-୧୨





# ଘଟଣ ଶ୍ରୀମୁଖ ସୁନ୍ଦର

ଉମାକାନ୍ତ ଦାଶ

**ଘ**ନକଳା ମୁଖଟିଏ । ଶୂନ୍ୟ ଅନ୍ତରୀକ୍ଷରେ ଚନ୍ଦ୍ରସୂର୍ଯ୍ୟ ତୁଲ୍ୟ ବର୍ତ୍ତୁଳାକାର ଆଖି ଦିଓଟି ଝଟକୁଛି । ଅନାଇ ରହିଛି ଜଗତକୁ । ଆଉ ଜଗତ ଯାକର ଆଖି ଲାଖି ଯାଉଛି ଏ ଦୁଇଟି ଆଖିରେ । ଜଗନ୍ନାଥ ବୋଇଲେ ଆଉ କ'ଣ କି ? ଏଇତ । ଏଇ ମୁହଁଟିତ ଶ୍ରୀମୁଖ । ସକଳ 'ଶ୍ରୀ' ସୌନ୍ଦର୍ଯ୍ୟ, ସୁଖ, ସମୃଦ୍ଧି, ଐଶ୍ୱର୍ଯ୍ୟ ଭରି ରହିଛି ଏଇ ମୁଖରେ । କେଡ଼େ ସୁନ୍ଦର ଦିଶୁଛି ସତେ ! ଭାବରେ ଅଧୀର ହୋଇ ପଡୁଛନ୍ତି ଜନତା । ଅଖି ବ୍ରହ୍ମାଣ୍ଡର ବିଚିତ୍ର ରୂପ । ଅରୂପ ରୂପ ପାଇଛି । ନିରାକାର ସାକାର ହୋଇଛି ଦାରୁ ଦେହରେ । ଦାରୁବ୍ରହ୍ମ ସିଏ । ଦାରୁ ବ୍ରହ୍ମ ସ୍ୱରୂପ ବିରାଜମାନ । ଦାରୁ ମଧ ବ୍ରହ୍ମ, ବ୍ରହ୍ମଦାରୁ । 'ବ୍ରହ୍ମଦାରୁ ନମାମି' - ଭକ୍ତ ଯୋଡ଼ହସ୍ତରେ ଆପଣାକୁ ସମର୍ପଣ କରି ଦେଉଛି । ବ୍ରହ୍ମାଣ୍ଡର ସର୍ବୋଚ୍ଚ ନିୟନ୍ତା, ସର୍ବମୟ କର୍ତ୍ତା ସିଏ ।



ସୃଷ୍ଟିର ସମସ୍ତ ଶ୍ରେୟ ଈଶ୍ୱରଙ୍କର । ଈଶ୍ୱର ମଣିଷର ସ୍ରଷ୍ଟା । ମଣିଷ ଗଢ଼େ ପ୍ରତିମା, ଦାରୁ ବିଗ୍ରହ ! ଦାରୁ କିନ୍ତୁ ମଣିଷ ସୃଷ୍ଟ ନୁହେଁ । ତେଣୁ ଦାରୁବ୍ରହ୍ମ ସ୍ୱୟଂ ନିର୍ମିତ । 'ଅପୌରୁଷେୟ ଦାରୁ' ।

ଏହି ଦାରୁ ସାକ୍ଷାତ ପରମ ପୁରୁଷ, ସାକ୍ଷାତ ନାରାୟଣଙ୍କର । ଏହି ଦାରୁର ତନୁକୁ ଦର୍ଶନ ମାତ୍ରକେ ମୁକ୍ତି ମିଳେ । ସକଳତୀର୍ଥର ଫଳ ଗୋଟିଏ ସ୍ଥାନରେ ଗୋଟିଏ ମୁହୂର୍ତ୍ତରେ ପ୍ରାପ୍ତ ହୋଇଯାଏ । ସେଇଥିପାଇଁ ପୁରୁଷୋତ୍ତମ କ୍ଷେତ୍ର ପରମପାବନ କ୍ଷେତ୍ର । କ୍ଷେତ୍ର ପୁରୁଷୋତ୍ତମ ଏବଂ କ୍ଷେତ୍ରାଧିପ ପୁରୁଷୋତ୍ତମ । ଉଭୟେ ସାର୍ବଭୌମ । 'ସର୍ବେଷାମପିକ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମ ସର୍ବେଷାମପି ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମ ।'

ଏଭଳି ମୁକ୍ତିପ୍ରଦ କ୍ଷେତ୍ର ଯେଉଁଠି ଚର୍ମ ଚକ୍ଷୁରେ ମଣିଷ ଦାରୁ ଦେହରେ ବ୍ରହ୍ମଙ୍କୁ ଦର୍ଶନ କରେ । ଏହାର ଅବସ୍ଥିତି ହେତୁ 'ଦେଶାଣାଂ ଉତ୍କଳଃ ଶ୍ରେଷ୍ଠଃ' ହୋଇଅଛି । ଏ କ୍ଷେତ୍ରରୁ ଜ୍ୟୋତି ସାରା ବ୍ରହ୍ମାଣ୍ଡରେ ବିଛୁରିତ ହେଉଛି । ଏ ଜ୍ୟୋତିର ନିର୍ଗତ ସ୍ଥଳି ସେଇ ଚକା ଚକା ଆଖି ଦିଓଟି ।

ଏଇ ଆଖିକୁ ନେଇ କେତେ କଥା । ଶ୍ୱେତ ବୃତ୍ତ ମଧ୍ୟରେ ଏକ ଗାଢ଼କୃଷ୍ଣ ବୃତ୍ତ । ମଣ୍ଡଳାକାର ରୂପ ସୃଷ୍ଟିର ପୂର୍ଣ୍ଣତା ମଧ୍ୟରେ ପ୍ରାଣକେନ୍ଦ୍ର ଶୂନ୍ୟତାର କଳ୍ପନା - ପ୍ରଜ୍ଞା ଓ ସଂବୁଦ୍ଧତ୍ୱର ନିଶାଣ । ବ୍ରହ୍ମାଣ୍ଡ ମହାଶୂନ୍ୟ । ଏହା ପୁଣି ବିଭିନ୍ନ ମଣ୍ଡଳରେ ବିଭକ୍ତ । ଆମର ମହାସଂସାର ଏପରି ଏକ ମଣ୍ଡଳ ମାତ୍ର । ଏହି ମଣ୍ଡଳର ଅଧିକାରୀ, ସର୍ବନିୟନ୍ତା ଶ୍ରୀଜଗନ୍ନାଥ । ସେ ଶୂନ୍ୟ, ଯେଉଁ ଶୂନ୍ୟ ଶାଶ୍ୱତ, କାଳଭେଦ କରି ସେ ଅଖଣ୍ଡ, ଅକ୍ଷୁଣ୍ଣ ରହନ୍ତି । ପ୍ରଳୟ କାଳରେ ମଧ ତାଙ୍କର ବିଲୟ ହୁଏ ନାହିଁ । ତେଣୁ ସେ ସନାତନ ।

ସେ ତ ସ୍ୱୟଂ କାଳ । କାଳ ତାଙ୍କୁ ସ୍ପର୍ଶ କରିବ କିପରି ? ଭଗବାନ ଶ୍ରୀକୃଷ୍ଣ ଶ୍ରୀମଦ୍ ଭଗବତ ଗୀତାରେ ଆପଣା ବିଭୂତି ବର୍ଣ୍ଣ ପ୍ରସଙ୍ଗରେ କହିଛନ୍ତି -

'ଅହମେବାକ୍ଷୟଃ କାଳୋ ଧାତାହଂ ବିଶ୍ୱତୋମୁଖଃ ।'

ତାଙ୍କର କ୍ଷୟ ନାହିଁ, ତେଣୁ ସେ ଅକ୍ଷୟ । ତାଙ୍କୁ ମୃତ୍ୟୁ ସ୍ପର୍ଶ କରେ ନାହିଁ । ଅପରପକ୍ଷରେ ସେ ହିଁ ସ୍ୱୟଂ ସର୍ବସଂହାରକ ମୃତ୍ୟୁ ଏବଂ ଭବିଷ୍ୟତ ପ୍ରାଣୀଙ୍କ ଉଦ୍ଭବର କାରଣ ।

ସେହି ଶୂନ୍ୟ ହିଁ ନାଗାର୍ଜୁନଙ୍କ କଳ୍ପିତ ଶୂନ୍ୟଯୋଗ ଯାହା ମଣ୍ଡଳର ରୂପ ନେଇ ଶୋଭା ପାଇଛି ଶ୍ରୀଜଗନ୍ନାଥଙ୍କଠାରେ ଯାହାକୁ

କୁହାଯାଏ ଚକାଡୋଳା । ଏହି ଚକାଡୋଳାରେ ଶ୍ରୀଜଗନ୍ନାଥଙ୍କ ପ୍ରସିଦ୍ଧି ବିଦ୍ୟମାନ । ଏହି ଶୂନ୍ୟ - ବିଚାରରୁ ହିଁ ଶ୍ରୀଜଗନ୍ନାଥ । ତେବେ ଏହି ବିଚାରର ପ୍ରବର୍ତ୍ତନ ପାଇଁ ତାହା ଲୋକାଚାର ଭିତରକୁ ଆସିଯାଇଛି । ଶୂନ୍ୟ ବିଚାରର ଭୂମି ଉତ୍କଳରେ ଶ୍ରୀଜଗନ୍ନାଥ ଲୋକଦେବତାର ଗୌରବ ଅର୍ଜନ କରିଛନ୍ତି ।

ଶୂନ୍ୟରେ ନିତ୍ୟରାସ । ନିତ୍ୟରାସ ସ୍ଥଳି ଶ୍ରୀପୁରୁଷୋତ୍ତମ ଧାମ । ବାରମାସରେ ଏଇଠି ତେର ଯାତ୍ରା । 'ବାରମାସେ ତେର ଯାତ୍ରା ଲଗାଇଛ ବ୍ରହ୍ମାଣ୍ଡପତି ବୋଲାଇ ।' ଏହି ଯାତ୍ରା ସମୂହର ସ୍ମୃତିଗ୍ରନ୍ଥ 'ଯାତ୍ରା ଭାଗବତ' । ଏତଦ୍‌ବ୍ୟତୀତ ବ୍ରହ୍ମ ପୁରାଣ, ସ୍କନ୍ଦ ପୁରାଣ (ପୁରୁଷୋତ୍ତମ ମାହାତ୍ମ୍ୟ), ନୀଳାଦ୍ରି ମହୋଦୟ (ସୂତ ସଂହିତା), ଇନ୍ଦ୍ର ନୀଳମଣି ପୁରାଣ (ଶୌନକ ସଂହିତା), କାଳସାର, ବାମଦେବ ସଂହିତା ପ୍ରଭୃତି ଗ୍ରନ୍ଥ ଶ୍ରୀକ୍ଷେତ୍ର ଯାତ୍ରା ବର୍ଣ୍ଣନାରେ ଶତମୁଖ । ଯଥାର୍ଥରେ ଶ୍ରୀଜଗନ୍ନାଥ ରତ୍ନ ସିଂହାସନରୁ ଅବତରଣ କରି ଶ୍ରୀମନ୍ଦିର ବାହାରକୁ ବିଜେ କଲେ ତାକୁ ଯାତ୍ରା କୁହାଯିବା ବିଧେୟ । ଏହି ଦୃଷ୍ଟିରୁ ଦୋଳଯାତ୍ରା, ସ୍ନାନଯାତ୍ରା ଓ ଶ୍ରୀଗୁଣ୍ଡିଚା ହିଁ ଯଥାର୍ଥରେ ଯାତ୍ରା । ପୂର୍ବେ ଦୋଳଯାତ୍ରା ସମ୍ପାଦନ ପାଇଁ ଠାକୁରେ ଦୋଳମଣ୍ଡପ ସାହିରେ ସ୍ୱୟଂ ବିଜେ କରୁଥିଲେ । ସଂପ୍ରତି ସେହି ବିଧାନ ଆଉ ନାହିଁ । ଠାକୁରଙ୍କ ବିଜେ ବିଗ୍ରହ ଶ୍ରୀମଦନ ମୋହନ ପ୍ରତିନିଧି ରୂପେ ଶ୍ରୀମନ୍ଦିର ପରିସରସ୍ଥ ଦୋଳ ବେଦୀରେ ବିଜେ କରନ୍ତି । ତେବେ ସ୍ନାନଯାତ୍ରା ଓ ଶ୍ରୀଗୁଣ୍ଡିଚାଯାତ୍ରା ବେଳେ ଠାକୁରେ ଶ୍ରୀମନ୍ଦିରର ଗମ୍ଭୀରା ଭିତରୁ ଭକ୍ତଙ୍କ ଗହଣକୁ ଯାଇ ଲୀଳା ସଂପାଦନା କରନ୍ତି । ହେଲେ ହେଁ ବାରମାସରେ ତେର ଯାତ୍ରାର ଲୋକ ପ୍ରସିଦ୍ଧି ରହିଛି ।

ଦୋଳ, ଦମନକ, ଚନ୍ଦନ, ସ୍ନାନ, ରଥ, ଶୟନ, ଦକ୍ଷିଣାୟନ, ପାର୍ଶ୍ୱପରିବର୍ତ୍ତନ, ଉତ୍ଥାପନ, ପ୍ରବରଣ ଷଷ୍ଠୀ, ପୁଷ୍ୟାଭିଷେକ, ଉତ୍ତରାୟଣ - ଏହି ଦ୍ୱାଦଶ ଯାତ୍ରା ବ୍ୟତୀତ ତ୍ରୟୋଦଶ ଯାତ୍ରା ଭାବରେ 'ନୀଳାଦ୍ରି ମହୋଦୟ'କୁ ଗ୍ରହଣ କଲେ ଯାତ୍ରା ତ୍ରୟୋଦଶ ହୁଏ । ରାଜକବି ଗୋପୀନାଥ ସିଂହଙ୍କ 'ନୀଳାଦ୍ରି ବିହାର' ଓ ଲୋକନାଥ ବିଦ୍ୟାଧରଙ୍କ 'ନୀଳାଦ୍ରି ମହୋତ୍ସବ'ରେ ଶ୍ରୀଜଗନ୍ନାଥଙ୍କ ଯାତ୍ରାମାନଙ୍କର ମନୋହର ବର୍ଣ୍ଣନା ରହିଛି । ପ୍ରଥମୋକ୍ତ ଗ୍ରନ୍ଥରେ ନେତ୍ରୋତ୍ସବ, ପହଣ୍ଡି ବିଜେ, ରଥଯାତ୍ରା, ହେରା ପଞ୍ଚମୀର ବର୍ଣ୍ଣନା ଅତି ଚମତ୍କାର । ଦ୍ୱିତୀୟ ଗ୍ରନ୍ଥଟିରେ ପ୍ରଦତ୍ତ ସ୍ନାନ, ନେତ୍ରୋତ୍ସବ ଓ ଗୁଣ୍ଡିଚାର ବର୍ଣ୍ଣନା ଅଧିକ ଜନପ୍ରିୟ ।

> ରାଜକବି ଗୋପୀନାଥ ସିଂହଙ୍କ 'ନୀଳାଦ୍ରି ବିହାର' ଓ ଲୋକନାଥ ବିଦ୍ୟାଧରଙ୍କ 'ନୀଳାଦ୍ରି ମହୋତ୍ସବ'ରେ ଶ୍ରୀଜଗନ୍ନାଥଙ୍କ ଯାତ୍ରାମାନଙ୍କର ମନୋହର ବର୍ଣ୍ଣନା ରହିଛି ।

ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ନେଇ ସମସ୍ତ ଅନୁଷ୍ଠାନ ଯାତ୍ରା ବିବେଚିତ ହୁଏ । ତେଣୁ ସମସ୍ତ 'ଯାତ୍ରା' ଓ 'ଉପଯାତ୍ରା' ଉତ୍ସବ ପର୍ଯ୍ୟାୟରେ ଗ୍ରହଣ କରାଯାଏ । ତଥାପି କେତେକ ଅନୁଷ୍ଠାନକୁ 'ଯାତ୍ରା' ନକହି 'ଉତ୍ସବ' କୁହାଯାଏ । ଯେମିତି 'ନେତ୍ରୋତ୍ସବ' । ଶ୍ରୀଜଗନ୍ନାଥଙ୍କ ସମସ୍ତ କାର୍ଯ୍ୟ ଉତ୍ସବଭିତ୍ତିକ । ଚନ୍ଦନ ଲାଗି ହେଲେ ଉତ୍ସବ ହୁଏ, ଚିତା ଲାଗି ହେଲେ ଉତ୍ସବ ହୁଏ, ଓଢ଼ଣ ଲାଗି ହେଲେ ଉତ୍ସବ ହୁଏ । ଶ୍ରୀକ୍ଷେତ୍ର ସଦା ଉତ୍ସବ ମୁଖର । ନିତ୍ୟରାସସ୍ଥଳି ପରା ଏହି କ୍ଷେତ୍ର । ଭଗବାନଙ୍କର ସମୀପରେ ଭକ୍ତଙ୍କ ଉପସ୍ଥିତି, ଆନନ୍ଦ ଉଲ୍ଲାସ, ଅପୂର୍ବ ମିଳନର ଅବକାଶ - ଏଇତ ଉତ୍ସବ ।

ଶ୍ରୀଗୁଣ୍ଡିଚା ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ଆଧାର କରି ସର୍ବଶ୍ରେଷ୍ଠ ଯାତ୍ରା । ଏ ଯାତ୍ରା ଅତୁଳନୀୟ । ଭାରତବର୍ଷରେ ପ୍ରୟାଗ, ନାସିକ ଓ ଉଜ୍ଜୟିନୀ ଭଳି ପବିତ୍ର ତୀର୍ଥସ୍ଥଳିରେ ଅନୁଷ୍ଠିତ କୁମ୍ଭମେଳାମାନଙ୍କ ପରି ଏହି ଯାତ୍ରା ଅତୁଳନୀୟ । କୁମ୍ଭ ସମୟରେ ତୀର୍ଥସ୍ନାନ ତୁଲ୍ୟ ରଥଯାତ୍ରା କାଳରେ ବଡ଼ଦାଣ୍ଡରେ ଉପସ୍ଥିତ ହୋଇ ରଥାରୂଢ଼ ବାମନରୂପୀ ଜଗନ୍ନାଥଙ୍କୁ ଦର୍ଶନଜନିତ ନେତ୍ରାବଗାହନ ଅକ୍ଷୟ ଫଳଦାୟୀ । ମୁକ୍ତିଦାୟୀ ଏହି ଶ୍ରୀଗୁଣ୍ଡିଚା ବାସ୍ତବରେ ଆରମ୍ଭ ହୋଇଯାଏ ସ୍ନାନ ପୂର୍ଣ୍ଣିମାଠାରୁ । ଏହା କ୍ରମାନ୍ୱୟରେ ଏକ ଦୀର୍ଘ ଉତ୍ସବ । ସ୍ନାନ ପୂର୍ଣ୍ଣିମାଦିନ ସ୍ନାନବେଦୀରେ ଶ୍ରୀଜଗନ୍ନାଥଙ୍କ ଅଷ୍ଟୋତ୍ତର ଶତକୁମ୍ଭ ଜଳରେ ସ୍ନାନ ଅନ୍ତେ ପଞ୍ଚ ଦିବସ ବ୍ୟାପି ଅନବସର ପାଳିତ ହୁଏ । ଏହି ଅବସରରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଭକ୍ତଗଣ ଦର୍ଶନ କରିବାର ଅବକାଶ ରହେ ନାହିଁ ।

ସ୍ନାନାବଧି ପକ୍ଷଦିନେଷୁ ତେଷୁ
ଦେବାନ୍ ନ ପଶ୍ୟନ୍ତୁ ଜନାଃ କଦାଚିତ ।
(ବାମଦେବ ସଂହିତା- ୧୫/୭)

ଦଇତାମାନେ ଠାକୁର ସେବାର ଅଧିକାର ପ୍ରାପ୍ତ ହୁଅନ୍ତି । ଏହି ସେବା ଗୁପ୍ତସେବା ବିବେଚିତ ହୁଏ ।

ଅନବସର ପଞ୍ଚଦଶ ଦିବସର ଦୈନିକ କ୍ରିୟାମାନ ଅତିବିସ୍ତୃତ ଭାବରେ 'ବାମଦେବ ସଂହିତା'ରେ ଉଲ୍ଲେଖ ଅଛି । ସର୍ବସାଧାରଣଙ୍କୁ ଶ୍ରୀଜଗନ୍ନାଥ ଅସୁସ୍ଥ ଅଛନ୍ତି ବୋଲି କୁହାଗଲେ ମଧ୍ୟ ଏହି ସମୟ ତାଙ୍କର ଶ୍ରୀଅଙ୍ଗ ପ୍ରସ୍ତୁତିର କାଳ । ଅତି ଗୋପନୀୟ ଭାବେ ଅନ୍ତରଙ୍ଗ ସେବକମାନେ ଏହି କ୍ରିୟା ସଂପାଦନ କରିଥାନ୍ତି । 'ନୀଳାଦ୍ରି ମହୋଦୟ'ରେ ମଧ୍ୟ ଅନବସରକାଳୀନ ସମସ୍ତ କ୍ରିୟାର ବର୍ଣ୍ଣନା ଉପଲବ୍ଧ ହୁଏ ।

ବିଦ୍ୟାପତିଙ୍କ ବଂଶଧରମାନେ ଶୀତଳ କର୍ପୂରଯୁକ୍ତ ପ୍ରପାନକ ଦ୍ୱାରା ଶ୍ରୀଜଗନ୍ନାଥଙ୍କ ସନ୍ତୋଷ ବିଧାନ କରିଥାନ୍ତି । ପ୍ରଥମ ଛଅଦିନ ଧରି ପ୍ରଭୁଙ୍କ ଶ୍ରୀଅଙ୍ଗରୁ ଲେପ ଛଡ଼ାଇ ସପ୍ତ ଦିନଠାରୁ ଶ୍ରୀଅଙ୍ଗରେ ତୈଳମର୍ଦ୍ଦନ, ସୂକ୍ଷ୍ମବସ୍ତ୍ର ବନ୍ଧନ, ସରୁସୂତା ଲେପାଦି ସଂପାଦନ ଅନ୍ତେ ଦଶମ ଦିବସରେ ପ୍ରଭୁଙ୍କ ନେତ୍ରପଦ୍ମରେ କସ୍ତୁରୀ, କୁଙ୍କୁମ, କର୍ପୂର, ଚନ୍ଦନ ସମ୍ମିଳିତ ଲେପ ଦେବା ପରେ ଦ୍ୱାଦଶୀର ଅର୍ଦ୍ଧରାତ୍ରିରେ ବାଦ୍ୟଧ୍ୱନି ସହ ପ୍ରଭୁଙ୍କର ପାଦ କଳ୍ପନା କରାଯାଏ । ତ୍ରୟୋଦଶୀ ଦିନ ଚିତ୍ରକର ନାନାରଙ୍ଗରେ ପ୍ରଭୁଙ୍କ ଶ୍ରୀଅଙ୍ଗ ରଂଜିତ କରିଥାନ୍ତି । ଦୁଇଦିନ ମଧ୍ୟରେ ଚିତ୍ରକର୍ମ ଶେଷ ହୁଏ । ପଞ୍ଚଦଶ ଦିବସ ରାତ୍ରିରେ ନେତ୍ରୋତ୍ସବ ବିଧାନ ଅନୁଷ୍ଠିତ ହୁଏ । ଏହା ପୂର୍ବରୁ ଭକ୍ତଙ୍କ ଦର୍ଶନ ପାଇଁ ରଖାଯାଇଥିବା ପଟ୍ଟପ୍ରତିମାମାନଙ୍କୁ ସ୍ନାନପୂଜାଦି ବିସର୍ଜନ କରି ଦିଆଯାଇଥାଏ । ନେତ୍ରୋତ୍ସବ ପ୍ରସଙ୍ଗରେ ଉଭୟ ବାମଦେବ ସଂହିତା ଓ ନୀଳାଦ୍ରି ମହୋଦୟରେ ମନୋହର ଉଲ୍ଲେଖମାନ ରହିଛି । ବାମଦେବ ସଂହିତା କହନ୍ତି -

ତତ୍ରକାଳେଽପି ସଂପ୍ରାପ୍ୟାଚାର୍ଯ୍ୟକୋ ଦେବ ସଂନିଧିମ୍ ।
ତଚ୍ଚକ୍ଷୁରିତି ମନ୍ତ୍ରେଣ ଦଦ୍ୟାଚକ୍ଷୁଦ୍ୱୟଂ ତଦା ॥
ନେତ୍ରୋତ୍ସବେ ସୋଽପି ଭୂପସ୍ତତ୍ର ତିଷ୍ଠିତି ତତ୍ପୁରଃ ।
ଇତ୍ଥଂ ନେତ୍ରୋତ୍ସବେ ଜାତେ ବିଦ୍ୟାପତି କୁଳୋଦ୍ଭବଃ ॥

ମୂର୍ତ୍ତି ତତ୍ତ୍ୱାନୁସାରେ ଅର୍ଚ୍ଚାମୂର୍ତ୍ତି ଚତୁର୍ବିଧ - ମଣିବିଗ୍ରହ, ଧାତବ ବିଗ୍ରହ, ଦାରୁବିଗ୍ରହ ଏବଂ ମୃଣ୍ମୟ ବିଗ୍ରହ । ମଣି ବା ପାଷାଣ ବିଗ୍ରହ ଏବଂ ଧାତବ ବିଗ୍ରହ ସ୍ଥଳେ ଶିଳ୍ପୀ ପୂର୍ବରୁ ଚକ୍ଷୁ ସମେତ ସମଗ୍ର ବିଗ୍ରହଟି ପ୍ରସ୍ତୁତ କରି ଦେଇଥାନ୍ତି । ବିଗ୍ରହରେ ଜୀବନ୍ୟାସ କାଳରେ ମନ୍ତ୍ରଦ୍ୱାରା ଚକ୍ଷୁକୁ ସ୍ପର୍ଶ କରାଯାଏ ମାତ୍ର । ବିଗ୍ରହକୁ ଜୀବନ୍ତ କରିବାରେ ଚକ୍ଷୁର ଭୂମିକା ସର୍ବାଧିକ । ଶରୀରରେ ଚକ୍ଷୁଦ୍ୱୟ ହିଁ ଜୀବନର ସଙ୍କେତ ବହନ କରିଥାଏ । ଚକ୍ଷୁ ମୁଦ୍ରିତ ଥିଲେ ଜୀବନ୍ତ ମଧ୍ୟ ମୃତର ସଂଶୟ ସୃଷ୍ଟି କରେ । କହିବାକୁ ଗଲେ, ମନ୍ତ୍ର ନୁହେଁ, ଚକ୍ଷୁ ହିଁ ବିଗ୍ରହ ଦେହରେ ସଂଜୀବନୀ ଭରିଦିଏ । ଦାରୁ ଓ ମୃଣ୍ମୟ ପ୍ରତିମା କ୍ଷେତ୍ରରେ ପ୍ରତିମାକୁ ଚିତ୍ରକର ଚିତ୍ରିତ କରିବାକୁ ପଡ଼େ ଏବଂ ଯେତେବେଳେ ସେ ଚକ୍ଷୁ ଦୁଇଟିକୁ ତୂଳୀରେ ଆଙ୍କି ଦିଅନ୍ତି ସେତେବେଳେ ପ୍ରତିମା ଜୀବନ୍ତ ପ୍ରତିଭାତ ହୁଅନ୍ତି । ଚକ୍ଷୁରୁନ୍ମିଳିତ ହୋଇଗଲେ ପ୍ରାଣଶକ୍ତି ପ୍ରବେଶ କରିଯାଏ ପ୍ରତିମାରେ । ଶିଳ୍ପୀ ସେତେବେଳେ ଆପଣା ସୃଷ୍ଟିରେ ଆପେ ଲୋଭେଇ ଯାଏ । ଏଇଥିପାଇଁ ଶିଳ୍ପୀ ଦାରୁ ଓ ମୃଣ୍ମୟ ପ୍ରତିମାରେ ଚକ୍ଷୁ ଉନ୍ମୀଳନ କରି ସବା ଶେଷରେ ତାକୁ ପ୍ରାଣବନ୍ତ କରିଥାନ୍ତି । ସିଂହାସନରେ ବସି ଚକ୍ଷୁଷ୍ମାନ ପ୍ରତିମା ଦେବତାରେ ରୂପାନ୍ତରିତ ହୁଅନ୍ତି - ହୁଅନ୍ତି ଜଗନ୍ନାଥ ।

ଏଇ ଦେବତାକୁ ଏତେବଡ଼ ନାଁଟିଏ ଦେଲା କିଏ ? ଜଗନ୍ନାଥ - ଜଗତଯାକର ନାଥ । ସମଗ୍ର ବିଶ୍ୱବ୍ରହ୍ମାଣ୍ଡର ଅଧିପତି । ବ୍ରହ୍ମାଣ୍ଡ ସାରା ବ୍ୟାପିଯିବାର ଭାବନା ଭରି ରହିଛି ଏଇ ନାଆଁଟିରେ । ଏତେବଡ଼ ଦେବତାର ନାଁକୁ ଚାହିଁ ଦେଉଳ । ବଡ଼ ଠାକୁରକୁ ବଡ଼ ଦେଉଳ । ସିଏ ଯାତ୍ରା କରନ୍ତି ବଡ଼ ଦାଣ୍ଡରେ । ଭୁଜ ତାଙ୍କର ବଳିଆର ଭୁଜ, ସିଏ ମହାବାହୁ । ବଡ଼ ଭୋଗ ଖିଆ ସିଏ । ପ୍ରସାଦ ତାଙ୍କର ମହାପ୍ରସାଦ । ଏତେ ବଡ଼ପଣ ସମ୍ଭବ ହେଲା କିପରି ? ଶ୍ରୀଜଗନ୍ନାଥଙ୍କ ଶରୀରରେ ସେଇ ଲକ୍ଷଣଟି ରହିଛି । ଯିଏ ଏପରି ଏକ ଦେବତାର କଳ୍ପନା କରିଛି ସିଏ ଏହି ଲକ୍ଷଣଟି ତାଙ୍କଠାରେ ଥୋଇଛି । ମନସ୍ତତ୍ତ୍ୱବିତ୍‌ମାନେ କହିଥାନ୍ତି ଯାହାର ଆଖି ଯେତେ ବଡ଼ ସିଏ ସେତେ ବଡ଼ପଣିଆର ଅଧିକାରୀ ହୋଇଥାଏ । ଶ୍ରୀଜଗନ୍ନାଥଙ୍କ ବିଶାଳ ବର୍ତ୍ତୁଳାକାର ଆଖିର ଆୟତନ ସର୍ବାଧିକ । ପୃଥିବୀରେ ଏତେବଡ଼ ଆଖି ଆଉ କାହାରି ନାହିଁ । ସେଇଥି ପାଇଁ ଶ୍ରୀଜଗନ୍ନାଥ ସବୁଠାରୁ ବଡ଼ । ଜଗତ ଠାକୁର ସିଏ । ଆଖି ଭିତରେ ବ୍ରହ୍ମାଣ୍ଡର ଭାବ ଭରି ରହିଛି । ଦେବତାଙ୍କ ପ୍ରତିମା ନିର୍ମାଣ କାଳରେ ଶିଳ୍ପୀ ଆଖିଦିଓଟିକୁ ଟିକିଏ ବଡ଼ କରି ଗଢ଼ିଥାଏ । ଦେବୀ ପ୍ରତିମା ନିର୍ମାଣରେ ମଧ୍ୟ ଏଇ ଭାବନାର ପ୍ରତିଫଳନ ଘଟିଥାଏ । ବଡ଼ ଆଖିରେ ଦେବୀ ଅନାଇଁ ଥାଆନ୍ତି । ସାରା ଜଗତକୁ ଯିଏ ଦେଖିବ ତା'ର ସେମିତି ଆଖି ଦରକାର । ଆଖିକୁ ଦେଖି କେହି ଜଣେ ତା'ରି ଉପରେ ସେଇ ଭରସା କରିପାରିବ - ଏହାରି ଶରଣ ଗଲେ ଇଏ ମୋତେ ରକ୍ଷା କରିପାରିବ । ସେଥିପାଇଁ ପ୍ରଭୁ କରୁଣାସିନ୍ଧୁ ହୋଇଥାନ୍ତି, ଦୀନବନ୍ଧୁ ହୋଇଥାନ୍ତି, ଜଗତପତି ହୋଇଥାନ୍ତି । ଅସହାୟ ମଣିଷର ଚରମ ସହାୟର ସ୍ଥଳ । ଏତେବଡ଼ ଭରସା ଦେଉଥିବା ଦେବତାକୁ ଚାହିଁ ତା'ର ଆଖି ।

ଏପରି ଚକ୍ଷୁର ଉନ୍ମୀଳନ ପୁଣି ଜ୍ଞାନର ଉନ୍ମୀଳନ ରୂପେ ବିବେଚିତ । ଚକ୍ଷୁ ଜ୍ଞାନ ବା ପ୍ରଜ୍ଞାନର ପ୍ରତୀକ । ଅନ୍ଧକାର ଅଜ୍ଞାନତା ରୂପେ ବିବେଚିତ । ତେଣୁ ଗୁରୁଙ୍କ ବନ୍ଦନା ପ୍ରସଙ୍ଗରେ କୁହାଯାଏ - 'ଚକ୍ଷୁରୁନ୍ମିଳିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ।' ଶ୍ରୀଜଗନ୍ନାଥ ବୁଦ୍ଧ ହେତୁ ଏହି ଚକ୍ଷୁ ହିଁ ତାଙ୍କ ବୁଦ୍ଧତ୍ୱର ପରିଚାୟକ । ଅତଏବ ଦାରବ ପ୍ରତିମା ଦେହରେ ଚକ୍ଷୁର ଉନ୍ମୀଳନ ନହେଲା ପର୍ଯ୍ୟନ୍ତ ତାହା ଦାରୁଖଣ୍ଡିଟିଏ ମାତ୍ର । ଚକ୍ଷୁରେ ସେ ପ୍ରାଣବନ୍ତ ହୁଅନ୍ତି - ହୁଅନ୍ତି ଶ୍ରୀଜଗନ୍ନାଥ । ତେଣୁ ବିଗ୍ରହରେ ନେତ୍ରାଙ୍କନ ହିଁ ବିଗ୍ରହରେ ଜୀବନ୍ୟାସ, ବିଗ୍ରହରେ ଦେବତ୍ୱର ସଞ୍ଚାରଣ, ବିଗ୍ରହରେ ଦେବାବତରଣ ।

ଗଣଦେବତା, ଲୋକଦେବତା ରୂପେ ଶ୍ରୀଜଗନ୍ନାଥଙ୍କ ପାରମ୍ପରିକ ଉପାସନାରେ ଏହି ଚକ୍ଷୁ ଚିତ୍ରିତ ଅବକାଶ ଏକ ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତ । ଚକ୍ଷୁ ଚିତ୍ରିତ ହୋଇଗଲାପରେ ନବଯୌବନ ପ୍ରାପ୍ତ ହୋଇ ଯାଆନ୍ତି ଶ୍ରୀଜଗନ୍ନାଥ । ରତ୍ନସିଂହାସନ ମଣ୍ଡନ କରି ସେ ଭକ୍ତଙ୍କୁ ଦର୍ଶନ ଦିଅନ୍ତି । ଭକ୍ତର ଉତ୍କଣ୍ଠିତ ପ୍ରାଣ ପରମ ଶାନ୍ତିଲାଭ କରେ ତାଙ୍କର ଦିବ୍ୟଦର୍ଶନରେ । ତେଣୁ ଏ ଯେଉଁ ଉତ୍ସବ ତାହା ନେତ୍ରୋତ୍ସବ ନାମରେ ପ୍ରଖ୍ୟାତ । ନବନିର୍ମିତ ରଥରେ ବିରାଜମାନ କରି ଯାତ୍ରା ଉଦ୍ଦେଶ୍ୟରେ ପ୍ରଭୁ ଆପଣାକୁ ଯେମିତି ପ୍ରସ୍ତୁତ କରି ଦେଉଛନ୍ତି । ତେଣୁ ରଥାରୂଢ଼ ହେବାପାଇଁ ଶ୍ରୀଜଗନ୍ନାଥଙ୍କ ଏହା ପ୍ରସ୍ତୁତି ପର୍ବ ।

ଏଇଠି ପ୍ରଶ୍ନ ଉଠେ ଏହି ଉତ୍ସବ କାହାର ? କାହାର ନେତ୍ରପାଇଁ ଏ ଉତ୍ସବ ? ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ନେତ୍ର ଲାଗି ହେଲା ବୋଲି ଏ ଉତ୍ସବ ହୋଇପାରେ । ଶ୍ରୀଜଗନ୍ନାଥ ସଜବାଜ ହୋଇ ପତିତପାବନ ରୂପେ ଯାତ୍ରାରେ ବାହାରିବେ ଭକ୍ତଙ୍କ ଦର୍ଶନ ପାଇଁ । ତେଣୁ ଶ୍ରୀଜଗନ୍ନାଥଙ୍କ ନେତ୍ର ପାଇଁ ଏ ଉତ୍ସବ । ବିଶ୍ୱସ୍ରଷ୍ଟାଙ୍କର ଲୀଳାମାନୁଷବିଗ୍ରହ ଦୃଷ୍ଟିରୁ ତାଙ୍କରି ଲୀଳା ମାତ୍ରକେ ଉତ୍ସବ । ଏପରି ବିଚାରରେ ନେତ୍ରୋତ୍ସବକୁ ଗ୍ରହଣ କରାଯାଇପାରେ । ସମସ୍ତ ସ୍ଥାବର ଜଙ୍ଗମଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥଙ୍କ ନବଯୌବନ ରୂପ ହିଁ ଉତ୍ସବର କାରଣ ହୋଇଥାଏ । ଅଗଣିତ ଭକ୍ତଙ୍କ ଦୃଷ୍ଟିରେ ଏ ଉତ୍ସବ ହୋଇପଡ଼େ । ଅଗଣିତ ନେତ୍ରର, ଦୃଷ୍ଟିର ଏକତ୍ର ସମାବେଶରେ ଇଏ ହୋଇଯାଏ ନେତ୍ରୋତ୍ସବ ।

ଶ୍ରୀଗୁଣ୍ଡିଚାର ପ୍ରାକ୍ ପ୍ରସ୍ତୁତି ସ୍ୱରୂପ ନେତ୍ରୋତ୍ସବ ଶ୍ରୀଜଗନ୍ନାଥ - ବିଚାରରେ ଅତ୍ୟନ୍ତ ତାତ୍ତ୍ୱିକ ଏବଂ ମହତ୍ତ୍ୱପୂର୍ଣ୍ଣ ପର୍ଯ୍ୟାୟ । ଏହି ନେତ୍ରଟି ପାଇଁ ଶ୍ରୀଜଗନ୍ନାଥ ପ୍ରବୁଦ୍ଧ, ଜ୍ଞାନତତ୍ତ୍ୱର ଶିରୋମଣି, ରହସ୍ୟ ମଧ୍ୟରେ ସର୍ବୋତ୍ତମ ରହସ୍ୟ, ଗୂଢ଼ାତି ଗୂଢ଼ ହୋଇ ପଡ଼ନ୍ତି । ଶୂନ୍ୟ, ମହାଶୂନ୍ୟ ସୃଷ୍ଟିତତ୍ତ୍ୱକୁ ସାଧାରଣରେ ସ୍ୱଳ୍ପପ୍ରଜ୍ଞାଧାରୀ ମଣିଷ ପାଖରେ ପହଞ୍ଚାଇବା ପାଇଁ ଲୀଳା ବିଗ୍ରହଧାରୀଙ୍କ ଇଏ ସର୍ବୋତ୍ତମ ଲୀଳା ନୁହେଁ କି ? ତେଣୁ ଏ ଉତ୍ସବ ବାସ୍ତବରେ ଯେଉଁମାନେ ଦର୍ଶନ କରନ୍ତି ସେମାନେ ଉତ୍ତମ ଗତି ପ୍ରାପ୍ତ ହୁଅନ୍ତି ।

ଯେ ପଶ୍ୟନ୍ତି ନବୀନନୀରଦଚୟ ଶ୍ୟାମାଭିରାମାକୃତେ
ବିଷ୍ଣୋସ୍ତସ୍ୟ ପରାତ୍ମନଃ ପରମୟା ଭକ୍ତ୍ୟାପି ନେତ୍ରୋତ୍ସବମ୍ ।
ତେ ନୂନଂ ଭବସାଗରସ୍ୟ ସହସା ସଂତୀର୍ଯ ଲୋକୋତ୍ତମାଃ
ସତ୍କାରଂ ସୁର ଦୁର୍ଲଭଂ ଯଦମହୋ ତଦ୍‌ବୈ ହରେର୍ଭୋଦ୍ୱିଜାଃ ॥
(ନୀଳାଦ୍ରି ମହୋଦୟ)

ଭବସାଗରରୁ ପାରି ହେବାର ନୌକା ହିଁ ଏହି ଚକାଡ଼ୋଳା । ପଥ ହିଁ ଏହି ନେତ୍ର । ସେଇଥିପାଇଁତ ଏତେ ଭିଡ଼ । ଢେଉ ଭାଙ୍ଗୁଥିବା ସାଗରକୂଳରେ ଏତେ କୋଳାହଳ ।

ଅବସରପ୍ରାପ୍ତ ଓ.ଇ.ଏସ୍.
'ନୈବେଦ୍ୟ', ପୂଜାରୀପୁଟ, କୋରାପୁଟ

---

# ଶ୍ରୀରଙ୍ଗା ଚରଣେ ଲୋଟୁ ମଥା ନିତ୍ୟ

ସୁପ୍ରଭା ମିଶ୍ର



ଅସାର ସଂସାର ବନ୍ଧ
ସଅଳ ଭାଙ୍ଗ ମୁକୁନ୍ଦ
ଅଥଳ ପାପ ସାଗର ଦିଅ ଶୁଖାଇ
ଏ ଦୀନ-ଅନାଥ ପାଇଁ
ନିଶ୍ଚିତ ଶାଶ୍ୱତ ପ୍ରେମ
ଏ କ୍ଷେତ୍ରେ ଏ ପଦେ ପରା ଅଛ ରଖାଇ
ହେ ନାଥ ! ମୁଁ ଜାଣେ ତେଣୁ
ଦୀନବନ୍ଧୁ ନାମ ତୁମ ଡକା ପଡ଼ଇ
ଜଗନ୍ନାଥ ସ୍ୱାମୀ ତୁମେ
ମୋ' ନୟନ ପଥଯାତ୍ରୀ ଯଦି ହୁଅନ୍ତ ।

ଏ ପୁଣ୍ୟ ଅଷ୍ଟକ ମନ୍ତ୍ର
ପଢ଼େ ହୋଇ ହୃଷ୍ଟଚିତ୍ତ
ସ୍ଥିର ମନେ ଶୁଚିବନ୍ତ ହୋଇ ଯେ ଗାଏ
ପାତକୀ ପାତକଯାକ ଦଗ୍‌ଧ ହୁଅଇ ଅନଳେ
ଅନ୍ତେ ବିଷ୍ଣୁଲୋକ ଗତି ହୁଏ ପ୍ରାପତ
ଜୟ ଜୟ ଶ୍ରୀଜଗନ୍ନାଥ
ଶ୍ରୀରଙ୍ଗା ଚରଣେ ଲୋଟୁ
ଏ ମଥା ନିତ୍ୟ ।



ଅଧ୍ୟାପିକା
ଶୈଳବାଳା ମହିଳା କଲେଜ, କଟକ

# ମାନବବାଦର ପ୍ରତୀକ ଶ୍ରୀଜଗନ୍ନାଥ

ଡକ୍ଟର କିଶୋର ମହାନ୍ତି



ବିଶ୍ୱ ଐତିହ୍ୟରେ ଶ୍ରୀଶ୍ରୀଜଗନ୍ନାଥଙ୍କ ଘୋଷଯାତ୍ରାର ଅୟମାରମ୍ଭ କେତେକ ତଥ୍ୟ ରହିଥିଲେ ହେଁ ଏହା ବହୁ ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ବିଶ୍ୱ ସଂସ୍କୃତିକୁ ପ୍ରଭାବିତ କରିବା ସହ ଏକ ସାର୍ବଜନୀନ ଗଣ ମହୋତ୍ସବରେ ପରିଣତ ହୋଇଯାଇଛି । ଶବର ସଂସ୍କୃତିରୁ ଜନ୍ମ ନେଇଥିବା ଏହି ସଂସ୍କୃତି ପରବର୍ତ୍ତୀ ସମୟରେ ବୈଦିକ, ବୈଷ୍ଣବ, ଶାକ ଓ ଶୈବ, ତନ୍ତ୍ର ନାଥ, ଜୈନ ଓ ବୌଦ୍ଧ ସଂସ୍କୃତିକୁ ମଧ ପ୍ରଭାବିତ କରିଥିବାର ଦୃଷ୍ଟାନ୍ତ ରହିଛି ଏବଂ ତାହା କୋଟି କୋଟି ଜନମନରେ ଏକ ଆଧାତ୍ମିକ ଆନ୍ଦୋଳନର ରୂପ ନେଇଛି, ଯେପରିକି ଜାତି, ବର୍ଣ୍ଣ, ଧର୍ମ, ନିର୍ବିଶେଷରେ ଏହି ମହନୀୟ ତଥା ଇତିହାସ ପ୍ରସିଦ୍ଧ ଯାତ୍ରାରେ ସାମିଲ ହୋଇ ବିଶ୍ୱର ଐକ୍ୟ ଓ ସଂହତିପ୍ରତି ଆହ୍ୱାନ ଦେଉଛି ।

ଓଡ଼ିଶାର ସଂସ୍କୃତି କହିଲେ ଜଗନ୍ନାଥ ସଂସ୍କୃତି । ମହନୀୟ ଜଗନ୍ନାଥ ସଂସ୍କୃତିର ମୂଳାଧାର ହେଉଛନ୍ତି ପ୍ରଭୁ ଶ୍ରୀଜଗନ୍ନାଥ । ସ୍ୱୟଂ ଜଗନ୍ନାଥ ହେଉଛନ୍ତି ମାନବବାଦର ପ୍ରତୀକ । ସେ ସବୁରି ଦେବତା - ସେ ବିଶ୍ୱଦେବତା ଭାବରେ ପରିଚିତ । ତାଙ୍କଠାରେ ସମସ୍ତେ ସମାନ । ତେଣୁ ଜଗନ୍ନାଥ ବିଶ୍ୱ ଦେବତା ଭାବରେ ପୂଜିତ ଓ ବିଶ୍ୱ ସଂସ୍କୃତିକୁ ଆହୁରି ମହିମାନ୍ୱିତ କରୁଛି ଜଗନ୍ନାଥ ସଂସ୍କୃତି । ଜଗନ୍ନାଥଙ୍କ ମୂଳ ସ୍ୱରୂପକୁ ଚିତ୍ରିତ କରିବାକୁ ଯାଇ ବ୍ୟାଖ୍ୟାକାର ତଥା ଧୀସଂପନ୍ନ ପଣ୍ଡିତ ଗାଇଛନ୍ତି-

> 'ଅପାଣି ପାଦୋ ଜବନୋ ଗ୍ରହୀତା
> ପଶ୍ୟତେ ଚକ୍ଷୁଃ ଶୃଣୋତ୍ୟ କର୍ଣ୍ଣଃ
> ସ ବେତ୍ତି ବେଦ୍ୟମ୍ ନତେସ୍ୟାସ୍ତିବେତ୍ତା
> ମେହୁର ଗ୍ୟମ ପୁରୁଷଂ ମହାନ୍ତମ୍ ।'

ତାଙ୍କର ହାତ ନାହିଁ - ପାଦ ନାହିଁ ଅଥଚ ସେ ସମସ୍ତଙ୍କୁ ଧରି ରଖିଛନ୍ତି ଓ ସବୁ ଆଡ଼େ ଯାଉଛନ୍ତି । ତାଙ୍କର ଆଖି ନାହିଁ, ସବୁ ସେ ଦେଖୁଛନ୍ତି, ତାଙ୍କର କାନ ନାହିଁ ସବୁ ଶୁଣି ପାରୁଛନ୍ତି । ସେ ସମସ୍ତଙ୍କୁ ଜାଣୁଛନ୍ତି ଅଥଚ ତାଙ୍କୁ କେହି ଜାଣି ପାରୁ ନାହାନ୍ତି, ସେହି ତ ପୁରୁଷୋତ୍ତମ । ବେଦ ବିଚାରରେ ଚତୁର୍ଦ୍ଧାମୁରତିଙ୍କୁ ମଧ ଚାରି ବେଦର ରୂପ ଦିଆଯାଇଛି, କୁହାଯାଇଛି-

> ବଳଭଦ୍ରରେ ସେ ସମ ହୋଇ
> ରୁକ୍ ଯେ ସୁଭଦ୍ରା ଅଟଇ
> ଯର୍ଜୁବେଦ ଶ୍ରୀଜଗନ୍ନାଥ
> ଅଥର୍ବ ସୁଦର୍ଶନ ପ୍ରାର୍ଥ ।

ବିଭିନ୍ନ ପୁରାଣରେ ପ୍ରଭୁ ଜଗନ୍ନାଥଙ୍କର ଅପାର ମହିମା ବର୍ଣ୍ଣନାର ପଟ୍ଟାନ୍ତର ନାହିଁ । କବିଙ୍କ ମୁଖରେ ପ୍ରଭୁ ଜଗନ୍ନାଥଙ୍କର ରୂପ ବୈଭବର ଅପୂର୍ବ ଚିତ୍ରଣ ଦେଖିବାକୁ ମିଳେ । କବି ଭାବାବେଗରେ ଗାଇଛନ୍ତି-

> ଜୟ ଜୟ ଜଗନ୍ନାଥ
> ଜାନକୀ ଦେବୀର କାନ୍ତ
> ଜଳଧି ତଟେ ପ୍ରକଟ
> ଶଙ୍ଖନାଭି କଳ୍ପବଟ
> ଦାରୁରୂପେ ବିଜେ କରି
> ବଉଦ ରୂପେ ବିହରି
> କଳିଯୁଗେ ଜଗନ୍ନାଥ
> ଯୋଗାରୂଢ଼ ରୂପେ ସ୍ଥିତ
> ଯୋଗକୁ ଆରମ୍ଭ କରି
> ବଉଦ ରୂପେ ବିହରି ...

ରଥଯାତ୍ରାର ବିଭିନ୍ନ ନାମକରଣ କରାଯାଇଛି । ସେଗୁଡ଼ିକ ହେଲା ଗୁଣ୍ଡିଚାଯାତ୍ରା, ଘୋଷଯାତ୍ରା, ପତିତପାବନ ମହୋତ୍ସବ, ଦଶଅବତାର ଯାତ୍ରା, ଦକ୍ଷିଣାଭିମୁଖୀ ଯାତ୍ରା, ଅନ୍ତର୍ବେଦୀ ମହୋତ୍ସବ

ଆଡ଼ପଯାତ୍ରା, ନବ ଦିନାତ୍ମିକା ଯାତ୍ରା । ଯାତ୍ରା ସମୟରେ ପ୍ରଭୁ ଶ୍ରୀଜଗନ୍ନାଥ ଦଶ ଅବତାର ରୂପ ଧାରଣ କରନ୍ତି ବୋଲି ରଥଯାତ୍ରାକୁ ଦଶ ଅବତାର ଯାତ୍ରା ନାମରେ ନାମିତ କରିବା ଶାସ୍ତ୍ର ସମ୍ମତ । ଜଗନ୍ନାଥ ରଥଯାତ୍ରା ସମୟରେ କୁସୁମଲାଗି ବେଳେ ମୀନ ଅବତାର, ତୁଳି ଲାଗିବେଳେ କୁର୍ମାବତାର, କାନୁ ଆସି ଲାଗି ବେଳେ ଯଜ୍ଞ ବରାହ ଅବତାର, ସେନାପଟା ବାହୁଟି ଲଗାଇଲାବେଳେ ନରସିଂହ ଅବତାର, ରଥାରୂଢ଼ ବେଳେ ବାମନ ଅବତାର, ଆଡ଼ପ ଡୋର ଲାଗିବେଳେ ପରଶୁରାମ ଅବତାର । ଆଡ଼ ପରିଖାରେ ରାଘବେନ୍ଦ୍ର ଅବତାର, ଆଡ଼ପ ରାସ ତଥା ହୀରୋତ୍ସବରେ ବ୍ରଜେନ୍ଦ୍ର ନନ୍ଦନ ଅବତାର । ଅନ୍ତର୍ବେଦୀ ମହୋତ୍ସବ ବେଳେ ବୌଦ୍ଧ ଅବତାର ଧାରଣ କରି ଜନମନକୁ ହରଣ କରିଅଛି । ରଥାରୂଢ଼ ଜଗନ୍ନାଥଙ୍କୁ ଦର୍ଶନ କଲେ ସର୍ବ ପାପ କ୍ଷୟ ହୁଏ ବୋଲି କଥିତ ଅଛି । ଅସଂଖ୍ୟ ଶ୍ରଦ୍ଧାଳୁ ତାଙ୍କରି ବାହୁତଳେ ଆଶ୍ରା ଟିକିଏ ପାଇବା ପାଇଁ ନିଜର ବୈକଲ୍ୟଭାବ ପରିପୋଷଣ କରିଥାନ୍ତି । ଶୁଦ୍ଧପୂତ ମାନସିକତା ଭିତରେ ଭାକ୍ତିକ ଭାବଧାରା ଯେତେବେଳେ ଅନାୟସରେ ପ୍ରତିବନ୍ଧକ ନମାନି ମାଡ଼ି ଚାଲେ ସେ ପରଂବ୍ରହ୍ମଙ୍କ ସତ୍ତାକୁ ଉପଲବ୍ଧି କରି ଜୀବନର ଅମୃତମୟ ମାର୍ଗ ଅନୁସନ୍ଧାନରେ ବ୍ରତୀ ହୁଏ । ଈଶ୍ୱର ଓ ଭକ୍ତଙ୍କ ମଧ୍ୟରେ ଅଭେଦ ସଂପର୍କ ସେଇ ନିଗୂଢ଼ ସଂପର୍କ ହିଁ ଆତ୍ମା ପରମାତ୍ମାଙ୍କ ମିଳନର ସହଜସାଧ୍ୟ ହୁଏ । ଆନମନା ନଦୀ ଯେପରି ବାଧାବିଘ୍ନ ନମାନି ସାଗର ବକ୍ଷକୁ ଲମ୍ଫ ପ୍ରଦାନ କରେ, ସେହିପରି ସମସ୍ତ ଜାଗତିକ ସୁଖ ସମ୍ଭୋଗ ମାୟାକୁ ପରିତ୍ୟାଗ କରି ସେ ସେହି ମହାସମୁଦ୍ରରେ ଲୀନ ହେବାକୁ ପ୍ରୟାସ କରେ । ମଣିଷ ଶରୀର ସହିତ ରଥର ପରିକଳ୍ପନା ଏକ ଭାବାତ୍ମକ ତଥା ରହସ୍ୟମୟ ପରିପ୍ରକାଶ । **ମଣିଷର ସମଗ୍ର ଦେହ ବା ଶରୀର ରଥ ହେଲେ ତାକୁ ପରିଚାଳିତ କରୁଥିବା ସାରଥୀ ହେଲେ ସ୍ୱୟଂ ଭଗବାନ ।** ତେଣୁ ଜଡ଼ ଓ ଚେତନକୁ ଏକାକାର କରି ଯିଏ ସମସ୍ତ ବୁଦ୍ଧି ପ୍ରୟୋଗ କରି କୌଶଳରେ ଏବଂ ସହଜରେ ରଥକୁ ଚଳାଇ ପାରୁଛି ସେହି ହିଁ ଯୋଗ୍ୟ ସାରଥୀ ରୂପରେ ପରିଚିତ । ସ୍ୱୟଂ ଶ୍ରୀଜଗନ୍ନାଥ ମାନବବାଦର ପ୍ରତୀକ ହୋଇଥିବାରୁ ରତ୍ନସିଂହାସନରେ ବସି ରହି କ୍ଲାନ୍ତିକୁ ଅପନୋଦନ କରିବା ପାଇଁ ନବଦିନ ବ୍ୟାପି ଯେଉଁ ରଥଯାତ୍ରା କରନ୍ତି ତାହା ବିଶ୍ୱରେ ଏକ ଚମକପ୍ରଦ ଘଟଣା ।

ସାଧାରଣ ମଣିଷଙ୍କ ସହ ମିଶିବାର ଏ ଯେଉଁ ଦୁର୍ବାର ବାସନା ଏବଂ ସେମାନଙ୍କର ସୁଖଦୁଃଖକୁ ବୁଝିବାର ପ୍ରୟାସ ଓ ସାଧାରଣ ଖାଦ୍ୟରେ ଆପ୍ୟାୟିତ ପରମ ପୁରୁଷଙ୍କର ଅଦମ୍ୟ ଅଭୀପ୍ସା ସାର୍ଥକ ହୁଏ ଏହି ଘୋଷଯାତ୍ରାରେ ।

ଅନ୍ୟ ଦୃଷ୍ଟିରୁ ଦେଖିବାକୁ ଗଲେ ରଥ ହେଉଛି ପ୍ରଗତିର ପ୍ରତୀକ । ପ୍ରଗତି ସମସ୍ତଙ୍କର କାମ୍ୟ । ପ୍ରଗତି ନ ଆସିଲେ ସଭ୍ୟତା ଓ ସଂସ୍କୃତିରେ କଳଙ୍କି ଲାଗିଯିବ । ତେଣୁ ସାମୂହିକ ପ୍ରଗତିକୁ ଆହ୍ୱାନ କରେ ରଥଯାତ୍ରା । ଏହା ପ୍ରଗତିର ରଥଚକ୍ର । ରଥର ବୈଶିଷ୍ଟ୍ୟ ହେଉଛି ଆଗକୁ ଆଗକୁ ମାଡ଼ି ଚାଲିବା । ବୀର ସବୁବେଳେ ଅଗ୍ରଗାମୀ ହୁଏ । 'ପଛଘୁଞ୍ଚା ନାହିଁ ବୀରର ଜାତକେ', ତେଣୁ ପ୍ରଗତି ପାଇଁ ଶୁଭ ସୂଚନା ପ୍ରଦାନ କରେ ରଥ, ରଥାରୂଢ଼ ପ୍ରଭୁ ଜଗନ୍ନାଥ, ବଳଭଦ୍ର, ମା' ସୁଭଦ୍ରା, ନନ୍ଦିଘୋଷ, ତାଳଧ୍ୱଜ ଓ ଦେବଦଳନରେ ବିଶ୍ୱବାସୀଙ୍କ ଆନନ୍ଦ ଉଲ୍ଲାସରେ ଭାଗୀଦାର ହୋଇ ଏକାକାର ହୋଇଯାନ୍ତି । ରଥଯାତ୍ରା ବା ଶ୍ରୀଗୁଣ୍ଡିଚା ଶୁଭଫଳ ପ୍ରଦାୟକ । ରଥଯାତ୍ରା ପ୍ରବେଶ କରନ୍ତେ ଆକାଶରେ ଭେଳା ଭେଳା କଳା ବଉଦ ଛାଇ ହୋଇଯାଏ - ବର୍ଷା ପଡ଼ିଲେ ଚାଷୀ ହର୍ଷ-ଉତ୍‌ଫୁଲ ହୁଏ ।

କୃଷିର ପ୍ରଗତି ଘଟିଲେ ଦାରିଦ୍ର୍ୟ ଦୂର ହୁଏ, ନିରନ୍ନକୁ ଅନ୍ନ ଓ ବାସହରାକୁ ବାସ ମିଳେ, ଆଉ ନଗ୍ନ ଦେହକୁ ଆଚ୍ଛାଦିତ କରିବା ପାଇଁ ମିଳେ ବସ୍ତ୍ର । ମଣିଷର ମୌଳିକ ଆବଶ୍ୟକତା ପୂରଣ ହେଲେ ଯାଇ ପ୍ରଗତି ଆସିଛି ବୋଲି ବୁଝିବାକୁ ହେବ । ସ୍ୱୟଂ ଜଗନ୍ନାଥ ମଙ୍ଗଳର ଦ୍ୟୋତକ । ସେ ସତ୍ ଚିତ୍ତ ଓ ଆନନ୍ଦର ଅଭିନବ ପରିପ୍ରକାଶ । ସେ ବିଶ୍ୱବାସୀଙ୍କର ସକଳ ଦୁଃଖକୁ ଲାଘବ କରିବା ପାଇଁ ବିଭିନ୍ନ ରୂପରେ ଆତ୍ମପ୍ରକାଶ କରିଥାନ୍ତି । ସଂପ୍ରତି ରାଜନୀତିକ ପ୍ରେକ୍ଷାପଟ୍ଟରେ ଦେଖିବାକୁ ଗଲେ ନେତା ଯିଏ ନେତୃତ୍ୱ ନିଏ, ଯେ ଜଣକର ସୁଖଦୁଃଖ ଭଲମନ୍ଦ ନ୍ୟାୟ ଓ ଅନ୍ୟାୟ ବୁଝେ, କିନ୍ତୁ ଏବେ ସେସବୁ ବିପରୀତ ହୋଇଯାଇଛି - ନେତା ଭାବରେ ପଣ୍ଡିତ ଗୋପବନ୍ଧୁ ଦାସ ଶ୍ରୀଜଗନ୍ନାଥଙ୍କ ଅପାର ମହିମାକୁ ପ୍ରଖ୍ୟାପନ କରି ଦୃଢ଼ କଣ୍ଠରେ ଗାଇଥିଲେ- 'ଉତ୍କଳର ନେତା ନିଜେ ନାରାୟଣ' ତେଣୁ ତାଙ୍କଠାରୁ ବଳି ବିଚାରେ ସର୍ବଶ୍ରେଷ୍ଠ ନେତା ଆଉ ବା କିଏ ଅଛି ? ସେ କମ୍ଭୁ କଟକର ରାଜା ବୋଲି ଯଥାର୍ଥରେ କବି ଦୀନକୃଷ୍ଣ ତାଙ୍କ କାବ୍ୟରେ ବର୍ଣ୍ଣନା କରିଛନ୍ତି । ଐକ୍ୟ ଓ ସଂହତିର ପ୍ରତୀକ ପ୍ରଭୁ ଶ୍ରୀଜଗନ୍ନାଥ । ଏହି କଥା ମାଦଳାପାଞ୍ଜିରେ ମଧ୍ୟ ଉଲ୍ଲିଖିତ ହୋଇଛି-

''ଜାତି ଏକ ଜଣା ଅକୁମାରୀ ହିମାଚଳ
ଜାତୀୟ ସଂହତି ରାଜେ ଜଗା ତାର ମୂଳ ।'

ଶ୍ରୀକ୍ଷେତ୍ର ବହୁ ପୂର୍ବରୁ ବିଶ୍ୱଶକ୍ତିର ପୁଣ୍ୟ ପୀଠ ଭାବରେ ପରିଗଣିତ ହୋଇ ଆସିଛି । ଏକ ବିଶ୍ୱ, ଏକ ସମାଜ ଏକ ଜାତି, ଏକ ଧର୍ମର ପ୍ରତିଷ୍ଠା ପାଇଁ ଜଗନ୍ନାଥ ସଂସ୍କୃତିର ବାର୍ତ୍ତା ସୁସ୍ପଷ୍ଟ । ଏହାରି ମୂଳରେ କେବଳ ରହିଛି ଜଗନ୍ନାଥ ଚେତନା ।

ଆକାଶବାଣୀ, କଟକ

# ବ୍ରହ୍ମଶକ୍ତି ସ୍ୱରୂପିଣୀ ସୁଭଦ୍ରା

କୃଷ୍ଣପ୍ରିୟା ଦାସ

'ଯୋଗମାୟା ପରାନିତ୍ୟା ସୁଭଦ୍ରା ମୋହ ରୂପିଣୀ ।
ନିର୍ଗୁଣା ବିଷ୍ଣୁମାୟା ସା ନାଦ ବିଦ୍ୟାମୟୀ ସ୍ୱୟଂ ।।'

ବ୍ରହ୍ମାଣ୍ଡ କୋଟି କୋଟି । ତଦୁର୍ଦ୍ଧ୍ୱରେ ମହାବୈକୁଣ୍ଠ, ତତ୍ପରେ ଶ୍ରୀପୁରୁଷୋତ୍ତମଙ୍କ ଗୋଲକ ନିତ୍ୟସ୍ଥଳ ବିରାଜମାନ । ସେହି ନିତ୍ୟସ୍ଥଳ ପଦ୍ମ କୋରକରେ ରତ୍ନସିଂହାସନ, ତନ୍ମଧ୍ୟରେ ତିନୋଟି ଚକା ବଇଠି । ଯାହାକୁ ଶେଷ ଅନନ୍ତଙ୍କର ତିନୋଟି ଫଣା ବୋଲି ବିଚାର କରାଯାଏ । ସେହି ଚକାତ୍ରୟର ମଧ୍ୟଭାଗକୁ ମଣ୍ଡନ କରିଥିବା ଦେବୀ ଯୋଗମାୟା ସୁଭଦ୍ରାଙ୍କ ଅବସ୍ଥିତି । ସେ ହେଉଛନ୍ତି ପରାଶକ୍ତି, ନିତ୍ୟା, ନିର୍ଗୁଣା, ବିଷ୍ଣୁମାୟା ଏବଂ ନାଦବିଦ୍ୟା ପ୍ରଦାୟିକା ।



ଏଠାରେ ପ୍ରତିମା ପୂଜା ସମ୍ପୂର୍ଣ୍ଣ ତନ୍ତ୍ର ବିଧାନ ହେବା କାରଣରୁ ଶ୍ରୀଜଗନ୍ନାଥଙ୍କୁ ମହାଭୈରବ, ବଳଭଦ୍ରଙ୍କୁ ଉତ୍ତର ସାଧକ ଓ ସୁଭଦ୍ରାଙ୍କୁ ମହା ଭୈରବୀ ରୂପେ ଗ୍ରହଣ କରାଯାଇଛି । ଏହି ଚତୁର୍ଦ୍ଧା ବିଗ୍ରହ ମଧ୍ୟରୁ ବଳଭଦ୍ର କର୍ମର ପ୍ରତୀକ । ଜଗନ୍ନାଥ ଜ୍ଞାନର ପ୍ରତୀକ ଓ ସୁଭଦ୍ରା ଭକ୍ତିର ପ୍ରତୀକ । ସୁଦର୍ଶନ ମୁକ୍ତିର ପ୍ରତୀକ । ମୁକ୍ତିକାମୀ ବ୍ୟକ୍ତି ଭକ୍ତି ଓ ସାଧନାଦ୍ୱାରା ବ୍ରହ୍ମଲାଭ କରି ନିର୍ବାଣ ପାଇଥାଏ । କିନ୍ତୁ ସାଧନା ନିମନ୍ତେ ଜ୍ଞାନର ଆବଶ୍ୟକତା ରହିଛି । ଜ୍ଞାନଲାଭ ନିମନ୍ତେ ସୁସ୍ଥ ମାନସିକ ସ୍ତର ଦରକାର । ଏ ସମସ୍ତ ଶକ୍ତି ମା' ଭଗବତୀ ସୁଭଦ୍ରାଙ୍କ ନିକଟରେ ରହିଛି । ଜ୍ଞାନ ବଳରେ ଅନ୍ତର ଶୋଧନ କରି କର୍ମ ନିହିତ ହେଲେ ଭକ୍ତି ଅଙ୍କୁରିତ ହୁଏ । ତାହା ପରିପକ୍ୱ ହେବାମାତ୍ରେ ଜୀବ, ବ୍ରହ୍ମ ଏକତ୍ର ହୋଇ ଯାଆନ୍ତି । ସଂସାର ବନ୍ଧନରୁ ମୁକ୍ତି ମିଳେ ।

ଏଠାରେ ସୁଭଦ୍ରା ମୋହମାୟା ହରିଦ୍ୱର୍ଣ୍ଣା, ପ୍ରେମ, ଭକ୍ତି ଓ ମୈତ୍ରୀର ସଂକେତ ତୋଳି, ପାଦଦ୍ୱୟକୁ ଶ୍ୟାମା ଦେବୀଙ୍କ କଟି ଭେଦ କରି ଅଦୃଶ୍ୟ ରଖିବା ସହିତ ହସ୍ତଦ୍ୱୟକୁ ଗୁପ୍ତ ଭାବରେ ଚକାଦ୍ୱୟକୁ ବେଷ୍ଟନ କରାଇ ପ୍ରଣାମ ମୁଦ୍ରାରେ ଯୋଗରତ ଅଛନ୍ତି । ପଦ୍ମପତ୍ରାୟତ ନେତ୍ରରେ ପ୍ରେମୋଲ୍ଲାସ, ପକ୍ୱ ବିମ୍ବଧରରେ ହର୍ଷୋଲ୍ଲାସ, ଶ୍ରୀମୁଖ ମାଧୁରୀରେ ଭକ୍ତମାନଙ୍କୁ କୃତାର୍ଥ କରାଇବାର ଭାବ । ସାଧାରଣ ଚକ୍ଷୁରେ ସେ ସୂକ୍ଷ୍ମ ରୂପା ହେଲେ ମଧ୍ୟ 'ସର୍ବ ଭୂତେଷୁ ଗୂଢ଼ଃ ।' ଏକାଧାରାରେ - 'ମାତରଂ ଭଗିନୀଂ ବ୍ୟାପୀ ଭାର୍ଯ୍ୟାଂ ବା ଭକ୍ତି ଭାବିତାଃ ।' ଏହି ଦୃଷ୍ଟିରୁ ପୁରୁଷର ସମକକ୍ଷ ଆସନରେ ପ୍ରତିଷ୍ଠିତ ହୋଇ, ସମସ୍ତ ଜଗତକୁ ନିଜ ଭିତରେ ଲୀନ କରିବାକୁ ସମର୍ଥ ହୋଇଛନ୍ତି । ସେ ବ୍ରହ୍ମାଙ୍କ ବ୍ରହ୍ମାଣୀ । ରୁଦ୍ରଙ୍କ ରୁଦ୍ରାଣୀ । ମହାବିଷ୍ଣୁଙ୍କ ମୋହାଚ୍ଛନ୍ନା ବୈଷ୍ଣବୀ । ବ୍ରହ୍ମରୂପା । ଯୋଗମାୟା ।

ମନୁଷ୍ୟର ତ୍ରୟସନ୍ଧି ବା ତ୍ରିଗୁଣମୟୀ ସତ୍ତା ରହିଛି - ୧) ଅନ୍ନମୟୀ ସତ୍ତା, ୨) ପ୍ରାଣମୟୀ ସତ୍ତା, ୩) ମନୋମୟୀ ସତ୍ତା । ଏ ସମସ୍ତ ସତ୍ତାକୁ ନିୟନ୍ତ୍ରଣ କରୁଥିବା ଭଗବତୀ ସତ୍ତା ସୁଭଦ୍ରା । ଖାଲି ସେତିକି ନୁହେଁ, ଆତ୍ମାର ତ୍ରୟସିଦ୍ଧି, ଯଥା- ଅ, ଉମ-ସମାନ 'ଓଁ' ଯାହା ଆତ୍ମାର ଗୁପ୍ତସ୍ଥଳକୁ ଜାଗ୍ରତ କରାଇ ପ୍ରଣବ ପ୍ରେରଣ କାର୍ଯ୍ୟ, ତୁରୀୟ ଅବସ୍ଥାକୁ ଅତିକ୍ରମଦ୍ୱାରା ବ୍ରହ୍ମପ୍ରାପ୍ତି ହେବାର ବିଧାନ ପୂର୍ଣ୍ଣାଙ୍ଗ ହୋଇଥାଏ ।

ବ୍ରହ୍ମ ପୁରାଣର ସିଦ୍ଧାନ୍ତ ଅନୁଯାୟୀ -

'ନମୋ ଦେବୌ ମହାଦେବୌ ବୈଷ୍ଣବୌଚ ନମୋନମଃ ।
ବ୍ରହ୍ମାଣୀ ବ୍ରହ୍ମ ରୂପାୟୈ ଶିବାୟୈ ସତତଂ ନମଃ । ୧
ରୁଦ୍ରାଣୀ ରୁଦ୍ର ରୂପାୟୈ କାଳରାତ୍ରୌ ନମୋ ନମଃ ।
ବୈଷ୍ଣବୌ ବିଷ୍ଣୁରୂପାୟୈ ମହାଲକ୍ଷ୍ମୌ ନମୋ ନମଃ । ୨
ସ୍ତ୍ରୀ ରୂପେଣୀ ନମସ୍ତେ[illegible]ସ୍ତୁ ସୁଭଦ୍ରେତାଂ ନମାମ୍ୟହଂ ।
ସାକ୍ଷାତ ବ୍ରହ୍ମ ସ୍ୱରୂପାଂ ତ୍ୱଂ ଜଗଦମ୍ବେ ନମୋ[illegible]ସ୍ତୁତେ । ୩





ଉକ୍ତ ଶ୍ଳୋକ ତ୍ରୟରୁ ସୁଭଦ୍ରାଙ୍କ ତ୍ରୟସିଦ୍ଧି, ତ୍ରୟକର୍ମ ଓ ତ୍ରୟ ରୂପାର ପରିଚୟ ପ୍ରାପ୍ତି ସହ ତାଙ୍କର ମହନୀୟତାକୁ ହୃଦୟଙ୍ଗମ କରାଯାଇଛି । ସେ 'ଭଗିନୀ, ସ୍ତ୍ରୀ, ପ୍ରବର୍ତ୍ତିକା' ହେଲେ ମଧ, ରତ୍ନ ସିଂହାସନ ଉପରେ ତାଙ୍କ ସ୍ଥିତି ଅଲୌକିକ । ସ୍ଥୂଳ ଶରୀର ଗୋପ୍ୟ କରି, ଯୋଗନିଦ୍ରା ବିମୋହିତା, ମାତ୍ର ଚେତନ ସ୍ତରରେ ସୂକ୍ଷ୍ମ ଶରୀର ଅହର୍ନିଶୀ ସେବାରତ ହେଉଥିବା ହେତୁ, ଚିନ୍ମୟୀ ଶକ୍ତି ମଧ୍ୟରୁ ବ୍ରହ୍ମ ଜ୍ୟୋତି ବିସ୍ତାରୀ ଅଖଣ୍ଡ ରଶ୍ମି ଧାରାରେ ସମସ୍ତ ବିଶ୍ୱବ୍ରହ୍ମାଣ୍ଡର କଲ୍ୟାଣ ଓ ବିଘ୍ନମାନଙ୍କର ବିବର୍ତ୍ତନ ହୋଇପାରୁଛି । ଏଥିପାଇଁ ତାଙ୍କୁ ସର୍ବ ମାଙ୍ଗଲ୍ୟକାରିଣୀ, ସର୍ବ ଶୁଭପ୍ରଦାୟନୀ, ସର୍ବାର୍ଥ ସାଧିନୀ ରୂପେ ପ୍ରଣାମ କରାଯାଉଛି । ସୁଭଦ୍ରାଙ୍କୁ ବାଦ୍ ଦେଇ ବ୍ରହ୍ମ ନିରୂପଣ କରାଯାଇନପାରେ । ତେଣୁ ଗାୟତ୍ରୀଙ୍କ କଳ୍ପନାନୁସାରେ-

'ଯୋଗମାୟା ମହାଦେବୀ ମହାମାୟା ନମସ୍ତୁତେ ।
ଈଶ୍ୱରୀ ଅଙ୍ଗ ଭଜନମ୍ ବ୍ରହ୍ମସ୍ଥାନ ସ୍ଥିତେ ସଦା ॥'

ରତ୍ନ ସିଂହାସନସ୍ଥିତ ତ୍ରିମୂର୍ତ୍ତି ଏକାଧାରାରେ ସତ୍, ଚିତ୍ ଓ ଆନନ୍ଦର ସମଷ୍ଟି । ବ୍ରହ୍ମରେ ଲିଙ୍ଗଭେଦ ନଥାଏ । ବ୍ରହ୍ମ ଏକ ଅଦ୍ୱିତୀୟ ପରିପ୍ରକାଶ ମାତ୍ର । ଆନନ୍ଦମୟୀ ଶ୍ରୀରାଧା, ସତ୍ ଓ ଚିତ୍‌ଙ୍କର ମଧ୍ୟସ୍ଥଳରେ ସୁଭଦ୍ରା ରୂପରେ ବିରାଜମାନ ହୋଇ ଆରାଧିତ ହେଉଅଛନ୍ତି । ଏହି ଭଗବତୀଙ୍କ ବୀଜମନ୍ତ୍ର - ରସ ବିନୋଦରେ ଉଲ୍ଲେଖ କରାଯାଇଅଛି । ଯଥା-

'କ ଅକ୍ଷର ଶିରେପାଗ । ତଳରେ କଳମାତ୍ରା ଯୋଗ ॥
ଡାହାଣେ ଓଁକାର ବସାଇ । ହ ଅକ୍ଷର ପାଶେ ଥୋଇ ॥
ତା ଶିରେ ପାଗ ବନାଇବ । ତଳରେ କଳ ମାତ୍ରା ଦେବ ॥
ଭ ରେ ଆଠକ୍ଷର ଦେଇ । ଡାହାଣେ ଓଁକାର ବସାଇ ॥
ବେନି ଅକ୍ଷର ଦୁଇମନ୍ତ୍ର । ପଢ଼ିଲେ ହୋଇବ ଯେମନ୍ତ ॥
ପଣ୍ଡିତେ ଅନୁଭବେ ହେଜ । ଏମନ୍ତ ସୁଭଦ୍ରାଙ୍କ ବୀଜ ॥
ଏହାକୁ କାମ ବୀଜ କହି । ପ୍ରେମ ଷୋଡ଼ଶ ମନ୍ତ୍ର ଏହି ॥'

କାମବୀଜ, ପ୍ରେମ ଷୋଡ଼ଶ ମନ୍ତ୍ର ନ୍ୟାସ ଦ୍ୱାରା ଦେବୀ ଆରାଧିତା । ଅଷ୍ଟଦଳ ପଦ୍ମ କୋରକ ଉପରେ ଶୟନ ମୁଦ୍ରା, ଦୁଇ ବକ୍ଷଜକୁ ସ୍ୱୟଂ ଜଗନ୍ନାଥଙ୍କ ପ୍ରେମାଲିଙ୍ଗନଦ୍ୱାରା, ପୁରୁଷ, ପ୍ରକୃତିର ଯୁଗ୍ମ ମିଳନ ସ୍ଥାପିତ କରାଯାଇପାରିଛି । ଏହା ହେଉଛି ମହାର୍ଘ ଯୋଗ । ଜୀବ, ପରମଙ୍କ ସଂଯୋଗ କ୍ରିୟାକଳା । 'ନିତ୍ୟରାସ'ର ବର୍ଣ୍ଣନାନୁଯାୟୀ -

'ନିତ୍ୟସ୍ଥଳର ବେଦୀଠାରେ । ଆସନ ଯୋଗମାୟା ପରେ ॥
ତଥିର ତଳେ ଦେବୀ ଭଦ୍ରା । ରତ୍ନବେଦୀରେ ଯୋଗନିଦ୍ରା ॥
ଭଦ୍ରାଦେବୀଙ୍କ କୁଚସ୍ଥାନେ । ପ୍ରେମ ଶଯ୍ୟାଯେ' ସୁଖାସନେ ॥
ତଥି ଉପରେ ଜଗନ୍ନାଥ । ବାହନ ପଞ୍ଚ ଆତ୍ମା ତତ୍ତ୍ୱ ॥'

ଏତିକିରେ କଥା ଇତି ହୋଇନାହିଁ । ଅନେକ କବି ମନିଷୀମାନଙ୍କ ରଚନାରେ ଫୁଟି ଉଠିଛି ପୁରୁଷ ପ୍ରକୃତିଙ୍କ ଐକ୍ୟତା । ତନ୍ମଧ୍ୟରୁ ବହୁ ପ୍ରାଚୀନ ଗ୍ରନ୍ଥ ଶ୍ରୀଜଗନ୍ନାଥଙ୍କ ମଙ୍ଗଳାଷ୍ଟକରେ ମଧ ଜଗନ୍ନାଥଙ୍କୁ ସୁଭଦ୍ରା ପ୍ରାଣନାଥାୟ ବୋଲି ବନ୍ଦନା କରାଯିବା ପରିଲକ୍ଷିତ ହୁଏ । ଯଥା-

'ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ ।
ସୁଭଦ୍ରା-ପ୍ରାଣନାଥାୟ ଜଗନ୍ନାଥାୟ ମଙ୍ଗଳମ୍ । ୧
ସୁଭଦ୍ରା-ପ୍ରାଣନାମାୟ ସୁଭଦ୍ରାଦ୍ୱୟ ଶାଳିନେ ।
ବଳଭଦ୍ର ସମେତାୟ ଜଗନ୍ନାଥାୟ ମଙ୍ଗଳମ୍ । ୨

ଏହି ସମସ୍ତ ବର୍ଣ୍ଣନାରୁ ସୁଭଦ୍ରା, ବ୍ରହ୍ମମୟୀ, ଶକ୍ତିମୟୀ, ତତ୍ତ୍ୱମୟୀ ଓ କ୍ରିୟାମୟୀ ରୂପରେ ପ୍ରମାଣିତା ହୋଇ ଜୀବାତ୍ମାର ଗତି ନିୟନ୍ତ୍ରିକା ରୂପରେ, ସୃଷ୍ଟି, ସ୍ଥିତି, ପାଳନ ଓ ବିଳୟର ସମସ୍ତ ଭାର ବହନ କରିଥାନ୍ତି । 'ରାଧା ରସାମୃତ ସିନ୍ଧୁ'ରେ ଉଲ୍ଲେଖ କରାଯାଇଅଛି -

''ଜ୍ୟେଷ୍ଠ ବଳରାମ ଯେ କନିଷ୍ଠ ଜଗନ୍ନାଥ ।
ଯେଉଁ ରାଧା ସୁଭଦ୍ରାଟି, ନାମତାର ଖ୍ୟାତ ॥
କିଶୋର କିଶୋରୀ ରୂପେ, ସେହି ଅଙ୍ଗେ ଅଛି ।
କପଟରେ ଚତୁର୍ଦ୍ଧାମୂରତି ସେ ବୋଲାଉଛି ॥'

ଏଥିରେ ମଧ ରାଧା ଓ ସୁଭଦ୍ରାଙ୍କୁ ଅଭିନ୍ନ କରାଇ, କିଶୋର ଜଗନ୍ନାଥ, କିଶୋରୀ ଭଦ୍ରାଙ୍କ ସହିତ ମିଳିତ କରାଯାଇଛି ଏବଂ କପଟ ଦାରୁବିଗ୍ରହ ଚତୁର୍ଦ୍ଧାକୁ ଏକତ୍ର ମିଶାଯାଇ ଭଗବତ୍ ଲୀଳା ଉପରେ ପ୍ରାଧାନ୍ୟ ଦିଆଯାଇ ପାରିଛି । ସାରଳା ମହାଭାରତ ଆଦିପର୍ବ ଉପରେ ଦୃଷ୍ଟି ଦେଲେ ଆଉ ଏକ ସୁନ୍ଦର ଅନୁଭୂତି ସୃଷ୍ଟି ହୁଏ -

'ନୀଳ ସୁନ୍ଦର ପର୍ବତ କଳ୍ପବଟ ତଳେ,
ଦକ୍ଷିଣ କୁଶସ୍ଥଳୀ ଶ୍ରୀକ୍ଷେତ୍ର ମଣ୍ଡଳେ ।
ବିଜେୟ ଶ୍ରୀରାମ କୃଷ୍ଣ ସୁଭଦ୍ରା ଏ ତିନି,
ଚାରିଲକ୍ଷ ବତିଶ ସହସ୍ର ଦେବ ଘେନି ॥'

ଏହି ଚାରିଲକ୍ଷ ବତିଶ ସହସ୍ର ଦେବତା ହେଉଛନ୍ତି, ଆରାଧକ । ଆରାଧ୍ୟ ଦେବଙ୍କ ପ୍ରଶସ୍ତି ବା ସ୍ତୁତି କରି ସଦାସର୍ବଦା ପ୍ରସନ୍ନ କରାଇଥାନ୍ତି । ସ୍ତୁତି ଓ ପ୍ରାର୍ଥନା ଭିନ୍ନ । ପ୍ରାର୍ଥନା ଅର୍ଥ ଆରାଧ୍ୟଙ୍କଠାରୁ କିଛି ପ୍ରାପ୍ତି କରିବା (କାମନା) ଦୀନଭାବ ସହକାରେ

କର ପ୍ରସାରି ମାଗିବା । ଏଥିରେ ଭଗବାନ ତାଙ୍କୁ ଦର୍ଶନ ନଦେଇ, କେବଳ ମାଗିବା ପଦାର୍ଥ ଦେଇଥାନ୍ତି । ସ୍ତୁତିକାରୀର କୌଣସି କାମନା ନଥାଏ, ସେ କିଛି ନମାଗି, ନିଷ୍କାମ, ନିରଭିମାନ ହୋଇ, ଭଗବାନଙ୍କ ଲୀଳା, ନାମ, ଧାମ, ଗୁଣର ଉତ୍କର୍ଷ ପ୍ରତିପାଦିତ କରି ସ୍ୱୟଂ ସୁଖୀ ହେବା ସହିତ ଆରାଧ୍ୟଙ୍କୁ ବି ପ୍ରସନ୍ନ ରଖେ । ଏପରି ସ୍ତୁତିକାରୀ ଭକ୍ତ ନିକଟରେ ପ୍ରଭୁ ସଦା ସର୍ବଦା ସ୍ତାବକର ଅଧୀନ ହୋଇଯାଆନ୍ତି । ଏହାଦ୍ୱାରା ଆରାଧ୍ୟ ଯେଉଁଠାରେ ରହିବେ, ଆରାଧନାକାରୀଙ୍କୁ ମଧ୍ୟ ସାନ୍ନିଧ୍ୟ ପ୍ରଦାନ କରିବାକୁ କୁଣ୍ଠାବୋଧ କରିବେ ନାହିଁ । କାରଣ ଭକ୍ତ ଭଗବାନ୍ ଉଭୟେ ଉଭୟଙ୍କର ପରିପୂରକ । ମାଟିଥିଲେ ସିନା ପାତ୍ର ଗଠିତ ହେବ ? ଭଗବାନ୍ କୁମ୍ଭକାର ହେଲେ, ଭକ୍ତ ହେଉଛି ମୃତ୍ତିକା । ଉଭୟଙ୍କ ଅବଦାନରେ ଭକ୍ତି ରୂପକ ପାତ୍ର ନିର୍ମିତ ହୋଇଥାଏ । ଏଣୁ ସମସ୍ତ ଭକ୍ତଗଣଙ୍କୁ ନେଇ ଭଗବାନ ଲୀଳା ରଚନା କରିଥାନ୍ତି ।

ପୂର୍ବରୁ ଉଲ୍ଲେଖ କରାଯାଇଛି - ପ୍ରଥମେ ଅଜ୍ଞାନକୁ ଜ୍ଞାନ ଖଡ୍‌ଗରେ ଦମନ କରି, ହୃଦୟ କେଦାରକୁ ଉର୍ବର କରାଯାଉ, ତା'ପରେ ଭକ୍ତି ରସାମୃତ ପିଇ ବ୍ରହ୍ମାନୁଭବ କର । ବେଦବର ବ୍ରହ୍ମାଙ୍କର ସ୍ତବ ସ୍କନ୍ଦ ପୁରାଣାନୁସାରେ -

'ସର୍ବ କାମ ପ୍ରଦେ ନିତ୍ୟେ ଭକ୍ତାନାଂ କଳ୍ପ ବଲ୍ଲରୀ ।
ତ୍ରାହି ପାଦାବ୍ଜଲଗ୍ନାଂ ମାଂ କୃପାପାଙ୍ଗ ବିଲୋକନୈଃ ।।'

ହେ ମାତା ! ହେ ନିତ୍ୟା ! ହେ ସର୍ବକାମ ପ୍ରଦାୟିନି ! ହେ ଭକ୍ତଙ୍କ କଳ୍ପଲତିକେ ! ଆପଣଙ୍କ ପାଦପଦ୍ମରେ ମୁଁ ସମର୍ପିତ ହୋଇଯାଇଛି, କୃପା କଟାକ୍ଷ ପ୍ରଦାନଦ୍ୱାରା ମୋତେ ପରିତ୍ରାଣ କର । ମନ ତ୍ରାହି, ତ୍ରାହି ଡାକ ପକାଇଲେ ଯାଇ ପରମାତ୍ମାଙ୍କ କରୁଣା ବର୍ଷିବ ଏବଂ ବ୍ରହ୍ମ ସାନ୍ନିଧ୍ୟ ଲାଭ ହେବ । ଅନ୍ୟଥା ନୁହେଁ ।

ସୁଭଦ୍ରାଙ୍କ ପ୍ରକାଶ ବା ଜନ୍ମ ସମ୍ପର୍କରେ ଅନେକ କିମ୍ବଦନ୍ତୀ ବିଦ୍ୟମାନ । ସେ ସବୁ ରହସାବୃତ । ମାତ୍ର ଏତିକି ସ୍ମରଣ ରଖିବା ଉଚିତ୍ ଯେ ଯୁଗେ ଯୁଗେ ସେ କାଳର କାଳ, ମହାକାଳ ସହିତ ସଂଯୋଜିତ ହୋଇ ସମଗ୍ର ସୃଷ୍ଟି କ୍ରିୟାକୁ ପ୍ରବାହିତ କରାଇଥାଆନ୍ତି । ତାଙ୍କ ନାମାଲୋଚନାରୁ ଜଣାଯାଏ ସୁ+ଭଦ୍ରା ! ଅର୍ଥାତ୍ ଉତ୍ତମ-ଭଦ୍ର ରମଣୀ । ତାଙ୍କ ଉହ୍ୟ ନାମ - ସୋମନ୍ଦ୍ର ବା (ଛୋଟ ସମୁଦ୍ର) ପ୍ରଳୟକାଳୀନ କରୁଣ୍ୟ ଜଳ ସାଗର । ଭକ୍ତ ନାମରେ ସେ ଅନନ୍ତ ପୁରୁଷଙ୍କ ସାନ୍ନିଧ ଲାଭ କରି, ଅସୀମ ଶକ୍ତିରେ କ୍ରିୟାଶୀଳ ହୋଇଥାଆନ୍ତି ଓ ବ୍ରହ୍ମଙ୍କ ପ୍ରଭାବରେ ବ୍ରହ୍ମମୟୀ ରୂପେ ରତ୍ନ ସିଂହାସନସ୍ଥ କେନ୍ଦ୍ର ବିନ୍ଦୁ ମଧ୍ୟରେ ସମାସୀନା ହୁଅନ୍ତି ।

ସୁଭଦ୍ରାଙ୍କୁ ବ୍ରହ୍ମ ସ୍ୱରୂପା ବୋଲି ପ୍ରମାଣିତ କରାଯାଇଛି । ତାଙ୍କ ନାମାନୁସାରେ ବ୍ରହ୍ମସଂଖ୍ୟା କିପରି ଉପଲବ୍ଧ ହେଉଛି, ଦେଖିବା କଥା ।

ସ+ଉ<br>
ଚତୁରଷ୍ଟ=୩୨=ସ<br>
ପଞ୍ଚମ=୫=ଭ=ସୁ<br>
ଚତୁର୍ବିଂଶ=୨୪=ଭ=ଉ<br>
ଅଷ୍ଟଦଶଂ=୧୮=ଦ<br>
ତ୍ରୀନବଂ=୨୭=ର=ଦ୍ରା<br>
ଯୁଗ୍ମଂ=୨=ଆ

= ସୁଭଦ୍ରା !

= ୧୦୮ (ବ୍ରହ୍ମସଂଖ୍ୟା) (୧+୦+୮=୯)

ଏହି ୧୦୮ ସଂଖ୍ୟାକୁ ବ୍ରହ୍ମ ଜ୍ଞାନ ମନେ କରି ସନ୍ଥ, ପ୍ରଚେତାମାନେ ଆତ୍ମାର ସଦ୍‌ଗତି ପାଇ ଜପ, ତପ, ହୋମ, ଦାନ, ପୁଷ୍ପ, ତୁଳସୀ, ବିଲ୍ୱ, ଦୁର୍ବା, ଶ୍ରୀଫଳାଦି ଅର୍ଚ୍ଚନ କରିଥାନ୍ତି ବା ୧୦୮ ବ୍ରାହ୍ମଣ ଭୋଜନରେ ଅନ୍ନଦାନ ସମର୍ପିଥାନ୍ତି ।

ଗଜପତି ନଗର
ମୈଥିଳୀ ନିବାସ, ପୁରୀ-୨






# ସମ୍ବଲପୁର ରଥଯାତ୍ରା

ଡକ୍ଟର ଚିତ୍ରସେନ ପଶାୟତ

**ବି**ଶ୍ୱ ଦରବାରରେ ପ୍ରତ୍ୟେକ ଓଡ଼ିଆ ଜଗତର ନାଥ ଶ୍ରୀଜଗନ୍ନାଥଙ୍କୁ ନେଇ ଗର୍ବିତ ଏବଂ ପରିଚିତ । ସେ ହେଉଛନ୍ତି ଓଡ଼ିଆ ଜନଜୀବନର ପ୍ରତିନିଧି, ଲୋକଦେବତା । ଯେଉଁଠାରେ ବି ଓଡ଼ିଆ ବାସ କରିଛି, ଏହି ଲୋକ ଦେବତାଙ୍କୁ ପ୍ରତିଷ୍ଠା କରିଛି । ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ସେଠାର ଜନଜୀବନକୁ ପ୍ରଭାବିତ କରିଛି, ସମାଜକୁ ଚମକୃତ କରିଛି । ମହାପ୍ରଭୁଙ୍କର ରଥଯାତ୍ରା ବିଶ୍ୱ ପ୍ରସିଦ୍ଧ । କେବଳ ଶ୍ରୀକ୍ଷେତ୍ର ନୁହେଁ, ଓଡ଼ିଶାର କୋଣେ କୋଣେ, ଭାରତର ବିଭିନ୍ନ ସ୍ଥାନରେ ଏପରିକି ଭାରତ ବାହାରେ ବିଭିନ୍ନ ଦେଶବିଦେଶରେ ମହାବାହୁଙ୍କ ରଥଯାତ୍ରା ପାଳିତ ହୋଇଥାଏ । ଏହି ଲେଖାରେ ସମ୍ବଲପୁର ସହରରେ ପାଳିତ ହେଉଥିବା ରଥଯାତ୍ରା ସମ୍ପର୍କରେ ସମ୍ୟକ ଆଲୋଚନା କରାଯାଇଛି ।

ଆଶ୍ଚର୍ଯ୍ୟ ମନେ ହେଉଥିଲେ ହେଁ ଏହା ସତ୍ୟ ଯେ, ସମ୍ବଲପୁର ଜିଲ୍ଲାରେ ସର୍ବାଧିକ ଜଗନ୍ନାଥ ମନ୍ଦିର ଦୃଷ୍ଟିଗୋଚର ହୋଇଥାଏ । ଏହି ଜିଲ୍ଲାର ପ୍ରତ୍ୟେକ ରାଜସ୍ୱ ଗ୍ରାମରେ ଜଗନ୍ନାଥଙ୍କ ମନ୍ଦିର ଅଛି, ଯେଉଁଠି ମହାପ୍ରଭୁଙ୍କ ପୂଜା ଆରାଧନା କରାଯାଇଥାଏ ଏବଂ ପ୍ରତିବର୍ଷ ଆଷାଢ଼ ମାସରେ ରଥଯାତ୍ରା ପାଳନ କରାଯାଇଥାଏ । ଓଡ଼ିଶାର ଅନ୍ୟତ୍ର କୌଣସି ଜିଲ୍ଲାରେ ହେଲେ ଏତେ ସଂଖ୍ୟକ ଜଗନ୍ନାଥ ମନ୍ଦିର ପରିଦୃଶ୍ୟ ହୁଏ ନାହିଁ ।

ସମ୍ବଲପୁର ସହରରେ ମୁଖ୍ୟତଃ ଦୁଇଟି ବ୍ରାହ୍ମଣ ଗୋଷ୍ଠୀ ଅଛନ୍ତି । ସେମାନେ ହେଉଛନ୍ତି ଆରଣ୍ୟକ ବ୍ରାହ୍ମଣ ବା ଝାଡୁଆ ବ୍ରାହ୍ମଣ ଏବଂ ଉତ୍କଳୀୟ ବ୍ରାହ୍ମଣ ବା ଓଡ଼ିଆ ବ୍ରାହ୍ମଣ । ପରମ୍ପରାନୁଯାୟୀ ଓଡ଼ିଆ ବ୍ରାହ୍ମଣମାନେ ହେଉଛନ୍ତି ଶିବ ଭକ୍ତ ଏବଂ ଝାଡୁଆ ବ୍ରାହ୍ମଣମାନେ ପରମାର୍ଥୀ ତଥା ବିଷ୍ଣୁ ଉପାସକ । ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖନୀୟ ଯେ, ସମ୍ବଲପୁରର ଜଗନ୍ନାଥ ମନ୍ଦିରଗୁଡ଼ିକରେ ଆରଣ୍ୟକ ବ୍ରାହ୍ମଣମାନେ ପୂଜକ ରୂପେ ନିୟୋଜିତ ହୋଇଛନ୍ତି । ଏପରିକି ଉତ୍କଳୀୟ ବ୍ରାହ୍ମଣବହୁଳ ଗ୍ରାମଗୁଡ଼ିକରେ ମଧ୍ୟ ଆରଣ୍ୟକ ବ୍ରାହ୍ମଣ ହିଁ ଜଗନ୍ନାଥ ମନ୍ଦିରର ପୂଜକ ରୂପେ ସେବାପୂଜା କରିଥାଆନ୍ତି । ଆଜିକାଲି କାଁ ଭାଁ କେଉଁଠି ଉତ୍କଳୀୟ ବ୍ରାହ୍ମଣମାନେ ଜଗନ୍ନାଥ ମନ୍ଦିରର ପୂଜକ ଥିବାର ସୂଚନା ମିଳେ ।

ଏକ ସର୍ବେକ୍ଷଣରୁ ଜଣାପଡ଼ିଛି ଯେ, ସମ୍ବଲପୁର ସହରର ୨୬ ଗୋଟି ବିଭିନ୍ନ ମଠ ଓ ମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସେବାପୂଜା ହୋଇଥାଏ । ସେଥିମଧ୍ୟରୁ ୨୪ ଗୋଟି ପୀଠରେ ମହାପ୍ରଭୁମାନଙ୍କର ରଥଯାତ୍ରା ଅନୁଷ୍ଠିତ ହୋଇଥାଏ । ଅବଶିଷ୍ଟ ଦୁଇଟି ପୀଠ ମଧ୍ୟରୁ ଗୋଟିଏ ପୀଠରେ ଆର୍ଥିକ କାରଣରୁ ରଥଯାତ୍ରା ପାଳନ କରାଯାଏ ନାହିଁ, କାରଣ ରଥଯାତ୍ରା ଏକ ବ୍ୟୟବହୁଳ ଯାତ୍ରା ଅଟେ । ଅନ୍ୟ ପୀଠରେ ଜଗନ୍ନାଥଙ୍କର ପଥର ମୂର୍ତ୍ତି ପୂଜା ପାଏ ।

ସମ୍ବଲପୁର ସହରର ଯେଉଁ ୨୬ ଗୋଟି ସ୍ଥାନରେ ଜଗନ୍ନାଥ ମହାପ୍ରଭୁ ପୂଜା ପାଆନ୍ତି, ସେହି ପୀଠଗୁଡ଼ିକର ସମ୍ୟକ ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

**୧. ବ୍ରହ୍ମପୁରା ଗୁଡ଼ି** - ଝାଡୁଆ ପଡ଼ାରେ ସେହି ଜଗନ୍ନାଥ ମନ୍ଦିର ଅବସ୍ଥିତ । ସମ୍ବଲପୁରର ତୃତୀୟ ଚୌହାଣ ବଂଶୀୟ ରାଜା ବଳଭଦ୍ର ଦେବ (୧୫୯୪-୧୬୨୦) ସେହି ଜଗନ୍ନାଥ ମନ୍ଦିରକୁ ନିର୍ମାଣ କରାଇଥିଲେ । ତେଣୁ ସେହି ମନ୍ଦିର ପ୍ରାୟ ଚାରି ଶହ ବର୍ଷ ପୁରୁଣା କରାଇଥିଲେ । ତାହା ସମ୍ବଲପୁର ସହର ନୁହେଁ ସମଗ୍ର ସମ୍ବଲପୁର ରାଜ୍ୟର ସର୍ବପୁରାତନ ଜଗନ୍ନାଥ ମନ୍ଦିର ଅଟେ । ସେହି ଦୃଷ୍ଟିକୋଣରୁ ବିଚାରିଲେ ବିଗତ ଚାରି ଶତ ବର୍ଷ ଧରି ସମ୍ବଲପୁର ସହରରେ ରଥଯାତ୍ରା ପାଳିତ ହୋଇ ଆସୁଅଛି । ସେହି ମନ୍ଦିର ସାମ୍ନାରେ 'ମାଉସୀ ମା' ମନ୍ଦିର ଅବସ୍ଥିତ ।

ସେହି ମନ୍ଦିରର ଗର୍ଭଗୃହ ପାଖରେ ଏକ କଳାପଥର ଅଛି । ପୂର୍ବେ କୌଣସି ମନୋମାଳିନ୍ୟ ବା ବିବାଦ ଘଟୁଥିଲେ, ସେଠାରେ ସେହି ପଥରକୁ ଛୁଆଁଇ ଶପଥ ପାଠ କରାଇ ସମସ୍ୟାର ସମାଧାନ କରାଯାଉଥିଲା । ଏପରିକି ବ୍ରିଟିଶ ଅଦାଲତ ମଧ୍ୟ ସେହି ବିଚାରକୁ ସମ୍ମାନ ପ୍ରଦର୍ଶନ କରୁଥିବାର ଜନଶ୍ରୁତି ରହିଛି ।





ଯେତେବେଳେ ଇଂରେଜ ଏବଂ ସୁରେନ୍ଦ୍ର ସାଏଙ୍କ ମଧ୍ୟରେ ଶାନ୍ତିଚୁକ୍ତି ହେଲା, ସେତେବେଳେ ସମ୍ବଲପୁରରେ ଅବସ୍ଥାପିତ ଡେପୁଟି କମିଶନର, ସୁରେନ୍ଦ୍ର ସାଏ ଓ ତାଙ୍କ ପୁତ୍ର ଏବଂ ଭାଇମାନଙ୍କୁ ଆଣି ସେଇଠି ଶପଥ ପାଠ କରାଇଥିଲେ ଯେ, ସେମାନେ ଆଉ ବ୍ରିଟିଶ ବିରୋଧୀ କାର୍ଯ୍ୟ କରିବେ ନାହିଁ । ସେହି ପରମ୍ପରା ଅଦ୍ୟାବଧି ପ୍ରଚଳିତ ରହିଛି, କିନ୍ତୁ ମନ୍ଦିର ଟ୍ରଷ୍ଟ ବୋର୍ଡ଼ ଏପରି କାର୍ଯ୍ୟକୁ ନିରୁତ୍ସାହିତ କରନ୍ତି ।

୨. **ଗୋପାଳଜୀ ମଠ -** ସେହି ମଠକୁ ରାଜା ବଳିୟାର ସିଂହ (୧୬୬୦-୧୬୮୯)ଙ୍କ ଛୋଟ ଭାଇ ବଂଶୀଗୋପାଳ ତିଆରି କରାଇଥିଲେ । ସେ ଜଣେ ବୈଷ୍ଣବ ଭକ୍ତ ଥିଲେ । ସୋନପୁରର ଗୋପାଳଜୀ ମଠ ଏବଂ ପୁରୀର ରାମଜୀ ମଠ ମଧ୍ୟ ସେ ନିର୍ମାଣ କରାଇଥିଲେ । ସମ୍ବଲପୁରର ଗୋପାଳଜୀ ମଠ ପରିସର ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ସ୍ୱତନ୍ତ୍ର ମନ୍ଦିର ଅଛି ।

୩. **କୁଠା ଜଗନ୍ନାଥ ମନ୍ଦିର -** ସେହି ମନ୍ଦିରକୁ ମଧ୍ୟ ବଂଶୀଗୋପାଳ ନିର୍ମାଣ କରାଇଥିଲେ । ସମ୍ଭବତଃ କୁଠା ଜଗନ୍ନାଥ ମନ୍ଦିର ଏବଂ ଗୋପାଳଜୀ ମଠ ସପ୍ତଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ନିର୍ମିତ ହୋଇଥିଲା ।

୪. **ଦଧିବାମନ ମନ୍ଦିର -** ସେହି ଜଗନ୍ନାଥ ମନ୍ଦିର ମହାନ୍ତିପଡ଼ାରେ ଅବସ୍ଥିତ । ସେହି ମନ୍ଦିର ପାଖରେ ସମ୍ବଲପୁରର ସବୁଠାରୁ ସୁନ୍ଦର 'ମାଉସୀ ମା' ମନ୍ଦିର ରହିଛି । ରାଜା ବଳିୟାର ସିଂହ (୧୬୬୦-୧୬୮୯) ତାହାକୁ ନିର୍ମାଣ କରାଇଥିଲେ । ତାଙ୍କ ପୁତ୍ର ରତନ ସିଂହ ୧୬୭୮ ମସିହାରେ ପୁରୀ ରାଜକନ୍ୟା ପଦ୍ମାବତୀଙ୍କ ପାଣିଗ୍ରହଣ କରିଥିଲେ । ବାପଘରୁ ଆସିବାବେଳେ, ପଦ୍ମାବତୀ ପୁରୀ ଶ୍ରୀମନ୍ଦିରର ଦକ୍ଷିଣ ଦ୍ୱାରସ୍ଥିତ ପତିତପାବନଙ୍କୁ ସାଙ୍ଗରେ ଧରି ସମ୍ବଲପୁର ଆସିଥିଲେ । ଦିଅଁଙ୍କ ପାଇଁ ଦଧିବାମନ ମନ୍ଦିର ତୋଳା ହୋଇଥିଲା ଏବଂ ଦିଅଁଙ୍କୁ ପ୍ରତିଷ୍ଠା କରି ସେବାପୂଜା କରାଗଲା ।

୫. **ହୁତାପଡ଼ା ଜଗନ୍ନାଥ ମନ୍ଦିର -** କୁଞ୍ଜେଲପଡ଼ାରେ ସେହି ଜଗନ୍ନାଥ ମନ୍ଦିରଟି ଅବସ୍ଥିତ । ସେହି ମନ୍ଦିରଟିକୁ ରାଜା ଛତ୍ର ସାଏ (୧୬୮୯-୧୭୨୫) ନିର୍ମାଣ କରାଇଥିଲେ । ସେ ନିଜର ଶେଷ ସମୟ ଶ୍ରୀକ୍ଷେତ୍ର ଧାମରେ କଟାଇଥିଲେ । ଲୋକମୁଖରେ ଏ ସମ୍ପର୍କିତ ଏକ ସୁନ୍ଦର କିମ୍ବଦନ୍ତୀ ଶୁଣାଯାଏ । କେତେକ କୁଟିଳ ଲୋକଙ୍କ ଚକ୍ରାନ୍ତରେ ପଡ଼ି ରାଜା ଛତ୍ର ସାଏ ନିଜର ଗୋଟିଏ ରାଣୀ ଏବଂ ତାଙ୍କ ପୁତ୍ରଙ୍କୁ ହତ୍ୟା କରିଥିଲେ । ସେହି ରାଣୀ ଥିଲେ ରତନପୁର ରାଜା ରାଜସିଂହଙ୍କ ଭଉଣୀ । ରାଜସିଂହ ନାଗପୁରର ଭୌଁସଲେ ରାଜାଙ୍କ ସହାୟତାରେ ସମ୍ବଲପୁର ଆକ୍ରମଣ କରି ରାଜାଙ୍କୁ ବନ୍ଦୀ କଲେ । ସତକଥା ପ୍ରଘଟ ହେବାରୁ ରାଜା ଛତ୍ର ସାଏ ପତ୍ନୀ ଓ ପୁତ୍ର ହତ୍ୟା ଦୋଷ କରିଥିବାରୁ ଘୋର ଅନୁତାପ କଲେ । ଯଦିଓ ରତନପୁର ରାଜା ଛତ୍ର ସାଏଙ୍କୁ କ୍ଷମା କରିଦେଲେ ଅନୁତପ୍ତ ରାଜା ଛତ୍ର ସାଏ କିନ୍ତୁ ନିଜକୁ କ୍ଷମା କରିପାରିନଥିଲେ । ଅନୁତାପର ଜ୍ୱାଳା ସହ୍ୟ କରିନପାରି ନିଜର ବଡ଼ ପୁଅ ଅଜିତ୍ ସିଂହ ହାତରେ ରାଜ୍ୟଭାର ଟେକି ଦେଇ ଜଗତର ନାଥ ଜଗନ୍ନାଥଙ୍କ ପାଦପଦ୍ମ ତଳେ ଶରଣ ପଶିଲେ ଏବଂ ଅବଶିଷ୍ଟ ଜୀବନତକ ପୁରୀ ଶ୍ରୀକ୍ଷେତ୍ରରେ କଟାଇଥିଲେ ।

୬. **ବରିହା ଗୁଡ଼ି -** ସେହି ଜଗନ୍ନାଥ ମନ୍ଦିରଟି ନନ୍ଦପଡ଼ାରେ ଅବସ୍ଥିତ । ସେହି ମନ୍ଦିରର ଇଷ୍ଟ ଦେବ ହେଉଛନ୍ତି 'ବରାହ' ମହାପ୍ରଭୁ, ଯିଏକି ବିଷ୍ଣୁଙ୍କ ଗୋଟିଏ ଅବତାର । 'ବରାହ' ନାମରୁ ମନ୍ଦିରର ନାମକରଣ 'ବରିହା' ହୋଇଅଛି । ରାଜା ଅଜିତ ସିଂହ (୧୭୨୫-୧୭୬୬) ସେହି ମନ୍ଦିରକୁ ନିର୍ମାଣ କରିଥିଲେ । ସେ ମଧ୍ୟ ଜଣେ ବୈଷ୍ଣବ ଭକ୍ତ ଥିଲେ ଏବଂ ବର୍ଷର ଅଧିକାଂଶ ସମୟ ଶ୍ରୀକ୍ଷେତ୍ରରେ କଟାଉଥିଲେ ।

୭. **ରାଣୀ ମଠ -** ସେହି ମଠଟି ଭତ୍ରାରେ ଅବସ୍ଥିତ । ଏକଦା ଭତ୍ରା ଏକ ଗ୍ରାମ ଥିଲା । ସମ୍ପ୍ରତି ତାହା ସମ୍ବଲପୁର ମ୍ୟୁନିସିପାଲିଟି ଅଧୀନରେ ଅଛି । ସେହି ମଠକୁ ରାଣୀ ରତ୍ନକୁମାରୀ ନିର୍ମାଣ କରାଇଥିଲେ । ଯେତେବେଳେ ତାଙ୍କ ସ୍ୱାମୀ ରାଜା ଜୟନ୍ତ ସିଂହ ଏବଂ ପୁତ୍ର ମହାରାଜ ସାଏ ମରାଠାମାନଙ୍କଦ୍ୱାରା ବନ୍ଦୀ ହୋଇ ନାଗପୁରର ବାନ୍ଦା ଜେଲରେ ଅତି ଦୁଃଖରେ କାଳାତିପାତ କରୁଥିଲେ, ସେତେବେଳେ ରାଣୀ ରତ୍ନ କୁମାରୀ ସ୍ୱାମୀ ଓ ପୁତ୍ରଙ୍କ ମଙ୍ଗଳ କାମନା କରି ମାନସିକ କରିଥିଲେ ଏବଂ ସେହି ମଠଟିକୁ ନିର୍ମାଣ କରାଇଥିଲେ । ସେଠାରେ ଜଗନ୍ନାଥ ମହାପ୍ରଭୁ ମଧ୍ୟ ପୂଜା ପାଆନ୍ତି । ସମ୍ଭବତଃ ସେହି ମଠଟି ଊନବିଂଶ ଶତାବ୍ଦୀର ପ୍ରଥମ ଦଶକରେ ନିର୍ମିତ ହୋଇଥିଲା ।

୮. **ରଘୁନାଥ ମନ୍ଦିର -** ସେହି ଜଗନ୍ନାଥ ମନ୍ଦିରଟି ମଧ୍ୟ ଭତ୍ରାରେ ଅବସ୍ଥିତ । ସେହି ମନ୍ଦିରକୁ ମହାରାଜ ସାଏ (୧୮୨୦-୧୮୨୭) ନିର୍ମାଣ କରାଇଥିଲେ । ଜନଶ୍ରୁତି ରହିଛି ଯେ, ମହାରାଜ ସାଏ ରାଜା ହେବା ପୂର୍ବରୁ ଏକଦା ମରାଠାମାନଙ୍କଦ୍ୱାରା ବନ୍ଦୀ ହୋଇ ନାଗପୁର ଜେଲରେ ଥିଲେ । ପିତା ଜୟନ୍ତ ସିଂହ ମଧ୍ୟ ବନ୍ଦୀ ହୋଇଥିଲେ । ପିତାଙ୍କ ସହିତ ବନ୍ଦୀ ହୋଇ ନିଜର ଜନ୍ମଭୂମିକୁ ଫେରିବାର ଆଶା କ୍ଷୀଣ ମନେ ହେଉଥିଲା । ସେତେବେଳେ ବନ୍ଦୀଗୃହର ଅନ୍ଧକାର ଜୀବନରେ ମହାବାହୁ ଶ୍ରୀଜଗନ୍ନାଥ ହିଁ





ଏକମାତ୍ର ଆଶାର କିରଣ ଥିଲେ । ପ୍ରତ୍ୟହ ସେ ମନେ ମନେ ମା' ସମଲେଶ୍ୱରୀ ଏବଂ ଶ୍ରୀଜଗନ୍ନାଥଙ୍କୁ ସୁମରଣା କରୁଥିଲେ । ଜେଲ୍‌ରୁ ବାପ ପୁଅ ମୁକ୍ତ ହେଲେ ମହାପ୍ରଭୁଙ୍କ ପାଇଁ ମନ୍ଦିରଟିଏ ନିର୍ମାଣ କରିବେ ବୋଲି ମହାରାଜ ସାଏ ମାନସିକ କରିଥିଲେ । ଭାଗ୍ୟଚକ୍ର ବଦଳି ଥିଲା । ରାଜା ଜୟନ୍ତ ସିଂହ ଏବଂ ମହାରାଜ ସାଏ ମୁକ୍ତ ହେଲେ । ପରେ ଯେତେବେଳେ ଜୟନ୍ତ ସିଂହଙ୍କ ଅନ୍ତେ ମହାରାଜ ସାଏ ୧୮୨୦ ମସିହାରେ ରାଜା ହେଲେ ତା'ପରେ ସେ ସେହି ଜଗନ୍ନାଥ ମନ୍ଦିରଟିକୁ ନିର୍ମାଣ କରିଥିଲେ । ଊନବିଂଶ ଶତାବ୍ଦୀର ତୃତୀୟ ଦଶକରେ ତାହା ନିର୍ମିତ ହୋଇଥିଲା ।

**୯. ମଦନମୋହନ ମନ୍ଦିର -** ସେହି ଜଗନ୍ନାଥ ମନ୍ଦିରଟି ଦଲାଇପଡ଼ାରେ ଅବସ୍ଥିତ । ରାଜା ନାରାୟଣ ସିଂହ ୧୮୩୩ ମସିହାରେ ସମ୍ବଲପୁର ସିଂହାସନ ଆରୋହଣ କରିଥିଲେ । ସେହି ବର୍ଷ ତାଙ୍କ ରାଣୀ ମୁଖ୍ୟପାନ ଦେବୀ ଏହି ମନ୍ଦିରକୁ ନିର୍ମାଣ କରାଇଥିଲେ । (ପ୍ରକାଶ ଥାଉ କି ସେଇଠି ଲେଖକଙ୍କର ପୈତୃକ ବାସସ୍ଥାନ ରହିଛି ।)

**୧୦. ସତ୍ୟବାଦୀ ମନ୍ଦିର -** ହାଟପଡ଼ାରେ ସେହି ଜଗନ୍ନାଥ ମନ୍ଦିର ଅବସ୍ଥିତ । ସେହି ମନ୍ଦିରକୁ ସମ୍ବଲପୁରର ଶେଷ ରାଜା ନାରାୟଣ ସିଂହ (୧୮୩୩-୧୮୪୯) ନିର୍ମାଣ କରାଇଥିଲେ । ତାହା ଊନବିଂଶ ଶତାବ୍ଦୀର ଚତୁର୍ଥ ଦଶକରେ ନିର୍ମିତ ହୋଇଥିଲା ।

**୧୧. ଲିଆଖାଇ ଗୁଡ଼ି -** ସେହି ଜଗନ୍ନାଥ ମନ୍ଦିରଟି ମଧ୍ୟ ଦଲାଇପଡ଼ାରେ ଅବସ୍ଥିତ । ସେହି ମନ୍ଦିରରେ ରାଧାମୋହନ ପୂଜା ପାଆନ୍ତି । ଏଠାରେ ଦେବତାଙ୍କ ଅତିପ୍ରିୟ 'ଲିଆ' ଭୋଗ ଲାଗିଥାଏ । ତେଣୁ ଲୋକମୁଖରେ କାଳକ୍ରମେ ସେହି ମନ୍ଦିରଟି ଲିଆଖାଇ ମନ୍ଦିର ରୂପେ ପ୍ରସିଦ୍ଧ ହୋଇଅଛି । ଏକଦା ସେଠାରେ ଗୋଟିଏ ବୈଷ୍ଣବ ମଠ ଥିଲା, ଯାହାକୁ ଜନୈକ ଦୀନବନ୍ଧୁ ଦାସ ପ୍ରତିଷ୍ଠା କରିଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କ ଧର୍ମପତ୍ନୀ ବେଣୀ ପୂଜାରିଣୀ ସେଠାରେ ରାଧାମୋହନ ମନ୍ଦିର ନିର୍ମାଣ କରିଥିଲେ । ସେହି ମନ୍ଦିରଟି ୧୮୫୩ ମସିହାରେ ନିର୍ମିତ ହୋଇଥିଲା । ସେଠାରେ କେବଳ ଜଗନ୍ନାଥ ମହାପ୍ରଭୁ ପୂଜା ପାଆନ୍ତି ।

**୧୨. ଟିମନି ଗୁଡ଼ି -** ସେହି ଜଗନ୍ନାଥ ମନ୍ଦିରଟି ଗୁରୁପଡ଼ାରେ ଅବସ୍ଥିତ । ତାହାକୁ ଜନୈକ ଡାକ୍ତର କାଶୀନାଥ ସିଂହ ନିର୍ମାଣ କରାଇଥିଲେ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସେହି ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା ।

**୧୩. ରାଧାମାଧବ ଗୁଡ଼ି -** ସେହି ମନ୍ଦିରଟି ବଡ଼ ବଜାରର କେଉଁଟ ପଡ଼ାରେ ଅବସ୍ଥିତ । ସେହି ମନ୍ଦିର ପରିସର ମଧ୍ୟରେ ଜଗନ୍ନାଥ ମହାପ୍ରଭୁ ମଧ୍ୟ ପୂଜା ପାଆନ୍ତି ।

**୧୪. କୁଷ୍ଠାପଡ଼ା ଜଗନ୍ନାଥ ଗୁଡ଼ି -** ବଡ଼ବଜାରର କୁଷ୍ଠାପଡ଼ାରେ ସେହି ଜଗନ୍ନାଥ ମନ୍ଦିର ଅବସ୍ଥିତ ।

**୧୫. ମାଳିପଡ଼ା ଗୁଡ଼ି -** ସେହି ଜଗନ୍ନାଥ ମନ୍ଦିରଟି ମଧ୍ୟ ବଡ଼ବଜାରର ମାଳିପଡ଼ାରେ ଅବସ୍ଥିତ ।

**୧୬. ଜଗନ୍ନାଥଜୀ ଗୋପାଳଜୀ ମଠ -** କ୍ଷେତରାଜପୁରଠାରେ ସେହି ମଠ ଅବସ୍ଥିତ । ସେହି ମଠ ପରିସର ମଧ୍ୟରେ ଜଗନ୍ନାଥଙ୍କ ପାଇଁ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ କରାଯାଇଅଛି ।

**୧୭. ଗୋଲବଜାର ଜଗନ୍ନାଥ ଗୁଡ଼ି -** ଗୋଲବଜାର ପାଖରେ ବୈଦ୍ୟନାଥ ଛକରୁ ଗୋଲବଜାର ଛକକୁ ଯିବା ରାସ୍ତାର ଡାହାଣ ପାର୍ଶ୍ୱରେ ସେହି ଜଗନ୍ନାଥ ମନ୍ଦିରଟି ଅବସ୍ଥିତ ।

**୧୮. ମୁଦିପଡ଼ା ଜଗନ୍ନାଥ ମନ୍ଦିର -** ମୁଦିପଡ଼ାରେ ସେହି ଜଗନ୍ନାଥ ମନ୍ଦିର ଅବସ୍ଥିତ । ଜନୈକ ଉଦ୍ଧବଦାନୀ ଏହି ମନ୍ଦିର ନିର୍ମାଣ କରାଇଥିଲେ ।

**୧୯. ବୁଢ଼ାରଜା ଜଗନ୍ନାଥ ମନ୍ଦିର -** ହୀରାକୁଦ ବନ୍ଧ ନିର୍ମାଣ ହେବାପରେ ସେହି ମନ୍ଦିରଟି ନିର୍ମିତ ହୋଇଥିଲା । ପୂର୍ବରୁ ଦିଅଁ ପରତା ନାମକ ଏକ ଗ୍ରାମରେ ପୂଜା ପାଉଥିଲେ । ସେହି ଗ୍ରାମଟି ଜଳଭଣ୍ଡାରରେ ବିଲୀନ ହୋଇଗଲା । କ୍ଷତିପୂରଣ ବାବଦକୁ ଦେବତା ଯେଉଁ ଅର୍ଥ ପାଇଲେ ସେଥିରେ ତାଙ୍କ ପାଇଁ ବୁଢ଼ାରଜାଠାରେ ଏକ ମନ୍ଦିର ନିର୍ମାଣ କରାଗଲା । ତା'ପରେ ପରତା ଗ୍ରାମର ଦିଅଁଙ୍କୁ ଏହି ମନ୍ଦିରରେ ପ୍ରତିଷ୍ଠା କରାଗଲା ଏବଂ ସେହିଦିନଠାରୁ ତାଙ୍କର ସେବାପୂଜା କରାଯାଇଆସୁଅଛି ।

**୨୦. ଦଧିବାମନ ଗୁଡ଼ି -** ଧନକଉଡ଼ାରେ ମଧ୍ୟ ଏକ ଦଧିବାମନ ଗୁଡ଼ି ଅଛି । ସେଠାରେ ଜଗନ୍ନାଥ ପୂଜା ପାଆନ୍ତି । ଏକଦା ଧନକଉଡ଼ା ଏକ ଗାଁ ଥିଲା ।

**୨୧. ଜଗନ୍ନାଥ ଗୁଡ଼ି -** ମହାବାହୁ ଦଧିବାମନଙ୍କ ବ୍ୟତୀତ ଧନକଉଡ଼ାରେ ମହାପ୍ରଭୁ ଜଗନ୍ନାଥଙ୍କର ଆଉ ଏକ ମନ୍ଦିର ବିଦ୍ୟମାନ ।

**୨୨. ଶ୍ରୀରାମ ଗୋପାଳଜୀ ମନ୍ଦିର -** ଧନୁପାଲିରେ ସେହି ମନ୍ଦିର ଅବସ୍ଥିତ । ଏହାକୁ ଭଡ୍ରାସ୍ଥିତ ରାଣୀ ମଠର ଶ୍ୟାମ ଦାସଜୀ ନାମକ ଜନୈକ ମହନ୍ତ ନିର୍ମାଣ କରିଥିଲେ । ପୂର୍ବେ ଧନୁପାଲି ଏକ ଛୋଟିଆ ଗାଁ ଥିଲା । ଅଧୁନା ସମ୍ବଲପୁର ମ୍ୟୁନିସିପାଲିଟି ପରିସରକୁ ଆସିଅଛି ।





**୨୩. ଭାଗବତ ଗୁଡ଼ି -** ସେହି ମନ୍ଦିରଟି ରେମେଡ଼ରେ ଅବସ୍ଥିତ ।

**୨୪. ରାଧାମଦନ ଗୋପାଳ ଗୁଡ଼ି -** ଚୈତନ୍ୟ ମିଶନ ପକ୍ଷରୁ ସେହି ମନ୍ଦିରଟି ସାକ୍ଷୀପଡ଼ାରେ ନିର୍ମାଣ କରାଯାଇଅଛି । ସେଠାରେ ଶ୍ରୀଜଗନ୍ନାଥ ମଧ୍ୟ ପୂଜା ପାଆନ୍ତି । ଏକଦା ସାକ୍ଷୀପଡ଼ା ମଧ୍ୟ ଏକ ଗ୍ରାମ ଥିଲା । ଏବେ ତାହା ସମ୍ବଲପୁର ମ୍ୟୁନିସିପାଲିଟି ପରିସର ଭିତରକୁ ଆସିଯାଇଛି ।

**୨୫. ରଘୁନାଥ ଗୁଡ଼ି -** ସେହି ଜଗନ୍ନାଥ ମନ୍ଦିରଟି ବାଲିବନ୍ଧାରେ ଅବସ୍ଥିତ । ଆର୍ଥିକ ଅଭାବ କାରଣରୁ ସେଠାରେ ରଥଯାତ୍ରା ପାଳନ କରାଯାଏ ନାହିଁ ।

**୨୬.** କମିଶନର କଲୋନୀଠାରେ ଏକ ଜଗନ୍ନାଥ ମନ୍ଦିର ନିର୍ମାଣ କରାଯାଇଛି । ଏଠାରେ ମହାପ୍ରଭୁଙ୍କର ପଥର ମୂର୍ତ୍ତି ପୂଜା ପାଆନ୍ତି । ପଥରରେ ଜଗନ୍ନାଥଙ୍କ ମୂର୍ତ୍ତି ତିଆରି ପରମ୍ପରା ବିରୋଧୀ । ତେଣୁ ସେଠାରେ ରଥଯାତ୍ରା ପାଳନ କରାଯାଏ ନାହିଁ ।

ଉପରୋକ୍ତ ତଥ୍ୟକୁ ଭିତ୍ତିକରି କୁହାଯାଇପାରେ ଯେ, ସମ୍ବଲପୁର ସହରର ୨୬ ଗୋଟି ପୀଠ ମଧ୍ୟରୁ ୨୪ ଗୋଟି ପୀଠରେ ରଥଯାତ୍ରା ପାଳିତ ହୋଇଥାଏ । ପ୍ରକାଶଥାଉକି, ସମ୍ବଲପୁର ରଥଯାତ୍ରାରେ ପ୍ରତିବର୍ଷ ନୂତନ ରଥ ନିର୍ମାଣ କରାଯାଏ ନାହିଁ । ରଥ ତିଆରି ବ୍ୟୟବହୁଳ ଅଟେ । ରଥଗୁଡ଼ିକ ଏମିତି ଶୈଳୀରେ ନିର୍ମିତ ହୋଇଅଛି ଯେ, ରଥଯାତ୍ରା ପରେ ସେସବୁର ବିଭିନ୍ନ ଅଂଶଗୁଡ଼ିକୁ ସହଜରେ ଫିଟାଇ ଦିଆଯାଏ ଏବଂ ସେଗୁଡ଼ିକୁ ଏକ ସୁରକ୍ଷିତ ସ୍ଥାନରେ ସାଇତି କରି ରଖାଯାଏ । ତା' ପରବର୍ଷ ରଥଯାତ୍ରା ସମୟରେ ଉକ୍ତ ଅଂଶଗୁଡ଼ିକୁ ପୁନର୍ବାର ସଂଯୋଗ କରି ରଥ ତିଆରି ହୋଇଥାଏ । କେବଳ ନଷ୍ଟ ହୋଇଯାଇଥିବା କିମ୍ବା ଦୁର୍ବଳ କାଠଗୁଡ଼ିକୁ ବଦଳାଇ ଦିଆଯାଏ । ଉଲ୍ଲେଖନୀୟ ଯେ, ସମ୍ବଲପୁର ରଥଯାତ୍ରାରେ ତିନି ଦିଅଁଙ୍କ ପାଇଁ ଗୋଟିଏ ରଥ ତିଆରି କରାଯାଏ । ସମ୍ବଲପୁରରେ ରଥକାଠକୁ ନେଇ ଆଉ ଏକ ଅନନ୍ୟ ପରମ୍ପରା ପ୍ରଚଳିତ । **ଆରଣ୍ୟକ ବ୍ରାହ୍ମଣ ସମାଜର କେହି ମୃତ୍ୟୁବରଣ କଲେ ପୁରୁଣା ରଥକାଠ, ଖଣ୍ଡିଏ ଶବଦାହ କର୍ମରେ ଲାଗିଥାଏ । ଏଥିରୁ ସମ୍ବଲପୁରରେ ରଥକାଠର ମାହାତ୍ମ୍ୟ ଜଣାପଡ଼େ ।**

ସୂର୍ଯ୍ୟାସ୍ତ ପରେ ରଥଟଣା ହେବା ସମ୍ବଲପୁରରେ ପରମ୍ପରା ବିରୋଧୀ ବୋଲି ଗଣନା କରାଯାଏ ନାହିଁ, ବରଂ ସମ୍ବଲପୁର ରଥଯାତ୍ରାରେ ରାତିରେ ରଥଟଣା ଏକ ଅନନ୍ୟ ଆକର୍ଷଣ ଓ ଅନୁଭୂତି । କାରଣ ରଥ ସାମ୍ନାରେ କାଠ ନିର୍ମିତ ଏକ ଅସ୍ଥାୟୀ ପେଣ୍ଡାଲ ନିର୍ମିତ ହୋଇଥାଏ । ଏହା ଉପରେ ନାଚ, ଗୀତ, ଦାସକାଠିଆ ଆଦି ପରିବେଷଣ କରାଯାଇଥାଏ ।

**ସମ୍ବଲପୁର ରଥଯାତ୍ରାର ଅନ୍ୟ ଏକ ବିଶେଷତ୍ୱ ହେଉଛି ଯେ, ରଥଯାତ୍ରା ଦୁଇଦିନ (ଦ୍ୱିତୀୟା ତିଥି ଓ ତୃତୀୟା ତିଥି) ଏବଂ ବାହୁଡ଼ା ଯାତ୍ରା ମଧ୍ୟ ଦୁଇଦିନ (ଦଶମୀ ତିଥି ଓ ଏକାଦଶୀ ତିଥି) ଧରି ପାଳନ କରାଯାଇଥାଏ ।** ଦ୍ୱିତୀୟ ତିଥିରେ ରଥ ଟଣା ହୋଇ ବିନା ଖଣ୍ଡିକୁ ନିଆଯାଏ । ସେଠାରେ ଦିଅଁମାନଙ୍କର ପୂଜା-ଆଳତୀ କରିବାର ପରମ୍ପରା ରହିଛି । ତା'ପରଦିନ ଅର୍ଥାତ୍ ତୃତୀୟା ତିଥିରେ ରଥଗୁଡ଼ିକ ମାଉସୀ ମା' ମନ୍ଦିରକୁ ଆସେ, ଯେଉଁଠି ଦିଅଁମାନେ ଦଶମୀ ଦିନ ପର୍ଯ୍ୟନ୍ତ ଅବସ୍ଥାନ କରନ୍ତି । ଯେଉଁ ଜଗନ୍ନାଥ ମନ୍ଦିରରେ ସ୍ୱତନ୍ତ୍ର ମାଉସୀ ମା ମନ୍ଦିର ନାହିଁ, ସେଠାରେ ଗର୍ଭଗୃହର ସାମନା ଗୃହକୁ ଅସ୍ଥାୟୀ 'ମାଉସୀ ମା' ମନ୍ଦିର ରୂପେ ବ୍ୟବହାର କରାଯାଇଥାଏ । ଦଶମୀ ଦିନ ପହଣ୍ଡି ବିଜେ ପରେ ଦିଅଁମାନେ ପୁଣି ରଥରେ ବସି ବିନାଖଣ୍ଡିକୁ ଯାଆନ୍ତି । ସେଠାରେ ପରମ୍ପରାନୁଯାୟୀ ପୂଜା-ଆଳତୀ ହେବା ପରେ ତା' ପରଦିନ ଅର୍ଥାତ୍ ଏକାଦଶୀ ତିଥିରେ ରଥଗୁଡ଼ିକ ନିଜ ନିଜ ମନ୍ଦିରକୁ ବାହୁଡ଼ି ଯାଆନ୍ତି ।

ସମ୍ବଲପୁର ରଥଯାତ୍ରାର ଅନ୍ୟ ଏକ ବିଶେଷତ୍ୱ ହେଉଛି ଯେ, ପୁରୀ ଶ୍ରୀକ୍ଷେତ୍ରର ରଥଟଣା ହେବା ପରେ ଯାଇ ସମ୍ବଲପୁରରେ ରଥଟଣା ହୋଇଥାଏ । ତେଣୁ ସମ୍ବଲପୁରରେ ପହଣ୍ଡି ନୀତି ପ୍ରାୟ ଅପରାହ୍ନରେ ହୋଇଥାଏ ଏବଂ ତଦନୁଯାୟୀ ରଥଟଣା ମଧ୍ୟ ହୋଇଥାଏ । ସୂର୍ଯ୍ୟାସ୍ତ ପରେ ରଥଟଣା ହେବା ସମ୍ବଲପୁରରେ ପରମ୍ପରା ବିରୋଧୀ ବୋଲି ଗଣନା କରାଯାଏ ନାହିଁ, ବରଂ ସମ୍ବଲପୁର ରଥଯାତ୍ରାରେ ରାତିରେ ରଥଟଣା ଏକ ଅନନ୍ୟ ଆକର୍ଷଣ ଓ ଅନୁଭୂତି । କାରଣ ରଥ ସାମ୍ନାରେ କାଠ ନିର୍ମିତ ଏକ ଅସ୍ଥାୟୀ ପେଣ୍ଡାଲ ନିର୍ମିତ ହୋଇଥାଏ । ଏହା ଉପରେ ନାଚ, ଗୀତ, ଦାସକାଠିଆ ଆଦି ପରିବେଷଣ କରାଯାଇଥାଏ । ସମ୍ବଲପୁର ରଥଯାତ୍ରାର ଏକ ମୁଖ୍ୟ ଆକର୍ଷଣ ରୂପେ ଏହି ପରମ୍ପରା କେବେଠାରୁ ଆରମ୍ଭ ହୋଇଅଛି ତା'ର ସଠିକ୍ ତାରିଖ ଜଣାପଡ଼େ ନାହିଁ । ତେବେ ସେ ଯାହା ହେଉ, ଆଖପାଖ ଗାଁ ଗହଳରୁ ସହସ୍ରାଧିକ ଲୋକଙ୍କର ଭିଡ଼ ଜମେ ମହାପ୍ରଭୁଙ୍କର ଦର୍ଶନାର୍ଥେ ଏବଂ ଏହି ମନୋରଞ୍ଜନ କାର୍ଯ୍ୟକ୍ରମ ଦେଖିବା ପାଇଁ ।

ହରଡ଼ ଜୋର ଏବଂ ମହାନଦୀର ମିଳନ ସ୍ଥଳରେ ବିନାଖଣ୍ଡି ଅବସ୍ଥିତ । ଗଡ଼ଜାତ ଶାସନ ଅମଳରୁ ଏଠାକୁ ସାତଟି ରଥ ଟଣା ହୋଇ ଆସୁଛନ୍ତି । ଏଠାରେ ପରମ୍ପରାକୁ ରକ୍ଷା କରି ଦିଅଁମାନଙ୍କର ପୂଜା-ଆଳତୀ କରାଯାଇଥାଏ । ଏଠାରେ ଏକ କୁଦ ଅଛି । ରାଜାଙ୍କ ଅମଳରେ ଏହି କୁଦରେ ଜେଲ ବା ବନ୍ଦୀଗୃହ ଥିଲା । ବ୍ରିଟିଶମାନେ ମଧ୍ୟ ଏହି ଜେଲ୍‌କୁ ବ୍ୟବହାର କରୁଥିଲେ । କଏଦୀମାନଙ୍କର ଦର୍ଶନାର୍ଥେ ବିନାଖଣ୍ଡିକୁ ରଥଗୁଡ଼ିକ ଟଣାହୋଇ ଆସୁଥିଲା ବୋଲି ଶୁଣାଯାଏ । ଏପରି ଏକ ମହତ୍ ଚିନ୍ତାଧାରା ଅନ୍ୟ କେଉଁଠି ରଥଯାତ୍ରାରେ ପ୍ରତିଫଳିତ ହୋଇନାହିଁ ।

ଯେଉଁ ସାତଗୋଟି ରଥଟଣା ହୋଇ ବିନାଖଣ୍ଡିକୁ ଆସନ୍ତି ସେଗୁଡ଼ିକ ହେଲା - ଝାଡୁଆପଡ଼ାର ବ୍ରହ୍ମପୁରା ରଥ, ହାଟପଡ଼ାର ସତ୍ୟବାଦୀ ରଥ, ମହାନ୍ତିପଡ଼ାର ଦଧିବାମନ ରଥ, କୁଞ୍ଜେଲପଡ଼ାର ହୁତାପଡ଼ା ରଥ, ଦଲାଇପଡ଼ାର ମଦନମୋହନ ରଥ, ନନ୍ଦପଡ଼ାର ବରିହା ରଥ ଏବଂ ଗୁରୁପଡ଼ାର ଟିମନି ଗୁଡ଼ି ରଥ । ଏହି ବିଷୟକ ଏକ ସୁନ୍ଦର ଲୋକଗୀତ ଶୁଣିବାକୁ ମିଳେ । ତାହା ତଳେ ଉଦ୍ଧୃତ କରାଗଲା ।

ବ୍ରହ୍ମପୁରାର ନାକେ ଚନ୍ଦନ,<br>
ତା' ପଛକୁ ଦଧିବାମନ ।<br>
ଦଧିବାମନ ଖାଏଲେ ପେଡ଼ା,<br>
ତା' ପଛକୁ ହୁତାପଡ଼ା ।<br>
ହୁତାପଡ଼ା ଚକ ଗରଜି,<br>
ତା' ପଛକୁ ସତ୍ୟବାଦୀ ।<br>
ସତ୍ୟବାଦୀ ହେଲେ ମଉନ,<br>
ତା'ପଛକୁ ମଦନ ମୋହନ ।<br>
ମଦନ ମୋହନ ହେଲେ ବାଇ,<br>
ତା'ପଛକୁ ଲିଆଖାଇ ।<br>
ଲିଆଖାଇ ଖାଏଲେ ଲିଆ,<br>
ତା' ପଛକୁ ବୁଢ଼ା ବରିହା ।<br>
ବୁଢ଼ା ବରିହା ଖାଏଲେ ମୁର୍‌ହି,<br>
ତା' ପଛକୁ ଟିମନି ଗୁଡ଼ି ।<br>
କୁଠା ମାହାପୁରୁର ଏଡ଼େ ଗଣ୍ଡି,<br>
ସେ ନାଇଁ ଯାଏ ବିନାଖଣ୍ଡି ।<br>
ଲିଆଖାଇର ନାକରେ ଡଣ୍ଡି,<br>
ସେ ନାଇଁଯାଏ ବିନାଖଣ୍ଡି ।

ଉପରୋକ୍ତ ଲୋକଗୀତରୁ ଗୋଟିଏ କଥା ସୁସ୍ପଷ୍ଟ ଯେ, ଉପରୋକ୍ତ ନଅଗୋଟି ରଥ ଗଡ଼ଜାତ ଅମଳରୁ ତିଆରି ହୋଇ ସାତଗୋଟି ରଥ ବିନାଖଣ୍ଡିକୁ ଆସୁଅଛନ୍ତି । ସମ୍ବଲପୁର ସହରର ଅନ୍ୟାନ୍ୟ ମଠ ଓ ମନ୍ଦିରରେ ଜଗନ୍ନାଥ ମହାପ୍ରଭୁଙ୍କର ପ୍ରସିଦ୍ଧ ରଥଯାତ୍ରା ପାଳନ କରାଯାଉଥିଲେ ହେଁ ଦିଅଁମାନଙ୍କ ପାରମ୍ପରିକ ବିନାଖଣ୍ଡି ଯାତ୍ରାରେ ସାମିଲ ହୁଅନ୍ତି ନାହିଁ । ପୁନଶ୍ଚ ଯେଉଁ ସାତଗୋଟି ରଥ ବିନାଖଣ୍ଡିକୁ କ୍ରମାନ୍ୱୟରେ ଯାତ୍ରା କରନ୍ତି ଉପରୋକ୍ତ ଲୋକଗୀତରୁ ସେମାନଙ୍କର କ୍ରମ ମଧ୍ୟ ଜଣାପଡ଼େ ।

ପ୍ରସଙ୍ଗକ୍ରମେ ଉଲ୍ଲେଖନୀୟ ଯେ, ମାଉସୀ ମାଙ୍କ ଘରେ ଅବସ୍ଥାନ କାଳରେ ଶ୍ରୀଜୀଉମାନଙ୍କର ବିଭିନ୍ନ ବେଶ ଏବଂ ଅବତାର କରାଯାଏ । ସନ୍ଧ୍ୟା ସମୟରେ ଏହି ଅପୂର୍ବ ଦୃଶ୍ୟ ଅବଲୋକନ କରିବା ପାଇଁ ବହୁତ ଭିଡ଼ ଜମେ । **ଏକାଦଶୀ ତିଥିରେ ଲୋକମାନେ ଉପବାସ କରି ଦିଅଁମାନଙ୍କର ବାହୁଡ଼ାଯାତ୍ରାକୁ ଅନେଇ ରହିଥାଆନ୍ତି । ରଥ ଆସିଲେ, ଉପାସୀମାନେ ପୂଜା-ଭୋଗ ଅର୍ପଣ କଲାପରେ ଯାଇ ପ୍ରସାଦ ସେବନ କରିଥାଆନ୍ତି ।** ତେଣୁ ସାଧାରଣ ଲୋକଙ୍କର ସୁବିଧା ଦୃଷ୍ଟିରୁ ବ୍ରହ୍ମପୁରା ରଥ ଏକାଦଶୀ ଦିନ ସୂର୍ଯ୍ୟାସ୍ତ ପୂର୍ବରୁ ଟଣା ହୋଇ ସ୍ୱମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥାଏ । କାରଣ ଅବଶିଷ୍ଟ ରଥଗୁଡ଼ିକ ନାଚ, ଗୀତ, ବାଜଣା ସହିତ ଫେରିଲା ବେଳକୁ ଅଧରାତି ହୋଇଯାଏ ।

ସମ୍ବଲପୁର ରଥଯାତ୍ରାର ଏକ ଅନନ୍ୟ ପରମ୍ପରା ହେଉଅଛି 'ରଥଛୁଆଁ ନୀତି' । ଜନ୍ମହେବା ପରେ ସନ୍ତାନସନ୍ତତିଙ୍କର 'ଭାତ-ଖୁଆନି' ବା 'ଅନ୍ନପ୍ରାସନ' ନୀତି ପାଳନ କରାଯାଇଥାଏ । ତା'ପରେ ପ୍ରଥମ ରଥଯାତ୍ରା ସମୟରେ ଦିଅଁ ଯେତେବେଳେ ରଥ ଉପରେ ଥାଆନ୍ତି, ସେତେବେଳେ ଛୁଆମାନଙ୍କୁ ରଥ ଉପରକୁ ଟେକି ନେଇ ଦିଅଁମାନଙ୍କୁ ଛୁଆଁଇ ଥାଆନ୍ତି । ମହାପ୍ରଭୁଙ୍କ ସାନ୍ନିଧ୍ୟ ପାଇ ସେ ଶୁଦ୍ଧପୂତ ହୋଇଥାଏ ଏବଂ ତା'ପରଠାରୁ ସମସ୍ତ ଧର୍ମକର୍ମ କାର୍ଯ୍ୟରେ ଅଂଶଗ୍ରହଣ କରିବାକୁ ଯୋଗ୍ୟ ବିବେଚିତ ହୋଇଥାଏ । ପ୍ରକୃତରେ ଦେଖିବାକୁ ଗଲେ ସମ୍ବଲପୁର ରଥଯାତ୍ରା ଏକ ଅନନ୍ୟ ଅନୁଭୂତି ।

ପୂର୍ବତନ ପ୍ରଶାସନିକ ଅଧିକାରୀ<br>
୧୫୨, ବିଜୟ ବିହାର, ନୂଆଗାଁ ରୋଡ଼<br>
ପୋଷ୍ଟ ଅଫିସ୍, ଶିଶୁପାଳଗଡ଼<br>
ଭୁବନେଶ୍ୱର-୭୫୧୦୦୨







## ହିନ୍ଦୁ-ମୁସଲମାନ ଏକତାର ଅନନ୍ୟ ଦୃଷ୍ଟାନ୍ତ :

# ଝାରସୁଗୁଡ଼ାର ରେମଣ୍ଡାରେ ରଥଯାତ୍ରା

ପବିତ୍ର ମୋହନ ବାରିକ

**ପ୍ରା**କୃତିକ ଶୋଭା ରାଜିରେ ବିମଣ୍ଡିତ ଝାରସୁଗୁଡ଼ା ଜିଲ୍ଲା ତା'ର ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବା ଦିଗରେ ସମର୍ଥ । ଏହି ଜିଲ୍ଲାର ପ୍ରାଚୀନ ଇତିହାସ, ଐତିହ୍ୟ ଓ ପରମ୍ପରା ସୁମହାନ୍ । ବୈଚିତ୍ର୍ୟମୟ ସାଂସ୍କୃତିକ ବିଭବକୁ ଝାରସୁଗୁଡ଼ା ଜିଲ୍ଲାର ସ୍ମରଣୀୟ ଅବଦାନ ଅତୁଳନୀୟ । ଧର୍ମ, ପରମ୍ପରା, ସାମାଜିକ ଜୀବନଚର୍ଯ୍ୟା ଓ ଲୋକଗୀତ, ନୃତ୍ୟ, ବାଦ୍ୟ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଏହି ଜିଲ୍ଲା ଏହାର ମୌଳିକତାକୁ କେବେ ଭୁଲି ନାହିଁ । ଲୋକକଳା, ସାହିତ୍ୟ ଓ ପାରମ୍ପରିକ ସୁନ୍ଦର ଜୀବନଶୈଳୀ ଏହି ଜିଲ୍ଲାକୁ ଗୌରବର ଶୀର୍ଷ ସ୍ଥାନରେ ପହଞ୍ଚାଇ ପାରିଛି । ପ୍ରକୃତିର ମନଲୋଭା ପରିବେଶ ଓ ସୌନ୍ଦର୍ଯ୍ୟ ସଦାସର୍ବଦା ଆକୃଷ୍ଟ କରିଛି ପ୍ରକୃତିପ୍ରେମୀ, ପରିବେଶବିତ୍, ପର୍ଯ୍ୟଟକ ଓ ଗବେଷକମାନଙ୍କୁ । ସାମାଜିକ ଚଳଣି, ଧାର୍ମିକ ବିଶ୍ୱାସ, ପାରମ୍ପରିକ ଜୀବନଶୈଳୀ ଓ ଓଷା, ବ୍ରତ, ଉପାସନା, ପୂଜା ପଦ୍ଧତି ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଝରି ଆସିଥାଏ ମାନବବାଦର ବାର୍ତ୍ତା ଝାରସୁଗୁଡ଼ା ଜିଲ୍ଲାରେ । ସମସ୍ତ କୃତିତ୍ୱ ସତ୍ତ୍ୱେ ଝାରସୁଗୁଡ଼ା ଜିଲ୍ଲା ସାଂପ୍ରଦାୟିକ ସଦ୍‌ଭାବର ସୁମହାନ୍ ବାର୍ତ୍ତା ସମଗ୍ର ବିଶ୍ୱବାସୀଙ୍କ ନିକଟରେ ପହଞ୍ଚାଇ ପାରିଛି । ସାଂପ୍ରଦାୟିକ ସଂପ୍ରୀତିର ଯୁଗାନ୍ତକାରୀ ସନ୍ଦେଶ ଝାରସୁଗୁଡ଼ା ଜିଲ୍ଲାର ରେମଣ୍ଡା ନାମକ ଏକ କ୍ଷୁଦ୍ର ପଲ୍ଲୀରୁ ପ୍ରସାରିତ । ଝାରସୁଗୁଡ଼ା ଜିଲ୍ଲାର ଲକ୍ଷ୍ମଣପୁର ବ୍ଲକ୍ ଅନ୍ତର୍ଗତ ରେମଣ୍ଡା ଗ୍ରାମରେ ପ୍ରାୟ ଶହେ ବର୍ଷ ଧରି ଅନୁଷ୍ଠିତ ହୋଇଆସୁଅଛି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପବିତ୍ର ରଥଯାତ୍ରା ।

ଏହି ରଥଯାତ୍ରା ଓଡ଼ିଶାର ବିଭିନ୍ନ ସ୍ଥାନରେ ପାଳିତ ହେଉଥିବା ରଥଯାତ୍ରାଠାରୁ ସ୍ୱତନ୍ତ୍ର ଓ ଅସାଧାରଣ । ବିଶ୍ୱ ଭ୍ରାତୃତ୍ୱ ଓ ସାଂପ୍ରଦାୟିକ ସଦ୍‌ଭାବର ମହାନ୍ ବାର୍ତ୍ତା ରେମଣ୍ଡା ଗ୍ରାମରେ ଅନୁଷ୍ଠିତ ରଥଯାତ୍ରାର ମୂଳମନ୍ତ୍ର । ଶ୍ରୀଜଗନ୍ନାଥ ସଂସ୍କୃତିର ମୌଳିକ ଚିନ୍ତାଧାରା ରେମଣ୍ଡା ରଥଯାତ୍ରାରେ ଦୃଷ୍ଟିଗୋଚର ହୁଏ । ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥ ସଂସ୍କୃତି ତା'ର ଜ୍ୱଳନ୍ତ ପ୍ରମାଣ ଓ ଉଦାହରଣ ସୃଷ୍ଟି କରିଛି ରେମଣ୍ଡା ରଥଯାତ୍ରାରେ । **ପବିତ୍ର ରଥଯାତ୍ରା ଅବସରରେ ରେମଣ୍ଡା ଗ୍ରାମର ମୁସଲମାନ ଗୌନ୍ତିଆ (ଜମିଦାର) ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସମ୍ମୁଖରେ ଛେରାପହଁରା କରି ନିଜ ପୂର୍ବପୁରୁଷମାନଙ୍କ ପାରମ୍ପରିକ ରୀତିକୁ ସମ୍ମାନ ଦେଇଥାନ୍ତି । ମୁସଲମାନ ଗୌନ୍ତିଆଙ୍କଦ୍ୱାରା ସଂପାଦିତ ଏହି ଦେବକାର୍ଯ୍ୟ ସାଂପ୍ରତିକ ସମୟରେ ସାଂପ୍ରଦାୟିକ ଏକତା ବୃଦ୍ଧି ଦିଗରେ ସହାୟକ ।** ହିନ୍ଦୁ-ମୁସଲମାନ ସଂପ୍ରଦାୟକୁ ଏକତା ସୂତ୍ରରେ ବାନ୍ଧି ରଖିବା ପାଇଁ ଏକ ସଫଳ ପ୍ରୟାସ ଦୀର୍ଘଦିନ ଧରି ଅଖ୍ୟାତ ପଲ୍ଲୀ ରେମଣ୍ଡା ମାଟିରୁ ଆରମ୍ଭ ହୋଇଛି । **ହିନ୍ଦୁ-ମୁସଲମାନ ସଂପ୍ରଦାୟର ମିଳିତ ଉଦ୍ୟମରେ ଏଠି ଅନୁଷ୍ଠିତ ହେଉଛି ପ୍ରସିଦ୍ଧ ରଥଯାତ୍ରା ।**

ମୋଗଲ ଶାସନ ସମୟରୁ ରେମଣ୍ଡା ଓ ଏହାର ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କୁ ନେଇ ଗଠିତ ଅଞ୍ଚଳର ଗ୍ରାମମୁଖ୍ୟ ଭାବରେ ମୁସଲମାନ ଗୌନ୍ତିଆ ଶାସନ କରି ଆସୁଥିଲେ । ପୂର୍ବେ ରେମଣ୍ଡା ଗ୍ରାମରେ ରଥଯାତ୍ରା ଆୟୋଜିତ ହେଉନଥିଲା । ଏ ଅଞ୍ଚଳର ଜଗନ୍ନାଥ ପ୍ରେମୀ ଶ୍ରଦ୍ଧାଳୁ ଭକ୍ତମାନେ ରଥରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ନିମନ୍ତେ ଦୂରଦୂରାନ୍ତ ଅଞ୍ଚଳକୁ ଯାତ୍ରା କରୁଥିଲେ । ନିଜ ଗ୍ରାମରେ ରଥଯାତ୍ରା ଆୟୋଜନ କରିବା ନିମନ୍ତେ ଗ୍ରାମବାସୀମାନଙ୍କ ଆଗ୍ରହ ଓ ଅନୁରୋଧକୁ ତତ୍କାଳୀନ ଗୌନ୍ତିଆ ସ୍ୱର୍ଗତଃ ୱାରସ ମହମ୍ମଦ ସମ୍ମାନର ସହ ଗ୍ରହଣ କଲେ । ତାଙ୍କ ନେତୃତ୍ୱରେ ରଥଯାତ୍ରାର ଶୁଭାରମ୍ଭ ହୋଇଥିବାରୁ ଜନଶ୍ରୁତିରୁ ଜଣାଯାଏ । ସ୍ୱର୍ଗତଃ ୱାରସ ମହମ୍ମଦଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରେମଣ୍ଡା ଗ୍ରାମରେ ରଥଯାତ୍ରାର ଆୟୋଜନ ଆରମ୍ଭ ହେଲା । ଗ୍ରାମର ମୁକୁନ୍ଦ ପ୍ରଧାନଙ୍କ ସହିତ ଗୌନ୍ତିଆ ୱାରସ ମହମ୍ମଦ ସମ୍ବଲପୁରରୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବିଗ୍ରହ ଆଣି କୁଳଶରଛିତ ମନ୍ଦିରରେ ରଖାଯାଇଥିଲା । ମହାପ୍ରଭୁଙ୍କର ପୂଜାର୍ଚ୍ଚନାର ସମସ୍ତ ଖର୍ଚ୍ଚ ଗୌନ୍ତିଆ ନିଜେ ବହନ କରିଥିଲେ । ଏଠାରେ ରଥଯାତ୍ରାର ସମସ୍ତ ବନ୍ଦୋବସ୍ତ ଗୌନ୍ତିଆ ୱାରସ ମହମ୍ମଦ ନିଜେ କରିଥିଲେ ଏବଂ ଏ ଦିଗରେ ଅନ୍ୟମାନେ ତାଙ୍କୁ ଅକୁଣ୍ଠ ସହଯୋଗ ଓ ସମର୍ଥନ ପ୍ରଦାନ କଲେ । ମୁସଲମାନ ଗୌନ୍ତିଆ ରେମଣ୍ଡା ଗ୍ରାମରେ ପ୍ରଥମ ଥର ଲାଗି ରଥଯାତ୍ରା ଆରମ୍ଭ କରି ଏକ ଐତିହାସିକ କୀର୍ତ୍ତିସ୍ତମ୍ଭ





ସ୍ଥାପନ କଲେ । ଜନସାଧାରଣଙ୍କ ଆଗ୍ରହକୁ ସମ୍ମାନ ଦେବାକୁ ଯାଇ ଗୌନ୍ତିଆ ସ୍ୱର୍ଗତଃ ଓ୍ୱାରସ ମହମ୍ମଦ ରଥରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସମ୍ମୁଖରେ ଛେରା ପହଁରା କାର୍ଯ୍ୟର ଶୁଭାରମ୍ଭ କରିଥିଲେ । ପୁରୁଷାନୁକ୍ରମେ ଏହି ପବିତ୍ର ପରମ୍ପରାକୁ ଗୌନ୍ତିଆ ପରିବାର ନିଷ୍ଠାର ସହିତ ପାଳନ କରିଆସୁଛନ୍ତି । ସାଂପ୍ରତିକ ସମୟର ରେମଣ୍ଡା ଗ୍ରାମରେ ଆୟୋଜିତ ରଥଯାତ୍ରା ସାଂପ୍ରଦାୟିକ ସଦ୍‌ଭାବର ପ୍ରତିଷ୍ଠା ଦିଗରେ ଏକ ସଫଳ ପ୍ରୟାସ । ଏହା ସମଗ୍ର ବିଶ୍ୱ ପାଇଁ ଏକ ବିରଳ ତଥା ବିସ୍ମୟପ୍ରଦ ଉଦାହରଣ । ସହଯୋଗ, ସହାନୁଭୂତି, ସଂପ୍ରୀତି ଓ ଶ୍ରଦ୍ଧା ଭାବର ନିଚ୍ଛକ ଛବି ପ୍ରତିଫଳିତ ହୁଏ ରେମଣ୍ଡା ଗ୍ରାମରୁ ।

ରଥଯାତ୍ରା ମାଧ୍ୟମରେ ହିନ୍ଦୁ-ମୁସଲମାନ ଦୁଇ ସଂପ୍ରଦାୟ ମଧ୍ୟରେ ସୌହାର୍ଦ୍ଦ୍ୟ ବୃଦ୍ଧି ପାଇବା ସହିତ ଜାତୀୟ ସଂହତିର ବିକାଶ ଦିଗରେ ସହାୟକ ହୋଇଛି । ରେମଣ୍ଡା ମାଟିର ଏହି ଗୌରବମୟ ପରମ୍ପରା ମାନବିକତା ଓ ସୁହୃଦୟତା ମୂଲ୍ୟବୋଧକୁ ସମ୍ମାନ ଦେଇଆସିଛି । ରେମଣ୍ଡା ଗ୍ରାମରେ ରଥଯାତ୍ରାର ଆୟୋଜନ କରିଥିବା ଗୌନ୍ତିଆ ସ୍ୱର୍ଗତଃ ଓ୍ୱାରସ ମହମ୍ମଦଙ୍କ ପରେ ଗୌନ୍ତିଆ ହନିଫ୍ ମହମ୍ମଦ, ମହମ୍ମଦ ଖଲିଲ ଏବଂ ବର୍ତ୍ତମାନର ଗୌନ୍ତିଆ ମହମ୍ମଦ ଜମି ଉଲ୍ଲା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନିକଟରେ ଭକ୍ତି ନୈବେଦ୍ୟ ଅର୍ପଣ କରିବା ସହିତ ରଥଯାତ୍ରାରେ ଛେରା ପହଁରା କରିଆସୁଛନ୍ତି । ମହମ୍ମଦ ଜମି ଉଲ୍ଲା ନିଜ ବଂଶ ପରମ୍ପରାକୁ ସମ୍ମାନ ଦେଇ ନିଜର ପବିତ୍ର କର୍ତ୍ତବ୍ୟକୁ ଆଗ୍ରହର ସହିତ ସଂପାଦିତ କରୁଛନ୍ତି । ରଥଯାତ୍ରା ସମୟରେ ମହାପ୍ରଭୁମାନଙ୍କର ବିଗ୍ରହ ରେମଣ୍ଡା ଗ୍ରାମରେ ରଖାଯାଇଥାଏ । ନିକଟସ୍ଥ ସୁନାରୀ ଗ୍ରାମରେ ଅନ୍ୟ ଦିନମାନଙ୍କରେ ମହାପ୍ରଭୁଙ୍କ ବିଗ୍ରହ ରହିଥାନ୍ତି । ସୁନାରୀ ଗ୍ରାମର ଜନୈକ ପୂଜକ ଅନ୍ୟଦିନମାନଙ୍କରେ ନିଜ ଘରେ ମହାପ୍ରଭୁଙ୍କୁ ରଖି ପୂଜାର୍ଚ୍ଚନା କରିଥାନ୍ତି ।

ବିଗତ ଦିନମାନଙ୍କରେ ପଡ଼ୋଶୀ ଗ୍ରାମ ସୁନାରୀ, ଯମୁନା, ତଲିଆ ଆଦି ଗ୍ରାମରୁ ମହାପ୍ରଭୁଙ୍କ ବିଗ୍ରହ ଅଣାଯାଇ ଏଠାରେ ରଥଯାତ୍ରା କାର୍ଯ୍ୟ ସଂପାଦନା କରାଯାଉଥିଲା । ପ୍ରତିବର୍ଷ ଆଷାଢ଼ ମାସ ପଞ୍ଚମୀ ତିଥିରେ ରଥଯାତ୍ରା ହେବା ସହ ଉଭୟ ହିନ୍ଦୁ ଓ ମୁସଲମାନ ସଂପ୍ରଦାୟ ଏହାର ସଫଳତା ପାଇଁ ପୂର୍ଣ୍ଣ ପ୍ରାଣରେ ଉଦ୍ୟମ କରିଥାନ୍ତି । ଏଠାରେ ଚତୁର୍ଦ୍ଦଶୀ ତିଥିରେ ବାହୁଡ଼ା ଯାତ୍ରା ସଂପନ୍ନ ହୁଏ । ଝାରସୁଗୁଡ଼ା ଜିଲ୍ଲାର ଶିକ୍ଳାଞ୍ଚଳ ଇବ୍ ତାପଜ ବିଦ୍ୟୁତ୍ କେନ୍ଦ୍ର ନିକଟରେ ଏହି ଐତିହ୍ୟ ବିମଣ୍ଡିତ ଗ୍ରାମ ରେମଣ୍ଡା ଅବସ୍ଥିତ । ଏହି ଗ୍ରାମରେ ଗୌନ୍ତିଆ ପରିବାର ସହିତ ବାରଟି ମୁସଲମାନ ପରିବାର, ଆଦିବାସୀ ଓ ହରିଜନ ସଂପ୍ରଦାୟ ପରସ୍ପର ସୁଖ-ଦୁଃଖରେ ସମଭାଗି ହୋଇ ବସତି ସ୍ଥାପନ କରିଆସୁଛନ୍ତି । ରେମଣ୍ଡାର ମାଟି, ପାଣି, ପବନରେ ସାଂପ୍ରଦାୟିକ ସହନଶୀଳତାର ବାର୍ତ୍ତା ଝଙ୍କୃତ ହୋଇଥାଏ । କେବଳ ରଥଯାତ୍ରା ନୁହେଁ, ଅନ୍ୟାନ୍ୟ ପର୍ବପର୍ବାଣି ଉଭୟ ସଂପ୍ରଦାୟ ପରସ୍ପର ମଧ୍ୟରେ ଉତ୍ତମ ବୁଝାମଣା ସ୍ଥାପନ କରି ପାଳନ ମଧ୍ୟ କରିଥାନ୍ତି । **ପଶ୍ଚିମ ଓଡ଼ିଶାର ପାରମ୍ପରିକ କୃଷିଭିତ୍ତିକ ଗଣପର୍ବ ନୂଆଖାଇ, ପୁଷିପୁନି ଓ ଦୁର୍ଗାପୂଜା ଅବସରରେ ଦୁର୍ଗାଷ୍ଟମୀ ବ୍ରତ ବା ଭାଇଜିଉନ୍ତିଆ ଓଷା ରେମଣ୍ଡା ଗ୍ରାମର ମୁସଲମାନ ସଂପ୍ରଦାୟ ଅତି ଆଗ୍ରହର ସହିତ ପାଳନ କରୁଥିବାର ଜଣାଯାଏ ।** ରେମଣ୍ଡା ଗ୍ରାମର ତତ୍କାଳୀନ ଗୌନ୍ତିଆ ସ୍ୱର୍ଗତଃ ମହମ୍ମଦ ଖଲିଲଙ୍କ ହିନ୍ଦୁଧର୍ମ ଶାସ୍ତ୍ର, ପୁରାଣ, ବେଦ-ବେଦାନ୍ତ ଓ ଉପନିଷଦ ଉପରେ ଗଭୀର ପାଣ୍ଡିତ୍ୟ ଥିଲା । ସେ ପୌରାଣିକ କଥାବସ୍ତୁ ଆଧାରିତ ରାମ ବନବାସ, ନଳଦମୟନ୍ତୀ ଓ ମେରୁଶୃଙ୍ଗବଧ ପରି ନାଟକ ରଚନା କରି ନିଜ ସାରସ୍ୱତ ପ୍ରତିଭାର ପରିଚୟ ଦେଇଥିଲେ । ଶାସ୍ତ୍ରୀୟ ସଂଗୀତ କ୍ଷେତ୍ରରେ ତାଙ୍କର ଯଥେଷ୍ଟ ଜ୍ଞାନ ଥିଲା । ନିଜ ନିର୍ଦ୍ଦେଶନାରେ ସେ ନିଜର ସମସ୍ତ ନାଟକକୁ ରେମଣ୍ଡା ମାଟିରେ ମଞ୍ଚସ୍ଥ କରିଥିଲେ । ଅଏଲ ଝରନଠାରେ ମହାଦେବ ମନ୍ଦିର ପ୍ରତିଷ୍ଠା ନିମନ୍ତେ ଗୌନ୍ତିଆ ପରିବାର ଜମିଦାନ କରି ମହାନୁଭବତାର ପରିଚୟ ଦେବା ସହିତ ସାଂପ୍ରଦାୟିକ ସଂପ୍ରୀତିକୁ ଦୃଢ଼ୀଭୂତ କରିଛନ୍ତି ।

ବର୍ତ୍ତମାନର ଗୌନ୍ତିଆ ମହମ୍ମଦ ଜମିଉଲ୍ଲା ଜଣେ ସୁନାମଧନ୍ୟ କବି ରୂପେ ଓଡ଼ିଆ ସାହିତ୍ୟରେ ନିଜର ଏକ ପରିଚୟ ସୃଷ୍ଟି କରିଛନ୍ତି । ରେମଣ୍ଡା ରଥଯାତ୍ରାରେ ସେ ବର୍ତ୍ତମାନ ଛେରା ପହଁରା କାର୍ଯ୍ୟ ସଂପାଦିତ କରି ମୁସଲମାନ ସମାଜକୁ ଶ୍ରୀଜଗନ୍ନାଥ ସଂସ୍କୃତିର ନିକଟତର କରିବାକୁ ଉଦ୍ୟମ କରିଛନ୍ତି । ଶ୍ରୀଜଗନ୍ନାଥ ଧର୍ମର ମହାନବାର୍ତ୍ତା, ଧର୍ମ ନିରପେକ୍ଷତା ଭାବକୁ ପ୍ରଚାର ପ୍ରସାରରେ ଗୌନ୍ତିଆ ମହମ୍ମଦ ଜମିଉଲ୍ଲା କେବେ ଅବହେଳା କରିନାହାନ୍ତି । ରେମଣ୍ଡା ଗ୍ରାମର ଐତିହ୍ୟ ସଂପନ୍ନ ରଥଯାତ୍ରା ଧାର୍ମିକ ସହନଶୀଳତା ଓ ସଂପ୍ରୀତିର ପ୍ରତୀକ । ଧର୍ମ ବିଦ୍ୱେଷୀ ଓ ଧର୍ମାନ୍ଧମାନେ ଏହି କ୍ଷୁଦ୍ରପଲ୍ଲୀ ରେମଣ୍ଡାକୁ ଶିକ୍ଷାଲାଭ କରିବା ଉଚିତ୍ । ଶ୍ରୀଜଗନ୍ନାଥ ସଂସ୍କୃତିର ମହନୀୟତାର ଭାବ ରେମଣ୍ଡା ରଥଯାତ୍ରାରୁ କେବଳ ଆମ ଦେଶ ନୁହେଁ, ସମଗ୍ର ବିଶ୍ୱ ପାଇଁ ପ୍ରେରଣାଦାୟକ ଓ ଉତ୍ସାହପ୍ରଦ । ଏହା ତିଳେମାତ୍ର ଅତିରଂଜିତ ନୁହେଁ । ହିନ୍ଦୁ-ମୁସଲମାନ ସଂପ୍ରୀତିର ବାର୍ତ୍ତା ରେମଣ୍ଡା ଗ୍ରାମରେ ଅନୁଷ୍ଠିତ ହୋଇଆସୁଥିବା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା । ସ୍ନେହ, ପ୍ରେମ, ଶ୍ରଦ୍ଧା ଓ ଭ୍ରାତୃତ୍ୱର ଚରମ ନିଦର୍ଶନ ଦେଖିବାକୁ ମିଳେ ରେମଣ୍ଡା ରଥଯାତ୍ରାରେ । ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ଶ୍ରୀଜଗନ୍ନାଥ ସଂସ୍କୃତି ସମସ୍ତ ମତବାଦ, ଚିନ୍ତାଧାରା, ବିଶ୍ୱାସ ଓ ରୀତିନୀତିକୁ ନିଜର ତଥା ଆପଣାର କରିପାରେ ଏହାର ନିର୍ଭରଯୋଗ୍ୟ ପ୍ରମାଣ ରେମଣ୍ଡା ରଥଯାତ୍ରା ।

ଅଧ୍ୟାପକ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା

# ରାଉରକେଲାର ରଥଯାତ୍ରା

ଅଳକା ଚାନ୍ଦ

ମହାନ୍ ଭାରତବର୍ଷ ଏକ ବିଶାଳ ପୁଣ୍ୟଭୂମି । ବହୁଭାଷୀଙ୍କ ନିବାସ ରୂପରେ ଏହା ପ୍ରାଚୀନ ସଂସ୍କୃତିର ବାହକ ଭାବରେ ସମଗ୍ର ବିଶ୍ୱରେ ପରିଚିତ । ତନ୍ମଧ୍ୟରେ ଉତ୍କୃଷ୍ଟକଳାର ଏ ଦେଶ ଉତ୍କଳ ବିଶ୍ୱ ସଂସ୍କୃତିର ବାର୍ତ୍ତାବହ, ଇଷ୍ଟଦେବ କଳିର ଅବତାର ଶ୍ରୀଜଗନ୍ନାଥଙ୍କର ଏ ପୁଣ୍ୟଭୂମି, ଯେଉଁଠି ପୂଜା ଓ ଆରାଧନାରେ ସର୍ବ ସଂପ୍ରଦାୟର ଏକ ସମନ୍ୱୟ ପନ୍ଥା ଅବଲମ୍ବନ କରାଯାଇଥାଏ । ତେଣୁ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସାମ୍ୟ ଓ ମୈତ୍ରୀ ଭାବ ହିଁ ଜଗନ୍ନାଥ ସଂସ୍କୃତିର ବୈଶିଷ୍ଟ୍ୟ ।


ସେକ୍ଟର-୩ରେ ଥିବା ଶ୍ରୀଜଗନ୍ନାଥ ମନ୍ଦିର

ଭାରତର ବିଖ୍ୟାତ ସାଂପ୍ରଦାୟିକ ପ୍ରଚାରକମାନେ ସ୍ୱ ସ୍ୱ ମତ ପ୍ରଚାର କରିବା ସଂଗେସଂଗେ ଅନ୍ୟ ଦେବଦେବୀଙ୍କ ପ୍ରତି ମଧ୍ୟ ସମ୍ମାନ ପ୍ରକାଶ କରିଛନ୍ତି । ଶଙ୍କର, ରାମାନୁଜ, ଚୈତନ୍ୟ ପ୍ରଭୃତି ମନିଷୀମାନେ ଜଗନ୍ନାଥଙ୍କଠାରେ ନିଜନିଜର ମତ ଓ ସିଦ୍ଧାନ୍ତ ଆରୋପ କରିଥିଲେ ହେଁ, ଜଗନ୍ନାଥ କୌଣସି ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତର ବଶବର୍ତ୍ତୀ ନୁହନ୍ତି । ଶାବରୀ ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ ଭାବେ ବିବେଚିତ ଜଗନ୍ନାଥ କ୍ରମଶଃ ରାଜନ୍ୟ ପ୍ରୋତ୍ସାହନରେ ଉତ୍କଳୀୟ ଏବଂ ପରେ ବିଶ୍ୱ ଜନମାନସର ଉପାସ୍ୟ ଦେବତା ଭାବରେ ପ୍ରତୀୟମାନ ହୋଇଛନ୍ତି । ହିନ୍ଦୁଧର୍ମର ପରମ ବିଗ୍ରହ ଭାବେ ପୂଜିତ ଜଗନ୍ନାଥ କ୍ରମଶଃ ହିନ୍ଦୁ ବ୍ୟତିରେକ ଅନ୍ୟ ଧର୍ମାବଲମ୍ବୀ ମଣିଷମାନଙ୍କୁ ନିଜ ଆଡ଼କୁ ଆକର୍ଷିତ କରିଛନ୍ତି । ସେଥିରେ କୌଣସି ବାଧବାଧକତା ନାହିଁ, ପରନ୍ତୁ ଏକ ସ୍ନେହଶୀଳ ବନ୍ଧନରେ ବାନ୍ଧି ହେବାର ଅଲୌକିକ ଆମନ୍ତ୍ରଣ ରହିଛି । ସେଇ ଭବବନ୍ଧନର ଆଚାଣ୍ଡାଳ ବ୍ରାହ୍ମଣମାନଙ୍କୁ ଏକତ୍ର କରିଛନ୍ତି ଶ୍ରୀକ୍ଷେତ୍ର ଧାମରେ । ଭାରତୀୟ ସଂସ୍କୃତିର ମୂଳ ଲକ୍ଷ୍ୟ ମୈତ୍ରୀ ଭାବନା ହିଁ ହେଉଛି ଜଗନ୍ନାଥ ତତ୍ତ୍ୱର ବିଶିଷ୍ଟ ଅଙ୍ଗ । ସେଇ ସଂସ୍କୃତିର ପ୍ରଚାର ଓ ପ୍ରସାର ନିମନ୍ତେ, ବିଶ୍ୱର କୋଣ ଅନୁକୋଣରେ ଜଗନ୍ନାଥଙ୍କର ମୂର୍ତ୍ତି ସ୍ଥାପିତ ହୋଇଅଛି ଓ ଶ୍ରୀକ୍ଷେତ୍ରରେ ଅନୁରୂପ ପୂଜା ଆରାଧନା ମଧ୍ୟ ହେଉଅଛି ।

କପିଳ ସଂହିତା ଧର୍ମଗ୍ରନ୍ଥ ଅନୁସାରେ ଏ ଭୂମି ଏକ ପବିତ୍ର ଭୂମି 'ସର୍ବପାପ ହରେ ଦେଶମ୍' । ଉତ୍କଳୀୟ ନରପତିମାନଙ୍କର ପ୍ରଦତ୍ତ ସଂସ୍କୃତ ଓ ଓଡ଼ିଆ ଅଭିଲେଖରେ ଶ୍ରୀଜଗନ୍ନାଥ ବିଷୟରେ ବହୁପ୍ରଥାର ବର୍ଣ୍ଣନା ଥିବାର ଦେଖାଯାଏ । ଗଙ୍ଗବଂଶର ପ୍ରତିଷ୍ଠାତା ଓ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାତା ଚୋଳଗଙ୍ଗଦେବଙ୍କ ପ୍ରଦତ୍ତ ଅଭିଲେଖରେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ସ୍ତୁତି ତାରକ ଶ୍ଳୋକ ସର୍ବପ୍ରଥମେ ଉଲ୍ଲିଖିତ ଥିବାର ଦେଖାଯାଏ ।

ଯାହାଙ୍କର ପାଦଦ୍ୱୟ ସମଗ୍ର ପୃଥିବୀ ଓ ଅନ୍ତରୀକ୍ଷକୁ, ନାଭି ଆକାଶକୁ ଓ କର୍ଣ୍ଣଦ୍ୱୟ ସମସ୍ତ ଦିଗକୁ ବ୍ୟାପି ରହିଛି ଏବଂ ଯାହାଙ୍କ ଚକ୍ଷୁଦ୍ୱୟ ସୂର୍ଯ୍ୟ ଓ ଚନ୍ଦ୍ର, ମସ୍ତକ ସ୍ୱର୍ଗ ସଦୃଶ ସେଇ ପୁରୁଷୋତ୍ତମ ଜଗନ୍ନାଥଙ୍କ ନିମିତ୍ତ ମନ୍ଦିର କିଏ ଗଢ଼ି ପାରିବ ? ବହୁକାଳ ଧରି ଉପେକ୍ଷିତ ଥିବା ସେଇ ଜଗନ୍ନାଥ ମନ୍ଦିର ଗଙ୍ଗେଶ୍ୱର ନିର୍ମାଣ କଲେ ।

ସୂର୍ଯ୍ୟବଂଶର ପ୍ରଥମ ସମ୍ରାଟ ଗଜପତି କପିଳେନ୍ଦ୍ର ଦେବ (୧୪୩୧-୧୪୬୬ ଖ୍ରୀ:ଅ:) ଶ୍ରୀଜଗନ୍ନାଥଙ୍କୁ ଓଡ଼ିଶାର ସର୍ବୋଚ୍ଚ ଶାସନକର୍ତ୍ତା ରୂପରେ ସ୍ୱୀକାର କରିଥିଲେ । ତାଙ୍କରି ଆଦେଶରେ ସେ ଉତ୍କଳର ଶାସନ ପରିଚାଳନା କରିବାର ଉଲ୍ଲେଖ ଅଛି ।

କପିଳେନ୍ଦ୍ର ଦେବ ଶ୍ରୀଜଗନ୍ନାଥଙ୍କୁ ନୀଳ ଶୈଳାଧିପତି କଳ୍ପଦ୍ରୁମ ଓ ପୁରୁଷୋତ୍ତମ ଭାବରେ ସ୍ତୁତି କରିଛନ୍ତି । ତନ୍ତ୍ରଶାସ୍ତ୍ରରେ ଶ୍ରୀଜଗନ୍ନାଥଙ୍କୁ ଭୈରବ ରୂପରେ ଓ ବଜ୍ରଯାନର ଶୂନ୍ୟୋପାସନା ତତ୍ତ୍ୱ, ଗ୍ରନ୍ଥର ମଙ୍ଗଳାଚରଣରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ବର୍ଣ୍ଣନା କରାଯାଇଛି । **ଶ୍ରୀଜଗନ୍ନାଥଙ୍କୁ କୃଷ୍ଣରୂପେ ତାଙ୍କ କାବ୍ୟରେ ବର୍ଣ୍ଣନା କରିବାରେ ଜୟଦେବ ହିଁ ପ୍ରଥମ ସଂସ୍କୃତ କବି । ତାଙ୍କ ଦୃଷ୍ଟିରେ ଜଗନ୍ନାଥ ହେଉଛନ୍ତି କୃଷ୍ଣ ।**



ଓଡ଼ିଶାର ସଂଗୀତ, ନୃତ୍ୟ, ନାଟକ ରଚନା ପ୍ରୟୋଗ ଓ ପ୍ରସାର କ୍ଷେତ୍ରରେ ଶ୍ରୀଜଗନ୍ନାଥ ଧାମର ଅବଦାନ ଉଲ୍ଲେଖଯୋଗ୍ୟ ।

ଜଗନ୍ନାଥ ଏକ ସ୍ୱତନ୍ତ୍ର ଧର୍ମର ବାର୍ତ୍ତାବହ । ଏଇ ଧର୍ମରେ, ଅନାର୍ଯ୍ୟ, ଆର୍ଯ୍ୟଙ୍କ ବାରଣ ନାହିଁ । ଅନାର୍ଯ୍ୟର ଦେବତାଙ୍କ ସନ୍ଧାନ 'ବସ' ବ୍ରାହ୍ମଣ ନେଲା ଓ ତା'ର ପୂଜା ପାଇଁ ସମସ୍ତେ ବିବ୍ରତ ହୋଇପଡ଼ିଲେ । ଶ୍ରୀକୃଷ୍ଣଙ୍କ ଅପୋଡ଼ା ପିଣ୍ଡ ବୃକ୍ଷ ରୂପେ ରୋହିଣୀ କୁଣ୍ଡରେ ଦେଖାଗଲା । ତାହା ନିର୍ମାଣ କଲା ଜରାଶବର । ଏବେବି ସେଇ ଶବର ବଂଶଧର 'ଦଇତା'ମାନଙ୍କଦ୍ୱାରା ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ନିର୍ମାଣ ହୁଅନ୍ତି । ତାଙ୍କ ଶରୀରର ରକ୍ଷାଭାର ଦଇତାମାନଙ୍କ ଉପରେ । ତାକୁ ହିଁ ଲକ୍ଷ୍ୟ କରି କବି ସାରଳା ଲେଖିଛନ୍ତି, ଜାରାଶବର ତାଙ୍କ ମୂର୍ତ୍ତି ଗଠନ କଲେ । ମୈତ୍ରୀ ଧର୍ମ ହିଁ ଜଗନ୍ନାଥ ଧର୍ମ । ମିତ୍ରତା ଛାଡ଼ି ବିରୋଧତା କଲେ, ଭଗବାନ ଅସନ୍ତୁଷ୍ଟ ହୁଅନ୍ତି ବୋଲି ସାରଳା ସ୍ପଷ୍ଟ ଉଲ୍ଲେଖ କରିଛନ୍ତି । ଶ୍ରୀଜଗନ୍ନାଥଙ୍କ ପୂଜାପର୍ବ ତଥା ସଂସ୍କୃତିର ସମନ୍ୱୟ ଘଟିଛି ଜଗନ୍ନାଥଙ୍କଠାରେ । ତନ୍ତ୍ରର ପଞ୍ଚମାକାର ପୂଜାଠାରୁ ବୈଷ୍ଣବଙ୍କ ନିରାମିଷ ପୂଜା ପର୍ଯ୍ୟନ୍ତ ସବୁ ଜଗନ୍ନାଥଙ୍କ ପୂଜାପଦ୍ଧତିରେ ରହିଆସିଛି । ସେଥିପାଇଁ ବିଶ୍ୱରେ କେବଳ ଶ୍ରୀଜଗନ୍ନାଥ ପ୍ରସାଦ ହିଁ ମହାପ୍ରସାଦ । ତା'ର ଶ୍ମଶାନର ନାମ ସ୍ୱର୍ଗଦ୍ୱାର, ତା' ଦାଣ୍ଡର ନାମ ବଡ଼ଦାଣ୍ଡ, ନଦୀର ନାମ ମହାନଦୀ, ବାନାର ନାମ ପତିତପାବନ ବାନା ... ସେଇ ବଡ଼ଠାକୁର ... ମହା ନାମଧାରୀ ପ୍ରଭୁ ଶ୍ରୀଶ୍ରୀଜଗନ୍ନାଥଙ୍କ ସଂସ୍କୃତି ... ଯୁଗେ ଯୁଗେ ବିଶ୍ୱ ବନ୍ଦନୀୟ ।

ସେଥିପାଇଁ ବିଶ୍ୱରେ କେବଳ ଶ୍ରୀଜଗନ୍ନାଥ ପ୍ରସାଦ ହିଁ ମହାପ୍ରସାଦ । ତା'ର ଶ୍ମଶାନର ନାମ ସ୍ୱର୍ଗଦ୍ୱାର, ତା' ଦାଣ୍ଡର ନାମ ବଡ଼ଦାଣ୍ଡ, ନଦୀର ନାମ ମହାନଦୀ, ବାନାର ନାମ ପତିତପାବନ ବାନା ... ସେଇ ବଡ଼ଠାକୁର ... ମହା ନାମଧାରୀ ପ୍ରଭୁ ଶ୍ରୀଶ୍ରୀଜଗନ୍ନାଥଙ୍କ ସଂସ୍କୃତି ... ଯୁଗେ ଯୁଗେ ବିଶ୍ୱ ବନ୍ଦନୀୟ ।

ଏକଥା ସ୍ୱୀକାର୍ଯ୍ୟ ଯେ କଳିର ଦେବତା ପୁରୁଷୋତ୍ତମ ଶ୍ରେଷ୍ଠ ଶ୍ରୀଶ୍ରୀଜଗନ୍ନାଥ ଆଜି ବିଶ୍ୱର ପ୍ରତିଟି ପ୍ରାନ୍ତରରେ ପୂଜା ପାଉଛନ୍ତି । ତାଙ୍କ ସର୍ବଶ୍ରେଷ୍ଠ ଯାତ୍ରା ଶ୍ରୀକ୍ଷେତ୍ରର 'ରଥଯାତ୍ରା' କେବଳ ଭାରତ ନୁହେଁ ସାରା ବିଶ୍ୱ ବ୍ୟାପି ପାଳିତ ହେଉଛି ।

ଏଇ ପବିତ୍ର ଯାତ୍ରାଦିନ ପୁରୁଷୋତ୍ତମ କ୍ଷେତ୍ର ଲକ୍ଷ ଲକ୍ଷ ଭକ୍ତଙ୍କ ମେଳରେ ପାଲଟିଯାଏ ମଣିଷର ମହାସମୁଦ୍ର । ଶ୍ରୀଶ୍ରୀଜଗନ୍ନାଥ, ଭାଇ ବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କ ଦର୍ଶନ ପାଇଁ ତଥା ରଥର ଦଉଡ଼ି ଟାଣିବା ପାଇଁ ଭାରତ ତଥା ଭାରତ ବାହାର ବିଭିନ୍ନ ପ୍ରାନ୍ତରରୁ ଆସନ୍ତି ହଜାର ହଜାର ଦର୍ଶକ । ଏଇ ରଥର ଦଉଡ଼ି ଟାଣିଲେ ସର୍ବପାପ କ୍ଷୟ ହୁଏ ବୋଲି ଏ ଜାତି ବିଶ୍ୱାସ କରେ ।

ଶ୍ରୀକ୍ଷେତ୍ର ପୁରୀ ପରି ଶିଳ୍ପ ସହର ରାଉରକେଲାରେ ମଧ୍ୟ ପ୍ରତିବର୍ଷ ବହୁ ଆଡ଼ମ୍ବରରେ ପାଳିତ ହୁଏ ଏ ରଥଯାତ୍ରା ।

୫୦ ବର୍ଷର ଶିଳ୍ପ ସହର ରାଉରକେଲା, କେତେ ମଧୁମୟ, ହର୍ଷ ବିଷାଦ କାହାଣୀର ଫସଲଭରା ପସରା । ସର୍ବଭାରତୀୟ ସଂସ୍କୃତିକୁ ଆପଣେଇ ଚାଲିଛି । ସତେ ଯେମିତି ଏ ସହର ଏଇ ପ୍ରଶାନ୍ତ ମହାସାଗର, ସ୍ରୋତସ୍ୱିନୀ ଗଙ୍ଗା, ଉଦାର, ଆକାଶ କିଛିକୁ କୋଳେଇ ନେବାରେ, ତା'ର ବିରକ୍ତ ନାହିଁ ବରଂ ଅଛି ସ୍ୱାଭିମାନ ଶ୍ରୀକ୍ଷେତ୍ରର ସ୍ୱାଭିମାନ । ବଡ଼ଠାକୁର ଜଗନ୍ନାଥଙ୍କ ବଡ଼ପଣ । ରାଉରକେଲା ଶବ୍ଦର ଅର୍ଥ ହେଲା -

ରାଉର ଆମର<br>
କେଲା ଜମି (ଭୂମି) ।

ଏଇ ନାମକରଣ କରିଥିଲେ ଏଇ ମାଟିର ବନଜାତି, ଆଦିବାସୀ, ଯେଉଁମାନଙ୍କର ଜୀବନ ପରିପୁଷ୍ଟ ହେଉଥିଲା, ଶାଳ ଜଙ୍ଗଲର ସବୁଜିମା ଭିତରେ, ଶଙ୍ଖ କୋଏଲ ବ୍ରାହ୍ମଣୀର ଝର୍ ଝର୍ କୁଳୁକୁଳୁ ନାଦ ଭିତରେ, ମୁକୁଳା ଆକାଶ ରାତିରେ ଆଉ

ମାଦଳର ଧିତାଂ ତା' ସ୍ୱର ଲହରୀରେ, ସାକାର ହେଲା ଏଇ ଜଙ୍ଗଲର ସଂସ୍କୃତି ।

ବର୍ତ୍ତମାନର ଶିଳ୍ପସହର ରାଉରକେଲାର ତିନି ନମ୍ବର ସ୍ଥିତ ଅହିରାବନ୍ଧର ଜଗନ୍ନାଥ ପ୍ରଥମେ ଥିଲେ ଆଦିବାସୀମାନଙ୍କର ଏକ ଝୁମ୍ପୁଡ଼ି ଘରେ । ଭୂୟାଁ ଗଞ୍ଜୁ, ଜଗନ୍ନାଥ ମାଝି ଥିଲେ ଏଇ ମନ୍ଦିରର ତତ୍ତ୍ୱବଧାରକ । ଇସ୍ପାତ ସହର ଓ ଇସ୍ପାତ କାରଖାନାର ନିର୍ମାଣ ବେଳକୁ ଏହା ଥିଲା ଛତିଶି ଆଦିବାସୀ ଅଧ୍ୟୁଷିତ ଗାଁ, ଯେଉଁଠି ଓରାମ, ଖଡ଼ିଆ, କିଷାନ, ମୁଣ୍ଡାମୁଣ୍ଡାରି ସମ୍ପ୍ରଦାୟର ଲୋକମାନେ ବସବାସ କରୁଥିଲେ ।

ସେଇ ଝୁମ୍ପୁଡ଼ିରେ ଥିବା ଜଗନ୍ନାଥ ମନ୍ଦିର ନିକଟରେ ଶିବ ମନ୍ଦିରଟିଏ ବି ଥିଲା । ରାଉରକେଲା ଇସ୍ପାତ କାରଖାନା ନିର୍ମାଣ କାଳରେ ଏଇ ମନ୍ଦିରଟିକୁ ଏକ ସୁନ୍ଦର ଭାବରେ ନିର୍ମାଣ କରିବା ପାଇଁ, ସେ ସମୟର ଷ୍ଟିଲପ୍ଲାଣ୍ଟ ତଥା ସରକାରୀ ଅଫିସର୍, ଯଥା-ଚିଫ୍ ସିକ୍ୟୁରିଟି ଅଫିସର, ଶ୍ରୀ ରଥ, ଆସିଷ୍ଟାଣ୍ଟ ସିକ୍ୟୁରିଟି ଅଫିସର ଶ୍ରୀ ବଟକୃଷ୍ଣ ମହାନ୍ତି, ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିଅର ଶ୍ରୀ ମାଧବ ଜେନା, କ୍ୟାପଟେନ କାଶୀନାଥ ମହାନ୍ତି, ସ୍ୱର୍ଗତଃ ହୃଷିକେଶ ରାୟ ପ୍ରସ୍ତାବ କଲେ ଯେ, ଉକ୍ତ ଝୁମ୍ପୁଡ଼ି ଭାଙ୍ଗି ଶ୍ରୀଜଗନ୍ନାଥଙ୍କୁ ଏକ ରାଜକୀୟ ଭାବରେ, ନୂତନ ମନ୍ଦିର ନିର୍ମାଣ କରି ପ୍ରତିଷ୍ଠା କରିବେ । କିନ୍ତୁ ଗ୍ରାମବାସୀ ଓ ଗଞ୍ଜୁମାନେ ସେ ପ୍ରସ୍ତାବକୁ ଘୋର ବିରୋଧ କଲେ ଓ ପ୍ରଚେଷ୍ଟା ଚଳେଇଲେ ଯେ, ସେ ଦେବତାଙ୍କୁ ଅନ୍ୟତ୍ର ସ୍ଥାନାନ୍ତରିତ କରିବେ ନାହିଁ ।



ଆମବାଗାନସ୍ଥିତ ଗୁଣ୍ଡିଚା ମନ୍ଦିର

୧୯୫୬ ଯାଏଁ ସେ କନ୍ଦଳ ଜାରି ରହିଲା । ୧୯୫୭ ମସିହା ବେଳକୁ ଆପୋଷ ଆଲୋଚନା ହୋଇ ନିଷ୍ପତ୍ତି ହେଲା ଯେ, ପୁରୁଣା ଝୁମ୍ପୁଡ଼ିରେ ସେଇ ଶ୍ରୀଜଗନ୍ନାଥ ରହିବେ । ସେହି ପରିସର ମଧ୍ୟରେ, ନିର୍ମାଣ ହେବ ଏକ ନୂତନ ମନ୍ଦିର ଓ ପ୍ରତିଷ୍ଠିତ ହେବ ନୂତନ ବିଗ୍ରହ । ଏଇ ନୂତନ ମନ୍ଦିର ନିର୍ମାଣ ଦାୟିତ୍ୱ କଣ୍ଟ୍ରାକ୍ଟର ସ୍ୱର୍ଗତଃ ହରିପ୍ରଧାନ ଓ ଉଚ୍ଛବ ପ୍ରଧାନ ହାତରେ ପ୍ରଦାନ କରାଗଲା । ସେଥିପାଇଁ ଆବଶ୍ୟକୀୟ ଅର୍ଥର ଦାୟିତ୍ୱ ବହନ କଲେ ପି.ଡବ୍ଲ୍ୟୁଡି. (ପୂର୍ତ୍ତ ବିଭାଗ), ଆର୍.ଇ.ଓ. (ଗ୍ରାମ୍ୟ ଇଞ୍ଜିନିୟରିଂ ବିଭାଗ) ଅନ୍ୟାନ୍ୟ, କର୍ମଚାରୀ ତଥା ଅଫିସରମାନେ । ଆଦ୍ୟରେ ଉଚ୍ଛବ ପ୍ରଧାନ ଏ ମନ୍ଦିର ପ୍ରସ୍ତୁତିରେ ହାତ ବଢ଼େଇ ଥିଲେ କିନ୍ତୁ ପରେ ସେ ଓହରିଗଲେ । ସମ୍ପୂର୍ଣ୍ଣ ଭାବରେ ମନ୍ଦିର ନିର୍ମାଣ କାର୍ଯ୍ୟ ବହନ କଲେ ହରି ପ୍ରଧାନ । ଏଇ ମନ୍ଦିର କାର୍ଯ୍ୟ ୧୯୫୭ ମସିହାରେ ଆରମ୍ଭ ହୋଇ ୧୯୫୯ ମସିହାରେ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ ହେଲା । ଅଧିକ ଟଙ୍କାର ମଧ୍ୟ ପ୍ରୟୋଜନ ହେଲା । ସ୍ୱର୍ଗତଃ ହୃଷିକେଶ ରାୟ, ସ୍ଥାନୀୟ କେତେକ ବ୍ୟବସାୟୀଙ୍କୁ ଧରି ଅର୍ଥ ସଂଗ୍ରହ କଲେ ଓ ମନ୍ଦିର ନିର୍ମାଣ ପାଇଁ ପାଣ୍ଠି ପ୍ରସ୍ତୁତ କଲେ । ୧୯୬୭ ବେଳକୁ ମନ୍ଦିର ନିର୍ମାଣ କାର୍ଯ୍ୟ ସମାପନ ହେଲା । ବିଗ୍ରହ ପ୍ରତିଷ୍ଠା ଉତ୍ସବ ପାଇଁ ପୁରୀ ରାଜା ରାମଚନ୍ଦ୍ରଦେବ ଆସିଲେ ରାଉରକେଲା । ଶିଳ୍ପ ସହର ରାଉରକେଲାର ଅଧିବାସୀମାନଙ୍କ ମେଳରେ ସାତଦିନ ବ୍ୟାପି ମହାଆଡ଼ମ୍ବରରେ ସେ ପ୍ରତିଷ୍ଠା କାର୍ଯ୍ୟ ସମାପନ ହେଲା । ଭାରତର ବିଭିନ୍ନ ପ୍ରାନ୍ତରରୁ ବହୁ ଅଭିଜ୍ଞ ପଣ୍ଡିତମାନେ ଆସି ଯୋଗଦେଇଥିଲେ । ସ୍ୱର୍ଗତଃ ହରି ପ୍ରଧାନଙ୍କୁ ମନ୍ଦିର ପରିଚାଳନାର ସମସ୍ତ ଦାୟିତ୍ୱ ନ୍ୟସ୍ତ କରାଗଲା । ଦଇତାପତି ନିଯୁକ୍ତି, ପୂଜକ ନିଯୁକ୍ତି, ରୋଷେଇଆ ନିଯୁକ୍ତି, ଏ ସମସ୍ତ ଦାୟିତ୍ୱ ହରି ପ୍ରଧାନ ସର୍ବସାଧାରଣ ସାହାଯ୍ୟରେ ତୁଲାଉଥିଲେ । ପରବର୍ତ୍ତୀ ସମୟରେ ଏହା ଦେବୋତ୍ତର ବିଭାଗଦ୍ୱାରା ପରିଚାଳିତ ହେଲା ଏବଂ ବର୍ତ୍ତମାନ ମଧ୍ୟ ଏହା ମେନେଜିଂ ଟ୍ରଷ୍ଟିର ୨୧ ଜଣ ଟ୍ରଷ୍ଟିଙ୍କଦ୍ୱାରା ପରିଚାଳିତ ହେଉଛି । ପୂର୍ବରୁ ଅହିରାବନ୍ଧ ଗାଁ, ବର୍ତ୍ତମାନ (ସେକ୍ଟର ୩, ୪, ୫) ସେତେବେଳେ ସେଠାରେ ଗଞ୍ଜୁ ଥିଲେ ଗରିବ ପାତ୍ର । ସେ ତାଙ୍କର ବିଧି ମୁତାବକ ଜଗନ୍ନାଥଙ୍କ ପୂଜା ଅର୍ଚ୍ଚନା କରୁଥିଲେ । ବର୍ତ୍ତମାନ ମନ୍ଦିର ପରିଚାଳନା କମିଟି ଟ୍ରଷ୍ଟି ହାତରେ । ଏବେର ମୁଖ୍ୟଟ୍ରଷ୍ଟି ହେଉଛନ୍ତି ଆଇନ୍‌ଜୀବୀ, ଶ୍ରୀ ଗିରିଜା ଶଙ୍କର ଦ୍ୱିବେଦୀ ଏବଂ ପୂର୍ବରୁ ନିର୍ଦ୍ଦେଶକ ସ୍ୱର୍ଗତଃ ସୌର୍ଯ୍ୟ ପଟ୍ଟନାୟକ ଥିଲେ ମ୍ୟାନେଜିଂ ଟ୍ରଷ୍ଟି । ସେ ୨୦୦୧ରୁ ତିନି ବର୍ଷ ପାଇଁ ସେ ମ୍ୟାନେଜିଂ ଟ୍ରଷ୍ଟି ଥିଲେ । ତାଙ୍କ ସମୟରେ ଜଗନ୍ନାଥ ମନ୍ଦିର ତଥା ରଥଯାତ୍ରା ଓ ଅନ୍ୟାନ୍ୟ ପ୍ରଭୁଙ୍କର ଉତ୍ସବମାନ ମହାସମାରୋହରେ ପାଳିତ ହେଉଥିଲା । ସେ ମ୍ୟାନେଜିଂ ଟ୍ରଷ୍ଟି ଥିଲା ସମୟରେ ପ୍ରଭୁଙ୍କର ହୁଣ୍ଡିଖୋଲା




ହୋଇ ନଥିଲା । ସେ ମନ୍ଦିରର ସମସ୍ତ ସେବାର ଖର୍ଚ୍ଚ ଦାୟିତ୍ୱ ବହନ କରୁଥିଲେ । ଶ୍ରୀମନ୍ଦିରର ୨୨ ପାହାଚ, ଯଜ୍ଞ ମଣ୍ଡପ, ତିନିବର୍ଷର ରଥଯାତ୍ରା ଖର୍ଚ୍ଚ ସବୁ ସେ ବ୍ୟକ୍ତିଗତ ଭାବେ ବହନ କରିଥିଲେ । କିନ୍ତୁ ଈଶ୍ୱରଙ୍କର ଇଚ୍ଛା ସେଭଳି ଏକ ମହାନ୍ ବ୍ୟକ୍ତି ଅତି ଅଳ୍ପ ବୟସରେ ପରଲୋକ ଗମନ କଲେ ମାତ୍ର ୪୩ ବର୍ଷ ବୟସରେ ।

ଏ ମନ୍ଦିରରେ ପୁରୀ ଜଗନ୍ନାଥ ମନ୍ଦିର ପରି ଆନନ୍ଦ ବଜାର, ବିଧିବଦ୍ଧ ଭୋଗର ବ୍ୟବସ୍ଥା, ନବକଳେବର ଇତ୍ୟାଦି ସମସ୍ତ ପର୍ବପର୍ବାଣି ବିଧି ମୁତାବକ ପାଳନ ହୋଇଆସୁଅଛି । ଏଠି ବର୍ତ୍ତମାନବି ଷାଠିଏ ଜଣ ଦଇତାପତି ଅଛନ୍ତି । ଶ୍ରୀ ବଟକୃଷ୍ଣ ପଟ୍ଟନାୟକ ବର୍ତ୍ତମାନର ମୁଖ୍ୟ ଦଇତାପତି । ପୁରୀ ବଡ଼ ଦେଉଳରୁ ଜଗନ୍ନାଥ, ବଳରାମ, ସୁଭଦ୍ରା ମାଉସୀମା ମନ୍ଦିରକୁ ବିଜେ କଲାଭଳି ଏଠି ମଧ୍ୟ ଜଗନ୍ନାଥ, ବଳରାମ, ସୁଭଦ୍ରାଙ୍କ ତିନିରଥ ଅହିରାବନ୍ଧ ମନ୍ଦିରରୁ ଆମ୍ବବାଗାନ ସ୍ଥିତ ଗୁଣ୍ଡିଚା ମନ୍ଦିରକୁ ସାତ ଦିନ ପାଇଁ ଆସିଥାନ୍ତି । ଏଇ ଗୁଣ୍ଡିଚା ମନ୍ଦିର ପ୍ରଥମେ ପୁରୁଣାପାଣିର ଅଧିବାସୀ ଗଞ୍ଜୁମାନଙ୍କଦ୍ୱାରା (ଗଞ୍ଜୁଟୋଲା, ଓରାମ ଟୋଲା, ଭାନୁଟୋଲା) ଯାହା ବର୍ତ୍ତମାନର ଛଅ ନମ୍ବର, ସାତ ନମ୍ବର, ୧୮ ନମ୍ବର, ୧୭ ନମ୍ବର ଇସ୍ପାତ ମାର୍କେଟ, ସେଇ ଆଦିବାସୀଙ୍କୁ ନେଇ ଛୋଟିଆ ମନ୍ଦିରରେ ପରିଚାଳିତ ହେଉଥିଲା । ସେଇ ମନ୍ଦିର ନିକଟରେ ଅବସ୍ଥାନ କରୁଥିଲେ ଗୋକୁଳି ଗଞ୍ଜୁ । ନୂଆ ଠାକୁର ଅହିରାବନ୍ଧ ମନ୍ଦିରରୁ ଆସି ପ୍ରଥମେ ସାତନମ୍ବର, ତା'ପରେ ଦୀପକ ସିନେମାସ୍ଥିତ ମାଉସୀମା'ଙ୍କ ମନ୍ଦିରରେ ରହୁଥିଲେ । ବିଧିବଦ୍ଧ ମନ୍ଦିର ସେଠି ନଥିଲା । ସ୍ୱର୍ଗତଃ ଅପର୍ତ୍ତିବେହେରା, ସ୍ୱର୍ଗତଃ ଶଶୀ ବିଷୋଇ ଇତ୍ୟାଦି ସେଠି ମନ୍ଦିର କାର୍ଯ୍ୟ ଆରମ୍ଭ କଲେ । ରାଉରକେଲା ଷ୍ଟିଲପ୍ଲାଣ୍ଟ ଜାଗାରେ ବିନାଅନୁମତିରେ ଏହା ନୂଆ କରି ନିର୍ମାଣ ହେଉଥିବାରୁ ପି.ପି. କେସ୍ ହେଲା । ତା'ପରେ ଏଇ ନିର୍ମାଣ କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କଲେ ଟ୍ରେଡ୍ ୟୁନିଅନ୍ ଲିଡ଼ର୍ ଶ୍ରୀ ବଟକୃଷ୍ଣ ପଣ୍ଡା । ୧୯୮୪ ମସିହାରେ ଶ୍ରୀ ବଟକୃଷ୍ଣ ପଣ୍ଡା ସଂଶ୍ଳିଷ୍ଟ ହୋଇ ୧୦୦୦ ଲୋକ ବସିଲା ଭଳି ଏହି ଗୁଣ୍ଡିଚା ମନ୍ଦିର ସ୍ଥାପନ କଲେ । ଯାହାର ଲମ୍ବା ୧୭୦ ଫୁଟ ଚଉଡ଼ା, ୩୬ରୁ ୪୪ ଫୁଟ ଓ ଭିତ୍ତି ମଧ୍ୟ ୨୫ ଫୁଟ । ଏହା ଏକ ଅତ୍ୟନ୍ତ ଚିତ୍ତାକର୍ଷକ ସୁରମ୍ୟ ମନ୍ଦିରରେ ପରିଣତ ହେଲା । ଭାରତର ଇଷ୍ଟର୍ଣ୍ଣ ଜୋନ୍‌ରେ ଏଭଳି ମନ୍ଦିର ବିଂଶ ଶତାବ୍ଦୀରେ ନିର୍ମିତ ହୋଇନାହିଁ । ମନ୍ଦିର ନିର୍ମାଣ ପାଇଁ ସମସ୍ତ ଖର୍ଚ୍ଚ, ସର୍ବସାଧାରଣ ନିକଟରୁ ଚାନ୍ଦା ଆକାରରେ ଓ ଲଟେରୀ ମାଧ୍ୟମରେ ଅଣାଯାଇ ପ୍ରାୟ ଦେଢ଼ କୋଟି ଟଙ୍କା ବ୍ୟୟରେ ଏଇ ଗୁଣ୍ଡିଚା ମନ୍ଦିର ନିର୍ମାଣ କରାଯାଇଥିଲା । ବିଶିଷ୍ଟ ଶ୍ରମିକ ନେତା ଶ୍ରୀ ବଟକୃଷ୍ଣ ପଣ୍ଡାଙ୍କର ଅକ୍ଲାନ୍ତ ପରିଶ୍ରମ ଓ ଜଗନ୍ନାଥଙ୍କପ୍ରତି ତାଙ୍କ ଭକ୍ତି ଓ ମନୋବଳର ଫଳସ୍ୱରୂପ ଏ ଗୁଣ୍ଡିଚା ମନ୍ଦିର ନିର୍ମାଣ ହୋଇପାରିଛି ।

ପ୍ରତିବର୍ଷ ପୁରୀ ରଥଯାତ୍ରା ପରି ଅହିରାବନ୍ଧ ମନ୍ଦିରରୁ ଶ୍ରୀ ଶ୍ରୀଜଗନ୍ନାଥ ତାଙ୍କ ଭାଇ ଓ ଭଉଣୀଙ୍କୁ ନେଇ ବିରାଟ ରଥମାନଙ୍କରେ ବିରାଜମାନ ହୁଅନ୍ତି ଓ ବିଜେ ହୋଇ ପହଞ୍ଚନ୍ତି ଏଇ ଗୁଣ୍ଡିଚା ମନ୍ଦିରରେ । ରାଉରକେଲାର ଶହ ଶହ ଭକ୍ତଙ୍କ ମେଳରେ ରିଂରୋଡ଼, ରାସ୍ତାଛକ, ମନ୍ଦିର ପରିସର ଶଂଖ, କରତାଳ, ମୃଦଙ୍ଗ, ହୁଳହୁଳି, ଘଣ୍ଟଧ୍ୱନିରେ ଉଚ୍ଛୁଳି ଉଠେ । ସାତଦିନ ବ୍ୟାପି ଗୁଣ୍ଡିଚା ମନ୍ଦିରରେ ଭଜନ କୀର୍ତ୍ତନ, ସଂଗୀତ, ପ୍ରସାଦ ବିତରଣ, ହୋମଯଜ୍ଞ ଆଦି ଶ୍ରୀକ୍ଷେତ୍ର ଧାମ ପରି ହୋଇଥାଏ । ସେକ୍ଟର ତିନି ଅହିରାବନ୍ଧରୁ ସେଇ ରାଜପଥ, ବଡ଼ଦାଣ୍ଡରେ ପରିବର୍ତ୍ତିତ ହୋଇଯାଏ । ରାଉରକେଲା ସ୍ଥାନୀୟ ସରକାରୀ ପ୍ରଶାସନ ତଥା ଷ୍ଟିଲପ୍ଲାଣ୍ଟ କର୍ତ୍ତୃପକ୍ଷଙ୍କ କଡ଼ା ନିରାପତ୍ତା ମଧ୍ୟରେ ଶାନ୍ତି ଶୃଙ୍ଖଳା ସହିତ ଏ ରଥଯାତ୍ରା ସମାପନ ହୋଇଥାଏ ।

ବର୍ତ୍ତମାନ ରାଉରକେଲା ଅନେକ ସମୃଦ୍ଧ ହେଲାଣି । ବିଭିନ୍ନ ସେକ୍ଟରରେ ପୁରୁଣା ରାଉରକେଲାର, ରେଳଷ୍ଟେସନର ଆଖପାଖ ଅନେକ ଗାଁମାନଙ୍କରେ ବହୁ ଜଗନ୍ନାଥ ମନ୍ଦିର ଓ ଗୁଣ୍ଡିଚା ମନ୍ଦିର ପ୍ରତିଷ୍ଠା ହେଇଛି । ଏସବୁ ମନ୍ଦିରମାନଙ୍କରେ ବହୁ ଜାକଜମକରେ ରଥଯାତ୍ରା ପାଳିତ ହୋଇ ଆସୁଛି ।

ସଂସ୍କୃତି ସହର ରାଉରକେଲାର ପରିବର୍ତ୍ତିତ ରୁଚି ଭିତରେ ଆମ ଓଡ଼ିଶୀ ସଂସ୍କୃତି, ଜଗନ୍ନାଥ ସଂସ୍କୃତି ପୂର୍ବପରି ବଞ୍ଚି ରହିଛି । ଏଇ ବିପୁଳ ଉଦ୍‌ବେଳିତ ସାଂସ୍କୃତିକ ସ୍ରୋତ ଆଡ଼କୁ ଦୃଷ୍ଟିପାତ କଲେ ଅନୁଭୂତ ହୁଏ ଯେ, ଅନେକ ଧର୍ମସଂସ୍ଥା, ମନ୍ଦିର ଦେବାଳୟ, ଅନୁଷ୍ଠାନ, ଅସଂଖ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ, ଧର୍ମସଭା, ଅନବରତ ଚାଲିଛି ଏ ସହରରେ । ଏସବୁ ସେଇ ପ୍ରଭୁ ଜଗନ୍ନାଥଙ୍କର ଅଭୂତପୂର୍ବ କୃପା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସେଇଭଳି ମାନ୍ଦ୍ରାଜର (ଚେନ୍ନାଇ) ଦକ୍ଷିଣ କ୍ଷେତ୍ରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରହସ୍ୟମୟ ମହିମାର ବିବିଧ ଅନୁଭୂତି ଡାକ୍ତର କବି ପ୍ରସାଦ ମିଶ୍ର ତାଙ୍କର ବାଇଶି ପାହାଚ ପୁସ୍ତକରେ ପ୍ରକାଶ କରିଛନ୍ତି ।

'ନିଜ ଟିକେଟ୍ କିଣି ନିଜେ ଆସିଲେ ପ୍ରଭୁ ଜଗନ୍ନାଥ' ଆମ ଦକ୍ଷିଣକ୍ଷେତ୍ରରେ (ମାନ୍ଦ୍ରାଜରେ ଆମ ଜଗନ୍ନାଥ କ୍ଷେତ୍ରକୁ





ଆମେ ଦକ୍ଷିଣ କ୍ଷେତ୍ର କହୁଛୁ) ପ୍ରଭୁ ନବକଳେବର ଦିନଠାରୁ ଏ ଯାବତ୍ ପୂଜା ପାଉଛନ୍ତି । ମୁଁ ଆମ ମନ୍ଦିରରେ ଯେତେବେଳେ ତାଙ୍କର ଚକା ଚକା କାଳିଆର ଆଖି ଦୁଇଟାକୁ ଚାହିଁଥାଏ, ସେ ତାଙ୍କର ନାଲି ଓଠରେ ହସି ହସି ଥଟ୍ଟା କରି ମୋତେ କହନ୍ତି-

ରେଳଗାଡ଼ି ପରା ଚାଲୁ ନଥିଲା ? ଟିକେଟ୍ ପରା ମିଳୁ ନଥିଲା ? ମୁଁ ଆସିଲି କେମିତି, ଏଠି ବସିଲି କେମିତି, ଆମର ଦୁର୍ବଳ ମନକୁ ଦୁର୍ବଳ ବିଶ୍ୱାସକୁ ଥଟ୍ଟାକରି ଜଗତର ପ୍ରଭୁ ହସୁଛନ୍ତି । କହୁଛନ୍ତି, 'ସବୁ ଅସମ୍ଭବକୁ ସମ୍ଭବ କରିପାରେ କେବଳ ବିଶ୍ୱାସ ଓ ଭକ୍ତି ଥିଲେ ।' ଆମର ସେତିକି ବିଶ୍ୱାସ ଭକ୍ତି ଅଛି ତ ? (ଡକ୍ଟର କବି ପ୍ରସାଦ ମିଶ୍ର)

ଏଇଭଳି ବିଭିନ୍ନ ପ୍ରାନ୍ତରରେ ଦେଖିବାକୁ ମିଳେ ପ୍ରଭୁ ଜଗନ୍ନାଥଙ୍କର ଅନନ୍ତ ଲୀଳା । ଜଗନ୍ନାଥ ଆଧାରିତ ଭଜନ ସଂଗୀତ, ପୁରୀ ମନ୍ଦିରରୁ ସୃଷ୍ଟ ମାହାରୀନୃତ୍ୟ, ଓଡ଼ିଶୀ ନୃତ୍ୟ, ଗୋଟିପୁଅ ନୃତ୍ୟ ବିଶ୍ୱ ସଂସ୍କୃତିକୁ କରିଛି ବଳିଷ୍ଠ ଓ ପରିପୁଷ୍ଟ । କଣ୍ଠଶିଳ୍ପୀ ସ୍ୱର୍ଗତଃ ବାଳକୃଷ୍ଣ ଦାସ, ସ୍ୱର୍ଗତଃ ନିମାଇ ଚରଣ ହରିଚନ୍ଦନ, ସୁନନ୍ଦା ପଟ୍ଟନାୟକ, ଭିକାରୀ ବଳ, ପ୍ରଫୁଲ୍ଲ କର, ମହାପ୍ରସାଦ କର, ସୁବାଷ ଦାସ, ଅନୁରାଧ ପଡ଼ୱାଲ, ନମିତା ଅଗ୍ରୱାଲ ଆଦି କଣ୍ଠଶିଳ୍ପୀଙ୍କର ଜଗନ୍ନାଥ ଜଣାଣ ସାରାବିଶ୍ୱର କୋଟି କୋଟି ଶ୍ରୋତାଙ୍କୁ କରିଛନ୍ତି ମନ୍ତ୍ରମୁଗ୍ଧ । ସେଇଭଳି ସ୍ୱର୍ଗତଃ କେଳୁଚରଣ ମହାପାତ୍ର, ସ୍ୱର୍ଗତା ସଂଯୁକ୍ତା ପାଣିଗ୍ରାହୀ, ରଘୁନାଥ ପାଣିଗ୍ରାହି, ପଦ୍ମଶ୍ରୀ ଗୁରୁ ଗଙ୍ଗାଧର ପ୍ରଧାନ, ପଦ୍ମଶ୍ରୀ କୁମକୁମ୍ ମହାନ୍ତି, ପଦ୍ମଶ୍ରୀ ଇଲିଆନା ସିତାରିଷ୍ଟ ଆଦି ବିଶିଷ୍ଟ ଓଡ଼ିଶୀ ନୃତ୍ୟଶିଳ୍ପୀମାନେ, ଜଗନ୍ନାଥଙ୍କ ବିବିଧ ବିଷୟ ବସ୍ତୁ ଉପରେ ଆଧାରିତ ନୃତ୍ୟ ପ୍ରଦର୍ଶନ କରି ସାରାବିଶ୍ୱରେ, ଏଇ ଓଡ଼ିଶୀ ନୃତ୍ୟକୁ ଶୀର୍ଷ ସ୍ଥାନରେ ପହଞ୍ଚାଇ ଲକ୍ଷ ଲକ୍ଷ ଦର୍ଶକମଣ୍ଡଳୀଙ୍କୁ ବିମୋହିତ କରିଛନ୍ତି ।

ଶ୍ରୀଶ୍ରୀଜଗନ୍ନାଥଙ୍କ ପୁରୁଷୋତ୍ତମ କ୍ଷେତ୍ର ଏକ ଆଧ୍ୟାତ୍ମିକ ସଂସ୍କୃତିର କ୍ଷେତ୍ର, ସର୍ବଧର୍ମ ସମନ୍ୱୟର କେନ୍ଦ୍ରସ୍ଥଳ । କବି ଜୟଦେବଙ୍କଠାରୁ ଆରମ୍ଭ କରି, ମାଟିର ମହାକବି ସାରଳା ଦାସ, ବଳରାମ ଦାସ, ଜଗନ୍ନାଥ ଦାସ ଅଚ୍ୟୁତାନନ୍ଦ ଶିଶୁ ଅନନ୍ତ, ସାଲବେଗ, ଦୀନକୃଷ୍ଣ, ଗୋପାଳକୃଷ୍ଣ, ବନମାଳି, ଭକ୍ତଚରଣ ଇତ୍ୟାଦି ନାନା ସିଦ୍ଧ କବିମାନେ ତାଙ୍କର ଜଗନ୍ନାଥ ପ୍ରତି ରହିଥିବା ଭକ୍ତି ଫଳରେ ଅସୀମ କୃପାଲାଭ କରି ଯୁଗ ସ୍ତମ୍ଭ ହୋଇ ଅଦ୍ୟାବଧି ସ୍ମରଣୀୟ ହେଇ ରହିଛନ୍ତି, ଇତିହାସର ସୁବର୍ଣ୍ଣ ପୃଷ୍ଠାମାନଙ୍କରେ ଶ୍ରୀଚେତନ୍ୟ ମହାପ୍ରଭୁଙ୍କ ଓଡ଼ିଶା ଆଗମନ ଓ ଜଗନ୍ନାଥଙ୍କୁ କୃଷ୍ଣ ରୂପରେ ରୂପାୟନ ଓ ତାଙ୍କର ଗମ୍ଭୀରାଠାରେ ମହାପ୍ରୟାଣ, ଏସବୁ ପ୍ରଭୁ ଜଗନ୍ନାଥଙ୍କ ଅସୀମ, ଅଲୌକିକ ରହସ୍ୟମୟ, ଅବିସ୍ମରଣୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରଭୁ ଜଗନ୍ନାଥଙ୍କର ଜୟ ହେଉ । ସେ ସବୁଦିନ ଏଇ ଓଡ଼ିଆ ଜାତି ଉପରେ ତାଙ୍କର ଆଶୀର୍ବାଦ ଢାଳୁ ଥାଆନ୍ତୁ ... ଧନ୍ୟ ତାଙ୍କର ବିଚିତ୍ର ଲୀଳା ... ଧନ୍ୟ ତାଙ୍କର ଅନନ୍ତ ଗୌରବ ... ଧନ୍ୟ ତାଙ୍କର ମହିମା ... ।

**ସହାୟକ ପୁସ୍ତକ**


୧. ଶ୍ରୀଜଗନ୍ନାଥ (ଓଡ଼ିଶା ସାହିତ୍ୟ ଏକାଡ଼େମୀ)

୨. Lord Jagannath, Surendra Mohanty, Orissa Sahitya Akademi

୩. ବାଇଶି ପାହାଚ ଡକ୍ଟର କବିପ୍ରସାଦ ମିଶ୍ର



ଇ.ଏମ୍.-୪୪, ବାସନ୍ତି କଲୋନୀ
ରାଉରକେଲା-୧୨







# ଦାମନଯୋଡ଼ିରେ ରଥଯାତ୍ରା

ଡଃ ଶରତଚନ୍ଦ୍ର ପରିଡ଼ା

**ଶ୍ରୀ**ଜଗନ୍ନାଥ ସଂସ୍କୃତି ଉତ୍କଳର ସଂସ୍କୃତି । ଓଡ଼ିଶାର ପୁରପଲ୍ଲୀ ଜଗନ୍ନାଥମୟ । ଜଗନ୍ନାଥ ଚେତନାର ବିକାଶ ଓ ଐତିହ୍ୟର ପ୍ରସାର ଜଗନ୍ନାଥ ମନ୍ଦିରକୁ କେନ୍ଦ୍ରକରି ସାଧିତ ହୋଇଥାଏ । ଆଜି ଓଡ଼ିଆ ସଂସ୍କୃତି ଓ ପରଂପରା ନୂତନ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ମାଧ୍ୟମରେ ସମଗ୍ର ବିଶ୍ୱରେ ସଂପ୍ରସାରିତ ହୋଇ ଚାଲିଛି । ଆଦିବାସୀ ଅଧ୍ୟୁଷିତ, ଶବର ସଂସ୍କୃତିପ୍ରଧାନ କୋରାପୁଟ ଜିଲ୍ଲାର ଶିଳ୍ପ ନଗରୀ ଦାମନଯୋଡି ଏଥିରୁ ବାଦ ପଡ଼ନ୍ତା ବା କିପରି ? କୋରାପୁଟ ବଣସଂପଦ ଖଣିଜ ସଂପଦ ଓ କଳାଭାସ୍କର୍ଯ୍ୟରେ ଭରପୂର । ଦାମନଯୋଡ଼ି ଏହାର ଏକ ଦୃଷ୍ଟାନ୍ତ । ଚାରିଆଡେ ଗଗନଭେଦୀ ପାହାଡ଼ ଧ୍ୟାନମଗ୍ନ ଋଷିପରି ଉପବିଷ୍ଟ । ଆଦ୍ୟ ଆଷାଢର ସ୍ପର୍ଶ ପାଇ ଧରିତ୍ରୀ ନବପଲ୍ଲବରେ ଶିହରିତ ହୋଇ ଉଠୁଥାଏ । ଯୁଆଡେ ଚାହିଁବେ ସବୁଜିମାର ବିସ୍ତୀର୍ଣ୍ଣ ଚାଦର । ଏଠାରେ ବାର୍ଷିକ ଆଠମାସ ବର୍ଷା ଲାଗି ରହୁଥିବାରୁ ଏହାକୁ ଓଡିଶାର ଚେରାପୁଞ୍ଜି କୁହାଯାଉଥିଲା । ଏବେ ତାପମାତ୍ରା ଧୀରେ ଧୀରେ ବଢି ଚାଲିଛି ।



୧୯୮୧ ମସିହା ଜାନୁୟାରୀ ସାତଠାରୁ ଦାମନଯୋଡି ଓଡ଼ିଶା ଓ ଭାରତ ତଥା ବିଶ୍ୱ ମାନଚିତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଏଠି ଅଛି ଏସିଆର ସର୍ବବୃହତ ପଞ୍ଚପଟମାଳି ବକ୍ସାଇଟ ଖଣି ଓ ଆଲୁମିନା ବିଶୋଧନାଗାର - ନାଲକୋ, ନବରତ୍ନ ମାନ୍ୟତାପ୍ରାପ୍ତ କମ୍ପାନୀ । ଏହାର କର୍ମଚାରୀମାନଙ୍କ ବସତିକୁ ନେଇ ଗଢି ଉଠିଛି ନାଲକୋ ଟାଉନ୍‌ସିପ୍ । ଶିଳ୍ପ କାରଖାନାର କଳେବର ସହ ତାଳଦେଇ ସହର ପରିସୀମା ମଧ୍ୟ ବଢିବାରେ ଲାଗିଛି । ଏଠି ଗଢି ଉଠିଛି ଆଧ୍ୟାତ୍ମିକ ସଂଗଠନ ସାଇ ଆଶ୍ରମ, ଗାୟତ୍ରୀ ପରିବାର, ଅନୁକୂଳଚନ୍ଦ୍ରଙ୍କ ସତ୍‌ସଙ୍ଗ କେନ୍ଦ୍ର, ନିଗମାନନ୍ଦଙ୍କ ଆଶ୍ରମ, ମସ୍‌ଜିଦ୍, ଚର୍ଚ୍ଚ, ସାହିତ୍ୟ ସଂଗଠନ 'ବର୍ଷା' ଓଡିଶାରେ ପଞ୍ଜିକୃତ ହୋଇଥିବା ୮୪୭ଟି ଜଗନ୍ନାଥ ମନ୍ଦିର ମଧ୍ୟରୁ କୋରାପୁଟ ଜିଲ୍ଲାରେ ଅଛି ୬୩ଟି । ଦାମନଯୋଡ଼ିର ଶ୍ରୀଜଗନ୍ନାଥ ମନ୍ଦିର ସେଥିରୁ ଅନ୍ୟତମ । ଏହା ୧୯୮୫-୮୬ ମସିହାରେ ଏକ ପଞ୍ଜିକୃତ ମନ୍ଦିର । ଅବଶ୍ୟ ଆଜିକାଲି ଶିଳ୍ପ ସହର ଗଢି ଉଠିବା ସହିତ ଜଗନ୍ନାଥ ମନ୍ଦିର ମଧ୍ୟ ନୂତନ ଭାବେ ପ୍ରତିଷ୍ଠିତ ହୋଇ ଚାଲିଛି ।

ଏହି ତିନି ଦଶନ୍ଧି ତଳେ ଏହାର ଉଦ୍ଭବ ଓ ବିକାଶ । ଦାମନଯୋଡ଼ି ଏକ ଆଦିବାସୀ ପଲ୍ଲୀର ନାମ । ଚାରିଆଡେ ସବୁଜ ପାହାଡ ଓ ଝରଣା । କିନ୍ତୁ ଦାମନଯୋଡ଼ି ପଲ୍ଲୀର ଦେହକୁ ଲାଗି ଯେଉଁ ପାହାଡଟି ଛିଡା ହୋଇଛି ତାହା ଏକ ବିଚିତ୍ର ଓ ସ୍ୱତନ୍ତ୍ର ପାହାଡ଼ । ଏହି ପାହାଡ଼ଟିକୁ ମଝିରେ ରଖି ଚାରିପଟେ ପାର୍ଶ୍ୱଦେବତା ପରି ଘେରି ରହିଛନ୍ତି ପାହାଡମାଳା । ସେଦିନ ଥିଲା ୧୯୭୫ ମସିହା ଅଗଷ୍ଟ ୯ ତାରିଖର ଏକ ମାହେନ୍ଦ୍ରବେଳା । ବାଲୋକୋ କଂପାନୀରୁ ଆସିଥିଲେ ଜଣେ ଇଞ୍ଜିନିୟର ଶ୍ରୀ ଅକ୍ଷୟ କୁମାର ପଟ୍ଟନାୟକ ବକ୍ସାଇଟ ସର୍ଭେ କରିବାପାଇଁ । ସର୍ଭେ କରୁଥିବା ଅବସରରେ ଥକ୍‌କାମାରି ବସି ପଡିଲେ ଏହି ପାହାଡ ମୁଣ୍ଡରେ। ଦେଖିଲେ ଦୁଇପଟେ ଦୁଇଟି ଝରଣା କୁଳୁକୁଳୁ ହୋଇ ବହି ଯାଉଛି । ପାହାଡ଼ଟିର ଚାରିପଟେ ବୁଲିବୁଲି ତାକୁ ସ୍ନାନଦ୍ୱାରା ପବିତ୍ର କରି ପୁଣି ମିଳିତ ହୋଇ ଗୋଟିଏ ରୂପ ଧାରଣ କରିଛି । ଚୂଡା ଦେଶରେ ହୁଙ୍କା ଆକୃତିର ପଥରଖଣ୍ଡ ରହିଛି । ତୁଳସୀ ଚନ୍ଦନ ଗଛର ଭୂରିଭୂରି ବାସ୍ନା । ବେଲ ଗଛର ଗହଳି । ସତେ କି ବିଦ୍ୟାପତି ଆସିଛନ୍ତି ଜଗନ୍ନାଥଙ୍କ ସନ୍ଧାନରେ । ହଠାତ୍ ଅଦୃଷ୍ଟର ଇଙ୍ଗିତ ତାଙ୍କ ମନରେ

ଏକ ସଂକଳ୍ପ ଆଣିଲା- ଏଠି ଏକ ଜଗନ୍ନାଥ ମନ୍ଦିର ତୋଳିଲେ କେମିତି ହୁଅନ୍ତା । ନାଲକୋର ଯୋଜନା ବିଷୟ କୋରାପୁଟର କଲେକ୍ଟରଙ୍କ ସହ ଆଲୋଚନା କଲାବେଳେ କହି ରଖିଲେ ଏହି ସ୍ଥାନଟି ଯେପରି କିଣାବିକା ନ ହୁଏ । ପଟାଙ୍ଗୀର ତତ୍‌କାଳୀନ ତହସିଲଦାର ଶ୍ରୀ ଅନୀଲ କୁମାର ଦାଶ ଏହାର ଦାୟିତ୍ୱ ନେଲେ ।

ୟା' ଭିତରେ ପ୍ରାୟ ଏକ ଦଶନ୍ଧି ବିତିଗଲା । ୧୯୮୪ ମସିହାରେ ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା ସମିତିର ନିୟମାବଳୀ ପ୍ରସ୍ତୁତ ହେଲା । ପୁରୀର ଶ୍ରୀମନ୍ଦିର ମୁକ୍ତି ମଣ୍ଡପ ସଭାର ସଭାପତି ପଣ୍ଡିତ ସଦାଶିବ ରଥଶର୍ମାଙ୍କଦ୍ୱାରା ମନ୍ଦିର ନିର୍ମାଣ ପ୍ରସ୍ତାବ ଅନୁମୋଦିତ ହେଲା । ନାଲକୋ କଂପାନୀ, ଠିକାଦାର, କର୍ମଚାରୀ, ବ୍ୟବସାୟୀ ଓ ଜନସାଧାରଣଙ୍କ ଅକୁଣ୍ଠ ସାହାଯ୍ୟ ଓ ସହଯୋଗର ହାତଲମ୍ବି ଆସିଲା । ପାଣ୍ଠି ସୃଷ୍ଟି ହେଲା । ମନ୍ଦିର ନିର୍ମାଣ ହେଲା । ପୁରୀରୁ ପ୍ରଭୁ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ମୂର୍ତ୍ତି ଅଣାଗଲା । ରାଜସ୍ଥାନରୁ ଅନ୍ୟ ପାର୍ଶ୍ୱଦେବାଦେବୀଙ୍କ ମୂର୍ତ୍ତି ଆସିଲା । ଗର୍ଭଗୃହ ଉପରେ ପବିତ୍ର ଓ ନିଭୃତ ରତ୍ନଭଣ୍ଡାର ସୃଷ୍ଟି କରାଗଲା । ପ୍ରସାଦ ନେବା ଉଦ୍ଦେଶ୍ୟରେ ରୋଷଶାଳାରୁ ଗର୍ଭଗୃହକୁ ଭୂମିତଳେ ଏକ ସୁଡଙ୍ଗ ନିର୍ମାଣ ଏହି ମନ୍ଦିର ନିର୍ମାଣ ପରିପାଟୀର ଭିନ୍ନ ଏକ ବୈଶିଷ୍ଟ୍ୟ । ୧୯୯୦ ମସିହାରେ ଏହି ମନ୍ଦିର ପ୍ରତିଷ୍ଠା ଉତ୍ସବରେ ମହାରାଜା ଗଜପତି ଦିବ୍ୟସିଂହଦେବ ଏହାକୁ ଦେଖି ଅଭିଭୂତ ହୋଇ ପଡିଥିଲେ । ଇତି ମଧ୍ୟରେ ଶ୍ରୀଜଗନ୍ନାଥଙ୍କର ଥରେ ନବକଳେବର ପର୍ବ ଅନୁଷ୍ଠିତ ହୋଇଯାଇଛି । ଅବଶ୍ୟ ନୀଳାଦ୍ରିନାଥଙ୍କୁ ଦାମନଯୋଡିରେ ପ୍ରତିଷ୍ଠିତ କରିବାରେ ନାଲକୋ ପ୍ରକଳ୍ପର ତତ୍‌କାଳୀନ ମହାପ୍ରବନ୍ଧକ ଶ୍ରୀ ନୀଳାଦ୍ରିନାଥ ମହାନ୍ତିଙ୍କର ଭୂମିକା ଭୁଲି ହେବନାହିଁ ।



ସିଂହଦ୍ୱାରେ ଭିଡ଼ାଭିଡ଼ି ବାଜୁଅଛି ବେତବାଡ଼ି
ଧକ୍କା ବାଜିଲେ ସହିବା

ଜଣେ ଭକ୍ତ ଦାମନଯୋଡିର ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଆସି ନୀଳଗିରିର ପାଦ ଦେଶରେ ପହଞ୍ଚନ୍ତି । ଏଠାରେ ହାତୀକୁ ସିଂହ ମାଡି ବସିଥିବାର ମୂର୍ତ୍ତିଦୁଇଟି ଦେଖିଲେ ଭାରି କୌତୂହଳ ଜନ୍ମେ । ବାମପାର୍ଶ୍ୱରେ ଭଙ୍ଗିଳ ଜାନୁରେ ବିରାଟ ଫଟେ ହନୁମାନ ମୂର୍ତ୍ତି । ସତେଯେମିତି ପ୍ରଭୁଙ୍କ ସୁରକ୍ଷା ନିମନ୍ତେ ସଦା ଜାଗ୍ରତ ସୁରମ୍ୟ ତୋରଣର ଊର୍ଦ୍ଧ୍ୱଦେଶରେ ଶ୍ରୀକୃଷ୍ଣଙ୍କ କାଳୀୟ ଦଳନ ଦୃଶ୍ୟ ମନକୁ କିଣିନିଏ । ଉପରକୁ ଚାହିଁଲେ ପାହାଚ ପରେ ପାହାଚ । ୧୦୮ ପାହାଚ ଥାକ ଥାକ ଦେଖାଯାଏ । ପାହାଚଗୁଡ଼ିକ ପ୍ରଶସ୍ତ । ଦୁଇପଟରୁ ଆକାଶିଆ ଗଛ ଏହି ପାହାଚମାଳା ଉପରକୁ ସାମାନ୍ୟ ଢଳି ପଡିଥାନ୍ତି । ସବୁଜ ପତ୍ରର ଗୁମ୍ଫା ଭିତରେ ସତେ କିଏ ଜଣେ ଲୁଚି ରହିଛନ୍ତି । ପନ୍ଦରଟି ପାହାଚ ଅତିକ୍ରମ କଲେ ବାମପାର୍ଶ୍ୱରେ ପଡେ ମା' ବାଟମଙ୍ଗଳାଙ୍କ ମନ୍ଦିର । ଦୁଇବର୍ଷ ତଳେ ତିଆରି । ଭକ୍ତ ସେଠି ଦଣ୍ଡେ ଅଟକି ମୁଣ୍ଡିଆ ନ ମାରିଲେ ଆଗକୁ ଯାଇ ପାରେନାହିଁ । ନୋହିଲେ ଆମ ଜୀବନର ବାଟମଙ୍ଗଳ ମନାସିବ କିଏ ?

ଏହି ପାହାଚ ପାରିହେଲାବେଳକୁ ଭକ୍ତ ସର୍ପିଳ ଗତିରେ ଜଗନ୍ନାଥଙ୍କୁ ଭେଟିବାକୁ ଯାଇଥିବା ପକ୍କା ରାସ୍ତାକୁ ଭେଟେ । ଆଗର ତ୍ରିଭଙ୍ଗୀ ପକ୍କା ରାସ୍ତାଟି ଅଧିକ ପିଚ୍ଛିଳ ଓ ତୀକ୍ଷ୍ଣ ହୋଇଥିବାରୁ ଏବେ ତଳପଟ ଦେଇ ଏକ ଚଉଡ଼ା, ଦୀର୍ଘ ସରଳ ରାସ୍ତାଟି ତିଆରି ହୋଇଛି । ଏହି ବାଟରେ ଆସିଲେ ଜଗନ୍ନାଥ ଦର୍ଶନ ସହଜ ହୋଇଥାଏ । ପାହାଡ ଦେହସାରା ଜଙ୍ଗଲ । ମଝିରେ ମଝିରେ ଚନ୍ଦନ ଓ କୃଷ୍ଣଚୂଡ଼ା ଗଛ । ବେଳେ ବେଳେ ଦୁଇ ତିନିଟା ଭାଲୁ ରାସ୍ତା କଡରେ ଥିବା ଗଛ ଡାଳରେ ତଳଉପର ହୋଇ ମଜାରେ ଖେଳାଖେଳି କରୁଥିବାର ଦେଖାଯାଏ ।

ରାସ୍ତା ପାରି ହେଲେ ବାମ ଓ ଦକ୍ଷିଣ ହୋଇ ଦୁଇପଟେ ପାହାଚ । ଡାହାଣ ପାର୍ଶ୍ୱରେ ବାଇଶି ପାହାଚ ଜଗନ୍ନାଥଙ୍କ ବେଢାକୁ ଯିବାପାଇଁ ଓ ବାମ ପାର୍ଶ୍ୱର ପାହାଚ ଶ୍ରୀଗଣେଶ ମନ୍ଦିର ଯିବାପାଇଁ । ବିଘ୍ନବିନାୟକଙ୍କୁ ପ୍ରଣାମ କଲେ ଭକ୍ତ ଜଗନ୍ନାଥଙ୍କୁ ପାଖକୁ ଯାଏ । ୧୯୮୫ ମସିହାରେ ଏହା ତିଆରି । ହାତ ପାଦ ଧୋଇବା ପାଇଁ ଏଠାରେ ପାଣିଟ୍ୟାପ ଲାଗିଛି । ପୁଣି ପାହାଚ ଡେଇଁ ଭକ୍ତ ଜଗନ୍ନାଥଙ୍କ ଆଡକୁ ମୁହାଁଏ । ଦ୍ୱିତୀୟ ସିଂହଦ୍ୱାରକୁ ଭେଟେ । ତୋରଣ ଉପରେ ମନଲୋଭା ଶ୍ରୀକୃଷ୍ଣଙ୍କ ରଥ । ଭିତର ପଟେ ଦେବତାଙ୍କ ଗହଣରେ ହରିଙ୍କ ଅନନ୍ତ ଶୟନ କାରୁକାର୍ଯ୍ୟ ମଣ୍ଡିତ ମୂର୍ତ୍ତି । ଅଳ୍ପଦୂରରେ ଅରୁଣସ୍ତମ୍ଭ । ଭକ୍ତ ଭାବବିଭୋର ହୋଇ ଆଗ ଅରୁଣସ୍ତମ୍ଭକୁ ବାମ ଡାହଣ କରି କୁଣ୍ଢାଇ ପକାଏ । ତା'ପରେ

ପାରମ୍ପରିକ ବାଇଶି ପାହାଚରେ ପାଦ ଦେଲେ ତା' ଦେହରେ ରୋମାଞ୍ଚ ସୃଷ୍ଟି ହୁଏ ।

'ଶ୍ରୀକ୍ଷେତ୍ର ନବରେ ମହା ଐଶ୍ୱର୍ଯ୍ୟରେ ଥିଲେ ହେଁ କମଳା ସାଇଁ
ବାଇଶି ପାହାଚ ନ ଉଠିବାଯାଏ ଆନନ୍ଦ ନ ପାଏ କାହିଁ ।'

ବାଇଶି ପାହାଚ ପରେ ଭକ୍ତର ଦର୍ଶନପିପାସୁ ଆଖି ଗରୁଡସ୍ତମ୍ଭ ପାରି ହୋଇ ସିଧା ତ୍ରିମୂର୍ତ୍ତି ଉପରେ ପଡେ । ଡାହାଣ ପାଖରେ ସୁଦର୍ଶନ । ଦାରୁମୟ ଚତୁର୍ଦ୍ଧାମୂର୍ତ୍ତିରେ କି ସମ୍ମୋହନ ଥାଏ କେଜାଣି ଭକ୍ତ ସେଠାରୁ ଆଖି ଫେରାଇ ପାରେ ନାହିଁ । ଗମ୍ଭୀରା ଭିତରେ ରତ୍ନ ସିଂହାସନରେ ଅଭୟମୁଦ୍ରାରେ ପ୍ରଭୁ ଭକ୍ତକୁଳକୁ ଆଲିଙ୍ଗନ କରିବାକୁ ଆହ୍ୱାନ ଦେଉଥାନ୍ତି । ତୁଳସୀ, ଦୟଣା, ମଲ୍ଲୀ, ଚନ୍ଦନ ଓ କର୍ପୂର ବାସ୍ନାରେ ପୀଠଟି ମହମହ ହୋଇ ବାସି ଉଠୁଥାଏ ।



ମନ୍ଦିର ପରିଚାଳନା ସମିତି ପକ୍ଷରୁ ଶ୍ରୀଜଗନ୍ନାଥ ମନ୍ଦିର ଓ ମାଉସୀମା ମନ୍ଦିର ନିମନ୍ତେ ଆଠଜଣ ପୂଜକ ନିଯୁକ୍ତ ହୋଇଛନ୍ତି । ସେମାନଙ୍କଦ୍ୱାରା ମନ୍ଦିରର ନୀତିନିୟମ ସହିତ ଦ୍ୱାଦଶ ଯାତ୍ରା, ଷଡ଼ଜୟନ୍ତୀ, ଏକାଦଶୀ, ଚତୁର୍ଦ୍ଦଶୀ, ନାନା ପର୍ବପର୍ବାଣି ପାଳନ କରାଯାଉଛି । ସକାଳ, ମଧ୍ୟାହ୍ନ ଓ ସଂଧ୍ୟାରେ ନୀତି ଯଥାରୀତି ଚାଲିଛି । ଏବେ ଆଳତି ସମୟରେ ଇଲେକ୍ଟ୍ରୋନିକ୍ ବାଦ୍ୟଟି ସମସ୍ତଙ୍କୁ ଚକିତ କରିଦେଉଛି ।

ଜଗନ୍ନାଥଙ୍କୁ ଦର୍ଶନ କରିସାରିଲା ପରେ ଭକ୍ତ ପାର୍ଶ୍ୱଦେବତା ରୂପେ ପୂଜିତ ସରସ୍ୱତୀ, ରାଧାକୃଷ୍ଣ, ରାମଲକ୍ଷ୍ମଣସୀତା, ହନୁମାନ୍, ସନ୍ତୋଷୀମା ଓ ବାଲାଜୀଙ୍କୁ ନିଜର ଭକ୍ତି ଜଣାଇ ମନ୍ଦିର ପ୍ରଦକ୍ଷିଣ କରିବାକୁ ଯାଏ । ନୈଋତ କୋଣରେ ସୂର୍ଯ୍ୟମନ୍ଦିର, ପଶ୍ଚିମରେ ବିମଳା ମନ୍ଦିର ଓ ବାୟୁକୋଣରେ ମା' ଲକ୍ଷ୍ମୀଙ୍କ ମନ୍ଦିର ବାମ ପାର୍ଶ୍ୱରେ ପଡେ । ଡାହାଣ ପାର୍ଶ୍ୱରେ ମନ୍ଦିର ଗାତ୍ରରେ ଖୋଦିତ ମତ୍ସ୍ୟ ଆଦି ଦଶ ଅବତାର ମୂର୍ତ୍ତିର ଭାସ୍କର୍ଯ୍ୟ ଦେଖି ପ୍ରଭୁଙ୍କର ଘଟଣାମୟ ଇତିହାସରେ ଭକ୍ତ ହଜିଯାଏ । ସୂର୍ଯ୍ୟମନ୍ଦିର ପାଖରେ ଛିଡାହେଲେ ଭକ୍ତ ତଳେ ଥିବା ସେକ୍ଟର-ଏକ ଓ ସେକ୍ଟର-ଦୁଇର ପ୍ରାକୃତିକ ଶୋଭା ଦେଖି ଆନନ୍ଦବିହ୍ୱଳ ହୋଇପଡେ । ଜଣାପଡେ ସତେ ଯେମିତି ସେ ଆକାଶ ମାର୍ଗରୁ ପୃଥିବୀକୁ ଦେଖୁଛି । ଲକ୍ଷ୍ମୀଙ୍କ ମନ୍ଦିର ଆଗରେ ଶିବ ମନ୍ଦିର, ପାର୍ଶ୍ୱରେ ସ୍ନାନ ମଣ୍ଡପ, ଆଗରେ ଚାହାଣି ମଣ୍ଡପ ଓ ପଛରେ ଯଜ୍ଞମଣ୍ଡପ । ଶ୍ରୀମନ୍ଦିରର ପଶ୍ଚିମରେ କୋଇଲି ବୈକୁଣ୍ଠ, ପ୍ରଭୁଙ୍କର ଗୋଲକ ବିଶ୍ରାମସ୍ଥଳୀ । ସେଥିରେ ନାନା ଫୁଲଗଛ, ପତ୍ର, ଲତା ଗୁଳ୍ମ ଦେଖିଲେ ଛୋଟ ଉପବନଟି ପରି ଲାଗେ । ଶିବମନ୍ଦିର ଓ ସିଂହଦ୍ୱାରର ସମ୍ମୁଖ ଭାଗଟି ଏକ ବିସ୍ତୃତ ଚକଡା । ଓଡିଶାର ବିଶିଷ୍ଟ କଣ୍ଠଶିଳ୍ପୀ ଏଠାରେ ଭଜନ ପରିବେଷଣ କରିଥାନ୍ତି । ଭକ୍ତମାନଙ୍କ ସୁବିଧାକୁ ଆଖି ଆଗରେ ରଖି ମନ୍ଦିର ତରଫରୁ ଏବେ ନୂଆ କରି ଖୋଲାଯାଇଛି ପୂଜାସାମଗ୍ରୀର ଏକ ଦୋକାନ । ବାସ୍ତୁ ବିଦ୍ୟା ଅନୁସାରେ ମନ୍ଦିର ନିର୍ମାଣକୁ କିଛି ପରିମାଣରେ ସଂଶୋଧିତ କରାଯାଇଛି । ଅଗ୍ନି କୋଣକୁ ଅଣାଯାଇଛି ପାକଶାଳା । ପାକଶାଳାର ଅଳ୍ପଦୂରରେ ଦ୍ୱିତଳ ବିଶିଷ୍ଟ ଆନନ୍ଦ ବଜାର । ଏଠାରେ ବସି ପ୍ରସାଦ ସେବନ କଲେ ଅପୂର୍ବ ପ୍ରସନ୍ନତା ଓ ଶାନ୍ତି ମିଳିଥାଏ । ମନ୍ଦିର ଚକଡାର ଐଶାନ୍ୟ କୋଣରେ ପଥର ଛାଡିଚିରି ଗତବର୍ଷ ନିର୍ମାଣ କରାଯାଇଛି ନରେନ୍ଦ୍ରପୋଖରୀ । ଏହା ଓଡ଼ିଶାରେ ବିରଳ । ତିନିହଜାର ଫୁଟ ଉଚ୍ଚରେ ସବୁବେଳେ ଜଳ ପରିପୂର୍ଣ୍ଣ ହୋଇ ରହିଥାଏ ।

'ଦୀନବାନ୍ଧବ ମାଧବର ତହି ମାଧବ ମାସେ
ନୃପତି ନନ୍ଦନ ଚନ୍ଦନ ଯାତ୍ରା ଦେଖେ ହରଷେ ।'

ପ୍ରଚଣ୍ଡ ଗ୍ରୀଷ୍ମ ତାପ ସହ୍ୟକରି ନପାରି ପ୍ରଭୁ ଚାପ ଖେଳନ୍ତି ଏଠି । ପ୍ରଭୁ ନିଜେ ଶ୍ରୀମନ୍ଦିର ଛାଡି ବର୍ଷକରେ ଥରେ ବାହାରକୁ ଆସନ୍ତି । ତାଙ୍କ ଦର୍ଶନରୁ ବଞ୍ଚିତ ହୋଇଥିବା, ପତିତ ତଥା ସମସ୍ତ ଭକ୍ତମାନଙ୍କୁ ଦର୍ଶନ ଦେଇ ପବିତ୍ର କରନ୍ତି ।

ଆଷାଢ଼ର ପହଲି ବର୍ଷାରେ ଗ୍ରୀଷ୍ମର ପ୍ରଚଣ୍ଡ ତାପ ଆଉ ନ ଥାଏ ବରଂ ଚାରିଆଡେ ଅନୁଭୂତ ହୋଇଥାଏ ଅପୂର୍ବ ଶୀତଳତା । ପ୍ରକୃତି ପୁଲକିତ ହୋଇଥାଏ । ପ୍ରାକୃତିକ ବିଭବରେ ପରିପୂର୍ଣ୍ଣ ଦାମନଯୋଡି । ଏଠି ସବୁଜିମାର ଅପୂର୍ବ ସଂସ୍କାର । ଏହି ମାସର ଶୁକ୍ଳ ଦ୍ୱିତୀୟା ତିଥିରେ ପ୍ରଭୁ ରଥରେ ଗୁଣ୍ଡିଚାବାଡି ଯାତ୍ରା ଆରମ୍ଭ କରନ୍ତି । ଏହି ଦିନ ସକାଳୁ ସକାଳୁ ନିତ୍ୟକର୍ମ ସାରି ମଙ୍ଗଳ ଆଳତି, ମଇଲମ, ତଡପ ଲାଗି, ରୋସହୋମ ଓ ଅବକାଶ ପରେ ଆଜ୍ଞାମାଳ ଦେଇ ପ୍ରଭୁ ପ୍ରସ୍ତୁତ ହୋଇଯାନ୍ତି ଦୀର୍ଘ ପାଞ୍ଚ କିଲୋମିଟର ଦୂର ଯାତ୍ରା କରିବା ପାଇଁ । ଦାମନଯୋଡିର

ଜଗନ୍ନାଥପ୍ରେମୀ ତଥା ଭକ୍ତମାନେ ଗେରୁଆ ବସ୍ତ୍ର ପିନ୍ଧି, ଅଣ୍ଟାରେ ଗାମୁଛା ଭିଡି ଠାକୁରଙ୍କୁ ପ୍ରିୟ ତୁଳସୀପତ୍ର ଦୟଣାମାଳା ଓ ଅନ୍ୟ ଝିନବସ୍ତ୍ର ଓ ଅଳଂକାରରେ ସଜାନ୍ତି । ସେତେବେଳକୁ ବାଦକମାନଙ୍କ ଘଣ୍ଟା, ଘଣ୍ଟି, ମାର୍ଦଳ, କାହାଳୀ, ଗିନି, ଝାଞ୍ଜ ମୃଦଙ୍ଗର ଐକ୍ୟତାଳିକ ନାଦରେ ସ୍ଥାନଟି କମ୍ପି ଉଠୁଥାଏ । ପ୍ରଥମେ ଦ୍ରୁତଗତିରେ ସୁଦର୍ଶନଙ୍କୁ ରଥ ଉପରକୁ ନେଲାପରେ ସୁଭଦ୍ରା, ବଳଭଦ୍ର ଓ ଶେଷରେ ଚିକ୍କଣ କାଳିଆ ଜଗନ୍ନାଥଙ୍କୁ ଗୋଟି ପହଣ୍ଡି କରି ଜଣକ ପରେ ଜଣକୁ ନେଇ ରଥ ଉପରେ ବସାନ୍ତି । ଠାକୁରମାନଙ୍କ ଅଣ୍ଟାକୁ ପଟ୍ଟବସ୍ତ୍ରର ରଙ୍ଗୀନ ଦଉଡିରେ ବାନ୍ଧି, ଠାବକୁ ଠାବ ବସାଇ, ହଲେଇ ହଲେଇ, ଝୁଲେଇ ଝୁଲେଇ, ପାଟ ଦଉଡିକୁ ପଛକୁ ଭିଡି ଆଗକୁ ଟାଣି ପହଣ୍ଡି କରିବାର ଅପୂର୍ବ ଠାଣି ଦେଖି ଦେଖଣାହାରୀମାନେ ରୋମାଞ୍ଚିତ ହୋଇଉଠନ୍ତି । ମୁଣ୍ଡରେ ବନ୍ଧା ହୋଇଥାଏ ଟାହିଆ । ତାହା ତୁଳସୀ ଦୟଣା ପତ୍ରରେ ଗୁନ୍ଥା



ହୋଇଥାଏ । ସୋଲ, ସରୁ ବାଉଁଶ ପାତିଆ ଓ ଖଡିକାରେ ଛନ୍ଦା ହୋଇଥାଏ । ଅର୍ଦ୍ଧଚନ୍ଦ୍ରାକାର ଦେଖାଯାଉଥାଏ । ପହଣ୍ଡି ବେଳେ ଅପୂର୍ବ ଠାଣିରେ ଝୁଲୁଥାଏ । ସତେଯେମିତି ଏକ ପାଗଳାହାତୀ ଝାଳନାଳ ହୋଇ ପାହାଡ଼ରୁ ଓହ୍ଲାଉଛି । ଏହି ପହଣ୍ଡି ଦେଖିବା ପାଇଁ ସ୍ୱର୍ଗରୁ ଦେବତାମାନେ ମଧ୍ୟ ଓହ୍ଲାଇ ଆସନ୍ତି ।

'ଟାହିଆ ଝୁଲାଇ ଛାତିକି ଫୁଲାଇ କି ମନେ କରି ଭାବନା
ପହଣ୍ଡି ବିଜୟେ କରୁ ଦେବରାୟେ ପୂରାଇ ଭକ୍ତ କାମନା ।'

ସୁଭଦ୍ରାଙ୍କ ରଥ ଚେତନାର ରଥ, ବଳଭଦ୍ରଙ୍କ ରଥ ବିଶ୍ୱାସର ରଥ ଓ ଜଗନ୍ନାଥଙ୍କ ରଥ ଭାବର ରଥ । କିନ୍ତୁ ଦାମନଯୋଡ଼ିରେ ସବୁ ମିଶି ଗୋଟିଏ ରଥ ହୋଇଥାଏ ଭକ୍ତିର ରଥ । ଜୀଉମାନଙ୍କୁ ଭଲଭାବରେ ସାଜସଜା କରି ରଥ ପ୍ରତିଷ୍ଠା କରାଯାଏ । ସମସ୍ତ ପୂଜା ପ୍ରସ୍ତୁତି ସାରି ପୁରୋହିତମାନେ ଅପେକ୍ଷା କରିଥାନ୍ତି ରଥଯାତ୍ରାର ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟାୟକୁ, ଦାମନଯୋଡ଼ିର ଗଜପତିଙ୍କ ଆଗମନକୁ । ଭକ୍ତ ମଧ୍ୟ ରାଜାଙ୍କ ଆସିବା ବାଟକୁ ଚାହିଁ ରହିଥାନ୍ତି ନାଲକୋ ପ୍ରକଳ୍ପର କାର୍ଯ୍ୟନିର୍ବାହୀ ନିର୍ଦ୍ଦେଶକ ଆସନ୍ତି ଏକ ସୁସଜ୍ଜିତ କାର୍‌ରେ । ଠିକ୍ ରାଜାଙ୍କ ପରି ଦେଖା ଯାଉଥାନ୍ତି । ପୁରୀର ଛତିଶା ନିଯୋଗର କର୍ମ ଦାମନଯୋଡ଼ିରେ ଜଗନ୍ନାଥଙ୍କ ଅନୁଗତମାନେ ତୁଲାଇଥାନ୍ତି । ସେମାନଙ୍କ ମଧ୍ୟରୁ କେତୋଟି ସେବାୟତ ହୋଇ ତାଙ୍କୁ ରାଜବେଶରେ ସଜାଇ ଦିଅନ୍ତି । ମୁଣ୍ଡରେ ଶୁଭ୍ରପାଗ, ଦେହରେ ଶ୍ୱେତ ଚପକନ ଓ ଧୋତି, କାନ୍ଧରେ ରକ୍ତବର୍ଣ୍ଣର ପାଛୁଡା ସହିତ ନୀଳ କମର ପଟି ଓ ଲାଲ ପଇତାପଟି ଭାରି ଆକର୍ଷଣୀୟ ଦେଖାଯାଉଥାଏ । ଅଣ୍ଟାରେ ଝୁଲୁଥାଏ କ୍ଷତ୍ରିୟ ଲକ୍ଷଣ ଖଡ୍‌ଗ । ରାଜା କାର୍‌ରୁ ଓହ୍ଲାଇଲା ବେଳକୁ ନାନା ବାଦ୍ୟ ଚମକି ଉଠନ୍ତି । ଦଇତାପତିମାନେ ଛତି, ଆଲଟ ଚାମର ଉପଯୋଗ କରାଇ ରାଜକୀୟ ଠାଣିରେ ରାଜାଙ୍କୁ ଚାରମାଳ ଉପରକୁ ପାଛୋଟି ଆଣନ୍ତି । ପୂଜାପାଠ ହୁଏ, ମଙ୍ଗଳ ଆଳତି ହୁଏ, ବ୍ରାହ୍ମଣଙ୍କ ମନ୍ତ୍ରପାଠରେ ସିଂହଦ୍ୱାର ତଥା ବିଜୁପଟ୍ଟନାୟକ ପାର୍କର ସମଗ୍ର ଅଞ୍ଚଳଟି ମୁଖରିତ ହୋଇଉଠେ। ରୂପାଥାଳିରେ ଧବଳ ପୁଷ୍ପ, ଦୟଣାମାଳି, ଘୋରାଚନ୍ଦନ ଓ ଝୁରାଚନ୍ଦନ ଅଭିମନ୍ତ୍ରିତ କରି ରଥ ଗର୍ଭର ଚାରିପଟ ଭୂଇଁରେ ରାଜଗୁରୁ ସିଞ୍ଚି ସିଞ୍ଚି ଚାଲନ୍ତି । ରାଜା ସୁନାବେଣ୍ଟଯୁକ୍ତ ଖଡିକାରେ ନଇଁ ନଇଁ ସେହି ପୁଷ୍ପରାଶି ଓଳେଇ ଓଳେଇ ରଥବେଦୀ ପରିକ୍ରମା କରନ୍ତି । ଛେରାପହଁରାରେ ଏହି ମହନୀୟ ସେବାକାର୍ଯ୍ୟ ଦେଖି ଭକ୍ତ ମନରେ ଖେଳିଯାଏ ଏକ ଅପୂର୍ବ ପୁଲକ । ହରିବୋଲ ହୁଳହୁଳି ଧ୍ୱନିରେ ସ୍ଥାନଟି କମ୍ପି ଉଠୁଥାଏ ।

ଆଗେ ଗଜପତି ଉଭା ହୋଇଛନ୍ତି ଶିରେ ଯୋଡ଼ି କର ଦୁଇକି
ସୁନା ଶୋଧନିରେ ମାର୍ଜନା କରନ୍ତି ପହଣ୍ଡି ବିଜୟ ଭୂଇଁକି ।

ନତଜାନୁ ହୋଇ ଜଗତର ନାଥଙ୍କ ପାଖରେ ଶୁଭଯାତ୍ରା ମନାସି ଭକ୍ତମାନଙ୍କ ମଙ୍ଗଳକାମନା କରି ରାଜା ଯୋଡ଼ହସ୍ତରେ ନମସ୍କାର କରନ୍ତି ଓ ରଥଟଣା କାର୍ଯ୍ୟ ଆରମ୍ଭ କରିବା ପାଇଁ ଆଜ୍ଞା ଦିଅନ୍ତି । ଚାରମାଳ ଫିଟାଯାଏ, ଅଶ୍ୱ ଯୋଚାଯାଏ । ସାରଥୀ ନିଜ ସ୍ଥାନରେ ବସନ୍ତି । ଡାହୁକ ଗୀତ ବୋଲେ, ଗୋଟିଏ ବେତବାଡିରେ ପତାକା ବାନ୍ଧି ଇଙ୍ଗିତ ଦିଏ ।

ଶ୍ରୀଜଗନ୍ନାଥ ମନ୍ଦିର ନାଲ୍‌କୋ ଟାଉନସିପ୍‌ର ସେକ୍ଟର-୧ ଅଞ୍ଚଳରେ ଅବସ୍ଥିତ । ଦାମନଯୋଡିର ସବୁ ଦାଣ୍ଡ ବଡ଼ଦାଣ୍ଡ । ଶିଳ୍ପ ନଗରୀର ତଥା ଆଖପାଖ ଗାଁର ଆବାଳ-ବୃଦ୍ଧ-ବନିତା ଯେପରି ଜଗନ୍ନାଥଙ୍କୁ ସୁରୁଖୁରୁରେ ଦର୍ଶନ କରିପାରିବେ ସେଥିପାଇଁ ବଡ଼ଦାଣ୍ଡର ଦିଗ ସେକ୍ଟର-ଦୁଇ ମଧ୍ୟ ଦେଇ ସେକ୍ଟର-ତିନିକୁ ନିର୍ଦ୍ଦେଶ କରାଯାଇଛି । ବଡଦାଣ୍ଡରେ ରଥଯାତ୍ରା କଲାବେଳେ ପଡେ





ପାଞ୍ଚଟି ମୋଡ଼ ଓ ପାଞ୍ଚଟି ଛକା ସତେ ଯେମିତି ପାଞ୍ଚଟି ଜ୍ଞାନେନ୍ଦ୍ରିୟ ଓ ପାଞ୍ଚଟି କର୍ମେନ୍ଦ୍ରିୟ ଦେହରୂପକ ରଥକୁ ସଂସାରରେ ଟାଣି ଟାଣି ନେଉଛନ୍ତି । ରଥଯାତ୍ରା ଆରମ୍ଭ ହେଉ ହେଉ ଦିନ ଦୁଇଟା । ଯିଏ ଯାହାର କାମଦାମ ସାରି ସଫା ସୁତୁରା ପୋଷାକ ପିନ୍ଧି ଚାତକପରି ଅନିଶା କରି ରହିଥାନ୍ତି କେତେବେଳେ ରଥଟଣା ହେବ । ରଥଟଣା ହେଉ ହେଉ ଆରମ୍ଭ ହୋଇଯାଏ ଧାରା ବିବରଣୀ । ମନ୍ତ୍ର ସ୍ତୋତ୍ର ଜୟ ଜଗନ୍ନାଥ ନାଦରେ ଖଣ୍ଡମଣ୍ଡଳ ଉଛୁଳି ପଡୁଥାଏ । ଘର ଖାଲି କରି ନାରୀ ପୁରୁଷ ପିଲା ସମସ୍ତେ ବାହାରି ପଡନ୍ତି ଚକାନୟନକୁ ବାରେ ଦେଖିବାପାଇଁ । ବାମନକୁ ଦେଖି ସମସ୍ତ ପାପ ତାପ ନାଶ କରି ଶୁଦ୍ଧ ହୋଇଯିବାପାଇଁ । ଗତଥର ରଥଯାତ୍ରା ସମୟର ଏକ ଦୃଶ୍ୟ ମୁଁ ଭୁଲିପାରୁନାହିଁ । ପହଣ୍ଡି ଚାଲିଥାଏ ମୁଁ ଜଗନ୍ନାଥଙ୍କ ପାଖରେ ଛିଡ଼ା ହୋଇଥାଏ । ଗୋଟିଏ ଚାରି ପାଞ୍ଚ ବର୍ଷର ପିଲା ଭାରି ବ୍ୟସ୍ତ ଜଣାପଡୁଥାଏ । ତା ପାଖରେ ବାପା କି ମା' କେହି ନ ଥାନ୍ତି । ଜଗନ୍ନାଥଙ୍କ ଚାରିପଟେ ଲୋକେ ଘେରି ରହିଛନ୍ତି । ସେ ତା ଭିତରେ ପଶି ଜଗନ୍ନାଥଙ୍କୁ ଛୁଇଁ ପ୍ରଣାମ କଲା । ସେ ହଠାତ୍ ମୋ ଆଡକୁ ଚାହିଁଦେଲା । ତା ଆଖିରେ ମୋ ଆଖି ମିଶିଗଲା । ସେଠୁ ଆସି ମୋ ପାଦ ଛୁଇଁଲା । ତାର ଭକ୍ତିଭାବ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି ।

ପ୍ରଥମେ ରଥ ଦଉଡି ଟାଣି ଶହେ ମିଟର ଯାଇଥାଏ କି ନାହିଁ ଆରମ୍ଭ ହୋଇଯାଏ ନାହିଁ ନଥିବା ଭିଡ । ଭକ୍ତମାନେ ବଡ ଆନନ୍ଦ ଉଲ୍ଲାସ ଓ ଉଦ୍ଦୀପନାରେ ରଥ ଦଉଡି ଟାଣୁଥାନ୍ତି । ଘର୍ଘର ଘୋଷରେ ଗଡିଯାଉଥାଏ ରଥ ।

ବଡଦାଣ୍ଡର ଉଭୟ ପାର୍ଶ୍ୱରେ ଧାଡି ଧାଡିକା କୃଷ୍ଣଚୂଡ଼ାର ରଙ୍ଗ ଉଡନ୍ତା ପତିତପାବନ ବାନା ସଙ୍ଗେ ମିଶି ଯାଉଥାଏ । ଜଣାପଡେ ସ୍ୱର୍ଗରୁ ଦେବତାମାନେ ଜଗନ୍ନାଥଙ୍କ ଉପରେ ପୁଷ୍ପବୃଷ୍ଟି କରୁଛନ୍ତି କି? **ଭକ୍ତମାନେ ଭାବବିଭୋର ହୋଇ କିଏ ଗଡିଯାଉଥିବା ରଥକୁ, କିଏ ଚକକୁ, କିଏ ରଥ ଦଉଡିକୁ ଟିକେ ଛୁଇଁ ନିଜକୁ କୃତାର୍ଥ ମଣୁଥାନ୍ତି ।** କେତେବେଳେ ଘଣ୍ଟଘଣ୍ଟାର ତାନ ସହ ତାଳଦେଇ ରଥର ଗତି ବଢୁଥାଏ, ପୁଣି କେତେବେଳେ ରଥର ଗତି ଦେଖି ଘଣ୍ଟିଘଣ୍ଟା ମୃଦଙ୍ଗର ତାଳ ମଧ୍ୟ ବଢିବାରେ ଲାଗିଥାଏ । ଗତି ନିୟନ୍ତ୍ରଣ ବାହାରକୁ ଗଲେ ହଡିକାଠ ବ୍ରେକ୍ ପକାଯାଏ । ଜଗନ୍ନାଥ ଗୀତପ୍ରିୟ, ବାଦ୍ୟପ୍ରିୟ ଓ ନୃତ୍ୟପ୍ରିୟ । କଳିଯୁଗରେ ନାମ ସଂକୀର୍ତ୍ତନ ହିଁ ଭବସାଗରରୁ ପାରି କରିବାର ଶ୍ରେଷ୍ଠ ମାଧ୍ୟମ । ପ୍ରଭୁଙ୍କର ଏହି ବିରଳ ପାବନଯାତ୍ରାରେ ଭକ୍ତିରସରେ ତନ୍ମୟ ହୋଇ ସଂକୀର୍ତ୍ତନରେ ମଜ୍ଜି ଯାଆନ୍ତି ଭକ୍ତମାନେ । ଲାଗେ ଗୋପାଙ୍ଗନାମାନେ ମୁରଲୀଧରଙ୍କ ସହ ମିଶି ଏକ ସଂଗୀତମୟ ପରିବେଶ ସୃଷ୍ଟି କରୁଛନ୍ତି । ଯମୁନା କୂଳରେ ସୃଷ୍ଟି ହୋଇଯାଉଛି ଆଉ ଏକ ରାସଲୀଳା ।

ମଝିରେ ମଝିରେ ହରିବୋଲ ହୁଳହୁଳି ଆଦି ମଙ୍ଗଳ ଧ୍ୱନି ସହିତ ଜଗନ୍ନାଥଙ୍କ ଜୟଜୟକାର ବଡଦାଣ୍ଡରେ ଫାଟି ପଡୁଥାଏ । ମଣିଷ, ପ୍ରକୃତି ସମସ୍ତେ ଜଗନ୍ନାଥମୟ ହୋଇ ଉଠନ୍ତି । ନାଲକୋର ଉଦ୍ୟାନ ଅଞ୍ଚଳ ଦେଇ ରଥ ଶାବରୀ ହ୍ରଦକୁ ଛୁଇଁଲାବେଳକୁ ଭକ୍ତକୁଳ ଥାଟପଟାଳି ଭଳି ଦିଶୁଥାନ୍ତି । ସତେଯେପରି ପାଞ୍ଚ ଦିଗରୁ ଭକ୍ତିର ସ୍ରୋତ ଛୁଟିଆସି ଭାବର ଏକ ମହାସମୁଦ୍ର ସୃଷ୍ଟି ହୋଇ ଯାଉଛି । କଂପାନୀର ଅବସ୍ଥିତି ପୂର୍ବରୁ ପୂର୍ବ ବର୍ଣ୍ଣିତ ଝରଣାଟି ଏଠି ଛଳ ଛଳ ହୋଇ ବହିଯାଉଥିଲା । ପ୍ରଭୁ ଶ୍ରୀରାମଚନ୍ଦ୍ର ଶବରୀକୁ ଦର୍ଶନ ଦେଇ ତାର ଆତ୍ମାକୁ ଶ୍ରୀଅଙ୍ଗରେ ଲୀନ କଲାପରି, ପରବର୍ତ୍ତୀ ସମୟରେ ଝରଣାଟି ରୂପ ନେଇଥିଲା ଶାବରୀ ହ୍ରଦରେ । ଦୁର୍ବାସା ଋଷିଙ୍କ ସମୁଦ୍ର ପାନ ପରି ନାଲକୋର ଇଞ୍ଜିନିୟରମାନେ ଚାହିଁଲେ ଏହା ଶୁଖିଯାଏ, ଚାହିଁଲେ ଏହା ଜଳପୂର୍ଣ୍ଣ ହୋଇଯାଏ । ହ୍ରଦମାନଙ୍କର ଗତି ନଥାଏ । ମାତ୍ର ଶାବରୀ ହ୍ରଦ କ୍ଷେତ୍ରରେ ଏହାର ବ୍ୟତିକ୍ରମ । ତାର ଗତି ଉପରେ ସେତୁଟି ନିର୍ମିତ ହୋଇଛି ।

ଏଇ କେତେବର୍ଷ ହେଲା ରଥଯାତ୍ରା ସହିତ ଧାରାବିବରଣୀ ସଂଯୋଜିତ କରାଯାଇଛି । ଜଗନ୍ନାଥ ସଂସ୍କୃତି ବିଷୟରେ ବିବରଣୀ ଦେଉଥିବା ଭାଇ ଭଉଣୀମାନେ ଅନେକ ତଥ୍ୟ ଓ ଭାବ ପରିବେଷଣ କରି ରଥଯାତ୍ରାର ମହତ୍ୱକୁ ଅନେକ ପରିମାଣରେ ବଢାଇ ଦେଇଥାନ୍ତି । ରଥ ପାଖେ ପାଖେ ପୋଲିସ୍ ରହି ଆଇନ୍ ଶୃଙ୍ଖଳା ଉପରେ କଡା ନଜର ରଖିଥାନ୍ତି ।

ମହାପ୍ରସାଦ ବିକ୍ରୟ ରଥଯାତ୍ରାର ଭିନ୍ନ ଏକ ଆକର୍ଷଣ । ଏଥିପାଇଁ ଧାରାବିବରଣୀ ଗାଡି ପଛେ ପଛେ ଅନ୍ୟ ଏକ ଗାଡି ଚାଲିଥାଏ । ଏଥିରେ ମହାପ୍ରସାଦ ପୁଡିଆ ସଂଗ୍ରହ କରିବାପାଇଁ ଶହ ଶହ ହାତ ଲମ୍ବି ଯାଇଥାଏ । ଧାରାବିବରଣୀ ଗାଡିରୁ ମଧ୍ୟ ମନ୍ଦିର ସ୍ମରଣିକା 'ମହାପ୍ରସାଦ' ଲୋକମାନେ ସଂଗ୍ରହ କରୁଥାନ୍ତି ।

ମହାପ୍ରସାଦ ଜଗନ୍ନାଥଙ୍କ ଅବିକଳ ସ୍ୱରୂପ । ଫୁଲ, ଫଳ, ଜଳ ଆଦି ଯାହା ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରାଯାଏ ତାହା ପାଲଟିଯାଏ ମହାପ୍ରସାଦ, କୈବଲ୍ୟ, ନିର୍ମାଲ୍ୟ । ଏହି ମହାପ୍ରସାଦ କାଣିଚାଏ ପାଇ ଭକ୍ତ ମନରେ ପ୍ରସନ୍ନତା ଓ ପରମ ଶାନ୍ତି ଆସେ । ଏହାକୁ ବାଢି ଖାଆନ୍ତି ନାହିଁ ବୋଲି ଅବଢ଼ା । ଏଥିରେ ଛୁଆଁ ଅଛୁଆଁ ଭାବନା ନଥାଏ । **ପ୍ରତିବର୍ଷ ପଲିଥିନ୍ ପ୍ୟାକେଟ୍‌ରେ ଦିଆଯାଉଥିବା ମହାପ୍ରସାଦକୁ ଏବର୍ଷ କୁଡୁଆରେ ଦିଆଯିବାର ବ୍ୟବସ୍ଥା ହୋଇଛି ।** ଏହାବ୍ୟତୀତ ଅନ୍ୟମାନେ କଦଳୀ, ନଡିଆ ଟ୍ରଲିରେ ବିକ୍ରିକରି ଭକ୍ତମାନଙ୍କର ଆବଶ୍ୟକତା ପୂରଣ କରିଥାନ୍ତି । ଛୋଟ ପିଲାମାନଙ୍କ ପାଇଁ ବେଲୁନ୍, ପେଁକାଳୀ ଓ ଖେଳନା ବିକ୍ରୟ କରାଯାଇ ଯାତ୍ରାର ନାମ କରଣକୁ ସାର୍ଥକ କରାଯାଇଥାଏ । ରଥ

ଉପରେ ପୂଜକମାନେ ରହି ଭକ୍ତମାନଙ୍କ ଭୋଗ ଲାଗି କରିଥାନ୍ତି । ଭକ୍ତରଙ୍କା ଜଗନ୍ନାଥ ସମସ୍ତଙ୍କୁ ଦର୍ଶନ ଦେଇ ହାରିଗୁହାରି ଶୁଣି କରୁଣାର ବିଭୂତି ବାଣ୍ଟି ବାଣ୍ଟି ଚାଲିଥାନ୍ତି ।

ଶାବରୀ ହ୍ରଦ ପାରି ହେଲାବେଳକୁ ଦିନ ରତରତ ହେଉଥାଏ । ସୂର୍ଯ୍ୟଦେବ ଜଗତରନାଥଙ୍କୁ ପ୍ରଣତି ଜଣାଇ ଅସ୍ତାଚଳରେ ଡୁବି ଯାନ୍ତି । ରଥ ଚାଲେ ମେଡିକାଲ ଛକ ଦେଇ ସେକ୍ଟର ତିନି ସ୍ଥିତ ମାଉସୀମା ମନ୍ଦିରକୁ । ଗେଷ୍ଟ ହାଉସ୍ ଛକରେ କିଛି ସମୟ ରହି ବନଦେବୀ ସ୍ଥାନେଶ୍ୱରୀ ମା କଣ୍ଟାବାଉଁସୁଣୀଙ୍କୁ ଦୂରରୁ ଚାହିଁଲା ବେଳକୁ ସନ୍ଧ୍ୟା ଆସିଯାଇଥାଏ । ତେଣୁ ସେହି ରଥ ଉପରେ ସନ୍ଧ୍ୟା ଆଳତି କରାଯାଏ ।

ଅଗଣିତ ଭକ୍ତମାନଙ୍କ ଗହଣରେ ମଙ୍ଗଳଧ୍ୱନି ଓ ବାଦ୍ୟର ଅନ୍ତରାଳରେ ପହଣ୍ଡି କରାଯାଇ ଜୀଉମାନଙ୍କୁ ମାଉସୀମା ମନ୍ଦିରକୁ ନିଆଯାଏ । ମାଉସୀମା ମନ୍ଦିର ପରିବେଶ ବେଶ୍ ଆଧ୍ୟାତ୍ମିକତା ପୂର୍ଣ୍ଣ । ସେଠାରେ ଅଛି ଶିବମନ୍ଦିର, ରାମମନ୍ଦିର, ହନୁମାନମନ୍ଦିର ଓ ଯଜ୍ଞମଣ୍ଡପ । ସୁନ୍ଦର ଉଦ୍ୟାନ । ପ୍ରଥମ ଆନନ୍ଦ ବଜାର । ମନ୍ଦିର ଚାରିପଟେ ପାଚେରୀ । ପରିବେଶ ବେଶ୍ ପରିଷ୍କାର । ଏହାର ପରିସରର ଶୋଭାକୁ ଶତଗୁଣିତ କରିଛି ସୁଉଚ୍ଚ ରୋଚକ ତୋରଣଟିଏ, ନିକଟ ଅତୀତରେ ନିର୍ମିତ । ସମସ୍ତ ପ୍ରକାର କଳା, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟର ନିଖୁଣ ନିଦର୍ଶନ । ଚାହିଁଦେଲେ ଘଡିଏ ଛିଡାହେବାକୁ ମନ । ସେହି ସୁନ୍ଦର ପରିବେଶରେ ଶ୍ରୀଜଗନ୍ନାଥ ଭାଇ ଭଉଣୀଙ୍କ ସହିତ ସାତ ଦିନ ରହନ୍ତି ।

'ଶ୍ରୀଜଗନ୍ନାଥ ଚଢିଣ ନନ୍ଦିଘୋଷ ଗୁଣ୍ଡିଚା ଘରେ ବିଜୟ
ଦେଖି ନାଗନର ଗନ୍ଧର୍ବ କିନ୍ନର କରୁଛନ୍ତି ଜୟ ଜୟ ।'

ଏହି ରହଣି ଭିତରେ ଦଶପ୍ରକାର ବେଶ ଧାରଣ କରନ୍ତି ଓ ନାନାଭୋଗ ଲାଗି ହୁଏ । ଏଠାରେ ହେରାପଞ୍ଚମୀ ଅବସରରେ ଲକ୍ଷ୍ମୀ ରାଗିଯାଇ ସେଠାରେ ରଥକାଠ ଖଣ୍ଡେ ଭାଙ୍ଗି ଦିଅନ୍ତି ଓ ଦଶମୀ ଦିନ ଫେରି ଆସିବାକୁ କଷ୍ଟଦେଇ ଆସନ୍ତି ।

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କୁ ଦଶବର୍ଷ ଦେଖିବାଯାହା ଗୁଣ୍ଡିଚା ମଣ୍ଡପରେ ଗୋଟିଏ ଦିନ ଦେଖିବା ତାହା । ଦିନ ଅପେକ୍ଷା ରାତିରେ ଦର୍ଶନ କଲେ ଅଧିକ ପୁଣ୍ୟ ମିଳେ ବୋଲି ସନ୍ଧ୍ୟା ଦୀପ ବେଳେ ସେଠାରେ ପ୍ରବଳ ଭିଡ ଜମେ। ସାତ ଦିନଯାକ ମାଉସୀମା ମନ୍ଦିରରୁ ମହାପ୍ରସାଦ ନିମନ୍ତେ ଲମ୍ବା ଧାଡି ଲାଗେ ।

ଅଷାଢ ମାସ ଶୁକ୍ଳପକ୍ଷ ଦଶମୀଦିନ ଅନୁଷ୍ଠିତ ହୁଏ ଜଗନ୍ନାଥଙ୍କର ବାହୁଡ଼ାଯାତ୍ରା । ଏହି ବାହୁଡା ଯାତ୍ରାରେ ନାଲକୋ ପ୍ରକଳ୍ପର ବରିଷ୍ଠ ମହାପ୍ରବନ୍ଧକ ଛେରା ପହଁରା କାର୍ଯ୍ୟ ନିର୍ବାହ କରିଥାନ୍ତି । ବାହୁଡା ଦିନ ରଥ ଆସି ସେକ୍ଟର-ଦୁଇରେ ମଣ୍ଡପ ନିକଟରେ ଅଟକେ । ଠାକୁରଙ୍କ ସେଠାରେ ଏକାଦଶୀ ନୀତି ପାଳନ କରାଯାଏ । ଠାକୁରମାନେ ସେମିତି ରଥରେ ଥା'ନ୍ତି । ରଥରେ ଅଧରପଣା ଭୋଗ ଓ ରାଜାବେଶ ହୁଏ । ଏହି ବେଶ ସଂପୂର୍ଣ୍ଣ ସୁନାରେ ହେଉଥିବାରୁ ଏହାକୁ ଠାକୁରଙ୍କ ସୁନାବେଶ ବୋଲି ମଧ୍ୟ କୁହାଯାଏ ।

ଦ୍ୱାଦଶୀ ଦିନ ଠାକୁରମାନଙ୍କୁ ରଥରୁ ଓହ୍ଲାଇ ରତ୍ନବେଦୀକୁ ନିଆଯାଏ । ଏହାକୁ ନୀଳଦ୍ରିବିଜେ କୁହାଯାଏ । ଜଗନ୍ନାଥ ପହଣ୍ଡି କଲାବେଳେ ଲକ୍ଷ୍ମୀଙ୍କ ନିର୍ଦ୍ଦେଶରେ ଦାମନଯୋଡିର ପୂଜକମାନେ ଜୟ ବିଜୟ ଦ୍ୱାର ବନ୍ଦ କରି ଅଭିମାନରେ ଜଗନ୍ନାଥଙ୍କୁ ଅଟକାଇ ରଖନ୍ତି । ଶ୍ରୀମନ୍ଦିର ଭିତର ପଟେ ଲକ୍ଷ୍ମୀଙ୍କପକ୍ଷରୁ ସେବକ ଓ ଦଇତାପତିମାନେ ରହି ପରସ୍ପର ମଧ୍ୟରେ ନାନା ବଚନିକା ଓ ପଦ୍ୟାବୃତ୍ତି କରନ୍ତି । ଏହାକୁ ଲକ୍ଷ୍ମୀ ନାରାୟଣ କଳି କୁହାଯାଏ । ଜଗନ୍ନାଥ ବହୁତ ବୁଝାଇବା ପରେ ଲକ୍ଷ୍ମୀଙ୍କ ଅଭିମାନ ଭାଙ୍ଗେ ଓ କଳି ତୁଟେ । ଏହାପରେ ଶ୍ରୀଜଗନ୍ନାଥ ଲକ୍ଷ୍ମୀଙ୍କୁ ରସଗୋଲା ଖୁଆଇ ରତ୍ନ ସିଂହାସନରେ ବିଜେ କରନ୍ତି ।

ଦାମନଯୋଡିର ଅଧିବାସୀଙ୍କ ନିମନ୍ତେ ଶ୍ରୀଜଗନ୍ନାଥ ମନ୍ଦିର ପାଲଟି ଯାଇଛି ଏକ ସାଂସ୍କୃତିକ ଓ ଆଧ୍ୟାତ୍ମିକ ବିକାଶ ସାଧନର ପ୍ରାଣକେନ୍ଦ୍ର । ନବ ଆଗନ୍ତୁକମାନଙ୍କ ନିମନ୍ତେ ଏହା ହୋଇଯାଇଛି ଏକ ଅପାଶୋରା ତୀର୍ଥକ୍ଷେତ୍ର ଓ ପର୍ଯ୍ୟଟନ ସ୍ଥଳୀ । ଦାମନଯୋଡ଼ି ମନ୍ଦିର ପରିଚାଳନା ସମିତି ଅତି ଆନ୍ତରିକତା ସହିତ ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ ହାତକୁ ନେଇ ସଫଳତାର ସହିତ କାର୍ଯ୍ୟକରି ଚାଲିଛି । ଭୂପୃଷ୍ଠର ତିନି ହଜାର ଫୁଟ ଉଚ୍ଚରେ ନରେନ୍ଦ୍ର ପୁଷ୍କରିଣୀ ଖନନ, ମାଉସୀମା ମନ୍ଦିର ଓ ମା' କଣ୍ଟାବାଉଁଶୁଣୀ ମନ୍ଦିର ସମ୍ମୁଖରେ କାରୁକାର୍ଯ୍ୟ ମଣ୍ଡିତ ସୁଦୃଶ୍ୟ ଉଚ୍ଚ ବିଶାଳ ତୋରଣ ନିର୍ମାଣ ଏହାର ନିଦର୍ଶନ ଅଟେ । ଗତ ତିନିବର୍ଷ ହେଲା ଏକ ରଥଯାତ୍ରା ବିଶେଷାଙ୍କ 'ମହାପ୍ରସାଦ' ପ୍ରକାଶିତ ହେଉଅଛି । ଏଥିରେ ଓଡ଼ିଶାର ବିଶିଷ୍ଟ ଲେଖକମାନଙ୍କ ଗବେଷଣାଧର୍ମୀ ଲେଖାମାନ ପ୍ରକାଶ ପାଇ ଜଗନ୍ନାଥ ଧର୍ମ ଓ ସଂସ୍କୃତିର ପ୍ରଚାର ପ୍ରସାରରେ ସାହାଯ୍ୟ କରୁଛି । **ଦାମନଯୋଡ଼ି ଶିଳ୍ପାଞ୍ଚଳର ମନ୍ଦିର ପରିଚାଳନାରେ କୌଣସି ଜଣଙ୍କର ପ୍ରଭାବ ଅନୁଭୂତ ନହୋଇ ଗଣଙ୍କର ପ୍ରଭାବ ପରିଦୃଷ୍ଟ ହୁଏ ।** ଜଗନ୍ନାଥ ହେଉଛନ୍ତି ଗଣର ଦେବତା । ଆମ ସମସ୍ତଙ୍କର ଶରଣଦାତା ।

କ୍ୱା. ନଂ- ସି/୨୨/୧, ନାଲ୍‌କୋ
ଦାମନଯୋଡ଼ି, କୋରାପୁଟ-୭୬୩୦୦୮





# ଶ୍ରୀଜୀଉମାନଙ୍କର ରଥଯାତ୍ରା

ପୀତାମ୍ବର ପ୍ରଧାନୀ

**ର**ଥଯାତ୍ରା ଜନମାନସରେ ଗୁଣ୍ଡିଚାଯାତ୍ରା ରୂପେ ପରିଚିତ ହେଲେ ମଧ୍ୟ ଏହାର ଅନ୍ୟନାମ ରହିଛି । ଉତ୍କଳଖଣ୍ଡ ସ୍କନ୍ଦ ପୁରାଣରେ ରଥଯାତ୍ରାର ବିଭିନ୍ନ ବିଧିବିଧାନ ଉଲ୍ଲେଖ ରହିଛି । ଏହି ବିବିଧ ବିଧିର ପର୍ଯ୍ୟାଲୋଚନା ପୂର୍ବକ ରଥଯାତ୍ରାର ଅନ୍ୟ ନାମକରଣ ମଧ୍ୟ ହୋଇଛି ।

ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ମନ୍ଦିର ତ୍ୟାଗ, ଗୁଣ୍ଡିଚା ମନ୍ଦିରରେ ସାତ ଦିନ ଅବସ୍ଥାନ, ନବମ ଦିନ ମନ୍ଦିରକୁ ବାହୁଡ଼ା, ଏହି ନବମ ଦିନର ବ୍ୟାପୀ ଯାତ୍ରାକୁ ନବଦିନଯାତ୍ରା ମଧ୍ୟ କୁହନ୍ତି ।



ଶ୍ରୀଗୁଣ୍ଡିଚା ଘର ହେଉଛି ମହାବେଦୀ । ଇନ୍ଦ୍ରଦ୍ୟୁମ୍ନ ମହାରାଜା ଏଠାରେ ଯଜ୍ଞ କରିଥିଲେ । ତେଣୁ ଏହାକୁ ଯଜ୍ଞମଣ୍ଡପ ମଧ୍ୟ କୁହାଯାଏ । ରାଜା ଯଜ୍ଞ କରି ଏତେ ଗୋରୁ ଦାନ କରିଥିଲେ ଯେ ଏହି ଗୋରୁମାନଙ୍କ ଖୁରାରେ ଖୋଳି ହୋଇ ଓ ମୂତ୍ରରେ ଭର୍ତ୍ତି ହୋଇ ଇନ୍ଦ୍ରଦ୍ୟୁମ୍ନ ସରୋବର ସୃଷ୍ଟି ହୋଇଛି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପାଇଁ ଯେଉଁ ବେଦୀରେ ଯଜ୍ଞ କରାଯାଇଥିଲା ତାହାକୁ ମହାବେଦୀ ମଧ୍ୟ କୁହନ୍ତି । ମହାପ୍ରଭୁ ମହାବେଦୀରେ ଏକ ସପ୍ତାହ ଅବସ୍ଥାନ କରିବା ଉଦ୍ଦେଶ୍ୟରେ ଏହି ଯାତ୍ରାର ଆଦେଶ ଦେଇଥିବାରୁ ଏହାକୁ ମହାବେଦୀ ଯାତ୍ରା କୁହନ୍ତି ।

ଶ୍ରୀଗୁଣ୍ଡିଚା ମନ୍ଦିର ନିକଟରେ ଦଶାବତାର ମଠ ରହିଛି । ଏଠାରେ ଭଗବାନ ବିଷ୍ଣୁଙ୍କ ଦଶାବତାର ରହିଛି । ବର୍ତ୍ତମାନ ଏହି ମଠ ବଡ଼ଛତା ମଠ ଅଧୀନରେ ରହିଛି । ସେଠାରେ ଓଡ଼ିଶାର କବି ଜୟଦେବଙ୍କ ସ୍ମୃତି ମଧ୍ୟ ରହିଛି । ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯାଉଥିବା ଯାତ୍ରୀମାନେ ସେହି ମଠକୁ ଯାଇ ଦଶାବତାର ଦର୍ଶନ କରନ୍ତି । ମହାବେଦୀ ବା ଗୁଣ୍ଡିଚା ମନ୍ଦିରରେ ଅବସ୍ଥାନ କାଳରେ ଶ୍ରୀଜଗନ୍ନାଥଙ୍କର ଦଶାବତାର ବେଶ ହୁଏ । ଏହାକୁ ଲକ୍ଷ୍ୟକରି ପୁରାଣ ଲେଖକମାନେ ଏହାକୁ ଦଶାବତାର ଯାତ୍ରା ମଧ୍ୟ କୁହନ୍ତି ।

ସ୍କନ୍ଦ ପୁରାଣ ଅନ୍ତର୍ଗତ ଉତ୍କଳଖଣ୍ଡରେ ୩୩ଶ ଅଧ୍ୟାୟରୁ ୩୫ଶ ଅଧ୍ୟାୟ ପର୍ଯ୍ୟନ୍ତ ରଥଯାତ୍ରାର ଯେଉଁ ବିବରଣୀ ଦିଆଯାଇଛି, ତା'ର ସାରାଂଶ ଏହିପରି ଅଟେ ।

ବୈଶାଖ ଶୁକ୍ଳ ଦ୍ୱିତୀୟା ରୋହିଣି ନକ୍ଷତ୍ର ଦିନ ରାଜା ସଂକଳ୍ପ କରି ଆଚାର୍ଯ୍ୟ ବରଣ କରିବେ । କାର୍ଯ୍ୟଦକ୍ଷ ଅବିଦିତ ଜଣେ ବା ତିନି ଜଣ ସୂତ୍ରଧରଙ୍କୁ ବନକୁ ଯିବା ପାଇଁ ବସନ ଭୂଷଣ ଦେଇ ବରଣ କରିବେ । ଯେଉଁ ବନରେ ଅତି ଉଚ୍ଚଦାରୁ ବିଦ୍ୟମାନ ସେଠାକୁ ଯାଇ ରାଜା ମନ୍ତ୍ର ଉଚ୍ଚାରଣ କରି ଅଗ୍ନି ସ୍ଥାପନ କରିବେ । ଆର୍ଯ୍ୟଧାରା ଯୁକ୍ତ ଅଷ୍ଟୋତ୍ତର ଶତ ଆହୂତି ଦେବେ । ପ୍ରତିମୂଳରେ ଆର୍ଯ୍ୟଧାରା ଦେବେ । ଦିଗ୍‌ପାଳମାନଙ୍କୁ ଯଥାଯଥ ବଳି ଦେବେ । କ୍ଷେତ୍ରପାଳମାନଙ୍କୁ ପଶୁବଳୀ ଦେବେ । ବୃକ୍ଷର ପ୍ରୀତି ପାଇଁ ଶହେ ଦୁଗ୍‌ଧାନ୍ନ ଆହୁତି ଦେବେ । ଆଚାର୍ଯ୍ୟ ପତରଧ୍ୱଜ ଭଗବାନଙ୍କୁ ଧ୍ୟାନ କରି କୁଠାର ଧରି ମନ୍ତ୍ର ଉଚ୍ଚାରଣ କରି ବୃକ୍ଷ ମୂଳ ଅଳ୍ପ ଅଳ୍ପ କରି କାଟିବେ । ସେଠାରେ ମଙ୍ଗଳ ଧ୍ୱନି କରାଇବେ । ସୂତ୍ରଧରକୁ ଗଛକଟା କାର୍ଯ୍ୟରେ ନିଯୁକ୍ତ କରି ଆଚାର୍ଯ୍ୟ ସ୍ୱଗୃହକୁ ଫେରିବେ । ଯଦି ରଥ ନିର୍ମାଣ ଉପଯୁକ୍ତ କାଠ ସ୍ୱଗୃହ ନିକଟରେ ମିଳିବ ତେବେ ବିଧାନ ଅନୁସାରେ କାଷ୍ଠ ସଂସ୍କାର କରିବେ ।





ଶ୍ରୀଜଗନ୍ନାଥଙ୍କ ରଥରେ ଚକ୍ର ସଂଖ୍ୟା ୧୬ । ବେଦୀ ଉପରୁ ରଥର ଉଚ୍ଚତା ୨୩ ହାତ । ଚାରୋଟି ତୋରଣ ହେବ । ଗରୁଡ଼ ଧ୍ୱଜ ରକ୍ତଚନ୍ଦନ କାଠରେ ହେବ । ବଳଦେବଙ୍କ ରଥରେ ୧୪ଟି ଚକ । ବେଦୀ ଉପରୁ ରଥର ଉଚ୍ଚତା ୨୨ ହାତ । ସୁଭଦ୍ରା ଦେବୀଙ୍କ ରଥର ଚକ ସଂଖ୍ୟା ୧୨ । ବେଦୀ ଉପରୁ ରଥର ଉଚ୍ଚତା ୨୧ ହାତ । ଆଗେ ବିଘ୍ନ ବିନାଶନ ପାଇଁ ବିଘ୍ନରାଜ ଗଣପତିଙ୍କର ଉତ୍ସବ କରି ପରେ ରଥ ତିଆରି କରିବ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥର ଲୌହମୟ ସୁଦୃଢ଼ ଷୋଡ଼ଶ ଚକ୍ର, ଷୋଡ଼ଶ ଅରକାଠ ଓ ଅକ୍ଷ ଏବଂ କୁବେର ଅତି ଦୃଢ଼ ହେବା କର୍ତ୍ତବ୍ୟ । ଏହାର ଚାରିଆଡ଼େ ବିଚିତ୍ର ଭାବେ ଗଠିତ କାଠ କୁଣ୍ଢେଇ, କରିଆ ମଝିରେ ଏକ ଉଚ୍ଚ ବେଦୀ କରିବ । ଏହାର ଚାରିଟା ସୁନ୍ଦର ତୋରଣ ଓ ଚାରିଟା ସୁନ୍ଦର ଦ୍ୱାର ହେବ । ନାନାପ୍ରକାର କାରୁକାର୍ଯ୍ୟରେ ବିଭୂଷିତ କରିବ । ସୁନାପଟାରେ ମଣ୍ଡିବ । ଉଚ୍ଚରେ ୨୩ ହାତ କରିବ । ବହୁତ ପତାକା ଖଞ୍ଜିବ । ରକ୍ତଚନ୍ଦନ କାଠରେ ଗରୁଡ଼ ଧ୍ୱଜ ତିଆରି କରିବ । ଏହି ଗରୁଡ଼ର ଦେହ ସ୍ଥୂଳ ଓ ନାସିକା ଦୀର୍ଘ । କାନରେ କୁଣ୍ଡଳ ଓ ସର୍ବାଙ୍ଗ ଅଳଙ୍କାରରେ ମଣ୍ଡିବ । ଥଣ୍ଟରେ ଗୋଟିଏ ସାପ ଧରିଥିବ । ସାପ ଦୁଇଟି ଏପରି ଭାବରେ ତିଆରି ହୋଇଥିବ ଯେ ଯିଏ ଦେଖିଲେ ଭାବିବ ଯେ ଏହା ଉଡୁଛି । ବଳରାମଙ୍କର ୧୪ ଚକ ଓ ସୁଭଦ୍ରାଙ୍କର ୧୨ ଚକ । ଏହି ତିନି ରଥକୁ ନେଇ ରଥ ଯଥାବିଧି ପ୍ରତିଷ୍ଠା କରିବ । ଆଷାଢ଼ ମାସ ଶୁକ୍ଳପକ୍ଷ ପ୍ରତିପଦା ଦିନ ରଥକୁ ଯଥାବିଧି ପ୍ରତିଷ୍ଠା କରିବ ।

> ପ୍ରଥମେ ସୁଦର୍ଶନଙ୍କୁ ଆଣିବା ପରେ ବଳରାମ, ତା'ପରେ ସୁଭଦ୍ରା ଓ ଶେଷରେ ଜଗନ୍ନାଥ ପହଣ୍ଡି ବିଜେ ହେବେ । ଠାକୁରମାନଙ୍କୁ ରଥ ଉପରେ ବସାଇ ବ୍ରାହ୍ମଣମାନେ ଶାକୁନସୂତ୍ର ପାଠ କରିବେ । ମଙ୍ଗଳଗାଥା ପାଠ, ଜୟ ଉଚ୍ଚାରଣ, କେହି କେହି ଜିତତନ୍ତ୍ର ପ୍ରଭୃତି ପାଠ କରିବେ ।

ପକ୍ଷୀ, ବିରାଡ଼ି, ନେଉଳ କିମ୍ବା ଅନ୍ୟ କୌଣସି ଅଶୁଭ ପ୍ରାଣୀ ଯେପରି ରଥ ଉପରେ ନଚଢ଼େ ସେଥିପ୍ରତି ଦୃଷ୍ଟି ଦେବ । ଠାକୁର ପହଣ୍ଡି ବିଜେପଟ ପରିଷ୍କାର କରିବ । ଦୁଇପଟ ସୁନ୍ଦର ଭାବରେ ଫୁଲ, ଫଳ ଗଛ ଓ ଲୁଗାଦ୍ୱାରା ସଜାଇବ । ଜଗନ୍ନାଥ ଦେବଙ୍କ ରଥ ଯିବା ବାଟରେ ପୁଷ୍ପ ବୃଷ୍ଟି ହେବା ପାଇଁ ସ୍ଥାନେ ସ୍ଥାନେ ଫୁଲ ରହିବ । ଗାୟକ ଓ ନର୍ତ୍ତକୀମାନେ ଗୀତ ନୃତ୍ୟ କରିବେ । ବାଦ୍ୟ ବାଜୁଥିବ । ବହୁତ ପତାକା ଉଡୁଥିବ । ସୁନ୍ଦର ସୁନ୍ଦର ଘୋଡ଼ା ହାତୀ ସୁସଜ୍ଜିତ କରିବେ । ଆଷାଢ଼ ମାସ ଶୁକ୍ଳପକ୍ଷ ପୁଷ୍ୟାନକ୍ଷେତ୍ରଯୁକ୍ତ ଦ୍ୱିତୀୟା ଦିନ ଅରୁଣୋଦୟ ସମୟରେ ଭଗବାନଙ୍କୁ ପ୍ରଥମେ ଅର୍ଚ୍ଚନା କରିବ । ଖେଚେଡ଼ି ଭୋଗ କରିବ । ତା'ପରେ ପ୍ରାର୍ଥନା କରିବ । ମହାପ୍ରଭୁଙ୍କୁ ପହଣ୍ଡି ବିଜେ କରାଇବ । ପହଣ୍ଡି ସମୟରେ ଗୀତ ବାଦ୍ୟ, ପୁଷ୍ପ ବୃଷ୍ଟି ଓ ନୃତ୍ୟ ଇତ୍ୟାଦି ହେବ ।

ପ୍ରଥମେ ସୁଦର୍ଶନଙ୍କୁ ଆଣିବା ପରେ ବଳରାମ, ତା'ପରେ ସୁଭଦ୍ରା ଓ ଶେଷରେ ଜଗନ୍ନାଥ ପହଣ୍ଡି ବିଜେ ହେବେ । ଠାକୁରମାନଙ୍କୁ ରଥ ଉପରେ ବସାଇ ବ୍ରାହ୍ମଣମାନେ ଶାକୁନସୂତ୍ର ପାଠ କରିବେ । ମଙ୍ଗଳଗାଥା ପାଠ, ଜୟ ଉଚ୍ଚାରଣ, କେହି କେହି ଜିତତନ୍ତ୍ର ପ୍ରଭୃତି ପାଠ କରିବେ । ରଥରେ ବସ୍ତ୍ର ଅଳଙ୍କାରଦ୍ୱାରା ଠାକୁରମାନଙ୍କୁ ବିଭୂଷିତ କରି ପୂଜା କରିବେ । ରଥଟଣା ହେବା ସମୟରେ ବାଟରେ ସ୍ଥାନେ ସ୍ଥାନେ ପ୍ରଭୁଙ୍କର ବାଟ ଚାଲିବା କ୍ଲେଶ ନିବାରଣ ପାଇଁ ପଞ୍ଚାମୃତ, ଫୁଲ ଓ କର୍ପୂର ମିଶ୍ରିତ ଶୀତଳଜଳଦ୍ୱାରା ସମର୍ପିବ । ବିଞ୍ଚଣାଦ୍ୱାରା ଠାକୁରମାନଙ୍କୁ ବିଞ୍ଚିବ । ତା'ପରେ ଠାକୁରମାନଙ୍କୁ ଶାକର, ପଣା, ପିଠା, ଖଜୁରି, ନଡ଼ିଆ, ତାଳ, କଦଳୀ ଓ ରୁଚିକର ଅନ୍ୟାନ୍ୟ ଫଳ, ଆଖୁ ଓ କ୍ଷୀରରେ ତିଆରି ହୋଇଥିବା ସୁଖାଦ୍ୟ ବସ୍ତୁ, ସୁବାସିତ ଶୀତଳ ଜଳ, କର୍ପୂର ଲବଙ୍ଗାଦି ପକ୍ୱ ତାମ୍ବୁଳଦ୍ୱାରା ପୂଜା କରିବ । ଉପର ବେଳା ରଥ ଟଣା ହେବ । ଠାକୁରମାନଙ୍କର ଗୁଣ୍ଡିଚା ବାଡ଼ିରେ ରଥ ପହଞ୍ଚିଲେ ସେମାନଙ୍କୁ ଗୁଣ୍ଡିଚା ମଣ୍ଡପରେ ବିଜେ କରାଇବ । ଇନ୍ଦ୍ରଦ୍ୟୁମ୍ନ ସରୋବର ନିକଟରେ ମହାପ୍ରଭୁ ସାତଦିନ ରୁହନ୍ତି । ଠାକୁରମାନେ ଗୁଣ୍ଡିଚା ମଣ୍ଡପରେ ବିଜେ ହେବାପରେ ପ୍ରତିଦିନ ନିଜ ନିଜ ଧ୍ୱଜସ୍ଥିତ ତିନି ଠାକୁରଙ୍କୁ ନାନାପ୍ରକାର ଉପଚାର ଦ୍ରବ୍ୟ ଓ ନୃତ୍ୟ ଗୀତ ଇତ୍ୟାଦିଦ୍ୱାରା ପୂଜାକରିବ । ପ୍ରତିଦିନ ଭୀଷଣ ଭୂତ ପ୍ରେତାଦି ଓ ଆକସ୍ମିକ ଦୁର୍ଘଟଣାଦ୍ୱାରା ରଥର ଯେପରି କୌଣସି କ୍ଷତି ନହୁଏ ସେଥିପାଇଁ ଦିଗପାଳମାନଙ୍କୁ ପାୟସାନ୍ନ ଯଥାବିଧି ବଳିଦେବ ଓ ଭୂତ, ପ୍ରେତ, ପିଶାଚମାନଙ୍କୁ ସେମାନଙ୍କୁ ପ୍ରୟବଳି ଦେବ । କୌଣସି ଗ୍ରାମ୍ୟ ପଶୁ କିମ୍ବା ଅଶୁଭ ସୂଚକ ପକ୍ଷୀ ନବସନ୍ତି ତାହାର ବ୍ୟବସ୍ଥା କରିବ । **ଠାକୁରମାନେ ରଥ ଉପରେ ଥିବା ସମୟରେ ସଂକ୍ରାନ୍ତି ପଡ଼ିଲେ ପ୍ରତିଦିନ ରଥର ଚାରିପଟେ ଓଳିଏ ଲେଖାଏଁ ଅନ୍ନବଳୀ ଦିଆଯାଏ । ଏହାକୁ ବଳୀଭାତ କୁହାଯାଏ ।**

ଅଷ୍ଟମୀ ଦିନ ତିନିରଥଙ୍କୁ ଦକ୍ଷିଣାଭିମୁଖୀ କରି ବସ୍ତ୍ର, ମାଲ୍ୟ ଓ ରୂପାଦ୍ୱାରା ସୁସଜ୍ଜିତ କରିବ । ଏହାକୁ ହେରାପଞ୍ଚମୀ ଦକ୍ଷିଣମୂର୍ତ୍ତି ବୋଲି ମଧ୍ୟ କୁହାଯାଏ । ନବମୀ ତିଥିରେ ସକାଳବେଳା ଠାକୁରମାନଙ୍କୁ ରଥରେ ବସାଇବ, ସିଂହଦ୍ୱାରକୁ ରଥ ଟାଣିକରି ନେବ ।

ଯିବାଦିନ ଓ ଆସିବା ଦିନ ଛାଡ଼ି ଠାକୁରମାନେ ଗୁଣ୍ଡିଚା ମଣ୍ଡପରେ ସାତଦିନ ରହିବେ । ଏହି ଦିନମାନଙ୍କରେ ଠାକୁରମାନେ ଦଶାବତାର ବେଶ ହେବେ ।

ଗୁଣ୍ଡିଚା ବାଡ଼ିରେ ବଡ଼ଦେଉଳର ଯାବତୀୟ ନୀତି ଚଳିବ । ମହାପ୍ରସାଦ ହେବ । ଠାକୁରମାନେ ଦଶାବତାର ବେଶ ହେବେ । ଏହି ରଥଯାତ୍ରାକୁ ନବଦିନାତ୍ମକ ଯାତ୍ରା କୁହାଯାଏ । ଏହାର ତିନୋଟି ଅଙ୍ଗର ପୂର୍ବଯାତ୍ରା, ଦ୍ୱିତୀୟ ଅଙ୍ଗ ଗୁଣ୍ଡିଚା ମଣ୍ଡପରେ ଅବସ୍ଥାନ ବା ଆଡ଼ପ, ତୃତୀୟ ଅଙ୍ଗ ବାହୁଡ଼ାଯାତ୍ରା ।

ଠାକୁରମାନେ ଗୁଣ୍ଡିଚା ମଣ୍ଡପରେ ଥିବାବେଳେ ବନ ଜାଗରଣବ୍ରତ ପାଳନ କଲେ ମହାପୁଣ୍ୟ ହୁଏ । ଶୁକ୍ଳ ଦ୍ୱିତୀୟା ଦିନ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ସ୍ନାନ କରି ନୃସିଂହ ମହାପ୍ରଭୁଙ୍କୁ ଦର୍ଶନପୂର୍ବକ ଏହିବ୍ରତ ପାଳନ କରିବାକୁ ହୋଇଥାଏ । ଏହାକୁ ମହାଦେବୀ ମହୋତ୍ସବ ବ୍ରତ ମଧ କୁହାଯାଏ । ଅଷ୍ଟମ ଦିବସରେ ତାହା ଶେଷ ହୁଏ ।

ମହାବେଦୀରେ ଜଗନ୍ନାଥଙ୍କର ଅବସ୍ଥିତିକୁ ମହାବେଦୀ ଯୋଗ କୁହାଯାଏ । ଏହା ଅତି ପବିତ୍ର ସମୟ । ମଘା ନକ୍ଷତ୍ର ଯୁକ୍ତ ଶୁକ୍ଳ ପଞ୍ଚମୀଦିନ ଶ୍ରାଦ୍ଧ କଲେ ପିତୃପୁରୁଷମାନେ ପରମ ସନ୍ତୋଷ ଲାଭ କରନ୍ତି । ଆଷାଢ଼ ଶୁକ୍ଳ ପଞ୍ଚମୀ ତିଥି, ମଘାନକ୍ଷତ୍ର, ଜଗନ୍ନାଥଙ୍କ ମହାବେଦୀ ସମାଗମ ଏହି ତିନି ମହାବେଦୀ ସମାଗମର ତ୍ରିପାଦ ସ୍ୱରୂପ । ଏହାସହିତ ଇନ୍ଦ୍ରଦ୍ୟୁମ୍ନ ସରୋବର ମିଳିତ ହେଲେ ଚତୁର୍ପାଦ ଯୋଗ ହୁଏ । ଏହା ପୁଣ୍ୟଯୋଗ ଓ ପିତୃମାନଙ୍କର ମୁକ୍ତିପ୍ରଦ ।

ଓଡ଼ିଶାର ବିଭିନ୍ନ ସ୍ଥାନରେ ପୁରୀ ଅନୁକରଣରେ ରଥଯାତ୍ରା ହୁଏ । ତା'ଛଡ଼ା ବିଭିନ୍ନ ଦେବଦେବୀମାନଙ୍କର ରଥଯାତ୍ରା ମଧ ହୁଏ । ଉକ୍ତ ମହାଯାତ୍ରା ଗୁଣ୍ଡିଚା ମହୋତ୍ସବର ନାମ ଉଲ୍ଲେଖ କଲେ ମଧ ଲୋକ ନିଷ୍ପାପ ହେବେ । ମାଘମାସ ଶୁକ୍ଳ ପଞ୍ଚମୀ ଓ ଚୈତ୍ର ଶୁକ୍ଳ ଅଷ୍ଟମୀ ଦିନ ଗୁଣ୍ଡିଚା ଯାତ୍ରାର ପ୍ରଶସ୍ତ ଦିନ । ପୁଷ୍ୟାନକ୍ଷତ୍ର ଯୁକ୍ତ ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ଗୁଣ୍ଡିଚା ଯାତ୍ରା ବିଜେ ମୁଖ୍ୟଦା ।

ବାହୁଡ଼ା ଗୁଣ୍ଡିଚା ସମୟରେ ଏକାଦଶୀ ଦିନ ମହାପ୍ରଭୁ ରଥ ଉପରେ ଶ୍ରୀଅଧରକୁ ପାଇବା ପର୍ଯ୍ୟନ୍ତ ଉଚ୍ଚଥିବା କୁମ୍ଭ ଭଳିଆ ତିନୋଟି ମାଟି ହାଣ୍ଡିରେ ପୂଜାପଣ୍ଡାମାନେ ପଣା ରଖନ୍ତି । ପଞ୍ଚମୀ ଉପଚାରରେ ପୂଜା କରନ୍ତି ଓ ପଣାଭୋଗ କରନ୍ତି । ତାହାକୁ ଅଧରପଣା କୁହାଯାଏ ।

ବିଷ୍ଣୁପୁରୀ, ଏଲ୍.ବି-୧୩୮
ବରଗଡ଼ ବ୍ରିଟ୍ କଲୋନୀ
ଭୁବନେଶ୍ୱର

---

# ପୁରୀ

କିଶୋର ସ୍ୱାଇଁ (ଉଷସ୍ମି)



ସମୁଦ୍ର ଲହଡ଼ି ଭାଙ୍ଗେ ନାଚି ନାଚି-
ମହୋଦଧି ବେଳାଭୂମି ଦାରୁ ବ୍ରହ୍ମଲୀଳା
କାହିଁ ବ୍ରହ୍ମ, କାହିଁ ସେ ବ୍ରହ୍ମାଣ୍ଡ
କାହିଁ ତା'ର ପିତାମ୍ବର ବେଶ
ତା' ଓଠେ ମୁରଲୀ ସ୍ୱନ
ତା' ମୁଣ୍ଡରେ ମୟୂର ଚନ୍ଦ୍ରିକା !
କାହିଁ ତା'ର ଗୋରୁପଲ / ଗଉଡ଼ ଟୋକାଙ୍କ ଖେଳ
ଯୌବନ ଜୁଆରେ ଭରା ସହସ୍ର ଗୋପିକା !
କେମିତି ବୁଝିବି ତୋତେ
ତୁ ଅବୁଝା ଶୁଭଙ୍କରୀ ଅତୁଆ ସୂତାର ଗଣ୍ଠି
ମୁଁ ଜାଣିଛି ତୋତେ ଯାହା
ତୁ ଏକ ବହୁଧା ରୂପର ଚତୁର୍ଦ୍ଧା ମୂରତି ।
ତୋ ଶଙ୍ଖର ଧ୍ୱନି ଏକ ନିଗୂଢ଼ ରହସ୍ୟ
ତୋ ଚକ୍ରର ରୂପ ପୁଣି ଅରୂପ ପ୍ରକାଶ
ତୋ ନାଭିମଣ୍ଡଳ ପଦ୍ମ
ଫୁଟି ଯାଏ ସମୁଦ୍ର ଆକାଶ



ତୁ ସାକାର / ନିରାକାର / ଆକାର ବା ଅଣାକାର
ମୁଁ ବୁଝେନା କିଛି ଯାହା
ଆକାଶର ସାତ ରଂଗ ମିଶିମାଶି ଫେଣ୍ଟିଯାଏ
ସମୁଦ୍ରର ଲୁଣିଆ ଜଳରେ
ଅବା କ୍ଷୀର ସାଗରରେ
ଅନନ୍ତ ଶୟନ ସ୍ୱପ୍ନ ଭାଙ୍ଗିଯାଏ
ବାସୁକୀର ଫଣିତ ଫୁତ୍କାରେ ।
ତୋତେ ଧରି ଥେଇ ଥେଇ ନାଚିବାକୁ ଇଚ୍ଛାହୁଏ
ବଡ଼ଦାଣ୍ଡେ / ସମୁଦ୍ର କୂଳରେ
ତୁ ଶୁଣୁନା, ତୁ ବୁଝୁନା
ତୋର ସତ୍ତା ହଜିଯାଏ ଶୂନ୍ୟ ଗର୍ଭରେ
ମୋ'ର କିନ୍ତୁ ଇଚ୍ଛା ହୁଏ
ତୋ ଚିକ୍କଣ କଳା ଦେହେ ମିଶିବାକୁ
ଛାୟାଚ୍ଛନ୍ନ ଅନ୍ଧାରରେ ।

ଇ/୯୭, ଇ-କଲୋନୀ
ୟୁନିଟ୍-୮, ଭୁବନେଶ୍ୱର

# ଦେବଗଡ଼ରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା

ଅନିରୁଦ୍ଧ ନାୟକ

**ପ୍ର**କୃତିର ଅପରୂପ ସୌନ୍ଦର୍ଯ୍ୟରେ ବିଭୂଷିତା ଗଡ଼ଜାତ ରାଜ୍ୟ ବାମଣ୍ଡା । ପୂର୍ବରେ ଗିରି ତୀର୍ଥ ମାଲ୍ୟଗିରି, ପଶ୍ଚିମରେ ପୁଣ୍ୟତୋୟା ମହାନଦୀ, ଉତ୍ତରରେ ବଣପର୍ବତମଣ୍ଡିତା ବଣେଇ ଏବଂ ଦକ୍ଷିଣରେ ଗଡ଼ଜାତ ରାଜ୍ୟ ରେଢ଼ାଖୋଲ । ଏହାରି ମଧ୍ୟାଞ୍ଚଳରେ ଐତିହ୍ୟମୟୀ ବାମଣ୍ଡା ରାଜ୍ୟ 'ଅଖୋଜ ବାମଣ୍ଡା' ଭାବରେ ସୁବିଖ୍ୟାତ । କଇଦନ୍ତା ପର୍ବତ ମାଳାର ପାଦ ଦେଶରେ ବାମଣ୍ଡାର ରାଜଧାନୀ ପ୍ରପାତ ନଗରୀ ଦେବଗଡ଼ । ବର୍ତ୍ତମାନ ଯେଉଁ ରାଜନଅର ସହରର ମଧ ସ୍ଥଳରେ ପରିଦୃଶ୍ୟମାନ, ତା'ପୂର୍ବରୁ ସହରର ପଶ୍ଚିମ ଉପକଣ୍ଠରେ ଥିଲା ରାଜପ୍ରାସାଦ ତଥା ବାମଣ୍ଡାର ରାଜଧାନୀ, ଯାହାକି ଅଧୁନା ପୁରୁଣାଗଡ଼ ଭାବରେ ପରିଚିତ । ରାଜପ୍ରାସାଦକୁ ଲାଗି ଶ୍ରୀଜଗନ୍ନାଥ ଚେତନାର ସ୍ୱାକ୍ଷର ବହନ କରି ଦଣ୍ଡାୟମାନ ଶ୍ରୀଜଗନ୍ନାଥ ମନ୍ଦିର । ଇତିହାସ କହେ, ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ପ୍ରାରମ୍ଭ ବେଳକୁ ବାମଣ୍ଡାର ଗଙ୍ଗବଂଶୀ ରାଜା ପ୍ରତାପରୁଦ୍ର ଦେବ ବାମଣ୍ଡାରେ ରାଜତ୍ୱ କରୁଥିଲେ । ତାଙ୍କରି ରାଜତ୍ୱ ସମୟରେ ହିଁ ଏହି ମନ୍ଦିର ନିର୍ମିତ ହୋଇଥିଲା । ପରବର୍ତ୍ତୀ ସମୟରେ ବାମଣ୍ଡାର ନରପତିମାନଙ୍କଦ୍ୱାରା ପାର୍ଶ୍ୱଦେବାଦେବୀ ମନ୍ଦିରର ଅଭିବୃଦ୍ଧି ଘଟି ଜଗନ୍ନାଥଙ୍କ ସଂସ୍କୃତିର ସୌରଭରେ ସମଗ୍ର ବାମଣ୍ଡାକୁ ସୁରଭିତ କରୁଥିଲା ।

ବର୍ତ୍ତମାନର ରାଜପ୍ରାସାଦଠାରୁ ୬ ନମ୍ବର ଜାତୀୟ ରାଜପଥରେ ପଶ୍ଚିମକୁ ୩ କିଲୋମିଟର ବାମପାର୍ଶ୍ୱରେ ତଥା ପୁରୁଣାଗଡ଼ର ପୂର୍ବ ଉପକଣ୍ଠରେ ବାମଣ୍ଡାର ପ୍ରାଚୀନତମ ଶ୍ରୀଜଗନ୍ନାଥ ମନ୍ଦିରଟି ବିଦ୍ୟମାନ । ରାଜପଥରୁ ପ୍ରାୟ ୨୦୦ ମିଟର ଦୂରତାରେ ମୁଖ୍ୟଫାଟକ । ଫାଟକଟି ଉତ୍ତରାଭିମୁଖୀ । ଫାଟକକୁ ଲାଗି ପାପନାଶନ ପୁଷ୍କରିଣୀ । ମୁଖ୍ୟ ମନ୍ଦିରଟି ତିନିଭାଗରେ ବିଭକ୍ତ । ମୁଖଶାଳା, ଜଗମୋହନ ଏବଂ ଗର୍ଭଗୃହ । ଜଗମୋହନକୁ ଲାଗି ଦକ୍ଷିଣ ପାର୍ଶ୍ୱରେ ରୋଷଘର । ମନ୍ଦିର ପରିସରରେ ହନୁମାନ ମନ୍ଦିର, ନୃସିଂହ ମନ୍ଦିର, ବିଷ୍ଣୁପାଦ ମନ୍ଦିର, ରାଧାକୃଷ୍ଣ ମନ୍ଦିର, ରଘୁନାଥ ମନ୍ଦିର, ସୂର୍ଯ୍ୟ ମନ୍ଦିର, ଲକ୍ଷ୍ମୀ ମନ୍ଦିର, କାଳୀମନ୍ଦିର, ସରସ୍ୱତୀ ମନ୍ଦିର ତଥା ଝୁଲଣ ମନ୍ଦିର ଆଦି ପରିଦୃଶ୍ୟମାନ । ମନ୍ଦିରର ଉତ୍ତର ବେଢ଼ାରେ ମନ୍ଦିର କାର୍ଯ୍ୟାଳୟ ଏବଂ ଭକ୍ତମାନଙ୍କ ରହଣି ନିମିତ୍ତ ଅତିଥି ଗୃହ ଭଗ୍ନପ୍ରାୟ । ରୋଷ ଘରକୁ ଲାଗି ସୁନାକୂଅ । ମନ୍ଦିର ସମ୍ମୁଖରେ ସ୍ନାନବେଦୀ । ଶ୍ରୀକ୍ଷେତ୍ର ଢାଞ୍ଚାରେ ନିର୍ମିତ ଏହି ମନ୍ଦିରଟି ବାମଣ୍ଡା ରାଜାଙ୍କର ଶ୍ରୀଜଗନ୍ନାଥ ସଂସ୍କୃତିପ୍ରତି ଥିବା ମହାନୁଭବତାର ପରିଚୟ ପ୍ରଦାନ କରେ । 'କର୍ପୂର ଯାଇଛି କନା ପଡ଼ିଅଛି', ସମୟ ସ୍ରୋତରେ ମନ୍ଦିର ପରିସରସ୍ଥ ଅନେକ ମନ୍ଦିର ଆଜି ବିଧ୍ୱସ୍ତ ପ୍ରାୟ, ପାଚେରୀ ଭଗ୍ନମୁଖୀ । ଦିନଥିଲା, ଜଗନ୍ନାଥପ୍ରେମୀଙ୍କ ସମାଗମନରେ ଚଳଚଞ୍ଚଳ ଥିଲା ଏ ଦିବ୍ୟଧାମ । ରାଜାମାନେ ନିଜକୁ ଆଦ୍ୟ ସେବକ ମନକେରି ସମର୍ପି ଦେଉଥିଲେ ପ୍ରଭୁଙ୍କ ଶ୍ରୀଚରଣ ତଳେ । ବାରମାସରେ ତେରପର୍ବ ପାଳନପୂର୍ବକ ନିଜକୁ ଧନ୍ୟ ମନେ କରୁଥିଲେ । ସ୍ନାନ ପୂର୍ଣ୍ଣିମା, ଶ୍ରୀଗୁଣ୍ଡିଚାଠାରୁ ଆରମ୍ଭ କରି ପୁନଶ୍ଚ ସ୍ନାନ ପୂର୍ଣ୍ଣିମା ପର୍ଯ୍ୟନ୍ତ ବର୍ଷତମାମ ଦୈନିକ ପୂଜା ସମେତ ବାର୍ଷିକ ଉତ୍ସବ ସମୂହ ମହାସମାରୋହରେ ଏ ଅବଧି ସମାହିତ । ଗୌରବର ବିଷୟ ଏହି ଯେ ସ୍ନାନଯାତ୍ରା, ରଥଯାତ୍ରା, ବାହୁଡ଼ାଯାତ୍ରା, ବଳରାମ ଜନ୍ମ, ଜନ୍ମାଷ୍ଟମୀ, ଅନ୍ନକୋଟ ପୁଷ୍ୟାଭିଷେକ, ହରିହର ଭେଟ, ରାସୋତ୍ସବ, ଦୋଳଯାତ୍ରା, କାଳୀପୂଜା, ନୂଆଁଖାଇ ଆଦି ପର୍ବପର୍ବାଣି ଏ ଦିବ୍ୟଧାମରେ ପାଳିତ ହୋଇ ଜଗନ୍ନାଥ ସଂସ୍କୃତିକୁ ପୁଷ୍କଳ କରିଛି । ମନ୍ଦିରର ଅନତି ଦୂରରେ କଳ୍ପବଟ ତୁଲ୍ୟ ବହୁ ଔଷଧୀୟ ଗୁଣଯୁକ୍ତ, ବାଞ୍ଛିତ ଫଳ ପ୍ରଦାନ କରି 'ଓଲଟ ବଟବୃକ୍ଷ' ବିଦ୍ୟମାନ । ଯାହାକି ବଳରାମଙ୍କ ଜନ୍ମପୀଠ ଭାବରେ ମହିମାବନ୍ତ । ପ୍ରଭୁ ବଳରାମଙ୍କ ଜନ୍ମୋତ୍ସବ ଏଠାରେ ପାଳିତ ହୋଇଥାଏ । ଝାଡ଼େଶ୍ୱର ମହାଦେବ ତଥା ଶ୍ରୀଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ଭେଟ ହୁଅନ୍ତି ଏକ ଆମ୍ରବାଟିକାରେ । ଯାହାକି ହରିହର ଭେଟ ଭାବରେ





ପ୍ରସିଦ୍ଧିଲାଭ କରିଛି । ଶୈବ, ଶାକ୍ତ ଓ ବୈଷ୍ଣବ ସଂସ୍କୃତିର ମହାମିଳନ ପୀଠ ଭାବରେ ଦେବଦୁର୍ଗ ଦେବଗଡ଼ର ଏହି ପ୍ରାଚୀନ ଶ୍ରୀଜଗନ୍ନାଥ ମନ୍ଦିର ସମଗ୍ର ବାମଣ୍ଡାରେ ସୁବିଖ୍ୟାତ ।

ଜ୍ୟେଷ୍ଠ ପୂର୍ଣ୍ଣିମା ହେଉଛି ଦେବସ୍ନାନ ପୂର୍ଣ୍ଣିମା । ଏହିଦିନ ତିନି ଠାକୁର ରତ୍ନସିଂହାସନ ତ୍ୟାଗ କରି ଓହ୍ଲାଇ ଆସନ୍ତି ସ୍ନାନବେଦୀକୁ । ସୁବର୍ଣ୍ଣ କୂପରୁ ସୁବର୍ଣ୍ଣ କଳସୀରେ ଜଳ ଆଣି ସମାପନ କରାଯାଏ ଶ୍ରୀଜୀଉଙ୍କ ସ୍ନାନଯାତ୍ରା । ଜନ୍ମ ଦିବସର ଆନନ୍ଦ ଲହରୀରେ ହଠାତ୍ ପଡ଼ିଯାଏ ଭଙ୍ଗା । ଅତ୍ୟଧିକ ସ୍ନାନ ହେତୁ ଠାକୁର ହୋଇଯାଆନ୍ତି ଅସୁସ୍ଥ । ଥଣ୍ଡା, ଶର୍ଦ୍ଦିଜନିତ ଜ୍ୱରରେ ପୀଡ଼ିତ ହୁଅନ୍ତି ତିନିଠାକୁର । ଛପନ ଭୋଗ ତାଙ୍କ ପାଇଁ ହୋଇଯାଏ ମନା । ଅଣସର ଘରେ ବିଶ୍ରାମ ନିଅନ୍ତି ଲୀଳାମୟ ଠାକୁର । ପନ୍ଦର ଦିନ ବ୍ୟାପୀ ବୈଦ୍ୟରାଜଙ୍କ ପରାମର୍ଶକ୍ରମେ ବନୌଷଧି ପ୍ରୟୋଗ କରାଯାଏ ତିନି ଠାକୁରଙ୍କଠାରେ । ଲୀଳାମୟଙ୍କର ବିଚିତ୍ର ମାନବୀୟ ଲୀଳା । ଆଷାଢ଼ ଶୁକ୍ଳ ପ୍ରତିପଦାକୁ ପୁନଶ୍ଚ ତିନି ଠାକୁର ପ୍ରାପ୍ତ ହୁଅନ୍ତି ନବଯୌବନ । ନେତ୍ରୋତ୍ସବର ମଧୁର ମୁହୂର୍ତ୍ତରେ ନବଯୌବନ ଦର୍ଶନ ଲାଭ କରି ଭକ୍ତବୃନ୍ଦ ନିଜକୁ ଧନ୍ୟ ମନେକରନ୍ତି ।

ପ୍ରଜାଙ୍କ ଶ୍ରଦ୍ଧା ଓ ବିଶ୍ୱାସକୁ ସମ୍ମାନ ଜଣାଇ ବାମଣ୍ଡାର ନରପତିବୃନ୍ଦ ସହଜଲଭ୍ୟ ଶ୍ରୀଜୀଉଙ୍କ ଦର୍ଶନ ତଥା ମାଧୁର୍ଯ୍ୟ ଲୀଳାର ମାଧୁରିମାରେ ଅବଗାହନ ନିମନ୍ତେ ତିନିଦିନ ଧରି ରଥଯାତ୍ରାର ଆୟୋଜନ କରି ସମଗ୍ର ଉତ୍କଳରେ ଏକ ବିରଳ ‘ରଥ ପରମ୍ପରା’ ସୃଷ୍ଟି କରିଛନ୍ତି ।

ପବିତ୍ର ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଅନୁଷ୍ଠିତ ହୁଏ ଇଚ୍ଛାମୟଙ୍କ ସ୍ୱେଚ୍ଛାଯାତ୍ରା । ରାଜଭୋଗ ପରିତ୍ୟାଗପୂର୍ବକ ପତିତମାନଙ୍କୁ, ପାବନ କରିବା ନିମିତ୍ତ ପତିତପାବନଙ୍କର ପତିତପାବନ ଯାତ୍ରା । ଏ ଯାତ୍ରା ଘୋଷଯାତ୍ରା । ଆଡ଼ପମଣ୍ଡପ ଯାତ୍ରା, ରଥଯାତ୍ରା ଗୁଣ୍ଡିଚା ଯାତ୍ରା ଆଦି ବହୁ ବହୁ ନାମରେ ମହିମାମଣ୍ଡିତ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ-

‘ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳାଯାର
ପତିତପାବନ ଅର୍ଥେ ପ୍ରାସାଦୁ ବାହାର ।’

ଦେବଦୁର୍ଗ ଦେବଗଡ଼ରେ ସ୍ନାନ ପୂର୍ଣ୍ଣିମାଠାରୁ ନେତ୍ରୋତ୍ସବ ପର୍ଯ୍ୟନ୍ତ ସମସ୍ତ ନୀତି ଶ୍ରୀଜଗନ୍ନାଥଙ୍କ ବିଶ୍ୱପ୍ରସିଦ୍ଧ ‘ପୁରୀ ରଥଯାତ୍ରା’ ନିୟମାନୁସାରେ ଅନୁସୃତ । କିନ୍ତୁ ରଥଯାତ୍ରାର ଏକ ବିରଳ ଏବଂ ସ୍ୱତନ୍ତ୍ର ପରମ୍ପରା ଏଠାରେ ରହିଛି । ନବଦିନ ବ୍ୟାପୀ ଅନୁଷ୍ଠିତ ହେଉଥିବା ଶ୍ରୀଗୁଣ୍ଡିଚା ଯାତ୍ରା ଏଠାରେ ଏକ ଭିନ୍ନ ଢଙ୍ଗରେ ପାଳିତ ହୋଇଥାଏ । ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ତିନିଠାକୁରଙ୍କ ଯଥାବିଧି ପୂଜାର୍ଚ୍ଚନା ହୋଇଥାଏ । ପୂଜାର୍ଚ୍ଚନା ପରେ ତିନି ଠାକୁରଙ୍କର ପହଣ୍ଡି ବିଜେ ହୁଏ । ଟାହିଆ ହଲେଇ ହଲେଇ ଭକ୍ତଙ୍କ ଗହଣରେ ରଥାରୂଢ଼ ହୁଅନ୍ତି ତିନି ଠାକୁର । ‘ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।’ ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ପୁନର୍ଜନ୍ମରୁ ମୁକ୍ତିଲାଭ ମିଳିଥାଏ ବୋଲି ଶାସ୍ତ୍ର ମତବ୍ୟକ୍ତ କରେ । ଜଗନ୍ନାଥଙ୍କର ଏହି ପାବନଲୀଳାରେ ଅବଗାହନ କରିବା ନିମିତ୍ତ ଦେବଗଡ଼ବାସୀଙ୍କ ସମେତ ସମଗ୍ର ବାମଣ୍ଡାର ବିଭିନ୍ନ ଅଞ୍ଚଳରୁ ଆସିଥିବା ଜଗନ୍ନାଥ ପ୍ରେମୀ ରଥାରୂଢ଼ ଜଗନ୍ନାଥଙ୍କର ଦର୍ଶନଲାଭପୂର୍ବକ ନିଜକୁ ଧନ୍ୟ ମନେ କରନ୍ତି । ଦ୍ୱିତୀୟା ଦିନ ଏଠାରେ ରଥଟଣା ହୁଏ ନାହିଁ । ପହଣ୍ଡି ବିଜେ ପରେ ତିନି ଠାକୁର ରଥରେ ଅବସ୍ଥାନ କରନ୍ତି । ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ଶ୍ରୀଜୀଉଙ୍କ ଦର୍ଶନର ସୁଯୋଗ ମିଳିଥାଏ । ତା’ ପରଦିନ ଅର୍ଥାତ୍ ତୃତୀୟା ତିଥିରେ ପ୍ରଭୁଙ୍କର ଆଦ୍ୟ ସେବକ ଭାବରେ ବାମଣ୍ଡା ନରେଶ ଛେରାପହଁରା କାର୍ଯ୍ୟ କରିଥାନ୍ତି । ଛେରାପହଁରା ସମାପନାନ୍ତେ ଟଣାହୁଏ ରଥ । ଭକ୍ତଙ୍କ ମେଳରେ ଘୋର ଘର୍ଘର ନାଦ କରି ଗଡ଼ି ଚାଲେ ରଥ ଚକ ବଡ଼ଦାଣ୍ଡ ଉପରେ । ପ୍ରାୟ ଅଧ କିଲୋମିଟର ବାଟ ଗଲାପରେ ରଥଟଣା ବନ୍ଦ ହୁଏ । ତା’ ପରଦିନ ଅର୍ଥାତ୍ ଚତୁର୍ଥୀ ଦିନ ଠାକୁରଙ୍କ ରଥ ଶ୍ରୀଗୁଣ୍ଡିଚା ମନ୍ଦିରରେ ଲାଗେ । ପଞ୍ଚମୀ ତିଥିରେ ଶ୍ରୀଗୁଣ୍ଡିଚା ମନ୍ଦିରକୁ ବିଜେ କରନ୍ତି ତିନି ଠାକୁର । ତିନି ଦିନ ବ୍ୟାପୀ ଶ୍ରୀଜଗନ୍ନାଥଙ୍କ ମାଧୁର୍ଯ୍ୟ ଲୀଳାରେ ନିଜକୁ ହଜାଇ ଦିଅନ୍ତି ବାମଣ୍ଡାବାସୀ । ଏଥିରୁ ବାମଣ୍ଡାବାସୀଙ୍କ ପ୍ରଭୁ ବଳିୟାର ଭୁଜଙ୍କ ନିକଟରେ ଥିବା ଅଚଳାଭକ୍ତିର ପରିଚୟ ମିଳିଥାଏ ।

ତିନିଦିନ ବ୍ୟାପୀ ଦେବଦୁର୍ଗ ଦେବଗଡ଼ରେ ଅନୁଷ୍ଠିତ ହେଉଥିବା ରଥଯାତ୍ରା ବାମଣ୍ଡା ନରେଶଙ୍କ ଏକ ଅଭିନବ ପ୍ରୟାସ । ଉଲ୍ଲେଖନୀୟ ଏହି ଯେ, ଗଡ଼ଜାତ ରାଜ୍ୟ ବାମଣ୍ଡା ଥିଲା ବଣ ପର୍ବତ ଘେରା, ଦୁର୍ଗମ ଆଦିବାସୀ ଅଧୁଷିତ ଅଞ୍ଚଳ । ଦୂରଦୁରାନ୍ତରୁ ପଦବ୍ରଜରେ ଭକ୍ତମାନେ ଶ୍ରୀଜଗନ୍ନାଥ ରଥଯାତ୍ରା ଦେଖିବା ପାଇଁ ଆସିଥାନ୍ତି । ପ୍ରଜାଙ୍କ ଶ୍ରଦ୍ଧା ଓ ବିଶ୍ୱାସକୁ ସମ୍ମାନ ଜଣାଇ ବାମଣ୍ଡାର ନରପତିବୃନ୍ଦ ସହଜଲଭ୍ୟ ଶ୍ରୀଜୀଉଙ୍କ ଦର୍ଶନ ତଥା ମାଧୁର୍ଯ୍ୟ ଲୀଳାର

ମାଧୁରିମାରେ ଅବଗାହନ ନିମନ୍ତେ ତିନିଦିନ ଧରି ରଥଯାତ୍ରାର ଆୟୋଜନ କରି ସମଗ୍ର ଉତ୍କଳରେ ଏକ ବିରଳ 'ରଥ ପରମ୍ପରା' ସୃଷ୍ଟି କରିଛନ୍ତି । ଏ ପ୍ରଥା ଏ ଅବଧି ପ୍ରଚଳିତ । ବାହୁଡ଼ା ଯାତ୍ରା ମଧ ତିନିଦିନ ମଧ ଅନୁଷ୍ଠିତ ହୋଇ ଦ୍ୱାଦଶୀ ତିଥିରେ ତିନି ଠାକୁର ମନ୍ଦିରକୁ ବିଜେ କରିଥାନ୍ତି । ମନ୍ଦିର ପ୍ରବେଶ ସମୟରେ ଲକ୍ଷ୍ମୀ, ଜଗନ୍ନାଥଙ୍କର ବଚନିକା ବେଶ୍ ଉପଭୋଗ୍ୟ ହୋଇଥାଏ ।

ଶ୍ରୀଜୀଉଙ୍କ ଦୈନିକ ତଥା ବାର୍ଷିକ ନୀତି ପାଇଁ ପୂଜକ ତଥା ସେବାୟତ ନିୟୋଜିତ ଅଛନ୍ତି । ପୂଜକ ତଥା ସେବାୟତମାନଙ୍କ ପ୍ରତିପୋଷଣ ନିମନ୍ତେ ନିଷ୍କର ଜମି ରାଜାଙ୍କଦ୍ୱାରା ପ୍ରଦତ୍ତ ହୋଇଛି । ଏତଦ୍‌ବ୍ୟତୀତ ପାରିଶ୍ରମିକ କିଛି ପ୍ରଦାନ କରାଯାଉଛି । ରାଜପୃଷ୍ଠପୋଷକତାରେ ବର୍ତ୍ତମାନ ସୁଦ୍ଧା ମନ୍ଦିର ପରିଚାଳିତ । ଠାକୁରଙ୍କ ନାମରେ ବହୁ ଜମିବାଡ଼ି ଅଛି । ପରିତାପର ବିଷୟ ସେ ସମସ୍ତ ସମ୍ପତ୍ତିରୁ ପ୍ରାପ୍ତ ଅର୍ଥ ଠିକ୍ ଭାବରେ ମନ୍ଦିରକୁ ଆସିପାରୁନାହିଁ । ବହୁ ଘାତପ୍ରତିଘାତ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ଦୈନିକ ଭୋଗ ତଥା ବାର୍ଷିକ ପର୍ବପର୍ବାଣି ପାଳିତ ହେଉଛି । ମନ୍ଦିର ବେଢ଼ାର ଅଧିକାଂଶ ମନ୍ଦିର ବିଧ୍ୱସ୍ତ ପ୍ରାୟ । ଦକ୍ଷିଣ ଏବଂ ପଶ୍ଚିମ ପାଚେରୀ ସଂପୂର୍ଣ୍ଣ ଧ୍ୱଂସ । ସଂକ୍ଷେପରେ କହିଲେ ଦେବଦୁର୍ଗ ଦେବଗଡ଼ର ସର୍ବପ୍ରାଚୀନ ଜଗନ୍ନାଥ ପୀଠ ଆଜି ଅବକ୍ଷୟମୁଖୀ । ଦେବୋତ୍ତର ବିଭାଗ, ପ୍ରଶାସନ ତଥା ବାମଣ୍ଡାର ଜନସାଧାରଣ ପୁରାଣାଗଡ଼ସ୍ଥିତ ଶ୍ରୀଜଗନ୍ନାଥ ମନ୍ଦିରର ସୁରକ୍ଷା ତଥା ଉନ୍ନତି ନିମିତ୍ତ ଯତ୍ନବାନ ହେଲେ ଏ ମାଟିର ଗୌରବୋଜ୍ଜ୍ୱଳ ପରମ୍ପରାର ସୁରକ୍ଷା କରାଯାଇପାରିବ ।

ଚେତନା କୁଟୀର
ଗ୍ରାମ- ଚନ୍ଦନଖୁଣ୍ଟି, ପୋ.ଅ.- ବିଜୟ ନଗର
ଦେବଗଡ଼-୭୬୮୧୦୮

---

# ଉଦ୍ଧରିବ

ଚନ୍ଦ୍ରଶେଖର ପଣ୍ଡା

ସରୋଜ ନୟନ ବରଜ ଶେଜ
ପାହିଲା ନିଶି,
ଆଜି ପରା ଘୋଷ ଯାତରା
ଚାହିଁଥିବେ ମାଉସୀ ।
ଅଗ୍ରପୂଜ୍ୟ ଚଣ୍ଡୀସୁତ ଯେ
କାଶ୍ୟପେୟ କୁବେର,
କୁମୁଦପତିଙ୍କ ସଙ୍ଗତେ
ପ୍ରଭୁ ଚନ୍ଦ୍ରଶେଖର ।
କୁଶପାଣି ଅଗ୍ନି କୁମାର
ସଙ୍ଗେ କରୀନ୍ଦ୍ରପତି,
ଦରଶନ ପାଇଁ ଅନାଇ
ଗାଉଥିବେ ସେ ସ୍ତୁତି ।
କୁମ୍ଭସୁତ ଭରଦ୍ୱାଜ ଯେ
ଗଉତମ କୌଶିକ,
ବ୍ୟାସ ମେଳେ ସ୍ତୁତି ଗାଇଣ
ହେଉଥିବେ ଉତ୍ସୁକ ।
ଛତିଶ ନିଯୋଗ ସେବାକୁ
ଉଭା ହେଲେଣି ଆସି,
କୁନ୍ଦନ ପର୍ଯ୍ୟଙ୍କ ତଳପ
ତେଜ ହେ ବ୍ରହ୍ମରାଶି ।
ତାଳଧ୍ୱଜ ନନ୍ଦିଘୋଷ ଯେ
ପୁଣି ଦେବଦଳନ,





ସିଂହଦ୍ୱାରେ ଉଭା ହେଲେଣି
ଘେନି ଯିବେ ବହନ ।
ଅହିକୁଳ ହୋଇ ମେଳ ଯେ
ରଥ ପାରୁଶେ ରହି,
ଧନ୍ୟ ହେବେ ରଥ ଟାଣିବେ
ବୋଲି ଅଛନ୍ତି ଚାହିଁ ।
ଘଣ୍ଟା ପିଟି ଅଣ୍ଟା ହଲାଇ
ନାଚୁଥିବେ ଘଣ୍ଟୁଆ,
ନାଚି ତାଙ୍କ ସଙ୍ଗେ ହଲାଇ
ଆସ ବାଙ୍କ ଟାହିଆ ।
ତୁମ ସଙ୍ଗେ ଗେହ୍ଲା ଭଉଣୀ
ଅଗ୍ରଜ ହଳପାଣି,
ଦେଖି ମନୋରଥ ପୂରିବ
ତୁମ ବାଙ୍କ ଚାହାଁଣୀ ।
ଲଗାଇଣ ଡୋରି ପ୍ରଭୁହେ
ଆଣୁଥିବ ଶ୍ରୀକ୍ଷେତ୍ର,
ଦେଖି ଏ ପବିତ୍ର ଯାତରା
ଧନ୍ୟ କରିବି ନେତ୍ର ।
କର ଯୋଡ଼ି ମାଗୁଥିବି ମୁଁ
ପ୍ରଭୁ ସାରଙ୍ଗଧର,
ଉଦ୍ଧରିଣ ମୋତେ ଧରିବ
ଶେଷ ବେଳକୁ ମୋର ।

୨ଆର୍.ବି.-୪୨, ରୋଡ଼ ନଂ-୬
ୟୁନିଟ୍-୯, ଭୁବନେଶ୍ୱର

# ଭଦ୍ରକରେ ଶ୍ରୀଜଗନ୍ନାଥ ଓ ରଥଯାତ୍ରା

ନନ୍ଦ ମହାନ୍ତି

**ଦ**କ୍ଷିଣରେ ପୂଣ୍ୟତୋୟ ବୈତରଣୀ, ଉତ୍ତରରେ କାଂଶବାଂଶ ନଦୀ, ପୂର୍ବରେ ବଙ୍ଗୋପସାଗର ଏବଂ ପଶ୍ଚିମରେ ସବୁଜ ବନାନୀ ଘେରା କେଉଁଝର ଜିଲ୍ଲାର ସୀମାନ୍ତବର୍ତ୍ତୀ ବଣ, ପାହାଡ଼ । ଏହି ପରିସୀମା ମଧ୍ୟରେ ପରିବ୍ୟାପ୍ତ ଭଦ୍ରକ । ପୂର୍ବରୁ ବାଲେଶ୍ୱର ଜିଲ୍ଲାର ଏକ ସବ୍‌ଡିଭିଜନ ଥିଲା । କେତେ ବର୍ଷ ତଳେ ଜିଲ୍ଲାର ମାନ୍ୟତା ପାଇଛି । ଓଡ଼ିଶାର ଐତିହାସିକ ଏବଂ ଭୌଗୋଳିକ ମାନଚିତ୍ରରେ ମୋଗଲ ଶାସନକାଳରୁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳ । ବାଦ୍‌ଶାହା ଆକବରଙ୍କ ଶାସନାଧୀନ ଓଡ଼ିଶା ଯେଉଁ ପାଞ୍ଚୋଟି ସୁବାରେ ବିଭକ୍ତ ହୋଇଥିଲା, ତନ୍ମଧ୍ୟରୁ ଭଦ୍ରକ ଅନ୍ୟତମ ଥିଲା । ଅନ୍ୟ ଚାରିଗୋଟି ସୁବା ହେଲେ- ଜଳେଶ୍ୱର, କଟକ, ଶିକାକୋଲ ଓ ରାଜମହେନ୍ଦ୍ରୀ ।(୧)

ଭଦ୍ରକର ଅଧିଷ୍ଠାତ୍ରୀ ଦେବୀ ଭଦ୍ରକାଳୀଙ୍କ ନାମରୁ ଭଦ୍ରକର ନାମକରଣକୁ ଅନେକେ ସ୍ୱୀକାର କରନ୍ତି । ଉତ୍କଳୀୟ ଉଦାର ଭାବର ପ୍ରତୀକ ଭାବରେ ଏହାର ନାମ ଭଦ୍ରକ ବୋଲି ବୁଦ୍ଧିଜୀବୀମାନେ କହନ୍ତି । ପୁନଶ୍ଚ ଖ୍ରୀ:୧୬୦୦ରେ ଆବୁଲ୍ ଫାଜଲଙ୍କ 'ଆଇନ୍-ଇ-ଆକବର' ଅନୁସାରେ - 'Bhadrak, as it should be written with final kh; it should be said to be from Balabhadrakhetra, the field or tract sacred to Balabhadra.'(୨)

ତେବେ ଭଦ୍ରକାଳୀଙ୍କ ନାମାନୁସାରେ ଭଦ୍ରକର ବ୍ୟୁତ୍ପତ୍ତିଗତ ତଥ୍ୟ ବହୁଳ ଭାବରେ ଗୃହୀତ, ବର୍ତ୍ତମାନର ଆହାରପଦାସ୍ଥ ଭଦ୍ରକାଳୀ ମନ୍ଦିର ଷୋଡ଼ଶ ଶତାବ୍ଦୀର ହେଲେ ମଧ୍ୟ, ଭଦ୍ରକାଳୀଙ୍କ ପ୍ରତିମୂର୍ତ୍ତି ଖ୍ରୀ:ପୂ: ଦ୍ୱିତୀୟ ଶତାବ୍ଦୀର ବୋଲି ପ୍ରତ୍ନତାତ୍ତ୍ୱିକମାନେ ମତ ଦିଅନ୍ତି ।(୩)

କଥିତ ଅଛି, ଭଦ୍ରକାଳୀ ପ୍ରଥମେ ଘଞ୍ଚଶାଳ ଜଙ୍ଗଲ ପରିବେଷ୍ଟିତ ମେଘାସନ ପାହାଡ଼ (ମୟୂରଭଞ୍ଜ)ରେ ନିଭୃତ ଭାବରେ ତାପସ ମୁନିଙ୍କଦ୍ୱାରା ପୂଜା ପାଉଥିଲେ । ମାଆଙ୍କ ସ୍ତନରୁ କ୍ଷରିତ ଅମୃତଧାରାରୁ ସ୍ୱଚ୍ଛସଲିଳା ଶାଳନ୍ଦୀ ନଦୀର ସୃଷ୍ଟି ହେଲା- ତେଣୁ ଏହାର ଅନ୍ୟନାମ ମେଘାସନୀ । ଏହି ଅମୃତଧାରା ପାନ କରି ତାପସ ମୁନି ଭଦ୍ରକାଳୀଙ୍କ ଶ୍ରୀଅଙ୍ଗରେ ଲୀନ ହୋଇଗଲେ । ଏହା ଉତ୍ତାରୁ ତାଙ୍କର ପ୍ରିୟ ଶିଷ୍ୟ ମା'ଙ୍କର ସେବାପୂଜା କଲେ । ତେବେ ମାଆଙ୍କର ଆଦେଶରେ ସେ ତାଙ୍କୁ ଶାଳନ୍ଦୀର ଜଳଧାରା ମାଧ୍ୟମରେ କୁପାରୀ ପର୍ଯ୍ୟନ୍ତ ଆଣି ସେଠାରେ ସ୍ଥାପନ କଲେ । ତାପସ ମୁନିଙ୍କର ଏହି ପ୍ରିୟ ଶିଷ୍ୟଙ୍କର ନାମ ଭଦ୍ରନାଥ । (ତେଣୁ ତାଙ୍କ ନାମ ଅନୁସାରେ ଭଦ୍ରକ ଶବ୍ଦର ବ୍ୟୁତ୍ପତ୍ତି କଥା ମଧ୍ୟ ଜନଶ୍ରୁତିରୁ ଶୁଣାଯାଏ ।(୪)

ଷୋଡ଼ଶ ଶତାବ୍ଦୀରେ ମୁସଲ୍‌ମାନ ଆକ୍ରମଣ ପରେ ମାଆଙ୍କୁ ଆହାରପଦା ସ୍ଥାନାନ୍ତରିତ କରାଯାଇଛି । ତତ୍‌କାଳୀନ ଭୂୟାଁ ଜମିଦାରଙ୍କଦ୍ୱାରା ସେଠାରେ ମନ୍ଦିର ତୋଳାଇ ମାଆଙ୍କୁ ସ୍ଥାପନ କରାଯାଇଅଛି ।

ଉପରୋକ୍ତ ଆଲୋଚନାରୁ ଏହା ସହଜରେ କୁହାଯାଇପାରେ ଯେ ଭଦ୍ରକ ଏକ ପ୍ରାଚୀନ ଦେବୀପୀଠ ବା ଶାକ୍ତ ପୀଠର ମାନ୍ୟତା ପାଇଛି । ସ୍କନ୍ଦ ପୁରାଣରୁ ଆରମ୍ଭ କରି ଦେବୀ ଭାଗବତ ପର୍ଯ୍ୟନ୍ତ ନାନାବିଧ ପୁରାଣମାନଙ୍କରେ ଭଦ୍ରକାଳୀଙ୍କ ବନ୍ଦନା ଦେଖିବାକୁ ମିଳେ । ଭଦ୍ରକାଳୀଙ୍କ ନିକଟରୁ ପ୍ରାପ୍ତ ଶିଳାଲେଖ ତୃତୀୟ-ଚତୁର୍ଥ ଶତାବ୍ଦୀର ଓ ଏହା ଗୁପ୍ତକାଳୀନ ଅକ୍ଷର ସମ୍ବଳିତ ।(୫)

ପୁନଶ୍ଚ ଭଦ୍ରକର ଦକ୍ଷିଣପାର୍ଶ୍ୱକୁ ଶାଳନ୍ଦୀ ଓ ବୈତରଣୀ ନଦୀଦ୍ୱୟର ସଙ୍ଗମସ୍ଥଳ ନିକଟସ୍ଥ ଆରଡ଼ି ଗ୍ରାମରେ ବାବା ଆଖଣ୍ଡଳମଣି ଶୈବକ୍ଷେତ୍ର ଅବସ୍ଥିତ । ଏହା ମଧ୍ୟ ଷୋଡ଼ଶ ଶତାବ୍ଦୀର ଏକ କୀର୍ତ୍ତି ଓ ଓଡ଼ିଶାର ଏକ ପ୍ରମୁଖ ଶୈବକ୍ଷେତ୍ରର ମାନ୍ୟତା ପାଇ ଆସୁଛି । ତେଣୁ ନିଃସନ୍ଦେହରେ ଭଦ୍ରକ ଶୈବ ଓ ଶାକ୍ତମାନଙ୍କର ଏକ ମିଳନ କ୍ଷେତ୍ର ବୋଲି କୁହାଯାଇପାରେ ।

ତେବେ ଆଇନ-ଇ-ଆକବରୀରେ ଉଦ୍‌ଥାପିତ ଶ୍ରୀଶ୍ରୀବଳଭଦ୍ରଙ୍କ ପ୍ରସଙ୍ଗକୁ ମଧ୍ୟ ଏଡ଼ାଇ ଦିଆଯାଇନପାରେ । ବାସୁଦେବପୁର ଅଞ୍ଚଳର ଗୁଭଡ୍ଡୁଠାରେ ଶ୍ରୀବଳଭଦ୍ର ଜୀଉ ଏବଂ ନେଉଣ୍ଡିଆ ସାହିର ଶ୍ରୀପ୍ରସନ୍ନ ଦେବ ଚାରିଶହ ବର୍ଷରୁ ଊର୍ଦ୍ଧ୍ୱକାଳ ପୂଜା ପାଇଆସୁଛନ୍ତି ।





ପଞ୍ଚଦଶ ଶତାବ୍ଦୀରେ ଶ୍ରୀଚୈତନ୍ୟଙ୍କର ଭଦ୍ରକକୁ ଆଗମନ ହୋଇଥିଲା । ସେ ନିକଟସ୍ଥ ସଛିଆ ଗ୍ରାମର ମଦନମୋହନ ମନ୍ଦିରରେ ଅବସ୍ଥାନ କରିଥିଲେ ଓ ପାଞ୍ଚଦିନ ରହିଥିଲେ ବୋଲି ଶୁଣାଯାଏ । ସେଠାରେ ସେ ଛାଡ଼ି ଯାଇଥିବା ବସ୍ତ୍ର (କନ୍ଥା) ଆଜି ମଧ ତାଙ୍କ ଆଗମନର ସ୍ମୃତି ସ୍ୱରୂପ ପୂଜା ପାଉଛି ଓ ଆଗମନ ଦିବସର ସ୍ମାରକୀ ରୂପେ ପବିତ୍ର ହେରାପଞ୍ଚମୀ ଦିନ ଉତ୍ସବ ପାଳିତ ହେଉଛି ।

ଶ୍ରୀଚୈତନ୍ୟଙ୍କର ଆବିର୍ଭାବ ପରେ ବସ୍ତୁତଃ ଭଦ୍ରକ ଅଞ୍ଚଳରେ ବୈଷ୍ଣବୀୟ ଚେତନାର ଏକ ବୈପ୍ଳବିକ ଜାଗରଣ ସୃଷ୍ଟି ହୋଇଥିଲା । ନବଦ୍ୱୀପରୁ ନୈଷ୍ଠିକ ବୈଷ୍ଣବମାନେ ଆସି ସଛିଆର ମଦନମୋହନ ମନ୍ଦିରକୁ କେନ୍ଦ୍ରକରି ଭଦ୍ରକର ବିଭିନ୍ନ ଅଞ୍ଚଳରେ ଜନସାଧାରଣଙ୍କୁ ବୈଷ୍ଣବ ମନ୍ତ୍ର ପ୍ରଦାନ କରିବା ସହିତ ଅନେକ ମନ୍ଦିର ଓ ମଠ ପ୍ରତିଷ୍ଠା କରିବାରେ ସହାୟକ ହୋଇଛନ୍ତି । ଏହି ମନ୍ଦିରଗୁଡ଼ିକ ପ୍ରଧାନତଃ ବିଭିନ୍ନ ନାମର ରାଧାକୃଷ୍ଣଙ୍କ ମନ୍ଦିର କିମ୍ବା ଜଗନ୍ନାଥ ମନ୍ଦିର । ଜଗନ୍ନାଥ ମନ୍ଦିରଗୁଡ଼ିକ ମଧ୍ୟରୁ ଅନେକତ୍ର ଚତୁର୍ଦ୍ଧା ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିବାବେଳେ କେତେକ ସ୍ଥାନରେ କେବଳ ମହାପ୍ରଭୁ ଶ୍ରୀଜଗନ୍ନାଥ ଅଥବା ଶ୍ରୀଶ୍ରୀବଳଭଦ୍ର ଦେବ ପୂଜିତ ହୁଅନ୍ତି ।

ଶାକ୍ତ ଓ ଶୈବ ପରମ୍ପରାରେ ପୁଷ୍ଟ ଏହି ଅଞ୍ଚଳରେ ଷୋଡ଼ଶ ଶତାବ୍ଦୀ ବେଳକୁ କେବଳ ଯେ ଶ୍ରୀଜଗନ୍ନାଥଙ୍କ ପ୍ରତି ଅଚଳା ଭକ୍ତି ଦେଖା ଦେଇଥିଲା ତାହା ନୁହେଁ, ଶ୍ରୀଜଗନ୍ନାଥଙ୍କ ଭକ୍ତ ଓ ଦର୍ଶନାଭିଳାଷିମାନଙ୍କ ପ୍ରତି ମଧ ଗଭୀର ଶ୍ରଦ୍ଧା ପ୍ରକଟିତ ହୋଇଥିଲା । ଏହି ଉକ୍ତିର ପ୍ରମାଣ ସ୍ୱରୂପ ୧୮୦୩ ଖ୍ରୀଷ୍ଟାବ୍ଦରେ କଲିକତାରୁ ବ୍ରିଟଶ୍ ସରକାରଙ୍କ ଦ୍ୱାରା ପ୍ରକାଶିତ ନିମ୍ନୋକ୍ତ ଉକ୍ତିଟି ପ୍ରଣିଧାନଯୋଗ୍ୟ-

'Dhamnagar is the abbreviation of Dharma Nagar. In the time of Hindu Princess, it was noted for a monestry which was under the management of an ascetic who used to distribute alms and food to the piligrims of Jagannath via Jajpur...'(୬)

ଅର୍ଥାତ୍ 'ଧର୍ମନଗର'ରୁ ଅପଭ୍ରଂଶ ହୋଇଥିବା ଧାମନଗରରେ ହିନ୍ଦୁମାନଙ୍କ ରାଜତ୍ୱ କାଳରେ ଏକ ମଠ ଥିଲା ଏବଂ ଏହାର ମଠାଧୀଶଙ୍କ ତରଫରୁ ଯାଜପୁର ବାଟ ଦେଇ ଯାଉଥିବା ଶ୍ରୀଜଗନ୍ନାଥ ତୀଥଯାତ୍ରୀମାନଙ୍କୁ ଖାଦ୍ୟ ଯୋଗାଇ ଦେବାର ବ୍ୟବସ୍ଥା ଥିଲା ।

**ଏହି ଧାମନଗର ନିକଟବର୍ତ୍ତୀ ଗୋହିରାଟିକିରୀ ଓଡ଼ିଶା ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ । ଏହା ଏକ ବିସ୍ତୀର୍ଣ୍ଣ ପାଟ ବା ଗୋହିରୀ । ଏହିଠାରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ସହିତ ୧୫୬୮ ଖ୍ରୀଷ୍ଟାବ୍ଦରେ କଳାପାହାଡ଼ର ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧ ସମୟରେ ଗୃହଭେଦୀ ରାମଚନ୍ଦ୍ର ଭଞ୍ଜଙ୍କ ପଶ୍ଚାତ୍ ଆକ୍ରମଣ ଯୋଗୁଁ ମୁକୁନ୍ଦଦେବ ନିହତ ହେଲେ । ଓଡ଼ିଶାରୁ ସ୍ୱାଧୀନତାର ସୂର୍ଯ୍ୟ ଅସ୍ତମିତ ହେଲେ ।**

ଏହି ଯୁଦ୍ଧର ପରିଣାମ ଯାହା ହେଉନା କାହିଁକି, ଏହି ଯୁଦ୍ଧରେ ଭଦ୍ରକର ଅଧିଷ୍ଠାତ୍ରୀ ଦେବୀ ଭଦ୍ରକାଳୀଙ୍କ ପୀଠରେ ଶାକ୍ତ ଓ ବୈଷ୍ଣବୀୟ ଚେତନାର ଅପୂର୍ବ ମିଳନ ଘଟିଛି । କିମ୍ବଦନ୍ତୀ ଅନୁସାରେ ମୁକୁନ୍ଦ ଦେବ ଯୁଦ୍ଧକୁ ବାହାରିବା ବେଳେ ଶ୍ରୀଜଗନ୍ନାଥଙ୍କର ତିନିମୂର୍ତ୍ତି (ଜଗନ୍ନାଥ-ବଳଭଦ୍ର-ସୁଭଦ୍ରା)ଙ୍କର ଚଳନ୍ତି ପ୍ରତିମା ନେଇ ଆସିଥିଲେ । ଯୁଦ୍ଧ ପରେ ଏହି ବିଗ୍ରହମାନଙ୍କୁ ଉଦ୍ଧାର କରାଯାଇ ଓ ମାଜଣା କରି 'ଭଦ୍ରକାଳୀ'ଙ୍କ ମନ୍ଦିର ପ୍ରତିଷ୍ଠା କରାଯାଇଛି । ଅଦ୍ୟାବଧି ଏକ ସ୍ୱତନ୍ତ୍ର ମନ୍ଦିରରେ ଭଦ୍ରକାଳୀଙ୍କ ବେଢ଼ା ଭିତରେ ଜୀଉମାନେ ପାର୍ଶ୍ୱଦେବତା ରୂପେ ଯଥାବିଧି ପୂଜା ପାଉଛନ୍ତି ଓ ରଥଯାତ୍ରା ଅନୁଷ୍ଠିତ ହେଉଛି । ତେବେ ରଥଯାତ୍ରା ଜମିଦାରଙ୍କ ଅମଳରେ ଯେପରି ଆଡ଼ମ୍ବରରେ ହେଉଥିଲା, ଦେବୋତ୍ତର ବିଭାଗ ମନ୍ଦିର ଦାୟିତ୍ୱ ନେବାପରେ ଆଉ ସେପରି ଜାକଜମକ ହେଉନାହିଁ ।

ଭଦ୍ରକର ଅଧିଷ୍ଠାତ୍ରୀ ଯେଉଁ 'ଭଦ୍ରକାଳୀ'ଙ୍କ ପ୍ରସଙ୍ଗରୁ ଏହି ଆଲୋଚନା ଆରମ୍ଭ କରାଯାଇଥିଲା, ତାଙ୍କ କ୍ଷେତ୍ରରେ ପାର୍ଶ୍ୱଦେବତା ରୂପେ ଶ୍ରୀଜଗନ୍ନାଥଙ୍କ ଅବସ୍ଥାନ ଆଧାତ୍ମିକ ଦୃଷ୍ଟିକୋଣରୁ କମ୍ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ ।

ଏହି ମନ୍ଦିର ବ୍ୟତୀତ ଭଦ୍ରକର ବିଭିନ୍ନ ଜନବସତିରେ ଅବସ୍ଥିତ କିଛି ପ୍ରମୁଖ ଜଗନ୍ନାଥ ମନ୍ଦିର ଓ ରଥଯାତ୍ରାର ଏକ ସଂକ୍ଷିପ୍ତ ରୂପରେଖ ନିମ୍ନରେ ପ୍ରଦାନ କରାଗଲା ।

**ଗୁଭଡ୍ଡୁ (ବାସୁଦେବପୁର)ର ଶ୍ରୀବଳଭଦ୍ରଙ୍କ ମନ୍ଦିର ପ୍ରାୟ ପାଞ୍ଚଶହ ବର୍ଷର ପୁରୁଣା କୀର୍ତ୍ତି ।** ଆରମ୍ଭରୁ ଏକ ମାଟି ଘରେ ପୂଜା ପାଉଥିଲେ । କାହାଦ୍ୱାରା ଏବଂ ଠିକ୍ କେଉଁ ସମୟରେ ଅଧିଷ୍ଠିତ ହୋଇଥିଲେ ତାହା ଗବେଷଣା ସାପେକ୍ଷ । ୧୮୬୮ ମସିହାରେ ଜୀଉଙ୍କୁ ପକ୍କା ମନ୍ଦିରରେ ସ୍ଥାପନ କରାଗଲା, ଜୀର୍ଣ୍ଣ ମନ୍ଦିରଟିକୁ ପୁନଶ୍ଚ ୧୯୬୮ ମସିହାରେ ପୁନଃ ନିର୍ମାଣ କରାଯାଇଛି । କେବଳ ଶ୍ରୀବଳଭଦ୍ର ଜୀଉ ପୂଜିତ ହୁଅନ୍ତି । ପୁରୀ ଠାକୁର ରାଜା ଏହାଙ୍କ ସନ୍ଦର୍ଶନରେ ବିହ୍ୱଳିତ ହୋଇ କହିଥିଲେ - ଏହି ବିଗ୍ରହ ମଧ୍ୟରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା' ସୁଭଦ୍ରା ଏହି ତିନିଠାକୁରଙ୍କ ପ୍ରତୀକ ଅତି କଳାତ୍ମକ ଭାବରେ ସ୍ଥାନ ପାଇଛି । ପୁରୀ ଓ କେନ୍ଦ୍ରାପଡ଼ାର ଶ୍ରୀବଳଦେବ ଜୀଉଙ୍କ ବିଗ୍ରହଠାରୁ ଏହି ବିଗ୍ରହର ସ୍ୱାତନ୍ତ୍ର୍ୟ ବାରି ହୋଇପଡ଼େ । ଶ୍ରୀକ୍ଷେତ୍ର ନିୟମାନୁସାରେ ଏଠାକାର ଦୈନନ୍ଦିନ ସେବାପୂଜା ସହିତ ସମସ୍ତ ଯାନିଯାତ୍ରା ପାଳନ





କରାଯାଏ । ରଥଯାତ୍ରା ମୁଖ୍ୟପର୍ବ, ବାର ବର୍ଷରେ ଥରେ ନବକଳେବର ବି ହୁଏ ।

ଭଦ୍ରକର ଅନ୍ୟତମ ପ୍ରସିଦ୍ଧ ବଳଦେବ ଜୀଉ ମନ୍ଦିର ହେଉଛି, ଶ୍ରୀଶ୍ରୀପ୍ରସନ୍ନ ଦେବଙ୍କ ମନ୍ଦିର, ନେଉଣ୍ଡିଆ ସାହି, ବାସୁଦେବପୁର । ପନ୍ଦରଶହ ବର୍ଷରୁ ଅଧିକ ପୁରୁଣା ଏହି ମନ୍ଦିର ତତ୍କାଳୀନ ଜମିଦାର ଶ୍ରୀ ବିଧୁଭୂଷଣ ଚୌଧୁରୀଙ୍କଦ୍ୱାରା ନିର୍ମିତ ହୋଇଥିଲା । ଷୋହଳଟି ଚକ ଉପରେ ଅବସ୍ଥିତ ଏହି ମନ୍ଦିରର କାରୁକାର୍ଯ୍ୟ ଅତି ଉଚ୍ଚକୋଟୀର । କିଛିବର୍ଷ ତଳେ ପ୍ରତ୍ନତତ୍ତ୍ୱ ବିଭାଗ ମନ୍ଦିର ମରାମତି କରାଇଛନ୍ତି । ମନ୍ଦିରର ପରିଚାଳନା ଓ ନୀତି ପାଳନ ପାଇଁ ଜମି ଖଞ୍ଜା ଯାଇଅଛି । ପୁରୀ ଢାଞ୍ଚାରେ ରଥଯାତ୍ରା ସହ ସମସ୍ତ ପର୍ବପର୍ବାଣି ବେଶ୍ ଉତ୍ସାହର ସହ ପାଳନ କରାଯାଏ ।

ଓଡ଼ିଶାର ଜାଲିଓ୍ୱାନାଓ୍ୱାଲାବାଗ ରୂପେ ପରିଚିତ ରକ୍ତତୀର୍ଥ ଇରମରେ ମଧ୍ୟ ଏକ ବହୁ ପ୍ରାଚୀନ ମନ୍ଦିର ଅଛି । ମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତି ବିରାଜିତ । ଜଗନ୍ନାଥଙ୍କର ସମସ୍ତ ଯାନିଯାତ୍ରା ସହିତ ରଥଯାତ୍ରା ମଧ୍ୟ ସମାରୋହରେ ପାଳିତ ହୁଏ ଏବଂ ରଥଯାତ୍ରାରେ ବହୁ ଯାତ୍ରୀଙ୍କର ସମାଗମ ହୁଏ ।

ଶ୍ରୀଦଧିବାମନ ଜୀଉଙ୍କ ମନ୍ଦିର ମୁକୁନ୍ଦପୁର ଡିହିଡ଼ିରେ ଅବସ୍ଥିତ । ସେଠାରେ ଦୋଳ ମେଳଣ ନିମନ୍ତେ କାଳିମେଘା ପ୍ରସିଦ୍ଧ । ଏହି ମେଳଣକୁ ବହୁ ଦୂରଦୂରାନ୍ତରୁ ଶତାଧିକ ବିମାନ ଆସି ଏକତ୍ର ହୁଅନ୍ତି ଓ ଏଠାରେ ଏକ ବିରାଟ ମେଳନ ଦୋଳ ସମୟରେ ହୁଏ । ତାଳପଦାର ଶ୍ରୀଗୋପୀନାଥ ଜୀଉ (କାନ୍ତକବିଙ୍କ ପରିବାରର ଦେବତା) କାଳିମେଘା ମେଳନ ସ୍ଥଳର ବଡିମରା ପଦାରେ ଯାଇ ବସିଲେ ପ୍ରସିଦ୍ଧ କାଳିମେଘା ମେଳନାର ଶୁଭାରମ୍ଭ ହୋଇଥାଏ । ଜମିଦାର ଚୌଧୁରୀ ଅଭିମନ୍ୟୁ ମହାପାତ୍ର ବୁଢ଼ାନଈରେ ବସି ଯାଉଥିବା ଦଧିବାମନଙ୍କ (ଜଗନ୍ନାଥ) ବିଗ୍ରହକୁ ଉଦ୍ଧାର କରି ଏକ କାଷ୍ଠ ନିର୍ମିତ ମନ୍ଦିରରେ ସ୍ଥାପନ କରିଥିଲେ । ପରେ ଦଧିବାମନଙ୍କ ପାଇଁ ମନ୍ଦିର ତିଆରି ହେଲା । ଏହି ଦଧିବାମନଙ୍କର ବିଶେଷତ୍ୱ ହେଲା, ଦୋଳମେଳଣକୁ ଆସୁଥିବା ସମସ୍ତ ବିମାନ ପ୍ରଥମେ ଏହି ମନ୍ଦିରକୁ ସାତଥର ପ୍ରଦକ୍ଷିଣ କରି ମେଳଣରେ ଯୋଗଦେବାର ଅନୁମତି ଲୋଡ଼ନ୍ତି ଓ ପୁନଶ୍ଚ ମେଳଣ ପରେ ଆଉ ସାତଥର ପ୍ରଦକ୍ଷିଣ କରି ବିଦାୟ ମାଗନ୍ତି । ସ୍ଥାନୀୟ ଅଞ୍ଚଳରେ ଦଧିବାମନଙ୍କୁ ଅତି ପ୍ରତ୍ୟକ୍ଷ ବୋଲି ସମସ୍ତେ ମାନନ୍ତି । ରଥଯାତ୍ରା ବେଶ୍ ଧୁମ୍‌ଧାମ୍‌ରେ ପାଳିତ ହୁଏ । ତା'ଛଡ଼ା ଅନ୍ୟାନ୍ୟ ଯାନିଯାତ୍ରା ମଧ୍ୟ ବିଧି ମୁତାବକ ଅନୁଷ୍ଠିତ ହୁଏ ।

ଅନ୍ୟ ଏକ ଜଗନ୍ନାଥ କ୍ଷେତ୍ର ହେଉଛି, ଶ୍ରୀଜଗନ୍ନାଥ ମଠ, ଜଗନ୍ନାଥପୁର, ପଢୁଆଁ । ଏଠାରେ ମଧ୍ୟ କେବଳ ଶ୍ରୀଜଗନ୍ନାଥ ବିରାଜିତ । ଏହି ମନ୍ଦିର ପ୍ରାୟ ୨୫୦ ବର୍ଷ ତଳେ ନିର୍ମିତ ବୋଲି ଲୋକମୁଖରୁ ଶୁଣାଯାଏ ।

ବାସୁଦେବପୁରର ରସିକରାଜ ମନ୍ଦିର ମଧ୍ୟ ଅତି ପୁରାତନ । **ଦଧିବାମନ (ଜଗନ୍ନାଥ)ଙ୍କୁ ଏଠାରେ ରସିକରାଜ ରୂପେ ପୂଜା କରାଯାଏ, ସମସ୍ତ ଯାନିଯାତ୍ରା ପାଳନ କରାଯାଏ । ରଥଯାତ୍ରା ଦିନ ବିଶେଷ ପୂଜାର ବ୍ୟବସ୍ଥା କରାଯାଏ, କିନ୍ତୁ ରଥ ହୁଏ ନାହିଁ ।**

ବାସୁଦେବପୁର ନିକଟସ୍ଥ ବଂଶୀପାଟଣା ଭୈରବପୁରରେ ଅବସ୍ଥିତ କଳ୍ପତରୁ ସେବାଶ୍ରମରେ ତ୍ରିମୂର୍ତ୍ତି ସ୍ଥାପିତ ହୋଇ କାହିଁ କେଉଁ କାଳରୁ ପୂଜା ପାଉଛନ୍ତି । ସେବାଶ୍ରମ ତରଫରୁ ଅତି ନିଷ୍ଠାର ସହିତ ଦିଅଁଙ୍କ ନୀତିନିୟମ ଓ ପୂଜାପାର୍ବଣ ପାଳନ କରାଯାଏ । କିନ୍ତୁ ରଥ ହୁଏ ନାହିଁ । ସେଦିନ କେବଳ ବିଶେଷ ପୂଜା, ହୋମ କରାଯାଏ ।

ଆରଡ଼ି କ୍ଷେତ୍ରକୁ ରାସ୍ତାରେ ପଡ଼େ ଅସୁରାଳୀ ଦେବୀ ଆଶ୍ରମ । ଏହି ଆଶ୍ରମରେ ଏକ ପୁଷ୍କରିଣୀର ମଧ୍ୟସ୍ଥଳରେ ଛୋଟ ମନ୍ଦିରଟିଏ କରି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପୂଜା କରାଯାଏ । ସମସ୍ତ ଦୈନନ୍ଦିନ କର୍ମ ସହ, ସ୍ନାନପୂର୍ଣ୍ଣିମା, ଅଣସର ମଧ୍ୟ ଅନୁଷ୍ଠିତ ହୁଏ, ରଥଯାତ୍ରା ପର୍ବ ମଧ୍ୟ ପାଳିତ ହୁଏ କିନ୍ତୁ ରଥ ନିର୍ମାଣ କରାଯାଏ ନାହିଁ ।

ଭଦ୍ରକ ସହର ନିକଟବର୍ତ୍ତୀ ଶ୍ରୀଶ୍ରୀଜଗନ୍ନାଥ ଗୌଡ଼ୀୟ ମଠ, ନୀଳକଣ୍ଠପୁର, ସନ୍ଥିଆରେ ଅବସ୍ଥିତ । ଏଠାରେ ବହୁପୂର୍ବରୁ ଏକ ପୁରୁଣା ମନ୍ଦିର ଜରାଜୀର୍ଣ୍ଣ ଅବସ୍ଥାରେ ଥିଲା । ୧୯୪୦ ମସିହାରେ ଏକ ନୂତନ ମନ୍ଦିର ତା'ପରେ ଏକ ଗୁଣ୍ଡିଚା ଘର ନିର୍ମିତ ହୋଇଛି । ପୁରୁଣା ମନ୍ଦିରଟି ଅଣସର ଘର ଭାବେ ବ୍ୟବହୃତ ହୁଏ । ଗ୍ରାମବାସୀମାନେ ଅତି ଉତ୍ସାହରେ ରଥଯାତ୍ରା ପାଳନ କରନ୍ତି । ବହୁ ଜନସମାଗମ ହୁଏ । **ଏହି ରଥଯାତ୍ରାର ଏକ ଆକର୍ଷଣ ହେଲା ଆଶ୍ରମ ତରଫରୁ ବୈଷ୍ଣବମାନଙ୍କଦ୍ୱାରା ଓଡ଼ିଆ, ବଙ୍ଗଳା ଓ ହିନ୍ଦୀ କୀର୍ତ୍ତନ ପରିବେଷଣ ।**

ସହରାଞ୍ଚଳର ଅନ୍ୟ ଏକ ବିଶିଷ୍ଟ ରଥଯାତ୍ରା ଅନୁଷ୍ଠିତ ହୁଏ ଜଗନ୍ନାଥପୁର ଗ୍ରାମରେ, ଏଠାକାର ଜଗନ୍ନାଥ ମନ୍ଦିର ସପ୍ତଦଶ ଶତାବ୍ଦୀର ବୋଲି ଅନୁମାନ କରାଯାଏ । ଜନଶ୍ରୁତି ଅନୁସାରେ, ଏଠାକାର ଜଣେ ବୃଦ୍ଧ ବ୍ରାହ୍ମଣ ସ୍ୱପ୍ନାଦେଶ ପାଇ ଶାଳନ୍ଦୀ ନଦୀର ବନ୍ୟାଜଳରେ ଭାସି ଯାଉଥିବା ତିନିଖଣ୍ଡ ଦାରୁ ମଧ୍ୟରୁ ମାତ୍ର ଖଣ୍ଡିଏ ଦାରୁ ଉଦ୍ଧାର କରିବାକୁ ସକ୍ଷମ ହୁଏନ୍ତେ, ପୁନଶ୍ଚ ତାଙ୍କୁ ସ୍ୱପ୍ନାଦେଶ ହେଲା, ସେହି ଦାରୁରେ କେବଳ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଗଢ଼ି ପୂଜା କରିବା ପାଇଁ । ଦିଅଁଙ୍କ ପ୍ରତିଷ୍ଠା ପରେ ଏହି ଗ୍ରାମ 'କୂଳମୁଳାଇ' ନାମରୁ ଜଗନ୍ନାଥପୁରକୁ ପରିବର୍ତ୍ତିତ ହେଲା । ସେହି କାଳରୁ ଏହି ବିଗ୍ରହ ଅକ୍ଷୁଣ୍ଣ ଭାବରେ ପୂଜା ପାଇ ଆସୁଛନ୍ତି । ସହରର ନିକଟତମ ହୋଇଥିବାରୁ ରଥଯାତ୍ରାରେ ପ୍ରବଳ ଜନସମାଗମ ହୁଏ ।

ଏହାବ୍ୟତୀତ ଭଦ୍ରକ ସହରର ନୂଆବଜାର (ଅସ୍ତଳ ପୂଜାରୀ ସାହି ମନ୍ଦିର) ଅସ୍ତଳର କ୍ଷମା ସାଗର ମଠରେ ବହୁପୂର୍ବରୁ ଜଗନ୍ନାଥଙ୍କ ବିଗ୍ରହ ପୂଜା ପାଇ ଆସୁଛି । ସେଠାରେ କାନ୍ତକବି




ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ପିତା ଭାଗବତ ବାବୁ ୧୯୧୨ରେ ନିତାଇ ଓ ଗୌରଙ୍କ ବିଗ୍ରହ ପ୍ରତିଷ୍ଠା କରିଥିଲେ । ସାଳନ୍ଦୀ ବାଇପାଶ୍, ଚରମ୍ପା, ରାନ୍ଦିଆ ଗୌଡ଼ୀୟମଠରେ ମଧ୍ୟ ରଥଯାତ୍ରା ଅନୁଷ୍ଠିତ ହୁଏ ।

ଆଗରପଡ଼ାର ରାଜବଂଶୀୟ (ଡ. ମହତାବଙ୍କ ବଂଶ) ମନ୍ଦିରରେ ତିନିମୂର୍ତ୍ତିଙ୍କୁ ଗୋଟିଏ ରଥରେ ବସାଇ ଜାକଜମକରେ ମାଉସୀମା ମନ୍ଦିରକୁ ନିଆଯାଏ । ଏହି ଉତ୍ସବ ଏଠାରେ ଏକ ମେଳା ଭାବରେ ପାଳିତ ହୁଏ ।

ମହାମାଲ୍ୟା ମଞ୍ଜୁରୀର ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧାମୂର୍ତ୍ତି, ବନ୍ତ ନିକଟସ୍ଥ ନିମାପଡ଼ା କପାଳୀ କ୍ଷେତ୍ରର ଶ୍ରୀଶ୍ରୀଦାରୁବ୍ରହ୍ମ କ୍ଷେତ୍ର, ଆପଣ୍ଡା ଓ ନୀଳୋକର ଶ୍ରୀଶ୍ରୀମାଧବ ଜୀଉ ଓ ଶ୍ରୀଜଗନ୍ନାଥ ଜୀଉ ତଥା କାଉପୁରର ଶ୍ରୀଜଗନ୍ନାଥ ଜୀଉ ଏ ଅଞ୍ଚଳମାନଙ୍କରେ ବେଶ୍ ପ୍ରସିଦ୍ଧ ଓ ଏହିସବୁ ସ୍ଥାନରେ ପ୍ରବଳ ଉତ୍ସାହର ସହ ରଥଯାତ୍ରା ପାଳିତ ହୁଏ । ତେବେ ଭଦ୍ରକରେ କୌଣସି ତିନିରଥ ନିର୍ମିତ ହେବାର ବିଧି ଏ ଯାବତ୍ ହୋଇ ନାହିଁ ।

ସ୍ଥାନୀୟ କୁଆଁସ ଗ୍ରାମରେ ବିଗତ ପ୍ରାୟ ଶହେବର୍ଷ ତଳର ଛୋଟ ମନ୍ଦିରଟିଏ ଅଛି । ତିନିଠାକୁରଙ୍କୁ ନେଇ ରଥଯାତ୍ରା କରାଯାଏ । ଅଧୁନା ଇସ୍‌କନ୍ ସୋସାଇଟି ସହ ସମ୍ପୃକ୍ତ ଜଣେ ଭକ୍ତ କୁଆଁସରେ ଭବ୍ୟ ଜଗନ୍ନାଥ ମନ୍ଦିରଟିଏ ନିର୍ମାଣ କରି ବିଧିମତେ ସମସ୍ତ ପୂଜାର୍ଚ୍ଚନା ଓ ଅବଢ଼ା ଅନ୍ନର ବ୍ୟବସ୍ଥା କରିଛନ୍ତି । ତେବେ ଏଠାରେ ରଥଯାତ୍ରା ଆରମ୍ଭ ହୋଇନାହିଁ । ଶୁଣାଯାଏ ବର୍ଷେ ଦୁଇ ବର୍ଷ ଭିତରେ ତିନି ରଥ ବିଶିଷ୍ଟ ଏହି ଘୋଷଯାତ୍ରା ଆରମ୍ଭ କରାଯିବ ।

ଉପରୋକ୍ତ ସ୍ଥାନମାନଙ୍କ ବାହାରେ ଭଦ୍ରକ ଜିଲ୍ଲାର କେତେ ଜନପଦରେ ଜଗନ୍ନାଥ ଚେତନାର ପ୍ରତୀକ ସ୍ୱରୂପ କେତେ ଯେ ମନ୍ଦିର ହେଲାଣି, ତା'ର ହିସାବ ଏହି ଲେଖକ ଦେଇପାରିବ ନାହିଁ ।

ତେବେ ଶ୍ରୀଭଦ୍ରକାଳୀଙ୍କ ପୀଠ ଭଦ୍ରକରେ ଶାକ୍ତ, ଶୈବ ସଂସ୍କୃତି ସହିତ ପଞ୍ଚଦଶ ଶତାବ୍ଦୀ ପରେ ଜଗନ୍ନାଥ ସଂସ୍କୃତିର ଏକ ଅପୂର୍ବ ମିଳନ ଘଟିଛି ଏହା ସ୍ୱୀକାର କରିବାକୁ ହେବ ।

ପ୍ରଭୁ ନିଜେ ହିଁ ତ ରହସ୍ୟମୟ ଦେବତା । ସେ ସମସ୍ତ ମନ୍ତ୍ର, ତନ୍ତ୍ରର ଊର୍ଦ୍ଧ୍ୱରେ, ନିରାକାର ବ୍ରହ୍ମ । ଶୈବ, ଶାକ୍ତ, ବୈଷ୍ଣବ ସମସ୍ତେ ତାଙ୍କରିଠୁଁ ଜନ୍ମ ପୁଣି ତାଙ୍କରିଠାରେ ଲୀନ ।

ପାଦଟୀକା


୧. ଭଦ୍ରକ ଇତିହାସ ସଂସ୍କୃତିର ମୁଖ୍ୟଧାରା - ଅଧ୍ୟାପକ ସୁଶାନ୍ତ କୁମାର ମହାନ୍ତି (ପୃ.୧୨)
୨. Aim-E-Akbari by Jhon Beams
୩. ଜଣାଅଜଣା ଭଦ୍ରକ - ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି - ଉତ୍ତର ଓଡ଼ିଶା ପ୍ରବନ୍ଧମାଳା, ଷଷ୍ଠ ସଂଖ୍ୟା (ପୃଷ୍ଠା-୮୨)
୪. ଏହି ଜନଶ୍ରୁତି - ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ଅସଂପୂର୍ଣ୍ଣ ଜୀବନ ଚରିତ (ପୃଷ୍ଠା-୧୧୧ ଓ ୧୧୨)
- ନବପତ୍ର ପତ୍ରିକା ୧୯୯୨ ଦ୍ୱିତୀୟ ସଂଖ୍ୟାରୁ ସଂଗୃହୀତ
୫. ଓଡ଼ିଶା ଇତିହାସ - ଡଃ ହରେକୃଷ୍ଣ ମହତାବ
୬. Janperial Gazetter of Bengal - 1803


ଶଙ୍ଖଚିଲା ମାର୍ଗ
ଦଳା, ଯାଜପୁର ରୋଡ଼, ଯାଜପୁର



# ଯାତ୍ରା

ରକ୍ଷକ ନାୟକ



ନିରନ୍ତର ଚାଲିଛି ନିର୍ମାଣ
ବି ନିରନ୍ତର ବିନିର୍ମାଣ ।
ଅସରନ୍ତି ଯାତ୍ରା, ଅସମାପ୍ତ ଅଭିଳାଷ,
ଖାଲି କମା ପରେ କମା ନାହିଁ ପୂର୍ଣ୍ଣଚ୍ଛେଦ,
ସଭିଏଁ ଏକତ୍ର ଗୋଟିଏ ବିନ୍ଦୁରେ
କର୍ତ୍ତା, କର୍ମ, କ୍ରିୟା
ଯାହା ଦିଶେ ଲୀଳା ଭଳି
ତାହା ହିଁ ସତ୍ୟ
ଆକୃତିହୀନ ପ୍ରକୃତି ସାକାର ହେବା ପ୍ରକ୍ରିୟା,
ନିରବଧି କାଳ ଯେଉଁଠାରେ ହୋଇଅଛି ଲୀନ
ଯେଉଁଠାରେ ସମୟର ହୋଇଛି ସୃଜନ
ଯେଉଁଠାରେ ଗଢ଼ା ହୋଇଛି ଅକ୍ଷରର ଅବୟବ
ଯେଉଁଠାରେ ମୃତ୍ୟୁ ପାଏ ଜନ୍ମଲାଭ
ସେଇଠୁ ମୋ' ଦୂରତ୍ୱ କେତେ !
ମାପୁ ମାପୁ ସରିଯାଏ ବେଳ
ଫି' ସନ ଆଷାଢ଼ର ଆକାଶରେ ବିଞ୍ଛ ବାଦଲ ପରି
ଖୋଜୁଥାଏ ମୋ' ଠିକଣା ନୀଳ ମହାଶୂନ୍ୟରେ
ସବୁଥର ହୁଏ ଅସଫଳ ।
ଏଥର ବି ଯାତ୍ରାକୁ ଯିବି
ରଥ ନୁହେଁ, ପଥ ନୁହେଁ, ମତ ନୁହେଁ, ତତ୍ତ୍ୱ ନୁହେଁ
ପୂରା ଯାତ୍ରା ହୋଇଯିବି ।

ପାଇକ ସାହି
ସୋରଭା, ନୟାହାଟ, ପୁରୀ



# ବଡ଼ମ୍ବାଗଡ଼ରେ ବିଜେ ଶ୍ରୀଜଗନ୍ନାଥ

ଉର୍ମିଳା ମିଶ୍ର

**ଶ୍ରୀ**କ୍ଷେତ୍ର ଅଧିପତି ତଥା ଜଗତରନାଥ ଶ୍ରୀଜଗନ୍ନାଥ ସର୍ବବ୍ୟାପକ । କେବଳ ଶ୍ରୀମନ୍ଦିରରେ ନୁହେଁ, ଓଡ଼ିଶାର ପ୍ରାୟ ସବୁସ୍ଥାନରେ ବିଭିନ୍ନ ନାମରେ ତାଙ୍କୁ ପୂଜା କରାଯାଇଥାଏ । ଶ୍ରୀମନ୍ଦିର ପରି ଏହି ମନ୍ଦିରମାନଙ୍କରେ ମଧ ସମସ୍ତ ନୀତିନିୟମ ଓ ପର୍ବ ପାଳନ କରାଯାଏ ।

ଗଡ଼ଜାତ ସମୟର ସାମାଜିକ ଚଳଣି ଏବେ ମଧ ରହିଛି । ବଡ଼ମ୍ବାଗଡ଼ ରାଜପ୍ରାସାଦ ମଧରେ ରହିଛି ଏକ ଦେଉଳ ବେଢ଼ା । ଏହି ଦେଉଳ ବେଢ଼ା ଭିତରେ ୭ ଗୋଟି ମନ୍ଦିର ରହିଛି, ଯଥା- ଶ୍ରୀଗୋପୀନାଥ ମନ୍ଦିର, ଶ୍ରୀରଘୁନାଥ ମନ୍ଦିର, ରାସବିହାରୀ ମନ୍ଦିର, ସୂର୍ଯ୍ୟ ମନ୍ଦିର, ଭୁବନେଶ୍ୱର ମନ୍ଦିର, ଚନ୍ଦ୍ରଶେଖର ମନ୍ଦିର ଓ ସେମାନଙ୍କ ମଧରେ ମହାପ୍ରଭୁ ଶ୍ରୀଜଗନ୍ନାଥ ମନ୍ଦିର ଅନ୍ୟତମ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ପର୍ବପାଳନ ନିମନ୍ତେ ଝୁଲଣ ମଣ୍ଡପ ଓ ସ୍ନାନ ମଣ୍ଡପ ମଧ ରହିଛି । ଏହି ଦେଉଳମାନଙ୍କ ବେଢ଼ାର ଆୟତନ ପ୍ରାୟ ୫ ଏକର ପରିମିତ ହେବ । ରାଜରାଜୁଡ଼ା ସମୟର ଏହି ଅମୂଲ୍ୟ କୀର୍ତ୍ତି ଏବେ ବି ସୁଧା ବଞ୍ଚି ରହିଛି ।

ଏହି ଜଗନ୍ନାଥ ମନ୍ଦିରର ଉଚ୍ଚତା ପ୍ରାୟ ୫୫ ଫୁଟ ହେବ । ଜଗନ୍ନାଥ ମନ୍ଦିରଟି ୩ ଗୋଟି ଭାଗରେ ବିଭକ୍ତ । ପ୍ରଥମଟି ମୁଖଶାଳା । ଏହିଠାରେ ଗରୁଡ଼ ମୂର୍ତ୍ତି ରହିଛନ୍ତି । ଦ୍ୱିତୀୟଟି ଜଗମୋହନ ମନ୍ଦିର । ତୃତୀୟଟି ହେଉଛି ମହାପ୍ରଭୁ ପତିତପାବନଙ୍କର ରତ୍ନସିଂହାସନ ମନ୍ଦିର ।

ଏହି ଦେଉଳରେ ଦାରୁଭୂତ ମୁରାରୀ ମହାପ୍ରଭୁ ଶ୍ରୀଜଗନ୍ନାଥ, ବିଶ୍ୱାଧାତ୍ରୀ ମହାଲକ୍ଷ୍ମୀ, ମଦନମୋହନଙ୍କ ସହ ପୂଜା ପାଉଛନ୍ତି । ଏହି ଦେଉଳରେ ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ରହି ନାହାନ୍ତି ।

ବଡ଼ମ୍ବାର ବରପୁତ୍ର ସ୍ୱର୍ଗୀୟ ପଣ୍ଡିତ ଶ୍ରୀବତ୍ସ ଦାସ ବିଦ୍ୟାଳଙ୍କାର ସାହିତ୍ୟାଚାର୍ଯ୍ୟଙ୍କ ରଚିତ ପିଲାଙ୍କ 'ବଡ଼ମ୍ବା ଇତିହାସ' ପୁସ୍ତକରେ ମନ୍ଦିର ଓ ଦିଅଁଙ୍କର ସୂଚନା ଦେଇଛନ୍ତି । ୧୩୦୫ ମସିହାରେ ରାଜା ହଟ୍ଟକେଶ୍ୱରଙ୍କ ରାଜତ୍ୱ କାଳରେ ବଡ଼ମ୍ବାଗଡ଼ ସ୍ଥାପିତ ହୋଇଥିଲା । ରାଜା ବ୍ରଜଧର ରାଉତ-୧୫୬୦ରୁ ୧୫୮୪ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ରାଜା ହେଉଛନ୍ତି ନବମତମ ରାଜା । ଏହି ରାଜା ପ୍ରଥମେ ବଡ଼ମ୍ବାଗଡ଼ରେ ରଥଯାତ୍ରା ଆରମ୍ଭ କରିଥିଲେ । ଆଉମଧ ଏହି ରାଜାଙ୍କ ସମୟରେ ହିଁ ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା ।

ରାଜା ଶ୍ରୀ ନାରାୟଣ ମଙ୍ଗରାଜ ୧୬୧୭ରୁ ୧୬୩୫ ମସିହା ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହି ରାଜା ହେଉଛନ୍ତି ବଡ଼ମ୍ବାଗଡ଼ର ଏଗାରତମ ରାଜା । ଏହି ରାଜାଙ୍କ ସମୟରେ ମହାପ୍ରଭୁଙ୍କୁ ନବକଳେବର କରାଯାଇ ନୂତନ ଦାରୁବିଗ୍ରହ ପ୍ରତିଷ୍ଠା କରାଯାଇଥିଲା । ଲୋକମାନଙ୍କ ମତାନୁସାରେ ବଡ଼ମ୍ବାର ଏହି ଜଗନ୍ନାଥ ମହାପ୍ରଭୁ ହେଉଛନ୍ତି ବିଶ୍ୱର ସର୍ବ ବୃହତ୍ତମ ଜଗନ୍ନାଥ । ଏହି ଦାରୁ ଦିଅଁଙ୍କର ଉଚ୍ଚତା (୫'୭'') 'ପାଞ୍ଚ ଫୁଟ ସାତ ଇଞ୍ଚ' ବିଶିଷ୍ଟ ହେବ । ଏହି ପ୍ରଭୁଙ୍କର ନାମାନୁଯାୟୀ ଜଗନ୍ନାଥପୁର ଗ୍ରାମ କରାଯାଇଥିଲା । ସେହି ଗ୍ରାମରେ ମହାପ୍ରଭୁଙ୍କର ସବୁ ଜମି 'ରାଜା' ଖଞ୍ଜି ଥିଲେ । ଏହି ମନ୍ଦିରରେ ବାରମାସରେ ତେରପର୍ବ ପାଳନ କରାଯାଏ । ଏଠାକାର ବଡ଼ପର୍ବ ଚନ୍ଦନଯାତ୍ରା, ତା'ପରେ ରଥଯାତ୍ରା ପାଳନ କରାଯାଏ । ପର୍ବପର୍ବାଣି ମଧରେ ଦୋଳଯାତ୍ରା, ଝୁଲଣ, ଚିତାଲାଗି ଅମାବାସ୍ୟା, ରେଖାପଞ୍ଚମୀ, ଗହ୍ମାପୂର୍ଣ୍ଣମୀ, ସ୍ନାନପୂର୍ଣ୍ଣମୀ, ଦଶହରା ଜନ୍ମାଷ୍ଟମୀ, ରାମନବମୀ, ଠାକୁରଙ୍କର ପର୍ବ ସ୍ୱତନ୍ତ୍ର ନୀତିନିୟମରେ ପାଳନ କରାଯାଇଥାଏ । **୧୫୬୦ ମସିହାଠାରୁ ବଡ଼ମ୍ବାଗଡ଼ରେ ରଥଯାତ୍ରା ହୋଇ ଆସୁଛି । ଅତୀତରେ ରଥ ଷୋହଳ ଚକିଆ ହେଉଥିଲା । ମାତ୍ର ଏବେ ରାସ୍ତା ଅଣ ଓସାରିଆ ହୋଇଯାଇଥିବାରୁ ଏବେ ମହାପ୍ରଭୁଙ୍କର ରଥ ଆଠଚକିଆ ହେଉଛି ।** ଏହି ରଥର ଉଚ୍ଚତା ପ୍ରାୟ ୨୭ ହାତ ହେବ । ପୂର୍ବରୁ ଏହି ରଥରେ ପ୍ରଭୁ ଶ୍ରୀଜଗନ୍ନାଥ ଦେବଙ୍କର ଚଳନ୍ତି ପ୍ରତିମା ମଦନ ମୋହନଙ୍କ ସହ ବିଜେ ହେଉଥିଲେ । ୨୦୦୨

ମସିହାଠାରୁ ରାଜା ତ୍ରିବିକ୍ରମ ଚନ୍ଦ୍ର ବୀରବର ମଙ୍ଗରାଜ ମହାପାତ୍ରଙ୍କଦ୍ୱାରା ସୁଦର୍ଶନଙ୍କର ଦାରୁବିଗ୍ରହ ପ୍ରତିଷ୍ଠା କରାଯାଇଥିଲା । ସେହି ଦିନଠାରୁ ମହାପ୍ରଭୁ ଜଗନ୍ନାଥ ଦେବଙ୍କ ସହିତ ପ୍ରଭୁ ସୁଦର୍ଶନଙ୍କ ଦାରୁବିଗ୍ରହ ମଧ୍ୟ ସେହି ରଥରେ ବିଜେ ହେଉଛନ୍ତି । ଶ୍ରୀମହାପ୍ରଭୁ ମନ୍ଦିରଠାରୁ ପ୍ରାୟ ୬୦୦ ମିଟର ପର୍ଯ୍ୟନ୍ତ ପହଣ୍ଡି ହୋଇ ରଥରେ ବିଜେ କରିଥାନ୍ତି । ପହଣ୍ଡି ସମୟରେ ପ୍ରାୟ ୨୫ରୁ ୩୦ ଜଣ ବ୍ରାହ୍ମଣ ଶ୍ରୀମହାପ୍ରଭୁଙ୍କୁ ପହଣ୍ଡି କରାଇଥାନ୍ତି । ବର୍ତ୍ତମାନ ରାଜା ହେଉଛନ୍ତି ୨୪ତମ ରାଜା । ପରମ୍ପରା ଅନୁସାରେ ରାଜା ପଟୁଆର ସହ ଶୋଭାଯାତ୍ରା କରି ରଥରେ ଯାଇ ଛେରାପହଁରା କାର୍ଯ୍ୟ ସମାପନ କରିଥାନ୍ତି । ଏଠାକାର ପୂଜା ପଦ୍ଧତି ନୀଳାଦ୍ରି ମହୋଦଧି ନିୟମାନୁସାରେ ବିଧିବଦ୍ଧ ଭାବେ ପାଳନ କରାଯାଇଥାଏ । ଗୁଣ୍ଡିଚା ମନ୍ଦିରରେ ସକାଳେ ମହାପ୍ରଭୁଙ୍କ ନିକଟରେ ବଲ୍ଲଭ, ଖେଚେଡ଼ି, ତରକାରୀ ଭୋଗ କରାଯାଏ । ଦ୍ୱିପ୍ରହରେ ଅଭଡ଼ା ଅନ୍ନ, ଡାଲି, ବେଶର, ମହୁର ଶାଗ ଓ ଖଟା ପ୍ରଭୃତି ଭୋଗ କରାଯାଇଥାଏ । ସନ୍ଧ୍ୟା ସମୟରେ ଅଧରପଣା, କାକରା, ପୋଡ଼ପିଠା, ଚୁଡ଼ାଘସା ଭୋଗ ହୋଇଥାଏ । ତା'ପରେ ମହାପ୍ରଭୁଙ୍କର ବଡ଼ସିଂହାର ବେଶ ହୋଇଥାଏ । ଏହି ସମୟରେ ପ୍ରଭୁଙ୍କ ନିକଟରେ ବଲ୍ଲଭ ଖଜା ଭୋଗ ହୋଇଥାଏ । ମହାପ୍ରଭୁଙ୍କର ଦର୍ଶନ ତଥା ରଥଯାତ୍ରା ଦେଖିବାକୁ ବଡ଼ମ୍ବାଗଡ଼ରେ ଚାରିପାଖ ଗ୍ରାମରୁ ଓ ବହୁ ଦୂରରୁ ହଜାର ହଜାର ଭକ୍ତ ଏହି ବଡ଼ମ୍ବାଗଡ଼କୁ ଆସିଥାନ୍ତି । ବଡ଼ମ୍ବାର ଦେବୋତ୍ତର ବିଭାଗ ଓ ଗ୍ରାମବାସୀମାନଙ୍କ ସହାୟତାରେ ଏହି ରଥଯାତ୍ରା କାର୍ଯ୍ୟ ସମାପନ ହୋଇଥାଏ ।



ବଡ଼ମ୍ବାଗଡ଼ ନିକଟରେ ଥିବା 'ତାଳମଣ୍ଡଳି' ଗ୍ରାମଟି ବେଶ୍ ଜଣାଶୁଣା (ଦେବୋତ୍ତର ଓ ଗ୍ରାମବାସୀମାନଙ୍କ ସହାୟତାରେ) ଏହି ଗ୍ରାମଟିରେ ମଧ୍ୟ ବହୁ ପୁରାତନ କାଳରୁ ରଥ ନିର୍ମାଣ କରି ତୃତୀୟା ଦେବଙ୍କ ନିକଟରେ ପ୍ରତିବର୍ଷ ଶ୍ରୀମହାପ୍ରଭୁଙ୍କର ରଥଯାତ୍ରା ବହୁ ଆଡ଼ମ୍ବରରେ ପାଳନ କରାଯାଉଛି । ବଡ଼ମ୍ବାର ଲୋକ ପ୍ରତିନିଧି, ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ରଙ୍କ ସହଯୋଗରେ ବଡ଼ମ୍ବାଗଡ଼ରେ ରଥଯାତ୍ରା ଜାକଜମକରେ ହେବ ବୋଲି ଆଶା କରାଯାଉଛି ।

ହେ ଜନ୍ମଦାତା ପିତା ଜଗତର ନାଥ ଜଗନ୍ନାଥ, ତୁମର ପାଦପଦ୍ମ ତଳେ ମୋର କୋଟି କୋଟି ପ୍ରଣାମ । ତୁମେ ହେଉଛ ସମସ୍ତ ଯଜ୍ଞର ଅଂଶ ସ୍ୱରୂପ ଓ ସମସ୍ତ ଦେବତାମାନଙ୍କର ମଧ୍ୟ ଅଂଶ ତୁମରିଠାରେ ହିଁ ଠୁଳ । ହେ ପ୍ରାଣର ନାଥ, ତୁମେ ମାତା, ପିତା, ବନ୍ଧୁ ଓ ସମସ୍ତଙ୍କ ସଖା ମଧ୍ୟ । ହେ ପ୍ରଭୁ ! ତୁମେ ହିଁ ସ୍ୱର୍ଗ, ତୁମେ ପରଂବ୍ରହ୍ମ, ବ୍ରହ୍ମା, ସମସ୍ତ ତୀର୍ଥର ସମଷ୍ଟିଭୂତ ପରମତୀର୍ଥ । ହେ ହୃଦୟର ନାଥ, ତୁମ ପାଦପଦ୍ମରେ ତ୍ରିସନ୍ଧ୍ୟାରେ ବାରବାର ପ୍ରଣାମ କରି ସର୍ବସ୍ୱ ସମର୍ପଣ କରି ଆଜି ଏହି ପବିତ୍ର ଶୁଭବାସରେ ତୁମରି ଶ୍ରୀଚରଣ କମଳରେ ହିଁ କେବଳ ଶରଣଭିକ୍ଷା ମାଗୁଛି ।

ମାର୍ଫତ: ଶ୍ରୀଚରଣ ମିଶ୍ର
ମହୁଲିଆ, ବଡ଼ମ୍ବା, କଟକ

---

# ଜଗନ୍ନାଥ ହେ ...

ଶଶୀଭୂଷଣ ମହାପାତ୍ର

ଜଗନ୍ନାଥ ହେ ...
ଶରଣ ଦିଅ ତୁମ, ଶିରୀ ଚରଣରେ
ଭେଦଭାବ ରଖି କାହିଁ
ବସିଛ ଭିତରେ
ଜଗନ୍ନାଥ ହେ- ଜଗନ୍ନାଥ ହେ ...
ଶରଣ ଦିଅ ତୁମ, ଶିରୀ ଚରଣରେ ... ।

ମହାଜ୍ଞାନୀ ମହାଦାନୀ, ହେ ଭକ୍ତ ବତ୍ସଳ
ଚକାଡୋଳା ଚକାଆଖି, ମୁଖେ ଢଳ ଢଳ



କରୁଥାଅ ପୁଷ୍ପ ବୃଷ୍ଟି
ହସାଇ ସଂସାରେ
ଜଗନ୍ନାଥ ହେ ... ଜଗନ୍ନାଥ ହେ
ଶରଣ ଦିଅ ତୁମ, ଶିରୀ ଚରଣରେ ।



ବରିଷ୍ଠ ଡାକପାଳ
ବୀରରାମଚନ୍ଦ୍ରପୁର
ସାକ୍ଷୀଗୋପାଳ, ପୁରୀ






# ସାରଳାଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ

ଇଂ ପ୍ରଭାକର ସ୍ୱାଇଁ

**ଶ୍ରୀ**ଜଗନ୍ନାଥ - ଜଗତର ନାଥ । ଓଡ଼ିଆ ଜାତିର ମୂଳପିଣ୍ଡ । ତାଙ୍କୁ କେନ୍ଦ୍ର କରି ଉତ୍କଳୀୟ ସଂସ୍କୃତି ପରିପୁଷ୍ଟ । ଶାନ୍ତି, ମୈତ୍ରୀ ଓ ବିଶ୍ୱଭ୍ରାତୃଭାବ ପ୍ରତିଷ୍ଠା କରିବା ଜଗନ୍ନାଥ ଧର୍ମର ବିଶେଷତ୍ୱ । ତାଙ୍କର ଅଧିଷ୍ଠାନ କ୍ଷେତ୍ର ପୁରୁଷୋତ୍ତମ କ୍ଷେତ୍ର । ସନାତନ ହିନ୍ଦୁଧର୍ମର ଚାରିଧାମ (ବଦ୍ରିନାରାୟଣ, ଦ୍ୱାରକା, ରାମେଶ୍ୱର, ପୁରୀ) ମଧ୍ୟରେ ଜଗନ୍ନାଥଧାମ ଶ୍ରୀକ୍ଷେତ୍ର ସର୍ବଶ୍ରେଷ୍ଠ ଅଟେ । ପୁଣ୍ୟଭୂମି ଶ୍ରୀକ୍ଷେତ୍ରର ପ୍ରତ୍ୟେକ ଅଂଶ ଜଗନ୍ନାଥଙ୍କ ମହିମାରେ ମହିମାବନ୍ତ । ସେଥିପାଇଁ ସେ ବଡ଼ଠାକୁର । ତାଙ୍କ ଦେଉଳ - ବଡ଼ଦେଉଳ, ଦାଣ୍ଡ - ବଡ଼ଦାଣ୍ଡ, ପଣ୍ଡା - ବଡ଼ପଣ୍ଡା, ଆସ୍ଥାନ - ରତ୍ନସିଂହାସନ, ପ୍ରସାଦ - ମହାପ୍ରସାଦ, ଦୀପ - ମହାଦୀପ, ସୂପକାର - ମହାସୂପକାର, ସମୁଦ୍ର - ମହୋଦଧି, ଠାକୁରାଣୀ - ମହାଲକ୍ଷ୍ମୀ, ମଣ୍ଡପ - ମୁକ୍ତିମଣ୍ଡପ, ବୃକ୍ଷ - କଳ୍ପବଟ, ପ୍ରାଚୀର - ମେଘନାଦ, ଯାତ୍ରା - ଘୋଷଯାତ୍ରା ଇତ୍ୟାଦି । ଚକାନୟନ ଦର୍ଶନରେ ହୃଦୟ ଅପୂର୍ବ ଭାବାବେଶରେ ପୂର୍ଣ୍ଣ ହୋଇଯାଏ । ଭକ୍ତ ସ୍ୱତଃ ଉଚ୍ଚାରଣ କରେ - 'ସକଳ ତୀର୍ଥ ତୋ' ଚରଣେ, ବଦ୍ରିକା ଯିବି କି କାରଣେ ?' ପରାତ୍ପର ପରମେଶ୍ୱର ଏ କ୍ଷେତ୍ରରେ ପୂର୍ଣ୍ଣବ୍ରହ୍ମ ରୂପରେ ବିରାଜିତ । ଚତୁର୍ଦ୍ଧାମୂରତି ଚତୁର୍ଦ୍ଧାମର ପ୍ରତୀକ । ତାଙ୍କ ଚକଡ଼ାରେ ସକଳ ଦେବଦେବୀ ଅଧିଷ୍ଠିତ ।

'ବଳଭଦ୍ର, ଜଗନ୍ନାଥ, ସୁଭଦ୍ରାଞ୍ଚ ସୁଦର୍ଶନ
ଦାରୁବ୍ରହ୍ମ, ସ୍ୱରୂପାୟ ଚତୁର୍ଦ୍ଧା ମୂର୍ତ୍ତୟେ ନମଃ ।'

ଏହି କ୍ଷେତ୍ର ଦାରୁ ବ୍ରହ୍ମତୁଲ୍ୟ ପବିତ୍ର ଓ ଦୁର୍ଲଭ ହେତୁ 'ସାକ୍ଷାତ ବୈକୁଣ୍ଠ ସ୍ୱରୂପ ତତ୍‌କ୍ଷେତ୍ରଂ' ବୋଲି କୁହାଯାଇଛି । ସେ ପରମ ଲୀଳାମୟ, ଦେବମାନବଙ୍କୁ ଅଗୋଚର ତାଙ୍କ ଲୀଳା । ଜାତି-ଧର୍ମ-ବର୍ଣ୍ଣ-ଆଦି ଭେଦଭାବର ଊର୍ଦ୍ଧ୍ୱରେ ସେ । ଶାନ୍ତିମୈତ୍ରୀ ଓ ବିଶ୍ୱଭ୍ରାତୃତ୍ୱବୋଧର ସେ ପ୍ରତୀକ । ପ୍ରାଚୀନ ଉତ୍କଳରେ ଧର୍ମକୁ କେନ୍ଦ୍ରକରି ବିଭିନ୍ନ ସମୟରେ ଭୀଷଣ ଝଡ଼ର ସୂତ୍ରପାତ ହୋଇଥିଲେ ମଧ୍ୟ ଜଗନ୍ନାଥ ଚିରଦିନ ଅଚଳ ମହାମେରୁ ହୋଇ ରହିଛନ୍ତି ।

ଶ୍ରୀଜଗନ୍ନାଥ ଓଡ଼ିଆର ଜାତୀୟ ଦେବତା ଓ ଉତ୍କଳୀୟ ସ୍ୱାଭିମାନର ପ୍ରତୀକ । ଶ୍ରୀଜଗନ୍ନାଥଙ୍କୁ ବକ୍ଷରେ ଧାରଣ କରି ଓଡ଼ିଶା ସମଗ୍ର ଜଗତରେ 'The land of Lord Jagannath' ନାମରେ ପ୍ରସିଦ୍ଧି ଅର୍ଜନ କରିଛି । ଶ୍ରୀଜଗନ୍ନାଥଙ୍କ ସହିତ ଉତ୍କଳୀୟ ସମାଜ ଓ ଜନଜୀବନର ଧାରା ବିଶେଷଭାବେ ଜଡ଼ିତ । ଓଡ଼ିଆଙ୍କ ସକଳ ଆଶା ଓ ଭରସାର ସେ ଅଫୁରନ୍ତ ଉତ୍ସ । ତାଙ୍କ ଉପରେ ଅତୁଟ ବିଶ୍ୱାସ ରଖି ପ୍ରତ୍ୟେକ ଓଡ଼ିଆ ନିଜର କର୍ମ କରିଯାଏ । ଜଗନ୍ନାଥଙ୍କୁ ସେ ନିଜର ରକ୍ଷକ ବୋଲି ମାନେ ଓ ସଞ୍ଜସକାଳେ 'ଜୟ ଜଗନ୍ନାଥ' ବାଣୀ ଉଚ୍ଚାରଣ କରେ ।

ଯୁଗେ ଯୁଗେ ସତ୍ୟ-ଶିବ-ସୁନ୍ଦରର ଉପାସନା ଗୋଟାଏ ଜାତିର ସାଂସ୍କୃତିକ ମୂଲ୍ୟବୋଧର ପ୍ରାଣପ୍ରତିଷ୍ଠା କରେ । ଆଧ୍ୟାତ୍ମିକ ଚିନ୍ତାଚେତନାକୁ କେନ୍ଦ୍ରକରି ସାହିତ୍ୟ ପଲ୍ଲବିତ ହୁଏ । ଓଡ଼ିଆ ଜାତି ଓ ସଂସ୍କୃତିର ପ୍ରାଣକେନ୍ଦ୍ର ଶ୍ରୀଜଗନ୍ନାଥଙ୍କ ଓଡ଼ିଆ ସାହିତ୍ୟରେ ଅପ୍ରତିହତ ପ୍ରଭାବ ତେଣୁ ଲକ୍ଷ୍ୟଣୀୟ ।

ଧର୍ମକୁ କେନ୍ଦ୍ରକରି ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ଗଢ଼ି ଉଠିଥିଲା । ପ୍ରାଚୀନ ଯୁଗରେ ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥଙ୍କୁ ନାନାଭାବେ ଚିତ୍ରଣ କରାଯାଇଛି । ସେ ହେଉଛନ୍ତି ତନ୍ତ୍ରର ଦେବତା । 'ଶ୍ରୀକ୍ଷେତ୍ରେ ତୁ ଜଗନ୍ନାଥଃ ସ୍ୱୟଂ ଦକ୍ଷିଣ କାଳିକା' ପ୍ରାଚୀନ ଯୁଗରୁ ପ୍ରଚଳିତ ଏହି ଉକ୍ତିରେ ଜଗନ୍ନାଥଙ୍କୁ ସକଳ ଶକ୍ତିର ମୂଳାଧାର ଦକ୍ଷିଣକାଳିକା ବୋଲି କୁହାଯାଇଛି । ଦ୍ୱାଦଶ ଶତାବ୍ଦୀରେ କବି ଜୟଦେବ ତାଙ୍କ 'ଗୀତଗୋବିନ୍ଦ' କାବ୍ୟରେ ଶ୍ରୀଜଗନ୍ନାଥଙ୍କୁ 'ଜଗଦୀଶ ହରେ, ଜୟ ଜୟ ଦେବ ହରେ, ଶ୍ରୀତ କମଳାକୁଚ ମଣ୍ଡଳଧୃତ କୁଣ୍ଡଳ କଳିତ ଲଳିତ ବନମାଳେ, ଜୟ ଜୟ ଦେବ ହରେ ଭାବେ ତାଙ୍କର ସ୍ତୁତିଗାନ କରିଛନ୍ତି । ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ସେ ଦଶ ଅବତାରର ସ୍ୱରୂପ ଲକ୍ଷ୍ୟ କରି ତାଙ୍କୁ ଅବତାରୀ ପୁରୁଷ




ଆଖ୍ୟା ପ୍ରଦାନ କରିଛନ୍ତି । ତାଙ୍କୁ ଯିଏ ଯେଉଁ ଭାବେ ଦେଖେ, ସେ ତାକୁ ସେହି ଭାବେ ଦର୍ଶନ ଦେଇ ଚତୁଃବର୍ଗ ଫଳ ପ୍ରଦାନ କରନ୍ତି -

'ପ୍ରଚ୍ଛନ୍ନବ ପୁରେତସ୍ୟ ତନ୍ମନାସ୍ୟ ବିଚାରୟେତ
ଧର୍ମଗ୍ରହ ପ୍ରମାଣେନ ଯାଦୃଶ ଦୃଷ୍ଟଃ ସ ଏବ ସଃ
ଚତଃବର୍ଗ ପ୍ରଦୋ ଦେବୋ ଯୋ ଯଥା ବିଭାବୟେତ୍ ।'

ପଞ୍ଚଦଶ ଶତାବ୍ଦୀବେଳକୁ ଓଡ଼ିଆ ସାହିତ୍ୟ କହିଲେ ଲୋକକଥା, ଲୋକ କାହାଣୀ, କିମ୍ବଦନ୍ତୀ ଆଖ୍ୟାୟିକା ଆଦିକୁ ବୋଲାଉଥିଲା । ନିଚ୍ଛକ ମୌଳିକ କ୍ରାନ୍ତିକାରୀ ସୃଜନାତ୍ମକ ସାହିତ୍ୟ ଅପେକ୍ଷା ଆଧ୍ୟାତ୍ମିକ ବାଣୀ ହିଁ ଲେଖକମାନଙ୍କ ସୃଷ୍ଟିର ମୁଖ୍ୟ ଉପାଦାନ ଥିଲା । ଚର୍ଯ୍ୟାଗୀତିକା, ଶିଶୁବେଦ, କଳସା ଚଉତିଶା, ସୋମନାଥ ବ୍ରତକଥା, ରୁଦ୍ରସୁଧା ନିଧି ପ୍ରଭୃତିରେ ଶ୍ରୀଜଗନ୍ନାଥଙ୍କ ସମ୍ବନ୍ଧରେ ଉଲ୍ଲେଖ ରହିଛି । ପରବର୍ତ୍ତୀ କାଳରେ ସାରଳା ଦାସଙ୍କ ମହାଭାରତରେ ସମ୍ୟକ୍ ଭାବେ ଶ୍ରୀଜଗନ୍ନାଥଙ୍କ ଅବତାରଣା କରାଯାଇଛି ଯାହା ପରବର୍ତ୍ତୀ ସନ୍ଥ ସାହିତ୍ୟକୁ ପ୍ରଭାବିତ କରିଛି ।

ଆଦିକବି ସାରଳା ଦାସ ତାଙ୍କ ମହାଭାରତରେ ପ୍ରଥମେ ନୀଳାଦ୍ରି ବିହାରୀ ଶ୍ରୀଜଗନ୍ନାଥଙ୍କୁ ଭକ୍ତିପୂତ ପ୍ରଣତି ଜଣାଇ ପ୍ରକାଶ କରିଛନ୍ତି ।

'ନୀଳସୁନ୍ଦର ର୍ପବତ କଳପବଟ ତଳେ
ଦକ୍ଷିଣ କୁଶସ୍ଥଳୀ ଶ୍ରୀଦ୍ୱାରକା ମଣ୍ଡଳେ ।
ବିଜୟ ଶ୍ରୀରାମକୃଷ୍ଣ ସୁଭଦ୍ରା ଯେ ତିନି
ଚାରିଲକ୍ଷ ବତ୍ରିଶ ସହସ୍ର ଦେବ ଘେନି ।
କଳିମଳ ବିଧ୍ୱଂସିନୀ କୋଟି ଦେବପୂଜା
ପ୍ରଣାମ ମାତ୍ରେ ଖଟଇ କପିଳେଶ ରାଜା ।'

ସାରଳା ଦାସ ଶ୍ରୀଜଗନ୍ନାଥଙ୍କ ଭିତରେ ବୁଦ୍ଧଙ୍କୁ ଦେଖିଛନ୍ତି । ସେଥିପାଇଁ ସେ ଲେଖିଛନ୍ତି-

'ବନ୍ଦଇ ଜଗନ୍ନାଥ ନୀଳଗିରିବାସୀ
ବଉଦ୍ଧ ରୂପେ ନୀଳକନ୍ଦରେ ଛନ୍ତି ବସି
ସଂସାର ଜନଙ୍କୁ ତାରିବା ନିମନ୍ତେ
ବଉଦ୍ଧ ରୂପେ ବିଜୟ କରିଛନ୍ତି ଜଗନ୍ନାଥେ ।' (ମଧ୍ୟପର୍ବ)

'କଳିଯୁଗେ ବଉଦ୍ଧ କେଶବ ପ୍ରତିମା
ମୁହିଁ ହୋଇବି ନୀଳସୁନ୍ଦର ଗିରି ଯେ ଉତ୍ତମା ।' (ବନପର୍ବ)

'ଦ୍ୱାପର ଯୁଗ ଅନ୍ତେ ବିଜେ କରିବେ ଜଗନ୍ନାଥେ
ହରି ବଉଦ୍ଧ ରୂପେ ବସିବେ ଚାରିଲକ୍ଷ-
ବତିଶସସ୍ର ବର୍ଷ ପରିଜନ୍ତେ ।' (ସଭାପର୍ବ)

ଶୈବ ବିଚାରରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତିନିମୂର୍ତ୍ତିଙ୍କୁ କବି ସାରଳା ଦାସ ହରି, ହର ଓ ବ୍ରହ୍ମା ରୂପେ ଗ୍ରହଣ କରି ପ୍ରକାଶ କରିଛନ୍ତି-

'ରାମ କୃଷ୍ଣ ସୁଭଦ୍ରା ଏ ତିନି ପ୍ରତିମା
ଶ୍ରୀପୁରୁଷୋତ୍ତମେ ବିଜେ ହଳି ହର ବ୍ରହ୍ମା ।'

ପଞ୍ଚଦଶ ଶତାବ୍ଦୀରେ ସମଗ୍ର ପୂର୍ବଭାରତୀୟ ସାହିତ୍ୟରେ ଶ୍ରୀକୃଷ୍ଣ ସହଜତାନ୍ତ୍ରିକ ଭ୍ରଷ୍ଟାଚାରର ମୂଳ ଭାବେ ଚିତ୍ରିତ ହୋଇ ଅପବାଦ ପାଇଥିଲେ । ଶ୍ରୀକୃଷ୍ଣଙ୍କର ଏ ପ୍ରକାର ଶାସ୍ତ୍ର ବହିର୍ଭୂତ ଐତିହ୍ୟ ବିରୋଧୀ କାର୍ଯ୍ୟର ପ୍ରତିବାଦରେ ଜନତା ଶତମୁଖ ହୋଇଉଠିଥିଲା । ଫଳରେ କୃଷ୍ଣଙ୍କ ପରିବର୍ତ୍ତେ ଜଗନ୍ନାଥଙ୍କୁ ଉତ୍କଳୀୟ ଆଧ୍ୟାତ୍ମିକତାର ଇଷ୍ଟଦେବ ଭାବେ ଜନସାଧାରଣ ଗ୍ରହଣ କରି ପୂଜା କଲେ । ଆଧ୍ୟାତ୍ମିକସ୍ତରରେ ଏହି ପରିବର୍ତ୍ତନକୁ ସାରଳା ଦାସ ତାଙ୍କ ମହାଭାରତ ଗ୍ରନ୍ଥରେ ଚିତ୍ରିତ କରି ଜଗନ୍ନାଥ ଧର୍ମର ଗୁରୁତ୍ୱ ପ୍ରତିପାଦନ କଲେ । ଶ୍ରୀକୃଷ୍ଣଙ୍କ ମଧ୍ୟରେ ଶ୍ରୀଜଗନ୍ନାଥଙ୍କୁ ଆରୋପ କରି ଉଭୟଙ୍କ ମଧ୍ୟରେ ଅଭେଦ କଳ୍ପନା କଲେ । କୃଷ୍ଣଙ୍କର ଦେହାବସାନ ପରେ ତାଙ୍କ ଅର୍ଦ୍ଧଦଗ୍ଧ ପିଣ୍ଡ ଶ୍ରୀକ୍ଷେତ୍ରରେ ଜଗନ୍ନାଥ ରୂପରେ ପୂଜା ପାଉଥିବା ଚରିତାକାରରେ ମହାଭାରତରେ ବର୍ଣ୍ଣନା କରିଛନ୍ତି । ଉଦ୍ଧତ ଯାଦବକୁଳକୁ ଧ୍ୱଂସ କରି ପାଣ୍ଡବମାନଙ୍କୁ ତାଙ୍କ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ହେବାପରେ ଶ୍ରୀକୃଷ୍ଣ କ୍ଳାନ୍ତ ହୋଇ ଜଙ୍ଗଲ ଭିତରେ ଶିଆଳିଲତା ମଧ୍ୟରେ ବିଶ୍ରାମ ନେଇଥିଲେ । ଅଷ୍ଟବକ୍ର ଋଷିଙ୍କ ଅଭିଶାପରେ ସମୁଦ୍ରରେ ନିକ୍ଷିପ୍ତ ହୋଇଥିବା ମୂଷଳକୁ ଗିଳିଥିବା ମାଛ ଜାଲରେ ଧରାପଡ଼ିବା ପରେ ଜାରାଶବର ସେହି ମୂଷଳରେ ଏକ ଧାରୁଆ ନୂତନ ଅସ୍ତ୍ର ନିର୍ମାଣ କରି ଶିକାର ଉଦ୍ଦେଶ୍ୟରେ ବଣକୁ ଯାଇଥିଲା । ଶିଆଳିଲତାରେ ଶୟନରତ ଶ୍ରୀକୃଷ୍ଣଙ୍କ ପାଦ ଦୁଇଟି ତା ମନରେ ମୃଗ କାନର ଭ୍ରମ ସୃଷ୍ଟି କରିଥିଲା । ମୃଗ ଉଦ୍ଦେଶ୍ୟରେ କରିଥିବା ଶର ସନ୍ଧାନ ମାୟାବୀ ଶ୍ରୀକୃଷ୍ଣଙ୍କ ଦେହରେ ବିଦ୍ଧ ହୋଇଥିଲା । ଅନୁତପ୍ତ ଜାରାକୁ ଆଶ୍ୱାସନା ଦେଇ ଶ୍ରୀକୃଷ୍ଣ ଦେହତ୍ୟାଗ କରିବା ପୂର୍ବରୁ ଅର୍ଜ୍ଜୁନଙ୍କୁ ଡକାଇ ତାଙ୍କ କଳାହରଣ କରିଥିଲେ । ଶ୍ରୀକୃଷ୍ଣଙ୍କ ପିଣ୍ଡ ଦହନ ପାଇଁ ଉଭୟ ଜାରା ଓ ଅର୍ଜ୍ଜୁନ ଜଙ୍ଗଲରେ ବୁଲିବୁଲି ଅଗୁରୁ ବୃକ୍ଷ ସନ୍ଧାନ କରିଥିଲେ । ଜାରା ଅଗୁରୁ ବୃକ୍ଷମୂଳେ ଶବରୀ ନାରାୟଣଙ୍କୁ ଦର୍ଶନ କରିଥିଲା । ଶ୍ରୀକୃଷ୍ଣଙ୍କ ମୃତପିଣ୍ଡରେ ଅଗ୍ନିସଂଯୋଗ କରାଯାଇଥିଲେ ମଧ୍ୟ ତାଙ୍କ ନାଭିମଣ୍ଡଳକୁ ଦହନ କରିବାକୁ ଅଗ୍ନିଦେବ ସମର୍ଥ ହୋଇନଥିଲେ । ସେହି ଅପୋଡ଼ା ପିଣ୍ଡକୁ ସେମାନେ ସମୁଦ୍ରରେ ଭସାଇ ଦେଲେ । ତାହା ନୀଳସୁନ୍ଦର ପର୍ବତରେ ଜଗନ୍ନାଥ ମୂର୍ତ୍ତିରୂପେ ପୂଜିତ ହେବେ ବୋଲି ଜାରାକୁ ଶୂନ୍ୟବାଣୀ ହୋଇଥିଲା ଓ ଜାରା ସ୍ୱପ୍ନରେ ଶଙ୍ଖ ଚକ୍ର ଗଦାପଦ୍ମଧାରୀ ନୀଳମାଧବଙ୍କ




କମନୀୟ ମୂର୍ତ୍ତି ସନ୍ଦର୍ଶନ କରିଥିଲା । କୃଷ୍ଣରୂପୀ ଶ୍ରୀଜଗନ୍ନାଥଙ୍କୁ ସାରଳା ଦାସ ଅନନ୍ତ ଅଣାକାର ବିଷ୍ଣୁ ବୋଲି ଅବତାରଣା କରିଛନ୍ତି । **ସାରଳା ମହାଭାରତରେ ଜାରା ଶବରର ଶରରେ ଯେତେବେଳେ ଶ୍ରୀକୃଷ୍ଣଙ୍କ ଲୀଳା ସମାପ୍ତ ହୋଇଛି ତା' ପରଠାରୁ ମୂଷଳୀପର୍ବରେ ଶ୍ରୀଜଗନ୍ନାଥଙ୍କ ଲୀଳା ଆରମ୍ଭ ହୋଇଛି ।**

ଶ୍ରୀଜଗନ୍ନାଥ ପ୍ରଥମେ ଶବରୀ ନାରାୟଣ ରୂପେ ପୂଜା ପାଉଥିବା ବିଷୟ ମୂଷଳୀ ପର୍ବରେ ବର୍ଣ୍ଣିତ ହୋଇଛି । ସେତେବେଳେ ସେ ଶବରମାନଙ୍କଦ୍ୱାରା ବୃକ୍ଷରୂପରେ ପୂଜା ପାଉଥିଲେ । ତାନ୍ତ୍ରିକ ପଦ୍ଧତିରେ ତାଙ୍କଠାରେ ଅନ୍ନଭୋଗ ହେଉଥିଲା । ଶବରୀ ନାରାୟଣଙ୍କ ଆଦିପୂଜକ ଥିଲେ ବିଶ୍ୱାବସୁ । ମୂଷଳୀ ପର୍ବରେ ବର୍ଣ୍ଣିତ ଅଛି-

'ଏମନ୍ତ ଭାବନା କରି ସେ ବସୁ ଶବର
ପୂଜିବାକୁ ଚଳିଲା ସେ ଦେବ ଚକ୍ରଧର
ଯଥାବିଧି ପ୍ରତିଦିନ ପୂଜିଲା କିରାତ
ପୂଜା ନ ଘେନନ୍ତି ସେହୁ ନ ଭୁଞ୍ଜନ୍ତି ଭାତ ।'

ଧଉଳିପର୍ବତରେ ଶବରୀ ନାରାୟଣ ପୂଜା ପାଉଥିବା ସମ୍ବାଦ ଗାଲବ୍ୟ ନୃପତି ପାଇବା ପରେ ରାଜା ଦୂତ ପ୍ରେରଣ କଲେ । ତାଙ୍କୁ ଆଣିବା ପାଇଁ ବସୁଶବର ସହିତ ବିଦ୍ୟାପତି ମିତ୍ର ବସିଲେ । କିଛି ଦିନ ପରେ ଗାଲବ୍ୟ ରାଜା ସୈନ୍ୟ ସାମନ୍ତ ସହ ଆସି ମନ୍ତ୍ରୀ କହିଥିବା ଧଉଳିପର୍ବତର ନିକାଞ୍ଚନ ସ୍ଥାନକୁ ଯାଇ ନୀଳମାଧବଙ୍କୁ ପାଇ ନଥିଲେ । କେବଳ ପୂଜାଫୁଲ ପଡ଼ିଥିବା ଦେଖି ସେ ଶବରମାନଙ୍କୁ ହତ୍ୟା କରିଥିଲେ । ବିନାଦୋଷରେ ଶବରମାନଙ୍କୁ ହତ୍ୟା କରିଥିବାରୁ ତାଙ୍କ ବଂଶଲୋପ ହେବ, କିନ୍ତୁ ତାଙ୍କ ପୁତ୍ର ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କୁ ନୀଳଗିରିରେ ପୂଜା କରିବେ । ଅଳ୍ପଦିନ ଭିତରେ ଭଗବାନ ମହୋଦଧିରେ ଦାରୁରୂପରେ ଭାସି ଆସିବେ ଓ ସେହି ଦାରୁରେ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ଗଢ଼ାହେବ ବୋଲି ଶୂନ୍ୟବାଣୀ ହୋଇଥିଲା, ସାରଳା ଦାସ ମହାଭାରତର 'ବନପର୍ବ'ରେ ଲେଖିଛନ୍ତି-

'ଜାରାବାଣରେ ନାଶଯିବେ ଚକ୍ରପାଣି,
ଆପଣେ ଦେହ ଛାଡ଼ିବେ ଦେବ ଯଦୁମଣି ।
ସେ ପଣ୍ଡକୁ ଅରୁଜଳ କରନ୍ତେ ଦହନ,
ଆକାଶେ ଥାଇ କହିଲେ ତାଙ୍କୁ ଦେବଗଣ ।
ତୁ ଏ ଶବଦହନ ନକର ଧନଞ୍ଜୟେ
କଳିଯୁଗେ ପାଇବେ ଏ ପୂଜା ଏହି ଦେହେ,
ଅଗ୍ନିରୁ ଅର୍ଜ୍ଜୁନ କାଢ଼ି ପକାଇବ ଜଳେ
ସେ ପିଣ୍ଡ ଲାଗିବ ନୀଳସୁନ୍ଦର ଶଇଳେ ।
ଜାରା ବ୍ୟାଧକୁ ପ୍ରସନ୍ନ ହେବେ ଦେବରାଜା
ଜାରା ବ୍ୟାଧ କରିବତ ସେ ପିଣ୍ଡକୁ ପୂଜା ।'

ଦାରୁରେ ଇନ୍ଦ୍ରଦ୍ୟୁମ୍ନ ବୃଦ୍ଧ ବିନ୍ଧାଣିଦ୍ୱାରା ମୂର୍ତ୍ତି ନିର୍ମାଣ କଲାବେଳେ ପଣ ଭଙ୍ଗ ହେବାରୁ ତିନିମୂର୍ତ୍ତି ଅପୂର୍ଣ୍ଣ ରହିଗଲେ । ସାରଳା ଦାସ ଏହି କିମ୍ବଦନ୍ତୀକୁ ତାଙ୍କ ମହାଭାରତରେ ସ୍ଥାନିତ କରିବା ସହିତ ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ଗ୍ରହଣ କରି ନେଇଛନ୍ତି ।

'ମହୋଦଧି ତୀରେ ବଡ଼ ଦେଉଳରେ ବସି,
ଦରିଦ୍ରମାନଙ୍କ ଦୁଃଖ ନେଉଅଛ ଧ୍ୱଂସି ।
ବଉଦ୍ଧ ରୂପରେ କଳିଯୁଗେ ଅବତାର,
ହୋଇଣ ପାପୀଜନଙ୍କୁ କରୁଛ ଉଦ୍ଧାର ।' (ବିରାଟପର୍ବ)

ଏହିଭଳି ବର୍ଣ୍ଣନାରୁ ଜଣାଯାଏ ଯେ ସାରଳା ଦାସଙ୍କ ସମ୍ମୁଖରେ ଧଉଳିପାହାଡ଼ ଧର୍ମର ପ୍ରଧାନପୀଠ ଥିଲା । ଏହା ଶବର ଅଧ୍ୟୁଷିତ ଅଞ୍ଚଳ ମଧ୍ୟ ଥିଲା । ବୁଦ୍ଧମୂର୍ତ୍ତି ସେଠାରେ ପୂଜା ପାଉଥିଲେ ମଧ୍ୟ ବୈଷ୍ଣବ ଧର୍ମର ବହୁ ପ୍ରଭାବ ରହିଥିବା ଅନୁମାନ କରାଯାଏ । ସାରଳାଙ୍କ ସମୟକୁ ବୌଦ୍ଧ ଧର୍ମ ଲୋପପାଇ ଆସୁଥାଏ ଏବଂ ବୈଷ୍ଣବଧର୍ମ ପ୍ରାଧାନ୍ୟ ଲାଭ କରିଥିଲା ।

**ଶ୍ରୀଜଗନ୍ନାଥ ଧର୍ମରେ ବୌଦ୍ଧ, ବ୍ରାହ୍ମଣ୍ୟ ଓ ଶବରଧର୍ମର ସମନ୍ୱୟ ଘଟିଥିବା ଲକ୍ଷ୍ୟ କରାଯାଏ । ସାରଳା ଦାସ ତାଙ୍କ ମହାଭାରତରେ ଜଗନ୍ନାଥଙ୍କ ପ୍ରସଙ୍ଗ ବର୍ଣ୍ଣନା କରିବାବେଳେ ଏହି ତିନିଧର୍ମର ସୁମଧୁର ସମାବେଶ ଘଟାଇଛନ୍ତି ।** ଶ୍ରୀଜଗନ୍ନାଥ ହେଉଛନ୍ତି ସନାତନ ହିନ୍ଦୁଧର୍ମର ପରମ ଆରାଧ୍ୟ ଦେବତା । ସର୍ବଧର୍ମ ଓ ମତବାଦର ସେ ପ୍ରତୀକ । ସେ ଦାରୁ ଦେବତା । ବୈଷ୍ଣବୀୟ ଦର୍ଶନରେ ସେ ଶ୍ରୀକୃଷ୍ଣ, ଶୈବ ଦୃଷ୍ଟିରେ ଶିବ, ଶାକ୍ତ ମତରେ ଶକ୍ତି, ଗାଣପତ୍ୟ ମତରେ ଗଣପତି ଓ ବୌଦ୍ଧବାଦୀଙ୍କ ବିଚାରରେ ବୁଦ୍ଧ । ସେ ଅବତାରୀ ପୁରୁଷ । ତାଙ୍କର ରୂପ, ତତ୍ତ୍ୱ ଓ ଦର୍ଶନ ସାଧାରଣ ମଣିଷର ଚିନ୍ତାଚେତନାର ବହୁ ଉର୍ଦ୍ଧ୍ୱରେ । ସେ ସର୍ବମୟ, ସର୍ବବ୍ୟାପୀ, ଅନନ୍ତ, ଅସୀମ, ନିରାକାର । ସକଳ ଧର୍ମ ଓ ମତବାଦର ଉର୍ଦ୍ଧ୍ୱରେ ଶ୍ରୀଜଗନ୍ନାଥ ପତିତ ଦଳିତ ଜନର ଉଦ୍ଧାର ପାଇଁ ଶ୍ରୀକ୍ଷେତ୍ରର ରତ୍ନସିଂହାସନରେ ଅଧିଷ୍ଠିତ ।

ସାରଳା ଦାସଙ୍କ ମହାଭାରତରେ ଶ୍ରୀଜଗନ୍ନାଥ କେବଳ ଆଧ୍ୟାତ୍ମିକ ଧ୍ୟାନ ଧାରଣାର ଲକ୍ଷ୍ୟ ନୁହଁନ୍ତି ସେ ଓଡ଼ିଶା ଜନଜୀବନର ବାର୍ତ୍ତାବହ, ଉତ୍କଳୀୟ ସଂସ୍କୃତିର ବାହକ ଓ ଜାତୀୟତାର ଚିହ୍ନ ।

ପ୍ରତିଷ୍ଠାତା ତଥା ସଂପାଦକ
ସାରଳା ସାହିତ୍ୟ ସଂସଦ, ସାରଳା ଭବନ,
କଟକ-୮

# ବାଲିଗାଁ ଦାସକୁ ଖୋଜୁଛନ୍ତି କି ପ୍ରଭୁ !

ଡକ୍ଟର ହେମନ୍ତ କୁମାର ଛୋଟରାୟ

**ବା**ଲିଗାଁ ଦାସକୁ ଖୋଜୁଛନ୍ତି କି ପ୍ରଭୁ ! ବର୍ଷ ବର୍ଷ ଧରି ଖୋଜି ଚାଲିଛନ୍ତି ବୋଧେ ?

ଯେମିତି ସ୍ନାନ ପୂର୍ଣ୍ଣିମା ହେବ ପହଣ୍ଡିରେ ଚାଲିଆସିବେ ସ୍ନାନବେଦୀକୁ । ଗରା ଗରା ପାଣିରେ ତିନ୍ତୁଥିବ ଦେହ । ଅବିଶ୍ରାନ୍ତ ଚକାନୟନ ଦେଇ ବହି ଚାଲିଥିବ ଜଳର ସ୍ରୋତ । ଆପଣ ଆକ୍ତା ମାକତା ହେଇ ଚାହୁଁଥିବେ ବଡ଼ଦାଣ୍ଡକୁ । କାଳେ ଦିଶିଯିବକି ଦାସିଆର ମୁହଁ । ଭାବବିହ୍ୱଳ ଦାସିଆ ଉନ୍ମାଦ ହୋଇ ନାଚି ଉଠିବ ଆପଣଙ୍କ ଚକାଡ଼ୋଳାକୁ ଦେଖି ! କାହିଁ, କାହିଁ ସେ ଦାସିଆ ? ସଞ୍ଜ ହେଲେ ଗଜ ବେଶରେ ସଜେଇଦେବେ ସେବକମାନେ । ହଜାର ହଜାର ଭକ୍ତ ଆସି ଧୂପ, ଦୀପ, ନୈବେଦ୍ୟ ଦେଇ ପ୍ରଣାମ କରି ଚାଲିଯିବେ । କିନ୍ତୁ ହାୟ, ଦାସିଆର ମୁହଁ ଆପଣଙ୍କ ପାଇଁ ପ୍ରଶ୍ନବାଚୀ ହୋଇ ରହିଯିବ । ଆପଣଙ୍କୁ ସେବକମାନେ ନେଇ ଆସିବେ ଅଣସର ପିଣ୍ଡିକୁ । ଆହା ! ମୋ' ପ୍ରଭୁ ଅସୁସ୍ଥ କହି ଶ୍ରୀଅଙ୍ଗରେ ଲେପନ କରିବେ ବଡ଼ ଓଡ଼ିଆମଠପକ୍ଷରୁ ବର୍ଷକ ତଳୁ ମାଟିରେ ପୋତାହୋଇ ରହିଥିବା ରାଶିତେଲ, ଝୁଣା, କର୍ପୂର, ଓ ଚୁଆ । ତା'ପରେ ନୂତନ ବସ୍ତ୍ରଲାଗି । ପୁନଶ୍ଚ ମସୃଣ ଲେପନ । ଦଶମୀ, ଏକାଦଶୀ ଦିନ ପନ୍ଦର ସେର ଘୋରା ଚନ୍ଦନରେ କର୍ପୂର, କେଶର, କସ୍ତୁରୀ, କୁଙ୍କୁମ ଓ ଚୁଆ ମିଶାଯାଇ ଘଣ୍ଟ, କାହାଳି ଓ ବାଜା ଧ୍ୱନି ମଧ୍ୟରେ ଆପଣଙ୍କ ଖଳିଲାଗିହେବ । ଏହି ସମୟ ମଧ୍ୟରେ ରୋଗଶଯ୍ୟାରେ ରହି ମନଟା ଆପଣଙ୍କର ଛଟପଟ ହେଉଥିବ । କେଉଁଦିନ ମୁକ୍ତି ମିଳିବ ଏ ରୋଗଯନ୍ତ୍ରଣାରୁ ? ଅମାବାସ୍ୟା ଆସିବ । ଆପଣ ସୁସ୍ଥ ବୋଲି ଘୋଷଣା କରିବେ ସେବକମାନେ । ପ୍ରତିପଦା ଦିନ



ନବଯୌବନପ୍ରାପ୍ତ ଶରୀରକୁ ଦର୍ଶନ କରିବା ପାଇଁ ଧାଇଁ ଆସିବେ ଭକ୍ତମାନେ । ସେମାନଙ୍କ ମଧ୍ୟରେ ବାଲିଗାଁ ଦାସ ତ ନଥିବ । ଠିକ୍ ଅଛି, କାଲି ପ୍ରଭାତ ହେଲେ ଚାଲିଯିବି ରଥକୁ । ସେଇଠି ନିଶ୍ଚୟ ସାକ୍ଷାତ ହେବ ତା' ସହିତ । ଏମିତି ଏକ ସମ୍ଭାବନାକୁ ପାଥେୟ କରି ବିଶ୍ରାମ ନେଇ ଯିବେ ପ୍ରଭୁ ସେ ଦିନ ରାତିରେ ।

ସାରା ଜଗତକୁ ଆଲୋକିତ କରି ସୂର୍ଯ୍ୟ ପ୍ରଭାତର ଉଦ୍‌ଘୋଷଣା କରିବେ । ଘୋଷଯାତ୍ରାର ପ୍ରସ୍ତୁତିରେ ଚଳଚଞ୍ଚଳ ହୋଇ ଉଠିବ ଶ୍ରୀମନ୍ଦିର । ମଙ୍ଗଳ ଆଳତି, ମଇଲମ, ତଡ଼ପଲାଗି, ରୋଷହୋମ, ଅବକାଶ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା ଭଳି ବିଧିବିଧାନ ଶେଷ ହେବ ନିର୍ଦ୍ଦିଷ୍ଟ ସମୟ ଅନ୍ତରରେ । ଯାତ୍ରାରେ ବାହାରୁ ଥିବାରୁ ସେବକମାନେ ଆପଣଙ୍କୁ ସକାଳ ଧୂପ ସ୍ୱରୂପ ଗୋପାଳବଲ୍ଲଭ ବା ଖେଚୁଡ଼ିଭୋଗ ଗଣ୍ଡିଏ ଅର୍ପଣ କରିବେ । ଯାତ୍ରା କେତେ ସମୟ ଲାଗିବ କିଏ କହିବ ? ଆରମ୍ଭରୁ ଆପଣଙ୍କ ପାଇଁ ଏ ଖେଚୁଡ଼ି ଭୋଗତକ ବେଶ୍ କାମରେ ଲାଗିବ । ନଚେତ୍ ବାଟରେ ଭୋକ କଲେ କିଏ କେଉଁଠୁ ପ୍ରସାଦ ଆଣିଦେବ ! ତା'ପରେ ଆପଣଙ୍କ ଶୁଭଯାତ୍ରା ପାଇଁ ପ୍ରସ୍ତୁତ ସୁସଜ୍ଜିତ ରଥ ପ୍ରତିଷ୍ଠା ହେବ । ପହଣ୍ଡିରେ ବିଜେ ହେବେ ଜ୍ୟେଷ୍ଠଭ୍ରାତା ବଳଭଦ୍ର, ଭଗ୍ନୀ ସୁଭଦ୍ରା ଓ ଶ୍ରୀସୁଦର୍ଶନ । ଶେଷରେ ସମସ୍ତ ଆବେଗ ଓ ଉତ୍କଣ୍ଠାର ନାୟକ ଆପଣ ଶଙ୍ଖ, ଘଣ୍ଟ ଓ ବିଜେ କାହାଳିର ଘନ ଘନ ଧ୍ୱନି ମଧ୍ୟରେ ବିଜେ କରିବେ ମହାପହଣ୍ଡିକୁ । ବାହାରେ ବ୍ୟାକୁଳତାର ମହାସ୍ରୋତରେ ଭାସମାନ ଅସଂଖ୍ୟ ଭକ୍ତ ଜନପ୍ରାଣରେ ସୃଷ୍ଟି ହେଉଥିବ ଅପୂର୍ବ ଶିହରଣ । ହରିବୋଲ ହୁଳହୁଳି ଧ୍ୱନିସହ ଶଙ୍ଖ, ଭେରୀ-ତୂରୀ, କାହାଳି, ଘଣ୍ଟ-ଘଣ୍ଟା, କରତାଳି, କାଂସବାଦ୍ୟ,





ଖୋଳ-ମର୍ଦ୍ଦଳ, ପଖାଉଜ ବାଦ୍ୟରେ କମ୍ପି ଉଠୁଥିବ ଦିଗ୍‌ବିଦିଗ । ଭାସି ଆସୁଥିବ କେତକୀ, ଦୟଣା, ତୁଳସୀ, କର୍ପୂର, ଅଗରୁ, କସ୍ତୁରୀ, ଗୋରଚନାର ଭୁରୁଭୁରୁ ବାସ୍ନା । ଛତ୍ରି, ତ୍ରାସ, ଆଲଟଚାମର, ଶିରରେ ଟାହିଆ ଉପରେ ଶ୍ୱେତଛତ୍ର ଟାଣି, ପୁଷ୍ପବୃଷ୍ଟିସହ ଘଣ୍ଟୁଆଳର ଏକତାଳି ଘଣ୍ଟର ତାଳେ ତାଳେ ଝୁଲି ଝୁଲି ବିଜେ ହେଉଥିବେ ପ୍ରଭୁ ରାଜକୀୟ ପଟୁଆରରେ । ମନ ଭିତରେ ଉତ୍କଣ୍ଠା ରହୁଥିବ ରଥ ଉପରେ ବସିଗଲେ ସାମ୍ନାରେ ଆସି ଠିଆ ହୋଇଯିବ କି ସେଇ ବାଲିଗାଁ ଦାସ । ତାକୁ ଯେମିତି କାଳ କାଳ ଧରି ଅପେକ୍ଷା କରିଛନ୍ତି ଆପଣ ।

ଅପୂର୍ବ ଠାଣିରେ ଆପଣ ଆସି ବିଜେ ହେବେ ନନ୍ଦିଘୋଷ ରଥ ଉପରେ । ଚାହିଁବେ ସାମ୍ନାକୁ । ଦେଖିବେ, ଆପଣଙ୍କୁ ଅପଲକ ନୟନରେ ଚାହିଁ ରହିଛି ଅଗଣିତ ଭକ୍ତ ସମୁଦ୍ର । ଏମାନଙ୍କ ମଧ୍ୟରେ କାହିଁ ସେ ଦାସିଆ ? ଯିଏ ଏମିତି ଏକ ଶୁଭଦିନରେ ଗାଁ ଲୋକଙ୍କ ସହ ଚାଲି ଆସିଥିଲା ଆପଣଙ୍କ ଶ୍ରୀମୁଖ ଦର୍ଶନ ପାଇଁ ? ବଡ଼ଦାଣ୍ଡରେ ପହଞ୍ଚି ସେ ପାଗଳପ୍ରାୟ ନାଚି ଥିଲା । ଭୋ ଭୋ କାନ୍ଦିଥିଲା ଅବିଶ୍ରାନ୍ତ ନୟନରୁ ଲୋତକ ଢାଳି । କେଜାଣି କାହିଁକି ତାକୁ ସେଦିନ ଭକ୍ତିରସରେ ଅପୂର୍ବ ଲାଗିଥିଲା ବଡ଼ଦାଣ୍ଡ । ଏହି ଦାଣ୍ଡରେ ଆଜି ଦାରୁବ୍ରହ୍ମ ଭଗବାନଙ୍କ ଦର୍ଶନ ପାଇଁ ସମବେତ ହୋଇଛନ୍ତି ହଜାର ହଜାର ଭକ୍ତ । ଭାବରେ ଗଦ୍‌ଗଦ୍ ହୋଇ ସେ ବଡ଼ଦାଣ୍ଡର ଧୂଳିକୁ ବହୁବାର ମଥାରେ ମାରିଲା । ଭାବିଲା, ଏଇ ଭକ୍ତମାନେ ହିଁ ଭଗବାନ । ସେମାନଙ୍କ ପାଦଧୂଳି ହିଁ ପ୍ରଭୁଙ୍କର ଶ୍ରୀଚରଣ ଧୂଳି । ଉନ୍ମାଦିତ ଦାସିଆ ନାଚି ନାଚି ଅଗଣିତ ଜନସମୁଦ୍ରକୁ ଠେଲି ଚାଲିଲା ଆଗକୁ । ନନ୍ଦିଘୋଷ ରଥ ଉପରେ ଆପଣଙ୍କୁ ଦେଖି ସେ ଅପୂର୍ବ ଶିହରଣରେ ଥରି ଉଠିଲା । ଉଚ୍ଚସ୍ୱରରେ ଭକ୍ତମାନଙ୍କ ଡାକ 'ମହାପ୍ରଭୁ ରକ୍ଷାକର' ତାକୁ ଭାବବିହ୍ୱଳ କଲା । ସେ ବୁଝିପାରିଲା - ମହାବାହୁ ସୁରଙ୍ଗ ଅଧରରେ ହସି ହସି ଦୁଇହସ୍ତ ପ୍ରସାରି ବ୍ରାହ୍ମଣ-ଚଣ୍ଡାଳ, ପଣ୍ଡିତ-ମୂର୍ଖ, ସାଧୁ-ପାପୀ, ଯୋଗୀ-ଭୋଗି ସମସ୍ତଙ୍କୁ କୋଳାଗ୍ରତ କରି କୃତାର୍ଥ କରିବା ପାଇଁ ବିଜେ ହୋଇଛନ୍ତି ରଥ ଉପରେ । କି ଶୋଭାବନ ଏ ଚକାଡ଼ୋଳା ? ଆଜି ଜୀବନ ମୋର ଧନ୍ୟ ହେଲା । ତନ୍ମୟ ହୋଇ ସେ ଅଶ୍ରୁଳ ନୟନରେ ଗାଇ ଉଠିଲା -

ମୁଁ ମହାପାପୀ ଏ ଜଗତେ
        ମୋତେ ଉଦ୍ଧର ଜଗନ୍ନାଥେ ।
ନକର ମୋ' ବିଷୟେ ହେଳ
        ମୋ' ହୃଦେ ଜ୍ଞାନ ଦୀପ ଜାଳ ।
ତୁମ୍ଭେ ଯେ ପତିତ ପାବନ
        ମୋତେ ଉଦ୍ଧର ଭଗବାନ ।

ସତରେ ସେଦିନ ତା' ହୃଦୟରେ ଆପଣ ଜ୍ଞାନଦୀପ ଜାଳି ଦେଇଥିଲେ । ଆପଣଙ୍କ ଘୋଷଯାତ୍ରାର ପରମ୍ପରାକୁ ଦେଖି ସେ ଆଚମ୍ବିତ ହୋଇ ଯାଇଥିଲା । ରଥ ଉପରେ ଆପଣ ବିଜେ ହେଲାପରେ ମଦନମୋହନ ବିଜେ ଓ ଚିତାଲାଗି ହେଲା । ବେଶବାସ ଓ ଅଳଙ୍କାର ସିନ୍ଦୁକ ଆଣି ଥୋଇଦେଲେ ସେବକମାନେ । ଓଃ କି ଅପୂର୍ବ ଲୀଳା ମୋ' ପ୍ରଭୁଙ୍କର । ଘରୁ ନଅଦିନ ପାଇଁ ବାହାରକୁ ଯାଉଥିବାରୁ ଆମ ତମ ଭଳି ସେ ସାଙ୍ଗରେ ପୋଷାକପତ୍ର ସୁଟକେଶରେ ଧରି ବାହାରୁଛନ୍ତି । ଏତିକିବେଳେ ଉତ୍କଳର ଗଜପତି ମହାରାଜା ସ୍ୱୟଂ ଉଠିଲେ ରଥ ଉପରକୁ । ବୀର କାହାଳି ବାଜି ଉଠିଲା । ଝାଡୁଟିଏ ଧରି ଖରକି ଚାଲିଲେ ପ୍ରଭୁଙ୍କ ରଥକୁ । ନିଜକୁ ଅକିଞ୍ଚନ ମନେକଲା ଦାସିଆ । ଯେଉଁଠି ସ୍ୱୟଂ ଗଜପତି ଜଣେ ଛାରସେବକ ହୋଇ ଚଣ୍ଡାଳର ଭୂମିକା ନିଭାଉଛନ୍ତି ସେଠି ଦାସିଆକୁ ଚିହ୍ନିବ କିଏ ? ନିଜକୁ ନିଜେ ପଚାରିଲା, ପ୍ରଭୁ କ'ଣ ମତେ ଚିହ୍ନି ପାରିବେ ? ମତେ ଜାଣି ପାରିବେ ? ମୁଁ ତାଙ୍କର ଅଛବ ମୁରୁଖ ଭକତ ଜଣେ ? ଧାଇଁ ଆସିଛି ଦୂର ବାଲିଗାଁରୁ ପ୍ରଭୁଙ୍କ କରୁଣାରୁ କାଣିଚାଏ ପାଇବା ପାଇଁ । ଚାରମାଳ ଫିଟା ହେଲା । ରଥକୁ ବାହିନେବା ପାଇଁ ଅଶ୍ୱମାନେ ବନ୍ଧା ହେଲେ । ସାରଥୀ ବସିଲେ । ଘର୍ଘର ନାଦକରି ଅସଂଖ୍ୟ ଭକ୍ତମାନଙ୍କ ହରିବୋଲ, ହୁଳହୁଳି ଧ୍ୱନି ମଧ୍ୟରେ ଗଡ଼ି ଚାଲିଲା ଆପଣଙ୍କ ରଥ ଗୁଣ୍ଡିଚା ଘର ଅଭିମୁଖେ । ଆଗରେ ଚାଲୁଥିଲା ବଡ଼ ଭାଇ ଓ ଭଉଣୀଙ୍କ ରଥ । ସେହି କୋଳାହଳ ମଧ୍ୟରେ ଦାସିଆ ଥରକୁ ଥର ମୂର୍ଚ୍ଛା ଯାଇଥିଲା ସେ ଦିନ । ଧୂଳି ସାଉଁଟି 'କେଡ଼େ ସୁନ୍ଦର ମୋ' ପ୍ରଭୁ, କେଡ଼େ ସୁନ୍ଦର ତାଙ୍କର ଲୀଳା' କହି ଉଠୁଥାଏ ପଡୁଥାଏ । ଆପଣ ରାତି ବିତେଇଲେ ରଥ ଉପରେ । ସେ ବି କାନିପାରି ଶୋଇଗଲା ବଡ଼ଦାଣ୍ଡରେ ଗାଁଲୋକ କାହାକୁ କେଉଁଠି ନପାଇ । ଏତେ ବଡ଼ ଗହଳିରେ କାହାକୁ କେଉଁଠି ଖୋଜି ପାଇବା କ'ଣ ସହଜକଥା । ରାତି ସାରା ତାକୁ କ'ଣ ନିଦ ହେଲା କି ! ଖାଲି ଆପଣଙ୍କ ଶ୍ରୀମୁଖ ତା' ଆଖି ଆଗରେ ନାଚି ଉଠୁଥାଏ । ସକାଳ ପାହିଲା, ଆପଣଙ୍କୁ ମୁଣ୍ଡିଆଟିଏ ମାରି ଦାସିଆ ଫେରିଗଲା ନିଜ ଗାଁକୁ । ବାଟଯାକ ଖାଲି ଭଜୁଥିଲା ଆପଣଙ୍କୁ । ତା' ଆଖିରେ ଲାଖି ରହିଥିଲା ଆପଣଙ୍କ ଚକାନୟନ । ଭକ୍ତିରେ ଭାବ ବିହ୍ୱଳ ହୋଇ ସେ ଭୋକଶୋଷ ଭୁଲିଗଲା ।

ଆପଣ ତାକୁ ଭକ୍ତି ଡୋରରେ ବାନ୍ଧି ଦେଇ ଥିଲେ ସେଦିନ ଶକ୍ତ କରି । ସେ ଡୋର କ'ଣ ସହଜେ ଆଉ ଛିଡ଼ିଲା । ଗାଁରେ





ପହଞ୍ଚିଲା ପରେ ତା'ର ଅସ୍ୱାଭାବିକ ଆଚରଣ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କଲା । ପତ୍ନୀ ତା'ର ବାଢ଼ିଦେଲା ବହଳିଆ ପେଜ ଥାଳିଏ । ଆଣି ଥୋଇଦେଲା ଥାଳି ମଝିରେ ଶାଗ ମେଞ୍ଚାଏ । ଧଳାପେଜ ମଝିରେ ଶାଗର ରଙ୍ଗ କଳା । ବସୁ ବସୁ ସେ ତନ୍ମୟ ହୋଇ ଉଠିଲା । ଥାଳିରୁ ଆବିଷ୍କାର କଲା ଆପଣଙ୍କ ଚକାନୟନକୁ । ଭାବିଲା, ଏତ ସେଇ ଶ୍ୱେତପଦ୍ମତ୍ତୋଳା । କେମିତି ଭୁଞ୍ଜିବି ଏହାକୁ ? ଏପରା ଅବିକଳ ମହାପ୍ରଭୁଙ୍କ ମୁଖଚନ୍ଦ୍ର । ରଙ୍ଗ ଅଧରରେ ଅଳ୍ପ ଅଳ୍ପ ହସୁଛନ୍ତି ମତେ ଚାହିଁ । ଭକ୍ତିରେ ଭାବବିହ୍ୱଳ ତା' ଶରୀର କମ୍ପି ଉଠିଲା । ଟାଙ୍କୋରି ଉଠିଲା ଲୋମ । ସେ ପାଗଳପ୍ରାୟ ଥାଳି ଚାରିପଟେ ଭକ୍ତିର ଛନ୍ଦତୋଳି ନାଚିବାକୁ ଲାଗିଲା । ବିଚରା ପତ୍ନୀ ତା'ର ଏହା ଦେଖି ଶଙ୍କିଗଲା । କ'ଣହେଲା ମୋ' ଗେରସ୍ତର । କାହିଁକି ତୁଣ୍ଡକୁ ନେଉ ନାହାନ୍ତି କିଛି ? ତାଙ୍କ ପେଟରେ କ'ଣ ଭୋକ ନାହିଁ ? ଅଣ୍ଟାରେ ତ ପଇସା ନଥିଲା, ଖାଇଲେ କେଉଁଠୁ ? କହିଲା, ହେଇଟି ଶୁଣୁଛ ? ଭୋକ ଉପାସରେ ଦିନ କଟେଇ ଫେରିଛ । ସେଇତକ ଖାଇଦେଇ ଶୋଇପଡ଼ । ହେଲେ ଦାସକୁ ଏସବୁ ଶୁଣାଗଲା ନାହିଁ । ତା'ର କ'ଣ ବାହ୍ୟଜ୍ଞାନ ଅଛି ଯେ ଶୁଣିବ ! ଯେତେ କହିଲେ ମଧ ସେ ପୂର୍ବବତ୍ ନାଚି ଚାଲିଲା । ଦାସର ପତ୍ନୀ ଯାଇ ଗାଁରେ ଫେରାଦ ହେଲା । ତମ ଆପଣମାନଙ୍କ ସହ ପୁରସ୍ତମ ଯାଇଥିଲେ ମୋ' ଗେରସ୍ତ । ସେ ତ କାହାର ହାନିରେ ନଥାଏ । ତା' ଉପରେ ରାଗି ତମେ ଆପଣମାନେ କି ଗୁଣି କରିଛନ୍ତି ସେ କିଛି ତୁଣ୍ଡକୁ ନେଉ ନାହାନ୍ତି । ଖାଲି ନାଚୁଛନ୍ତି । ଆସ ଦେଖିବ । ଗ୍ରାମବାସୀ କେତେଜଣ ଧାଇଁ ଆସି ପଚାରିଲେ ଦାସକୁ । ଥାଳିରେ ବଢ଼ା ହୋଇଛି ତୋ' ପାଇଁ ଖାଦ୍ୟ । ତାକୁ ନଖାଇ ତୁ ଏମିତି ପାଗଳ ପ୍ରାୟ ନାଚୁଛୁ କାହିଁକି ? ଦାସର ଆଖି ଛଳ ଛଳ ହୋଇଗଲା । ଗ୍ରାମବାସୀଙ୍କ ମୁହଁକୁ ଚାହିଁ କିଛି ସମୟ ଚୁପ୍ ରହିଗଲା । ତା' ପରେ ହାତଯୋଡ଼ି ବିନୟ ହୋଇ କହିଲା -

ହାଣ୍ଡି ସୁରଙ୍ଗ ପେଜଧଳା<br>
ତା' ମଧ୍ୟେ ଶାଗ ଦିଶେକଳା ।<br>
ସାକ୍ଷାତେ ପଦ୍ମତ୍ତୋଳା ଏହି<br>
ଗୋଳି କି ରୂପେ ଖାଇବଇଁ ।

ଏହି ପଦକୁ ଗାଇ ଗାଇ ପୁନଶ୍ଚ ଉଦଣ୍ଡ ନୃତ୍ୟରେ ପ୍ରମତ୍ତ ହେଉଥାଏ ସେ । ଉପସ୍ଥିତ ଗ୍ରାମବାସୀ ଜାଣିପାରିଲେ ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରି ଭକ୍ତି ଭାବରେ ଆଚ୍ଛନ୍ନ ହୋଇଛି ଦାସର ଦେହ ଓ ମନ । ତାକୁ ପେଜ ଓ ଶାଗ ଚକାନୟନ ପ୍ରାୟ ଦୃଶ୍ୟ ହେଉଛି । ସେଥିପାଇଁ ସେ ଏହାକୁ ଭୋଜନ ନକରି ଭାବବିହ୍ୱଳ ହୋଇ ନାଚୁଛି । ଜଣେ ଯାଇ ତା' ପତ୍ନୀକୁ କହିଲେ, ପେଜରୁ ଶାଗ ଅଲଗା କରି ଦିଅ । ତତ୍‌କ୍ଷଣାତ୍ ପତ୍ନୀ ଗ୍ରାମବାସୀଙ୍କ କଥାମାନି ପେଜରୁ ଶାଗ ଅଲଗା କରିଦେଲା । ଦାସକୁ ସମସ୍ତେ କହିଲେ, ଦେଖିଲୁ ତୋ' ପାଇଁ ତୋ ଭାର୍ଯ୍ୟା କେମିତି ସୁଆଦିଆ ଖାଦ୍ୟ ବାଢ଼ିଛି । ତାକୁ ଗୋଳେଇ ଖାଇଦେ । ଦାସ ପ୍ରକୃତିସ୍ଥ ହେଲା । ସେ ଦେଖିଲା ତା' ପାଇଁ ବଢ଼ା ହୋଇଛି ପେଜ ଓ ଶାଗ । ପେଟରେ ତା'ର ଭୋକର ଜ୍ୱାଳା । ଆରେ ଏ ଯାଏଁ ମୁଁ ଖାଇନାହିଁ ଯେ । ବସିପଡ଼ି ଦି' ହାପୁଡ଼ାରେ ସାରି ଦେଲା ଥାଳିତକ ପେଜ । ସେହିଦିନ ହିଁ ଗ୍ରାମବାସୀ ପାଇଥିଲେ ଦାସଠି ଉଦ୍ଦାମ ଭକ୍ତିର ପରିଚୟ ।

ଆପଣ ତା' ହୃଦୟରେ ଯେଉଁ ଜ୍ଞାନ ଭକ୍ତିର ଦୀପ ଜାଳି ଦେଇଥିଲେ, ତାହା ଚିରଦିନ ଲାଗି ଦାଉ ଦାଉ ହୋଇ ଜଳିଲା । ଆପଣଙ୍କୁ ଛାଡ଼ି ଗୋଟିଏ ମୁହୂର୍ତ୍ତ ବଞ୍ଚିବା ତା'ପକ୍ଷେ ଅସମ୍ଭବ ହୋଇପଡ଼ିଲା । ସେ ଅହରହ ଭଜନ କୀର୍ତ୍ତନରେ ଦିନ ବିତେଇଲା । ଆପଣଙ୍କ ଜ୍ୟୋତିର୍ମୟ ପୁରୁଷୋତ୍ତମ ରୂପ ଦର୍ଶନ ପାଇଁ ତା' ମନ ବ୍ୟାକୁଳ ହେଉଥାଏ । ରାତିରେ ଦିନେ ନିଦ୍ରିତ ଅବସ୍ଥାରେ ଆପଣ ଦର୍ଶନ ଦେଇ ତାକୁ ସନ୍ତୁଷ୍ଟକଲେ । ସେ ଆପଣଙ୍କ ନିକଟରେ କୃତଜ୍ଞ ହୋଇଗଲା । କେତେ କେତେ ସାଧୁ, ଜ୍ଞାନୀ, ପଣ୍ଡିତ, ମହାମୁନି ଆପଣଙ୍କୁ ଦର୍ଶନ କରିବା ପାଇଁ ବର୍ଷ ବର୍ଷ ଧରି ତପସ୍ୟା କରିଆସୁଛନ୍ତି । ଆପଣ ସେମାନଙ୍କ ଇଚ୍ଛା ପୂରଣ ନକରି ଏ ଛାର ଅଛବ ଦାସିଆର ଭଙ୍ଗା କୁଡ଼ିଆକୁ ଆସି ଦର୍ଶନ ଦେଲେ, ସେତିକି ଯଥେଷ୍ଟ ପ୍ରଭୁ । କୃତ୍ୟ କୃତ୍ୟ ହୋଇଯାଉଥାଏ ସେ । ଆପଣ ତାକୁ ଗୋଟିଏ ବର ପ୍ରଦାନ କରିଥିଲେ ସେଇ ମୁହୂର୍ତ୍ତରେ । ତୁ ତୋ ପ୍ରଭୁ ପାଇଁ ଯେତେବେଳେ ଯେଉଁ ନୈବେଦ୍ୟ ପ୍ରେରଣ କରିବୁ ତାହା ମୁଁ ସ୍ୱହସ୍ତରେ ଗ୍ରହଣ କରିବି । ସେତିକି ହେଉ ପ୍ରଭୁ । ଦାସ ଆଉ ସମ୍ଭାଳି ନପାରି କାନ୍ଦି ଉଠିଥିଲା ରାତିରେ । ରାତିରେ ଶୋଇଥିବା ବେଳେ ଦାସର ବିଳାପ ଦେଖି ପତ୍ନୀ ତା'ର ଆଶ୍ଚର୍ଯ୍ୟ ହୋଇ ଯାଇଥିଲା । ଦିନେ ଶ୍ରୀକ୍ଷେତ୍ର ବାହାରିଲେ ବ୍ରାହ୍ମଣ ପଣ୍ଡିତ ଦଳେ । ତାଙ୍କ ଭିତରୁ ଜଣକୁ ଭେଟି ଦାସ ଅନୁନୟ ହୋଇ କହିଲା, ଗୋସେଇଁ ମହାପୁରୁ ମୋ' ପାଇଁ ଏତିକି ମାଗୁଣି ହେଉ । ବହୁଦିନରୁ ସଞ୍ଚି ରଖିଛି ନଡ଼ିଆଟିଏ ପ୍ରଭୁଙ୍କ ପାଇଁ । ଇଚ୍ଛା ପ୍ରଭୁ ନିଜ ହାତରେ ନିଅନ୍ତୁ ଏ ନଡ଼ିଆ । ଆପଣ ଦୟାକରି ଏଇଟି ପୁରସ୍ତମ ନେଇ ଯାଆନ୍ତେ ଯଦି ମୁଁ ଖୁସି ହୁଅନ୍ତି । ବ୍ରାହ୍ମଣ ପଣ୍ଡିତ କଥାଟିକୁ ସହଜରେ ଗ୍ରହଣ କରିପାରି ନଥିଲେ । ତାଙ୍କ ମନରେ ସୃଷ୍ଟି ହୋଇଥିଲା ସନ୍ଦେହ । କେତେ ଯୋଗୀ ସନ୍ନ୍ୟାସୀ ପ୍ରଭୁଙ୍କୁ ଭଜି ଭଜି ତାଙ୍କର କୃପା କାଣିଚାଏ ପାଉନାହାନ୍ତି । ଏ ଛାର





ଦାସିଆର ନଡ଼ିଆ ପୁଣି ପ୍ରଭୁ ନିଜ ହାତରେ ଗ୍ରହଣ କରିବେ ? ତା' ଛଡ଼ା ଦାରୁବ୍ରହ୍ମ ଜଗନ୍ନାଥଙ୍କର ହାତ କାହିଁ ଏ ନଡ଼ିଆ ନେବାକୁ ? ଏଇଟା ପାଗଳ ହେଇଛି ନିଶ୍ଚେ । ତାଚ୍ଛଲ୍ୟ ହସର କ୍ଷୀଣ ରେଖାଟିଏ ଦେଖାଦେଇଥିଲା ବ୍ରାହ୍ମଣ ପଣ୍ଡିତଙ୍କ ମୁଖମଣ୍ଡଳରେ । ହଉ ଦେଇଥା ଦେଖିବା କହି ନଡ଼ିଆଟିକୁ ନେଇ ଚାଲିଯାଇଥିଲେ ଶ୍ରୀକ୍ଷେତ୍ର । ନିଜର ସମସ୍ତ ପୂଜାକର୍ମସାରି ଦାସର କଥାକୁ ପରୀକ୍ଷା କଲେ ଗରୁଡ଼ସ୍ତମ୍ଭ ନିକଟରେ ଦଣ୍ଡାୟମାନ ହୋଇ । କହିଲେ, ପ୍ରଭୁ ବାଲିଗାଁ ଦାସ ପଠେଇଛି ଏ ଶ୍ରୀଫଳ । ଆପଣ ଗ୍ରହଣ କରନ୍ତୁ ଏହାକୁ । ତା'ର ବିଶ୍ୱାସ ଆପଣ ନିଜ ହାତରେ ଏହାକୁ ଗ୍ରହଣ କରିବେ । **ଚାହୁଁ ଚାହୁଁ ଦୁଇହସ୍ତ ବିସ୍ତାରି ବ୍ରାହ୍ମଣଙ୍କ ହସ୍ତରୁ ଶ୍ରୀଫଳ ତୋଳି ନେଲେ ମହାବାହୁ ଆପଣ । ବିସ୍ମିତ ହୋଇଗଲେ ବ୍ରାହ୍ମଣ ପଣ୍ଡିତ । ଏ କି ଅଲୌକିକ କଥା ! ପ୍ରମାଣ ପାଇ ସ୍ୱୀକାର କରିଥିଲେ ସେଦିନ, ଦାସ ଆପଣଙ୍କର ପ୍ରିୟ ଭକ୍ତ । ତା' ଭକ୍ତିର ପଟ୍ଟାନ୍ତର ନାହିଁ ।**

ଆପଣ ଭକ୍ତବତ୍ସଳ । ଭକ୍ତପ୍ରତି ଆପଣଙ୍କ ଅହେତୁକ କୃପାର ନିଦର୍ଶନ ଯୁଗ ଯୁଗ ଧରି ରହିଛି । ଆଉ ଥରେ ଦାସ ଆସିଥିଲା ବଡ଼ଦାଣ୍ଡକୁ । ମୁଣ୍ଡରେ ଧରିଥିଲା ପାଚିଲା ରସାଳ ଆମ୍ବବୋଝେ । ସୁସ୍ୱାଦୁ ଆମ୍ବଗୁଡ଼ିକୁ ଯତ୍ନର ସହ ବୋଝରେ ସାଇତି ଆଣିଥିଲା । ଇଚ୍ଛାଥିଲା ମୋ' ପ୍ରଭୁ ନିଜେ ଏ ଆମ୍ବତକ ଖାଆନ୍ତୁ । ସିଂହଦ୍ୱାର ଅରୁଣସ୍ତମ୍ଭ ନିକଟରେ ଦଣ୍ଡାୟମାନ ହେଲା ଦାସ । ବୋଝ ଥୋଉଥୋଉ ପଣ୍ଡାଏ ମାଗିଲେ, ଆମକୁ ଦିଅ । ଆମେ ଭୋଗକରି ଆଣିଦେବୁ । ଦୃଢ଼ମନା ଦାସ ପଣ୍ଡାଙ୍କର କୌଣସି କଥାକୁ କାନ ଦେଇନଥିଲା । ଗୋଟିଏ ଗୋଟିଏ ବୋଝରୁ କାଢ଼ି ବଢ଼ାଇଲା ନିଜ ହାତରେ । କହିଲା, ପ୍ରଭୁ ଏ ଆମ୍ବ ଆପଣ ଖାଆନ୍ତୁ । ଗୋଟିଏ ପରେ ଗୋଟିଏ ଆମ୍ବ ତା' ହାତରୁ ନେଇଯାଇଥିଲେ ଆପଣ । ପଣ୍ଡାମାନଙ୍କ ତାଚ୍ଛଲ୍ୟର ଶିକାର ହୋଇଥିଲା ଦାସିଆ ସେଦିନ । ହେଲେ ରତ୍ନସିଂହାସନ ପଛପଟେ ଆମ୍ବଟାକୁଆ ଓ ଚୋପା ପଡ଼ିଥିବା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ ସେମାନେ । କଥାଟା ପ୍ରଚାର ହୋଇଗଲା ଚାହୁଁ ଚାହୁଁ । ଭକ୍ତବତ୍ସଳ ଜଗନ୍ନାଥଙ୍କ ଲୀଳା ଦେଖି ହତଚକିତ ହୋଇ ପଡ଼ିଥିଲେ ସାରା ଶ୍ରୀମନ୍ଦିରର ସେବକମାନେ । ଏହି ଅଲୌକିକ ଘଟଣା ଶ୍ରୀକ୍ଷେତ୍ରର ଜନମାନସରେ ଚହଳ ସୃଷ୍ଟିକଲା । ଦାସିଆପ୍ରତି ଆପଣଙ୍କର ଏ କୃପା ଦେଖି ଅନ୍ୟ ଭକ୍ତମାନେ ଈର୍ଷା ଓ ଅହଙ୍କାରରେ ଜଳି ଯାଇଥିଲେ ସମ୍ଭବତଃ । କିଏ ସେ ଦାସିଆ ? ତା'ର ଏତେ ଭକ୍ତି ଯେ, ପ୍ରଭୁ ନିଜେ ସ୍ୱହସ୍ତରେ ଶ୍ରୀଫଳ ତୋଳି ନେଉଛନ୍ତି । ସ୍ୱହସ୍ତରେ ଆମ୍ବ ଗ୍ରହଣ କରି ରସ ଆସ୍ୱାଦନ ପରେ ଟାକୁଆ ଓ ଚୋପାକୁ ଫିଙ୍ଗି ଦେଉଛନ୍ତି । କାହିଁ ଶ୍ରୀକ୍ଷେତ୍ରରେ ତାର ତ ଆଶ୍ରମ ନାହିଁ ? କେଉଁଠି ରହି ସେ ପ୍ରଭୁଙ୍କର ଭଜନ କରୁଛି ? ପ୍ରଭୁଙ୍କ ପାଖରେ ନରହି ପ୍ରଭୁଙ୍କ କୃପା ଲାଭ କରି ପାରିଛି ? ପାଞ୍ଚ ଜଣ ଶ୍ରେଷ୍ଠ ଭକ୍ତ ବଳରାମ ଦାସ, ଯଶୋବନ୍ତ ଦାସ, ଅନନ୍ତ ଦାସ, ଅଚ୍ୟୁତାନନ୍ଦ ଦାସ, ଜଗନ୍ନାଥ ଦାସ ନିଷ୍ପତ୍ତି ନେଲେ ଦାସିଆର ଭକ୍ତି ପରୀକ୍ଷା କରିବେ । ପଦବ୍ରଜରେ ଯାତ୍ରା କଲେ ବାଲିଗାଁ । ପହଞ୍ଚି ଦାସିଆକୁ ପରିଚୟ ଦେଲେ । ଶ୍ରେଷ୍ଠ ଭକ୍ତମାନଙ୍କ ପରିଚୟ ପାଇ ସେ କୃତ୍ୟ କୃତ୍ୟ ହେଲା । ଆପଣମାନଙ୍କ ପାଦ ମୋ' ଭଙ୍ଗା କୁଡ଼ିଆରେ ପଡ଼ିଛି । ମୁଁ ଆଜି ଧନ୍ୟ ହୋଇଗଲି । ସେମାନଙ୍କ ସେବାରେ ନିଜକୁ ନିୟୋଜିତ କଲା । ଆସିବାର ଅଭିପ୍ରାୟ ପଚାରିଲା । ସେମାନେ କହିଲେ, ଶୁଣିବାକୁ ପାଇଲୁ ତମେ ପ୍ରଭୁଙ୍କ କୃପା ଲାଭ କରିଛ । ଆମେ ତା'ର ପ୍ରମାଣ ଚାହୁଁଛୁ । ତମେ ଯଦି ପ୍ରକୃତରେ ଭକ୍ତ ହୋଇଥିବ, ତା'ହେଲେ ଆମକୁ ଏଇକ୍ଷଣି ଏହିଠାରେ ପ୍ରଭୁଙ୍କର ଦର୍ଶନ କରାଅ । ଦାସ ଏମିତି ଏକ କଠୋର ପରୀକ୍ଷାର ସମ୍ମୁଖୀନ ହେବ ବୋଲି ଆଗରୁ ଜାଣିନଥିଲା । ଏବେ କ'ଣ ହବ ? ବିଚରା ଭୟ ଓ ଆଶଙ୍କା ମଧ୍ୟରେ ଲମ୍ବ ହୋଇ ଶୋଇଗଲା । ଆପଣଙ୍କୁ ଡାକିଲା ଏକନିଷ୍ଠ ହୋଇ । କହିଲା ଏ ଅକିଞ୍ଚନ ଦାସିଆକୁ ରଖ ମହାପ୍ରଭୁ । ତିଳେମାତ୍ର ବିଳମ୍ବ ନକରି ଚତୁର୍ଦ୍ଧାମୂର୍ତ୍ତି ରୂପେ ଦର୍ଶନ ଦେଲେ ସ୍ୱୟଂ ଆପଣ । ଦାସର ଭଗ୍ନକୁଟୀରରେ ଆପଣଙ୍କ ଦର୍ଶନ ଲାଭ ପରେ ମଥାନତ କଲେ ପାଞ୍ଚଜଣ ଭକ୍ତଶ୍ରେଷ୍ଠ । ଦାସକୁ ଉପଯୁକ୍ତ ସମ୍ମାନ ଦେଇ ଫେରିଆସିଥିଲେ ସେମାନେ ।

**କାହିଁ କେତେବର୍ଷ ତଳୁ ଦାସିଆର ପାର୍ଥିବ ଶରୀର ମାଟିରେ ମିଶି ଯାଇଛି । କିନ୍ତୁ ଏ ମାଟିର ଜନମାନସରେ ସେ ଏଯାଏଁ ଜୀବିତ ।** ଆପଣତ ଜମା ଭୁଲି ପାରି ନାହାନ୍ତି ତାକୁ । ପିତା ନନ୍ଦ, ସ୍ନେହମୟୀ ମାତା ଯଶୋଦା, ପ୍ରେୟସୀ ରାଧା, ଗୋପର ସାଙ୍ଗସାଥୀ, ପ୍ରାଣ ଗୋପାଙ୍ଗନାମାନଙ୍କୁ ଭୁଲିପାରନ୍ତି ମଥୁରା ଯାଇ । **ହେଲେ ଭକ୍ତକୁ ଭୁଲିବା ଆପଣଙ୍କ ଜାତକରେ ନାହିଁ । ଘୋଷଯାତ୍ରାରେ ଆପଣ ବାହାରକୁ ଚାଲିଆସିଲେ ନୟନ ବିସ୍ତାରି ଖୋଜନ୍ତି ତାକୁ ।** ଖୋଜି ଖୋଜି ପହଞ୍ଚି ଯାଆନ୍ତି ଗୁଣ୍ଡିଚା ମନ୍ଦିର ସାମ୍ନାରେ । ଆପଣଙ୍କୁ ସେଇଠୁଁ ପହଣ୍ଡି କରି ନେଇଯିବେ ସେବକମାନେ ଆଡ଼ପ ମଣ୍ଡପକୁ । ପୁନଶ୍ଚ ଆପଣ ଆଉ ଗୋଟିଏ ମନ୍ଦିରରେ ଆବଦ୍ଧ ହୋଇ ଦିନ ଗଣିବେ । ଆପଣ ପତିତପାବନ । ପତିତ ଜନଙ୍କୁ ଉଦ୍ଧାର କରିବା ପାଇଁ ଆପଣଙ୍କର ଏ ଯାତ୍ରା । ଏହି ସମୟରେ ହଜାର ହଜାର ଭକ୍ତ ଆପଣଙ୍କୁ ଦର୍ଶନ କରି କୃତାର୍ଥ ହୁଅନ୍ତି । ଆପଣ ଗଣଦେବତା । ବିଶ୍ୱ ଜନତାର ପ୍ରତିନିଧି । ଆପଣଙ୍କ ପ୍ରତ୍ୟେକ ନୀତିରେ ପ୍ରତିଫଳିତ ଜନଜୀବନର ଚଳଣି । ଏ ସବୁ ନୀତି ଦେଖି ଯେ କୌଣସି ବ୍ୟକ୍ତି ଆଶ୍ଚର୍ଯ୍ୟ ହୋଇଥାଏ । କହିଲେ, ଦେଖି ଆପଣଙ୍କ ହେରାପଞ୍ଚମୀ ନୀତି ସାଧାରଣ ଦାମ୍ପତ୍ୟ କଳହର ଏକ ନିଚ୍ଛକ ଉଦାହରଣ ନୁହେଁ କି ? ଭାଇ ଭଉଣୀଙ୍କ ସହ ସ୍ୱାମୀ ବାହାରକୁ ଚାଲି ଆସିଲେ ସ୍ତ୍ରୀ




କ୍ରୋଧାନ୍ୱିତ ହେବ ହିଁ ହେବ । କ୍ରୋଧ ଜର୍ଜର ଲକ୍ଷ୍ମୀଠାକୁରାଣୀ ରଥକାଠ ଭାଙ୍ଗି ଦେଇ ଯିବେ । ତା'ପରେ ଆରମ୍ଭ ହେବ ଶ୍ରୀମନ୍ଦିର ପ୍ରତ୍ୟାବର୍ତ୍ତନ କରିବାର ପ୍ରସ୍ତୁତି ପର୍ବ । ତିନିରଥ ଦକ୍ଷିଣମୋଡ଼ ହେବ ଆପଣଙ୍କ ଆଜ୍ଞା ପାଇଲାପରେ । ଆପଣ ଦଶମୀ ଦିନ ପ୍ରଭାତରେ ଗୁଣ୍ଡିଚା ମନ୍ଦିର ତ୍ୟାଗ କରୁଥିବା ଜାଣି ହଜାର ହଜାର ଭକ୍ତ ଛୁଟି ଆସିବେ ନବମୀ ସନ୍ଧ୍ୟା ଦର୍ଶନ ପାଇଁ । ଆପଣଙ୍କୁ ଆଡ଼ପ ମଣ୍ଡପରେ ଦର୍ଶନ କରି ମୁକ୍ତି ପାଇବେ । ସେମାନଙ୍କର ମହାପାତକ ନାଶ ହୋଇ ଚିର ବୈକୁଣ୍ଠ ପ୍ରାପ୍ତି ହେବ । ଶ୍ରୀଗୁଣ୍ଡିଚା ଦିନପରି ବାହୁଡ଼ା ଦଶମୀ ଦିନ ପ୍ରଭାତରୁ ସମସ୍ତ ବିଧିବିଧାନ ପାଳନ ହେଲାପରେ ଆପଣ ପହଣ୍ଡିରେ ଯାଇ ରଥାରୂଢ଼ ହେବେ । ବୀରାଧିବୀରବର ନବକୋଟି କର୍ଣ୍ଣାଟୋତ୍କଳ କଳବର୍ଗେଶ୍ୱର ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ଉପାଧିପ୍ରାପ୍ତ ଉତ୍କଳର ମହାରାଜା ଆସିବେ ତାମ୍ରଯାନରେ ବସି । ଆଗରେ ଚିତ୍ରିତ ହାତୀ, ଛତି, ତ୍ରାସ ସହ ବାଜୁଥିବ ତେଲିଙ୍ଗୀ ବାଜା । ରଥ ଉପରକୁ ଯାଇ ଝାଡୁଧରି କରିବେ ଛେରାପହଁରା । ଅଗଣିତ ଭାବବିହ୍ୱଳ ଭକ୍ତଙ୍କ ହରିବୋଲ, ହୁଳହୁଳି, ଘଣ୍ଟା, କାହାଳି ଧ୍ୱନି ମଧରେ ଆପଣ ବାହୁଡ଼ି ଯିବେ ଜ୍ୟେଷ୍ଠଭ୍ରାତା ଓ ଭଗ୍ନୀଙ୍କ ପଛେ ପଛେ । **ପଛେଇ ପଛେଇ ରହି ଆପଣ ଚକ୍ଷୁ ପହଁରାଇ ନେଉଥିବେ ଅସଂଖ୍ୟ ଭକ୍ତଜନଙ୍କ ଆଡ଼କୁ । ଗହଳି ଭିତରୁ ଦିଶିଯାଆନ୍ତି କି - ଶାନ୍ତ, ସରଳ, ନିଷ୍ପାପ ଦାସିଆର ମୁହଁ । ଚାହିଁ ଚାହିଁ ଆପଣ ପହଞ୍ଚିଯିବେ ସିଂହଦ୍ୱାରଠି ।** ଯେଉଁଠି ବହୁପୂର୍ବରୁ ପହଞ୍ଚି ଆପଣଙ୍କୁ ଅପେକ୍ଷା କରିଥିବେ ଜ୍ୟେଷ୍ଠଭ୍ରାତା ବଳଭଦ୍ର ଓ ଭଗ୍ନୀ ସୁଭଦ୍ରା । ଏକାଦଶୀ ଦିନ ଆପଣଙ୍କ ଶ୍ରୀଅଙ୍ଗରେ ଲାଗିହେବ ମହଣ ମହଣ ସୁବର୍ଣ୍ଣ ଅଳଙ୍କାର । ସୁବର୍ଣ୍ଣବେଶ ଦର୍ଶନ ପାଇଁ ଭକ୍ତମାନଙ୍କ ଗହଳିରେ ପୂରି ଉଠିବ ବଡ଼ଦାଣ୍ଡ । ଗହଳି ଭିତରେ ଖୋଜିଲେ ଦିଶିବ ନାହିଁ ନିରୀହ ଦାସିଆର ମୁହଁ । ପରଦିନ ଅଧରପଣା ଭୋଗ ଖାଇ ଆପଣ ଅଭିମାନୀ ପତ୍ନୀ ମହାଲକ୍ଷ୍ମୀଙ୍କର ମାନଭଞ୍ଜନ କରିବେ । କିଛି ସମୟ ବାହାରେ ରହି ଦାସକୁ ଖୋଜିବାର ଇଚ୍ଛାଥିଲେ ବି ଆପଣଙ୍କୁ ନୀଳାଦ୍ରିବିଜେ କରାଇବେ ସେବକମାନେ । ଶେଷ ହୋଇଯିବ ବର୍ଷକର ଯାତ୍ରା । କିନ୍ତୁ ବାଲିଗାଁ ଦାସକୁ ସଶରୀରେ ଦେଖିବା ଆଶା ଆଶାରେ ହିଁ ରହିଯିବ ।

କାହିଁକି ପ୍ରଭୁ ଆପଣ ତାକୁ ଏମିତି ଖୋଜନ୍ତି ? ଅବଶ୍ୟ ଭକ୍ତକୁ ଭଗବାନ ଖୋଜିବା କିଛି ନୂଆ କଥା ନୁହେଁ । ଭଗବାନଙ୍କର ହୃଦୟ ସଦାସର୍ବଦା ଭକ୍ତପାଇଁ ବ୍ୟାକୁଳ । ହେଲେ ଏତେ ଭକ୍ତ ଥାଉ ଥାଉ ଆପଣ ଦାସକୁ ଏମିତି ଖୋଜନ୍ତି କାହିଁକି ? ସେ ତ ଆପଣଙ୍କୁ ଦର୍ଶନ କରିଛି କେବଳ । ଆପଣଙ୍କ ବାଇଶି ପାହାଚ, କଳ୍ପବଟ, ମୁକ୍ତିମଣ୍ଡପ, ରୋହିଣୀ କୁଣ୍ଡ, କୋଇଲି ବୈକୁଣ୍ଠ, ଚତୁଃପାର୍ଶ୍ୱରେ ଥିବା ଦେବଦେବୀ, ଆନନ୍ଦ ବଜାରରେ ମହାପ୍ରସାଦ ସେବନ - ଏସବୁ ତା'ପାଇଁ ସ୍ୱପ୍ନ ହୋଇ ରହିଯାଇଛି । ଅବଶୋଷର ଦାବାଗ୍ନିରେ ଜଳି ଜଳି ସେ ବିତେଇଛି ଜୀବନ । ଆପଣ ତାକୁ ଏ ଅଧିକାର ଦେବେକି ପାଇଲେ ଆଉଥରେ ? ନା ତା' ହାତର ଶ୍ରୀଫଳ ଆଉ ରସାଳ ଆମ୍ବ ଖାଇବାକୁ ଆପଣଙ୍କର ଇଚ୍ଛାଅଛି ? ଏମିତିବି ହୋଇପାରେ, ଆଉଥରେ ତାକୁ ପାଇଲେ ଆପଣ ଅନ୍ୟ ସମବେତ ଭକ୍ତମାନଙ୍କୁ ଗୋଟିଏ କଥା ଜଣାଇଦେବାକୁ ଚାହାନ୍ତି - 'ହେଇ ଦେଖ, ସେଠି ଯିଏ ଉନ୍ମାଦ ହୋଇ ନୃତ୍ୟ କରୁଛି ସେ ମୋର ପରମ ଭକ୍ତ ଦାସିଆ । ବାଲିଗାଁର ଦାସ । ଦେଖିପାରୁଛ ତ ! **ମତେ ପାଇବାକୁ ଚାହୁଁଛ କି ? ତା'ରି ଭଳି ଶାନ୍ତ ହୁଅ, ସରଳ ହୁଅ, ନିଷ୍କପଟ-ନିଷ୍ପାପ ହୁଅ । ଗର୍ବ-ଅହଂକାର ଛାଡ଼ । କ୍ରୋଧ, ମାୟା-ମୋହ ତ୍ୟାଗ କର । ଅହରହ ମତେ ହିଁ ଭଜ । ସମର୍ପି ଦିଅ ହୃଦୟକୁ ମୋ' ଶ୍ରୀଚରଣ ତଳେ ।'**

ନାଗାବଗିଚା
ପ୍ରଥମ ଗଳି- ମଧୁବନ, ପୁରୀ-୨




କୋଲକାତାର ଖିଦିରପୁରଠାରେ 'ଶ୍ରୀଜଗନ୍ନାଥ ଓ ଭକ୍ତକବି ଜୟଦେବ' ଶୀର୍ଷକ ଜାତୀୟ ଆଲୋଚନାଚକ୍ରରେ 'ଉତ୍କଳ ପ୍ରସଙ୍ଗ'ର ମୁଖ୍ୟ ସଂପାଦକ ଉଦ୍‌ବୋଧନ ଦେଉଛନ୍ତି । ୧୧.୦୫.୦୯

# ସେ କ୍ଷେତ୍ର ପୁରୁଷୋତ୍ତମ

ଡଃ ତୁଳସୀ ଓଝା

'ଆଶ୍ରମ ନାମେ ବଦରିକା
ସେ କି ତୋ ଚରଣୁ ଅଧିକା ।'

ଶ୍ରୀକୃଷ୍ଣଙ୍କର ଆଦେଶ, ତୁମେ ଦ୍ୱାରକା ପରିତ୍ୟାଗ କରି ବଦରିକା ଆଶ୍ରମ ଚାଲିଯାଅ । ସେଇଠି ତପସ୍ୟା କର । ରୋଦନରତ ଉଦ୍ଧବ, ପ୍ରଭୁଙ୍କର ଏହି ଆଦେଶକୁ ସହଜରେ ଗ୍ରହଣ କରି ପାରୁନଥିଲେ । ଭକ୍ତି ଓ ଆତ୍ମୋତ୍ସର୍ଗର ଯେଉଁ ସ୍ତରରେ ପହଞ୍ଚିଥିଲେ ଉଦ୍ଧବ, ଶ୍ରୀକୃଷ୍ଣଙ୍କର ପଦ ପଙ୍କଜ ବ୍ୟତୀତ ସେ ଆଉ କିଛି କଳ୍ପନା କରି ପାରୁନଥିଲେ । ଆତ୍ମା ଯେଉଁ ସ୍ଥାନରେ ରହିଲେ ସର୍ବଶ୍ରେଷ୍ଠ ବୈରାଗ୍ୟ ପ୍ରାପ୍ତ ହୁଏ, ସେଇତ ତୀର୍ଥ । ତେଣୁ ଉଦ୍ଧବ କହୁଛନ୍ତି -

'ସକଳ ତୀର୍ଥ ତୋ ଚରଣେ
ବଦ୍ରିକା ଯିବି କି କାରଣେ ।'

ଉଦ୍ଧବଙ୍କର ଦୃଢ ବିଶ୍ୱାସ, ଯାହା ଈଶ୍ୱରଙ୍କର ନିବାସ ସ୍ଥଳ ତାହା ହିଁ ତ ତୀର୍ଥ । ଭଗବାନ ତ ରହନ୍ତି ଭକ୍ତର ଆତ୍ମାରେ, ମନରେ, ପ୍ରାଣରେ, ହୃଦୟରେ । ଯେଉଁଠି ସେ ତାଙ୍କୁ ପାଏ, ସେ ତାଙ୍କୁ ଅନୁଭବ କରେ ସେଇ ତ ତୀର୍ଥ । ତାଙ୍କ ପାଇଁ ଶ୍ରୀ କୃଷ୍ଣଙ୍କର ଚରଣ କମଳ ହିଁ ଶ୍ରେଷ୍ଠତୀର୍ଥ । କିନ୍ତୁ ସାଧାରଣ ଜୀବଟିଏ ପାଇଁ ତାହା ତ ସମ୍ଭବ ନୁହେଁ । ଏହି ଐଶ୍ୱରୀୟ ସାନ୍ନିଧ ପରଂପରାରୁ ବେଦ ବେଦାନ୍ତ କାଳରୁ ତୀର୍ଥସ୍ଥଳମାନଙ୍କର ପ୍ରସିଦ୍ଧି ରହି ଆସିଛି । ତୀର୍ଥ ତିନି ଭାଗରେ ବିଭକ୍ତ । ସ୍ଥାବର, ଜଙ୍ଗମ ଏବଂ ମାନସ । ସ୍ଥାବର ତୀର୍ଥ - ଗଂଗା, ଗୋଦାବରୀ, କାଶୀ, ପ୍ରୟାଗ ଓ ପୁରୁଷୋତ୍ତମ ଜଂଗମ - ବ୍ରାହ୍ମଣ, ସାଧୁ ଏବଂ ଗୁରୁଜନ । ମାନସ ତୀର୍ଥ - ସତ୍ୟ, ଦୟା, ସଂଯମ, ଦାନ, ସନ୍ତୋଷ, ସରଳତା, ବ୍ରହ୍ମଚର୍ଯ୍ୟ, ପୁଣ୍ୟ, କର୍ମ, ଜ୍ଞାନ, ମନଃ ଶୁଦ୍ଧି, ପ୍ରିୟବାଦିତା ଓ ଧୃତି । ଅନ୍ୟତ୍ର ତୀର୍ଥର ଚାରୋଟି ରୂପର ବର୍ଣ୍ଣନା ରହିଛି । ଦୈବ, ଆସୁର, ଅର୍ଷ ଓ ମାନୁଷ । ଅତଏବ ପ୍ରତ୍ୟେକ ତୀର୍ଥ ଭିନ୍ନ ଭିନ୍ନ ପ୍ରକାର ମହତ୍ତ୍ୱ ରେ ମହିମାନ୍ୱିତ । ଯେପରି କ୍ଷୀୟନ୍ତେ ନମ୍ୟନ୍ତି ପାପାନି



ଅତ୍ର ତତ୍ କ୍ଷେତ୍ରଂ ଅର୍ଥାତ୍ ଯେଉଁ ସ୍ଥାନରେ ପାପ ସମୂହ କ୍ଷୟ ବା ବିଲୟ ହୋଇଯାଏ ତାକୁ କ୍ଷେତ୍ର କହନ୍ତି ସେହିପରି 'ତରନ୍ତି ଦୁସ୍ତର ସାଗରାତ ଯତ୍ର ତତ୍ର ତୀର୍ଥ ।' ଅର୍ଥାତ୍ ଯେଉଁ ସ୍ଥାନରେ ମନୁଷ୍ୟ ଏହି ଦୁସ୍ତର ସଂସାର ସାଗରକୁ ତରିଯାଏ, ସେହି ସ୍ଥାନର ନାମ ତୀର୍ଥ । ସମଗ୍ର ଭାରତବର୍ଷରୁ କ୍ଷେତ୍ର ମଣ୍ଡଳ ଏକ ସୁବିଶାଳ ତୀର୍ଥ କ୍ଷେତ୍ର । ଏଠାରେ ସର୍ବତ୍ର ପରମାତ୍ମାଙ୍କ ସତ୍ତାକୁ ଉପଲବ୍ଧ କରି ହୁଏ । ତଥାପି ବିଭିନ୍ନ ପୁରାଣରେ ଏଠାରେ ଥିବା ସୁବୃହତ୍ କ୍ଷେତ୍ର ଓ ତୀର୍ଥର ବର୍ଣ୍ଣନା ରହିଛି । ପୁଷ୍କର, ନୈମିଷାରଣ୍ୟ ପ୍ରୟାଗ, ଗୟା, ପ୍ରଭାସ, କୁଶସ୍ଥଳୀ ସହିତ ଶ୍ରୀତୀର୍ଥ କୋଟି ତୀର୍ଥ, ରୂପତୀର୍ଥ, ଚକ୍ରତୀର୍ଥ, ଯୋଗତୀର୍ଥ, ସୋମତୀର୍ଥ, ସାର୍ବ କାମିକ ତୀର୍ଥ, ସୋମାଭିସେଚନ ତୀର୍ଥ, ବିଦ୍ୟାଧର ତୀର୍ଥ, ଗାନ୍ଧର୍ବତୀର୍ଥ, ଗଭସ୍ତିତୀର୍ଥ, ନର୍ମଦା ତୀର୍ଥ, ତୀର୍ଥବ୍ରଜ, ପିଙ୍ଗତୀର୍ଥ, ବାସିଷ୍ଠତୀର୍ଥ, ଋଷିତୀର୍ଥ, ବିମଳତୀର୍ଥ, ଯାଜନତୀର୍ଥ, ଅନାଶନ ତୀର୍ଥ, ବିଜୟତୀର୍ଥ, କାମଦତୀର୍ଥ, ସୁମନତୀର୍ଥ, ବ୍ରହ୍ମତୀର୍ଥ, ସୁଦର୍ଶନ ତୀର୍ଥ, ପଞ୍ଚତୀର୍ଥ, ଶୋଭନତୀର୍ଥ, ଯକ୍ଷରାଜ ତୀର୍ଥ, ମାତୃତୀର୍ଥ, ସାତବନ ତୀର୍ଥ, ଦେବୀ ତୀର୍ଥ, କୌଶିକୀ ତୀର୍ଥ, ଦେବତୀର୍ଥ, କନ୍ୟାତୀର୍ଥ, ମନସା ତୀର୍ଥ, କାରୁ ପାବନ ତୀର୍ଥ, ମଣି ତୀର୍ଥ, ସରସ୍ୱତୀ ତୀର୍ଥ, ଈଶାନ ତୀର୍ଥ, ପାଞ୍ଚଯାଜ୍ଞିକ ତୀର୍ଥ, ଭୃଗୁତୀର୍ଥ, ପୁରୁତୀର୍ଥ, କୋଟି ତୀର୍ଥ ସ୍ଥଳୀ,





ବାହୁ ତୀର୍ଥ, ଶୁକ୍ର ତୀର୍ଥ, ବାଲୁକା ତୀର୍ଥ, ଶ୍ୱେତ ତୀର୍ଥ ଦ୍ରବ, ନାଗ ତୀର୍ଥ, ପୁଲୋମ ତୀର୍ଥ, କୁମାର ତୀର୍ଥ, ଶୃଙ୍ଗ ତୀର୍ଥ, ମହାତୀର୍ଥ, ମହାନଦୀ, କୋକିଳା ତୀର୍ଥ ଧର୍ମ ତୀର୍ଥ, କାମ ତୀର୍ଥ, ସଂଧ୍ୟା ତୀର୍ଥ, ଉଦାଳକ ତୀର୍ଥ, ବିରଜା ତୀର୍ଥ, କୃଷ୍ଣ ତୀର୍ଥ ଆଦି ସହସ୍ରାଧିକ ତୀର୍ଥର ବର୍ଣ୍ଣନା ରହିଛି ।

'ସାକ୍ଷାତ ବୈକୁଣ୍ଠ ସ୍ୱରୂପଂ ତଦ୍ କ୍ଷେତ୍ରଂ ଶ୍ରୀ ପୁରୁଷୋତ୍ତମ୍<br>କ୍ଷେତ୍ରାଣାଂ ଅପି କ୍ଷେତ୍ରଂ ଚ ତୀର୍ଥାନାମସି ଯଦ୍ ବରମ୍ ।'

ଭଗବାନ ଅଚିନ୍ତ୍ୟ ସର୍ବଦା ନୂତନତ୍ୱର ଅଭିଳାଷୀ ଥିଲେ । ନୂତନତ୍ୱ ସଂଧାନୀ । ଉଦ୍ଧବଙ୍କୁ ବୁଝାଇବାକୁ ଯାଇ ସେ କହିଛନ୍ତି -

'ଏ ଯଦୁ ପୁରୀ ସିନ୍ଧୁ ଜଳେ । ବୁଡି ପଶିବ ରସାତଳେ<br>ମୋର ନିବାସ ମାତ୍ର ଥିବ । ଜଳେ ଦ୍ୱାରକା ନାଶ ଯିବ ।'

କିନ୍ତୁ କେଉଁଠି ? ଏ ପ୍ରଶ୍ନର ଉତ୍ତର ସେ ଦେଇ ନାହାଁନ୍ତି । ରାମାବତାରରେ ତାଙ୍କପର ଜନ୍ମର ସୂଚନା ମିଳିଥାଏ । କିନ୍ତୁ କୃଷ୍ଣାବତାରର ଅନ୍ତିମ ପର୍ବରେ ସେ ଯେଉଁ ସୂଚନା ଦେଇଛନ୍ତି ତାହା ଅତ୍ୟନ୍ତ ରହସ୍ୟପୂର୍ଣ୍ଣ । ତତ୍ତ୍ୱ ଦର୍ଶୀ ମହାତ୍ମାମାନେ ତାର ଏହିପରି ରୂପାୟନ କରିଥିଲେ-

'କୃଷ୍ଣବର୍ଣ୍ଣଂ ତ୍ୱିଷା କୃଷ୍ଣଂ ସାଙ୍ଗୋ ପାଙ୍ଗାସ୍ତ୍ର ପାର୍ଷଦମ୍<br>ଯଜ୍ଞୈଃ ସଂକୀର୍ତ୍ତନ ପ୍ରାୟୈ ଯଜନ୍ତି ହି ସୁମେଧସଃ ।'

ଅର୍ଥାତ୍ କଳି ଯୁଗରେ ଭଗବାନଙ୍କର ଶ୍ରୀ ବିଗ୍ରହ କୃଷ୍ଣ ବର୍ଣ୍ଣ ହେବ ଏବଂ ନୀଳମଣି ସଦୃଶ ତାଙ୍କ ଅଙ୍ଗର ଦ୍ୟୁତି ନିର୍ଗତ ହେବା ସେ ହୃଦୟ ଆଦି ଅଙ୍ଗ କୌସ୍ତୁଭ ଆଦି ଉପାଙ୍ଗ, ସୁଦର୍ଶନ ଆଦି ଅସ୍ତ୍ର ଏବଂ ସୁନନ୍ଦ ପ୍ରଭୃତି ପାର୍ଷଦରେ ସଂଯୁକ୍ତ ହେବେ । ଏହାକୁ ଆଧାର କରି ଆଜି ଶ୍ରୀକ୍ଷେତ୍ର ଓ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ପରିକଳ୍ପନା ।

'କୃତୈଃ ବଦ୍ରିନାଥଶ୍ଚ ତ୍ରେତୟା ସେତୁ ଶଙ୍କରମ୍<br>ଦ୍ୱାପରେ ଦ୍ୱାରକା ନାଥଂ କଳୌ ଶ୍ରୀପୁରୁଷୋତ୍ତମମ୍ ।'

ସତ୍ୟ ଯୁଗରେ ହିମାଳୟରେ ନରନାରାୟଣଙ୍କର ଅନାଦି ତପସ୍ୟା କ୍ଷେତ୍ର ବାମନଙ୍କର ତପସ୍ୟା ଚରଣ କରିବା ଫଳରେ ବଦ୍ରି ନାରାୟଣ ଧାମ ଉନ୍ମୋଚିତ ହୋଇଥିଲା । ତ୍ରେତୟାରେ ରାମଚନ୍ଦ୍ର ରାମେଶ୍ୱରରେ ରାମନାଥଧାମ ପ୍ରତିଷ୍ଠା କଲେ । ଦ୍ୱାପରରେ ଶ୍ରୀକୃଷ୍ଣ ରାଜ୍ୟାଭିଷେକରେ ଦ୍ୱାରକାଧାମ ପ୍ରତିଷ୍ଠିତ । ସେହିପରି

'ସକଳ ତୀର୍ଥ ଘେନି କରି<br>ନୀଳ କନ୍ଦରେ ବିଜେ ହରି ।'

ଦ୍ୱାପର ଯୁଗରେ କୃଷ୍ଣ ଅତ୍ୟନ୍ତ ରହସ୍ୟମୟ ଭାବରେ ମଥୁରାରେ ଜନ୍ମଗ୍ରହଣ କଲେ । ଗୋପାଳ ସଂସ୍କୃତିରେ ପରିବର୍ଦ୍ଧିତ ହେଲେ ଏବଂ ପୁନଶ୍ଚ ଦ୍ୱାରକାକୁ ଆସି ସଂପୂର୍ଣ୍ଣ ଆର୍ଯ୍ୟାବର୍ତ୍ତ ନିର୍ମାଣ କଲେ । ଯେପରି ନିଜେ ବର୍ଜିତ ରାଜ୍ୟ ଦ୍ୱାରକା ସ୍ଥାପନ କରିଥିଲେ ସେହିପରି ପାଣ୍ଡବମାନଙ୍କ ପାଇଁ ଭୟଙ୍କର ଖାଣ୍ଡବ ପ୍ରସ୍ଥ ବାଛିଥିଲେ ନିଜର କର୍ମଭୂମି ଭାବରେ ଏବଂ କଳି ଯୁଗରେ ଗୋପ୍ୟ ନିଳାଦ୍ରୀ ପର୍ବତ ଶାବରୀ ସଭ୍ୟତା ପରିପୂର୍ଣ୍ଣ ଏକ ରାଜ୍ୟ ବାଛି ନେଲେ ମର୍ତ୍ତ୍ୟ ବୈକୁଣ୍ଠ ନିର୍ମାଣ କରିବା ପାଇଁ ।

ପ୍ରତ୍ୟେକ ତୀର୍ଥ ତାର ଶ୍ରେଷ୍ଠତ୍ୱ ନିଜେ ପ୍ରତିପାଦନ କରିଥାଏ । କ୍ଷେତ୍ରର ମାହାତ୍ମ୍ୟ, ପୁରାଣର ଉଦାହରଣ ବା ବର୍ଣ୍ଣନାରେ ହୁଏ ନାହିଁ । ଏହାର ମାହାତ୍ମ୍ୟକୁ ଅନୁଭବ କରିବାକୁ ହୁଏ । ଯେଉଁ ଦେଶ ବା ଯେଉଁ କ୍ଷେତ୍ର ଦିନେ ପଣ୍ଡିତମାନଙ୍କର ବର୍ଜ୍ୟଭୂମି ଥିଲା -

'ଅଙ୍ଗ ବଙ୍ଗ କଳିଙ୍ଗେଷୁ ସୌରାଷ୍ଟ୍ର ମାଗଧେଷୁଚ<br>ତୀର୍ଥ ଯାତ୍ରାଂ ଦିବା ଗଛନ୍ ପୁନଃ ସଂସ୍କାର ମର୍ହତି ।'

ଆଜି ସେହି କ୍ଷେତ୍ର ଶ୍ରେଷ୍ଠ ଦେଶ ଓ ଶ୍ରେଷ୍ଠ ତୀର୍ଥ ଭାବରେ ପ୍ରସିଦ୍ଧି ଲାଭ କରିଛି । ବର୍ଷାଣଂ ଭାରତ ଶ୍ରେଷ୍ଠଃ ଦେଶାନାଂ ଉତ୍କଳ ସ୍ମୃତଃ ।

ଉତ୍କଳସ୍ୟ ସମଦେଶ ଦେଶ ନାସ୍ତି ମହୀତଳେ (ବ୍ରାହ୍ମଣ ପୁରାଣ) ଏବଂ ତତ୍ ସହିତ ଶ୍ରୀକ୍ଷେତ୍ରର ମହତ୍ତ୍ୱ ପ୍ରତିପାଦିତ ହୋଇଛି । ଶ୍ରୀ ଅର୍ଥ ଶ୍ରେଷ୍ଠ, ସୁନ୍ଦର, ଶୋଭନୀୟ, ସୁଲକ୍ଷଣ ଯୁକ୍ତ, ଶୌର୍ଯ୍ୟ ଓ ସମୃଦ୍ଧ । ମହାବିଷ୍ଣୁଙ୍କର ଆୟୁଧ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଅନୁସାରେ ସମଗ୍ର ଉତ୍କଳ ଦେଶକୁ ଚାରି ଭାଗରେ ବିଭକ୍ତ କରାଯାଇଛି। ଭୁବନେଶ୍ୱର ଏକାମ୍ର ଚକ୍ର କ୍ଷେତ୍ର, କୋଣାର୍କ ପଦ୍ମ କ୍ଷେତ୍ର, ବିରଜା ଗଦାକ୍ଷେତ୍ର ଏବଂ ଶ୍ରୀକ୍ଷେତ୍ର ଶଙ୍ଖକ୍ଷେତ୍ର ଯାହା ବୈଷ୍ଣବ କ୍ଷେତ୍ର, ଶୈବ କ୍ଷେତ୍ର, ସୌର କ୍ଷେତ୍ର ଓ ଶକ୍ତି କ୍ଷେତ୍ର ଭାବରେ ମଧ୍ୟ ପରିଚିତ । ପରମେଶ୍ୱର ପୁରୁଷୋତ୍ତମ ସର୍ବଦା ଅସ୍ତ୍ରଧାରଣ କରି ପୃଥିବୀକୁ ଆସନ୍ତି । ସେ ଅସ୍ତ୍ର ତାଙ୍କର ପଦ ନଖ ହେଉ ବା କୋଦଣ୍ଡ ହେଉ ବା ଚକ୍ର ହେଉ । କିନ୍ତୁ ଭକ୍ତି, ପ୍ରେମ, ଶ୍ରଦ୍ଧା, ସମତା ଓ

> ମହାବିଷ୍ଣୁଙ୍କର ଆୟୁଧ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଅନୁସାରେ ସମଗ୍ର ଉତ୍କଳ ଦେଶକୁ ଚାରି ଭାଗରେ ବିଭକ୍ତ କରାଯାଇଛି। ଭୁବନେଶ୍ୱର ଏକାମ୍ର ଚକ୍ର କ୍ଷେତ୍ର, କୋଣାର୍କ ପଦ୍ମ କ୍ଷେତ୍ର, ବିରଜା ଗଦାକ୍ଷେତ୍ର ଏବଂ ଶ୍ରୀକ୍ଷେତ୍ର ଶଙ୍ଖକ୍ଷେତ୍ର ଯାହା





ତପସ୍ୟାର କ୍ଷେତ୍ରରେ ଅସ୍ତ୍ର ଆବଶ୍ୟକତା ନାହିଁ । ତେଣୁ ଶଙ୍ଖ କ୍ଷେତ୍ରରେ ଯେହେତୁ ରହିଛି ପ୍ରେମ, ଭାବ, ଭକ୍ତି । ତେଣୁ ପରମେଶ୍ୱରଙ୍କ ଆୟୁଧ ଏଠାରେ ଚକ୍ରାକୃତି ନହୋଇ ଭକ୍ତି ଭାବର ବିଗଳିତ ରୂପ (ଶାଖାଗ୍ରସ୍ତଂଭ ମଧ୍ୟସ୍ଥଂତ ଦ୍ରୁପତଭୁରୀୟବମ୍, ସ୍କନ୍ଦ ପୁରାଣ - ୧୯/୧୮) ସ୍ତମ୍ଭାକୃତି ଧାରଣ କରି ପରମ ବୈଷ୍ଣବୀ ସୁଭଦ୍ରାଙ୍କ ସହିତ ଅବସ୍ଥାନ କରୁଛନ୍ତି । ପରମେଶ୍ୱରଙ୍କର ବାମ ପାର୍ଶ୍ୱରେ ରହି ସେ ତପସ୍ୟାରତ । ଏଠି ଅସୁର ବଧର ଆବଶ୍ୟକତା ନାହିଁ । ଅସୁର ଏଠି ଆସୁରୀ ପ୍ରକୃତି ।

ସ୍ୱୟଂ ସୁଦର୍ଶନ ଏହାର ଜ୍ୱଳନ୍ତ ଉଦାହରଣ । ଗର୍ବ ଗଂଜନ ବୈକୁଣ୍ଠ ପତି ମହାବିଷ୍ଣୁଙ୍କର ବହୁ ଅସାଧ କାର୍ଯ୍ୟର ସହଚର ଥିଲେ ସ୍ୱୟଂ ସୁଦର୍ଶନ । ଅଥଚ ନିଜର ସାମାନ୍ୟ ଅହଂକାରର ପ୍ରତିଫଳ ସ୍ୱରୂପ ଶ୍ରୀକ୍ଷେତ୍ରରେ ସେ ତେଜରହିତ ଭାବେ କେବଳ ଆୟୁଧ ନହୋଇ - ପତିତପାବନ ବାନାର ଧାରକ ଭାବରେ ରହିଛନ୍ତି । ପ୍ରଭୁଙ୍କ କୃପାରୁ ଏହି ଆଶୀର୍ବାଦ ମଧ ସେ ଲାଭ କରିଛନ୍ତି ଯେ ତାଙ୍କୁ ଦର୍ଶନ କରିବା ପ୍ରଭୁଙ୍କୁ ଦର୍ଶନ କରିବା ସହିତ ସମାନ ଅଟେ ।

ଈଶ୍ୱରଙ୍କ ଦର୍ଶନର ପ୍ରଧାନ ବାଧକ ହେଉଛି ଅହଂକାର । ଅନେକ ସାଧ ସାଧନ କରି କୃତିତ୍ୱର ସହିତ ପ୍ରଭୁଙ୍କର କର ପଲ୍ଲବ ମଣ୍ଡନ କରୁଥିବା ସୁଦର୍ଶନଙ୍କ ମନରେ ଥରେ ଗର୍ବ ଉତ୍ପନ୍ନ ହେଲା । ନିଜେ ମନରେ ଭାବିଲେ ମତେ ଧାରଣ କରି ପ୍ରଭୁ ଅସାଧ କାର୍ଯ୍ୟ କରନ୍ତି । ହସ୍ତପଦରହିତ ପ୍ରଭୁ ଏବେ କିପରି କାର୍ଯ୍ୟ କରିବେ ? ମୋ' ବ୍ୟତୀତ ତ ପ୍ରଭୁ କୌଣସି କାର୍ଯ୍ୟ କରିବା ନିମିତ୍ତ ସମର୍ଥ ହେବେ ନାହିଁ । ଏହା ଚିନ୍ତା କରି ସେ ଅହଂକାରରେ ଉତ୍ଫୁଲ ହେଲେ । ଈଶ୍ୱର ସର୍ବଦା କରୁଣାମୟ । ଭକ୍ତ ସୁଦର୍ଶନଙ୍କର ଏହି ଅହମିକା ତାଙ୍କୁ ବ୍ୟଥିତ କଲା । ସୁଦର୍ଶନଙ୍କର ଏହି ଅହମିକା ଦୂର କରିବା ପାଇଁ ସେ ଏକ ଉପାୟ ଚିନ୍ତା କଲେ । ଥରେ ସେ ସୁଦର୍ଶନଙ୍କୁ ନିର୍ଦ୍ଦେଶ ଦେଲେ ମହାବୀର ହନୁମାନଙ୍କୁ ନୀଳାଚଳକୁ ଡାକି ଆଣିବା ପାଇଁ । ସାମାନ୍ୟ ଦୂତ କାର୍ଯ୍ୟରେ ତାଙ୍କୁ ପ୍ରଭୁ ନିୟୋଜିତ କରିବାରୁ ତାଙ୍କ ମନରେ ଦୁଃଖ ଏବଂ କ୍ରୋଧ ବୃଦ୍ଧିପାଇବାକୁ ଲାଗିଲା । ପ୍ରଭୁଙ୍କ ଆଦେଶ ମାନି ସେ ହନୁମାନଙ୍କୁ ନିମନ୍ତ୍ରଣ କରିବାକୁ ଗଲେ ସିନା କିନ୍ତୁ ହନୁମାନ ଯେତେବେଳେ ଶ୍ରୀମନ୍ଦିର ଦ୍ୱାରରେ ଉପସ୍ଥିତ ହେଲେ ସୁଦର୍ଶନ ଅହଂକାରର ବଶୀଭୂତ ହୋଇ ଜ୍ୱଳାମୟ ରୂପ ଧାରଣ କରି ହନୁମାନଙ୍କର ପଥରୋଧ କଲେ । କୌଣସି ଦ୍ୱାର ଦେଇ ସେ ହନୁମାନଙ୍କୁ ଶ୍ରୀମନ୍ଦିର ମଧରେ ପ୍ରବେଶ କରାଇ ଦେଲେ ନାହିଁ । ହନୁମାନ ସୁଦର୍ଶନଙ୍କର ଏହି ଭାବକୁ ଅବଗତ ହେବାକ୍ଷଣି ପରମବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରି ନିଜ ଶରୀରରୁ ଅଷ୍ଟଭୁଜ ଜାତ କଲେ । ଚାରିଭୁଜରେ ତେଜୋମୟ ସୁଦର୍ଶନଙ୍କୁ ଧାରଣ କଲେ, ଦୁଇ ହାତରେ ପ୍ରଭୁଙ୍କୁ ପ୍ରଣାମ କରି ଦୁଇ ହାତରେ ନାମାବଳୀ ଜପ କରି କରି ସିଂହାସନ ନିକଟରେ ଉପସ୍ଥିତ ହେଲେ ଏବଂ କଳିଯୁଗରେ ଭକ୍ତମାନଙ୍କର ଦର୍ଶନର ସୁବିଧା ପାଇଁ ଜ୍ୱଳାମୟ ସୁଦର୍ଶନଙ୍କର ତେଜ ପ୍ରଶମିତ କରିବା ନିମିତ୍ତ ପ୍ରଭୁଙ୍କୁ ପ୍ରାର୍ଥନା କଲେ । ମଦମତ୍ତ ସୁଦର୍ଶନଙ୍କ ଗର୍ବ ଗଂଜନ କରି ପ୍ରଭୁ ତାଙ୍କୁ ଜ୍ୱାଳାରହିତ ସ୍ତମ୍ଭାକାର କରି ଦେଲେ । ଏଥିରେ ଦୁଃଖିତ ହୋଇ ସୁଦର୍ଶନ ପ୍ରଭୁଙ୍କର ଶରଣାଗତ ହେଲେ । ନିଜ ଅପରାଧ ପାଇଁ ଅନୁତପ୍ତ ହୋଇ ସେ ପ୍ରଭୁଙ୍କଠାରେ କ୍ଷମା ପ୍ରାର୍ଥନା କଲେ । କ୍ଷମା ସାଗର ପ୍ରଭୁ ସୁଦର୍ଶନଙ୍କର ମର୍ଯ୍ୟାଦା ରକ୍ଷା କରି ନୀଳଚକ୍ର ରୂପରେ ମନ୍ଦିର ଚୂଡାରେ ତାଙ୍କୁ ଅବସ୍ଥାପିତ କଲେ । ପ୍ରଭୁଙ୍କ ଆଶୀର୍ବାଦରୁ ଭକ୍ତଗଣ ନୀଳଚକ୍ର ଦର୍ଶନ କରି ପ୍ରଭୁଙ୍କ ଦର୍ଶନର ଫଳପ୍ରାପ୍ତ ହେଲେ । ଅତଏବ ପ୍ରେମରେ ନୀଳଚକ୍ର ଦର୍ଶନ କରିବା ସହିତ ସୁଦର୍ଶନଙ୍କର ଏହି ନୂତନ ରୂପର ଦର୍ଶନକୁ ବୁଝି ଭକ୍ତମନ ଗର୍ବରହିତ ଓ ଅହଂକାର ଶୂନ୍ୟ ହୋଇଯାଏ । ଅନେକ ଦୂରରୁ ଆସୁଥିବା ଭକ୍ତକୁ ନୀଳଚକ୍ର ଏହି ସଂଦେଶ ଦେଇଥାଏ । ଶ୍ରୀକ୍ଷେତ୍ରର ଏହା ହିଁ ଚରମ ବିଶେଷତ୍ୱ । ଏଣୁ ଭକ୍ତ ଓ ପଣ୍ଡିତ କବି ଜଗନ୍ନାଥ ଦାସ ତାଙ୍କ 'ପରିଚୟ ବୋଧିନୀ'ରେ ଲେଖିଲେ -

ଏ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ
ଅଟଇ ନିତ୍ୟ ବୃନ୍ଦାବନ ।

ପ୍ରଶ୍ନ ଉଠେ ଏହି ନିତ୍ୟ ବୃନ୍ଦାବନର ରୂପ କିପରି ବିଭିନ୍ନ ପୁରାଣରେ ଏହି ବୃନ୍ଦାବନ ଓ ତହିଁ ସ୍ଥିତ ରାସମଣ୍ଡଳରେ ବର୍ଣ୍ଣନା ରହିଛି । କ୍ଷୀର ସମୁଦ୍ରରେ ଶାୟିତ ବିଷ୍ଣୁ ତାଙ୍କର ରସମୟ ଲୀଳା ରଚନା କରିବାକୁ ଆସନ୍ତି ନିତ୍ୟ ବୃନ୍ଦାବନକୁ । ଏହାର ଶୋଭା ଯେପରି ମନୋମୁଗ୍ଧକର ସେହିପରି ପ୍ରାଣ ଶୀତଳ କାରକ । ଶାଶ୍ୱତଆନନ୍ଦ ପ୍ରଦାୟକ । ନିତ୍ୟ ବୃନ୍ଦାବନରେ ରଚିତ ହୁଏ ଦିବ୍ୟରାସ । ପାଦ ତଳେ ପତିତପାବନୀ ଯମୁନାର ଜଳ । ଉପରେ ଚନ୍ଦ୍ର ଓ ତାରକା ଖଚିତ ନୀଳ ଆକାଶ, ସୁକଣ୍ଠି ପକ୍ଷୀ କଣ୍ଠର ଆଳାପ, ମୋହନ ବଂଶୀର ମୋହିତ ଧ୍ୱନି । ପୁଷ୍ପର ସୁବାସ, ମନ୍ଦ ମଳୟର ମୃଦୁ ଆଘାତ ଏବଂ ମଝିରେ ଭଗବାନ ଶ୍ରୀକୃଷ୍ଣ, ପାର୍ଶ୍ୱରେ ଚରଣ ସେବିକା ଦେବକନ୍ୟା, ଋଷିକନ୍ୟା, ଗୋପକନ୍ୟା ଓ ବେଦ କନ୍ୟାମାନେ, ରସରାଜଙ୍କ ରସପନ ସାନ୍ନିଧ ପାଇଁ ସମର୍ପିତ ଚିତ୍ତ।

ତାତ୍ତ୍ୱିକ କହନ୍ତି ଭଗବାନଙ୍କର ଦୁଇଟି ରୂପ । ଗୋଟିଏ ଈଶ୍ୱର ରୂପ ଓ ଅନ୍ୟଟି ବ୍ରହ୍ମ ରୂପ । ଈଶ୍ୱର ମାୟାଯୁକ୍ତ ଏବଂ ବ୍ରହ୍ମ





ମାୟା ମୁକ୍ତ ଅଟନ୍ତି । ସେ ଈଶ୍ୱର ରୂପରେ ବିଶ୍ୱ ବ୍ରହ୍ମାଣ୍ଡକୁ ସୃଜନ ଓ ପାଳନ କରନ୍ତି । କିନ୍ତୁ ଭଗବାନ ଶୁଦ୍ଧ ବ୍ରହ୍ମ ସ୍ୱରୂପ ହୋଇଥିବାରୁ ସେ ସୃଷ୍ଟି ବା ପାଳନ ସମ୍ବନ୍ଧିତ ଲୀଳାରହିତ ହୋଇ ଥାନ୍ତି । କିନ୍ତୁ ସ୍ୱୟଂ ବ୍ରହ୍ମ ଆନନ୍ଦ ଓ ପ୍ରେମମୟ ଅଟନ୍ତି । ଲୀଳା ରଚନା କାଳରେ ସେ ଯେପରି ଲୀଳାମଗ୍ନ ହୁଅନ୍ତି ଲୀଳାରହିତ ହେଲାବେଳେ ସେ ନିର୍ଲିପ୍ତ ରହନ୍ତି କିନ୍ତୁ ତାଙ୍କ ଚତୁଃପାର୍ଶ୍ୱକୁ ଘେରି ଆନନ୍ଦ ଲୀଳା ଅନୁଷ୍ଠିତ ହେଉଥାଏ । ଭଗବାନ ଈଶ୍ୱର ରୂପରେ ପୃଥିବୀକୁ ଆସନ୍ତି ଓ ବ୍ରହ୍ମ ତାଙ୍କ ଭିତରେ ଗୋପ୍ୟ ଭାବରେ ରହିଥାଏ । ତାହା ଦୃଷ୍ଟ ହୁଏ ନାହିଁ । ତାଙ୍କୁ ଅନୁଭବ କରିହୁଏ । ଲୀଳାବତାରଙ୍କର ଏହି ପୂର୍ଣ୍ଣ ଲୀଳାକୁ ଦ୍ୱାପର ଯୁଗରେ, ଦେବ , ଦାନବ, ମାନବ, ଯକ୍ଷ, ଗନ୍ଧର୍ବ ନିଜ ନିଜ ଭାବସତ୍ତା ଦେଇ ଉପଲବ୍ଧି କରିଛନ୍ତି । ସତ୍ୟରେ ତପୀ, ତ୍ରେତୟାରେ କପି ଦ୍ୱାପରରେ ଗୋପୀ ତାଙ୍କ ସାନ୍ନିଧ୍ୟରେ ଯେଉଁ ଆନନ୍ଦରସ ଅନୁଭବ କରିଥିଲେ ଆଜି କଳିଯୁଗରେ ସାଧାରଣରୁ ସାଧାରଣ ଭକ୍ତଟିଏ ସେଇ ରସ ଉପଭୋଗ କରୁଛି ଏବଂ ସେଥିରେ ଅବଗାହନ କରୁଛି । କଳିଯୁଗରେ ରାକ୍ଷସ ବଧ ନିମିତ୍ତ ପ୍ରଭୁ ଆସି ନାହାଁନ୍ତି, ଆସିଛନ୍ତି ମ୍ଳେଚ୍ଛ ନିଧନ ନିମିତ୍ତ । ମ୍ଳେଚ୍ଛ କଳିଯୁଗରେ ମଣିଷର ପ୍ରକୃତି ଏବଂ ପ୍ରବୃତ୍ତି । ଯାହାର ବିନାଶ ପାଇଁ ବ୍ରହ୍ମଙ୍କର ଏହି ସ୍ୱରୂପ । ଭକ୍ତକବି ଜଗନ୍ନାଥ ଦାସ ଶ୍ରୀକ୍ଷେତ୍ର ଦେବ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ, ନୀଳାଚଳକୁ ଗୋବର୍ଦ୍ଧନ ଗିରି, ଭାର୍ଗବୀକୁ ଯମୁନା, କଳ୍ପବୃକ୍ଷକୁ ଶ୍ୟାମ କୁଂଜ, ସୁନାକୂଅକୁ ରାଧାକୁଣ୍ଡ ଏବଂ ନୀଳାଚଳକୁ ନିତ୍ୟ ରାସସ୍ଥଳୀ ବୃନ୍ଦାବନ ଭାବରେ ବର୍ଣ୍ଣନା କରିଦେଲେ । କିନ୍ତୁ ତାଙ୍କର ଏହି ପରିକଳ୍ପନା ତାଙ୍କର ବାସ୍ତବ ରୂପ ପରିଗ୍ରହଣ କରିଛି ବ୍ରହ୍ମପୁରାଣ, ସ୍କନ୍ଦ ପୁରାଣ, ବାମଦେବ ସଂହିତା, କପିଳ ସଂହିତା, ଶ୍ରୀମଦ୍ ଭଗବତରେ ଯେଉଁ ବର୍ଣ୍ଣନା ଓ ଯେଉଁ ଦୁର୍ଲଭ ତତ୍ତ୍ୱ ଓ ସୁଚନା ଶ୍ରୀକ୍ଷେତ୍ର ସଂପର୍କରେ ବର୍ଣ୍ଣିତ ତାହା ଏଠାରେ ପ୍ରତ୍ୟକ୍ଷ ଓ ଅନୁଭୂତ ।

ସତ୍ୟରେ ତପୀ, ତ୍ରେତୟାରେ କପି ଦ୍ୱାପରରେ ଗୋପୀ ତାଙ୍କ ସାନ୍ନିଧ୍ୟରେ ଯେଉଁ ଆନନ୍ଦରସ ଅନୁଭବ କରିଥିଲେ ଆଜି କଳିଯୁଗରେ ସାଧାରଣରୁ ସାଧାରଣ ଭକ୍ତଟିଏ ସେଇ ରସ ଉପଭୋଗ କରୁଛି ଏବଂ ସେଥିରେ ଅବଗାହନ କରୁଛି ।

'ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନୋ ନିବଶେୟନ୍ନ ସୃତଂ ମଉର୍ଯ୍ୟଂଚ ହିରଣ୍ମୟେନ ସବିତା ରଥନେ ଦେବାୟାତି ଭୁବନାନି ପଶ୍ୟନ୍ ।'

ଏହି ବୈଦିକ ମନ୍ତ୍ରରେ କୁହାଯାଇଛି, ବିଶ୍ୱର ସକଳ ଶକ୍ତିର ଆଧାର ସୂର୍ଯ୍ୟ ନାରାୟଣ ସାତଟି ଅଶ୍ୱଦ୍ୱାରା ଆକର୍ଷିତ ଏକଚକ୍ର ବିଶିଷ୍ଟ ହିରଣ୍ମୟ ରଥରେ ଆରୋହଣ କରି ସମଗ୍ର ବିଶ୍ୱମଣ୍ଡଳ ପରିକ୍ରମା କରି ଆଲୋକ ବିତରଣ କରିଥାନ୍ତି । ଏକଦା ସୁରପତି ଇନ୍ଦ୍ର ଯୁଦ୍ଧରେ ପ୍ରବୃତ୍ତ ହୋଇ ବୃତ୍ରାସୁର ପ୍ରତି ବଜ୍ର ନିକ୍ଷେପ କରିବାରୁ ତାହା ଅସୁର ଶରୀରରେ ଆଘାତ କରି ଚାରିଖଣ୍ଡରେ ବିଭକ୍ତ ହେଲା ଏବଂ ସେଥିରୁ ତୃତୀୟ ଖଣ୍ଡଟି ରଥରେ ପରିଣତ ହେଲା । ବୈଦିକ ଯୁଗରୁ ବିଷ୍ଣୁଙ୍କର ନନ୍ଦିଘୋଷ, ସୂର୍ଯ୍ୟଙ୍କର ହିରଣ୍ୟରେ ତମ, ଦୁର୍ଗାଙ୍କର ରୁକୁଣା ଓ ଶିବଙ୍କର ଅମୋଘ ଇତ୍ୟାଦି ରଥର ବର୍ଣ୍ଣନା ରହିଛି । ବୈଦିକ କାଳରୁ ଏହି ରଥ ସୌଭାଗ୍ୟ ଓ ସାମରିକ ଯାନର ପ୍ରତୀକ ଭାବରେ ବ୍ୟବହୃତ ହୋଇ ଆସିଛି । କିନ୍ତୁ ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ ରଥଯାତ୍ରା ଏକ ମହାରାସ ଲୀଳା ବ୍ୟତୀତ ଆଉ କିଛି ନୁହେଁ।

ଏହି ନବ ପ୍ରକୃତିର ଦିବ୍ୟ ପ୍ରକାଶରେ ଆଷାଢ ଶୁକ୍ଳ ଦ୍ୱିତୀୟା ତିଥିର ସଂପୂର୍ଣ୍ଣ ଦିବସ ଉଦଭାସିତ ହୋଇ ଉଠେ । ଏକ ସମୟରେ ଉଦ୍‌ଗତ ହୁଏ ସମସ୍ତ ଭକ୍ତି ରସ । ଘଣ୍ଟ, ଘଣ୍ଟା, ମର୍ଦ୍ଦଳ, କାହାଳୀ ମନ୍ଦିରାବାଗିନି ଖୋଳ କରତାଳ ସହିତ ଜୟ ଜୟ କାର, ହରିବୋଲ ହୁଳହୁଳି ଧ୍ୱନି ମନକୁ ଆନନ୍ଦ ଦେବା ସହିତ କର୍ଣ୍ଣ ଗହ୍ୱରରେ ମଧ ପ୍ରତିଧ୍ୱନିତ ହେଉଥାଏ । ଶ୍ରୀମନ୍ଦିର ପାଟ ଅଗଣା, ସାତ ପାହାଚ, ଗୁମୁଟ ଦ୍ୱାର, ଛାତ, ପୀଢ ସବୁଠାରେ ଭକ୍ତଙ୍କ ମେଳ, ମନରେ ଗୋଟିଏ ଧ୍ୟାନ ପ୍ରଭୁଙ୍କର ପୟର । ସେବକ ସଂପ୍ରଦାୟ ପ୍ରଭୁଙ୍କୁ କୋଳେଇ କାଖେଇ, ପିଠେଇ, ଦାସ୍ୟ ଭାବରେ ପଦସେବନ କରିନେଇ ଆସନ୍ତି ରଥ ଉପରକୁ । ସୁଦାମା ଖୁଦକଣା ମୁଠାଏ ଦେଇ, ଗଜେନ୍ଦ୍ର ପଦ୍ମପୁଷ୍ପ ଟିଏ ଦେଇ, ଦ୍ରୌପଦୀ ଶାଗ କଣିକାଏ ଦେଇ, ଶବରୀ ଅଇଁଠା ଫଳ ଦେଇ ଯେଉଁ ଦିବ୍ୟ ଭାବ ପାଇଥିଲେ କଳିଯୁଗର ଅସଂଖ୍ୟ ଭକ୍ତ ବଡ଼ଦାଣ୍ଡର ଧୂଳି ମୁଠାଏ ମୁଣ୍ଡରେ ମାରି ଅଶ୍ରୁ ସଜଳ ନୟନରେ କଳା ଶ୍ରୀମୁଖକୁ ଅନାଇ ସେହି ଭାବ ସାଉଁଟି ନେଇଥାନ୍ତି । ରାସ କ୍ଷେତ୍ରହିଁ ତ ସାକ୍ଷାତ ବୈକୁଣ୍ଠ ।

ଏଠି ରହିଛି ଚତୁର୍ଦ୍ଦଶ ଭୁବନ, ଅଷ୍ଟବୈକୁଣ୍ଠ । ଭୂଃ, ଭୁବଃ, ସ୍ୱଃ, ମହଃ, ଜନ, ତପଃ, ସତ୍ୟ, ଏହି ସପ୍ତଲୋକ ସହିତ ରହିଛି ସପ୍ତ ପାତାଳ - ଅତଳ, ସୁତଳ, ବିତଳ, ତଳାତଳ, ମହୀତଳ , ରସାତଳ, ପାତାଳ । ସପ୍ତଭୁବନ ଓ ସପ୍ତପାତାଳ ମିଶି ହେଲେ ଚତୁର୍ଦ୍ଦଶ ଭୁବନ, ଏହା ସହିତ ରହିଛି ଅଷ୍ଟ ବୈକୁଣ୍ଠ । ଶ୍ରୀ ବୈକୁଣ୍ଠ କୈବଲ୍ୟ ବୈକୁଣ୍ଠ, କରଣାର୍ଣ୍ଣବ ବୈକୁଣ୍ଠ, ଶେଷଶାୟୀ ବୈକୁଣ୍ଠ, ଶ୍ୱେତଦୀପ ବୈକୁଣ୍ଠ, ପରବ୍ୟୋମ ବୈକୁଣ୍ଠ, ଗର୍ଭୋଦକ ବୈକୁଣ୍ଠ, କୈଳାସ ବୈକୁଣ୍ଠ ଏମାନେ ସମସ୍ତେ ମିଶି ହେଲେ ବାଇଶ । ବାଇଶ ପାହାଚ ଏମାନଙ୍କର ଅବସ୍ଥାନ ସ୍ଥଳ । ଜ୍ଞାନ ବିଜ୍ଞାନର





ନିବିଡ ତତ୍ତ୍ୱ । ବାଇଶ ପାହାଚର ଶେଷ ବିନ୍ଦୁରେ ରହିଛନ୍ତି ଚତୁର୍ଦ୍ଧା ମୂର୍ତ୍ତି । ଏହି ଚତୁର୍ଦ୍ଧା ତତ୍ତ୍ୱ ଯେପରି ରହସ୍ୟମୟ ସେହିପରି ଅପ୍ରଶ୍ନନୀୟ । ମହାଭାରତ ଯୁଦ୍ଧର ଏକ ବିଶେଷ ମୁହୂର୍ତ୍ତରେ ଭଗବାନ ଶ୍ରୀକୃଷ୍ଣ ଆଶଙ୍କିତ ଅର୍ଜ୍ଜୁନଙ୍କୁ କହିଥିଲେ ମୁଁ ଅଚ୍ୟୁତ ଅନନ୍ତ ଶ୍ରୀକୃଷ୍ଣ ସର୍ବଦା ଚାରିଟି ରୂପଧାରଣ କରି ସଂପୂର୍ଣ୍ଣ ସୃଷ୍ଟିକୁ ରକ୍ଷାକରେ । ମୋର ଏକ ଭାଗ ଭୂମଣ୍ଡଳରେ ନରନାରାୟଣ ରୂପରେ ବଦ୍ରିକା ଆଶ୍ରମରେ ଅବସ୍ଥାନ କରି ତପସ୍ୟା କରୁଥାଏ । ଏକଭାଗ ପରମାତ୍ମା ରୂପରେ ଜଗତର ଶୁଭାଶୁଭ କର୍ମର ସାକ୍ଷୀ ରହେ । ଅନ୍ୟଭାଗ ଅର୍ଥାତ୍ ମୁଁ ନିଜେ ମନୁଷ୍ୟ ଲୋକରୁ ଜନ୍ମଗ୍ରହଣ କରି ନାନା ପ୍ରକାର କର୍ମରେ ପ୍ରବୃତ୍ତ ରହେ ଏବଂ ମୋର ଚତୁର୍ଥ ମୂର୍ତ୍ତି ସହସ୍ର, ଯୁଗଧରି ଏକାର୍ଣ୍ଣବରୁ ଜଳରେ ଶୟନ କରିଥାଏ । ଭୂମଣ୍ଡଳରେ ସର୍ବଦା ଚତୁର୍ଦ୍ଧାର ମହତ୍ତ୍ୱ ମଧ ରହିଛି। ଭଗବାନ ତ୍ରେତୟା ଯୁଗରେ ଚାରିଭାଗରେ ଜନ୍ମଗ୍ରହଣ କରିଥିଲେ - ରାମ ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ । ପୃଥିବୀର ଯୁଗ ଚାରି -ସତ୍ୟ, ତ୍ରେତୟା, ଦ୍ୱାପର, କଳି ଏବଂ ଦ୍ୱାପରରେ ପ୍ରଭୁ ହେଲେ କୃଷ୍ଣ ବଳରାମ ସୁଦର୍ଶନ ସୁଭଦ୍ରା, ବେଦ ଚାରି ସାମ, ଋକ୍, ଯଯୁଃ, ଅଥର୍ବ ଈଶ୍ୱରଙ୍କ ଆୟୁଧ ଚାରି, ଶଙ୍ଖ, ଚକ୍ର, ଗଦା, ପଦ୍ମ, ତତ୍ତ୍ୱ ଚାରି, ଜ୍ଞାନ, ବୁଦ୍ଧି, ପ୍ରଜ୍ଞା ପାରମିତା, ପ୍ରକୃତି ଚାରି ସଗୁଣ, ନିର୍ଗୁଣ, ସାକାର ନିରାକାର । ରତ୍ନ ସିଂହାସନରେ ଆରୁଢ ପରଂବ୍ରହ୍ମଙ୍କର ପରିଦୃଶ୍ୟମାନ ସମଷ୍ଟି ଚାରି । ଜଗନ୍ନାଥ, ବଳଭଦ୍ର ସୁଭଦ୍ରା ଓ ସୁଦର୍ଶନ । ଏହାଙ୍କର ଦର୍ଶନ ହିଁ ଦୁର୍ଲଭ । ଏହି ଦୁର୍ଲଭ (ମହାପ୍ରଭୁ) ଚାରିବର୍ଣ୍ଣରେ ବିଭୂଷିତ ହୋଇ ସମଗ୍ର ସୃଷ୍ଟିର ମନୁଷ୍ୟ ଲୋକକୁ ନିଜ ଭିତରେ ସମାହିତ କରିଛନ୍ତି । ଶ୍ରୀକ୍ଷେତ୍ରର ଚତୁପାର୍ଶ୍ୱରେ ବେଷ୍ଟିତ ହୋଇ ରହିଥିବା ବିଭିନ୍ନ ଧର୍ମ ଓ ସଂସ୍କୃତିର ପ୍ରତୀକ ବିଭିନ୍ନ ମଠ ବାଡ଼ି ଓ ଦେବଦେବୀ ଏହାର ନିଦର୍ଶନ ।

ଶ୍ରୀକ୍ଷେତ୍ରର ପୀଠେଶ୍ୱରୀ ଦେବୀ ବିମଳା ଏବଂ ଶ୍ରୀମନ୍ଦିରର ସର୍ବମୟୀ କର୍ତ୍ତୀ ମହାଲକ୍ଷ୍ମୀ । ଏହା ବ୍ୟତୀତ ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ଯେତେବେଳେ କୌଣସି ଉତ୍ସବ, ଅନୁଷ୍ଠାନକୁ ଯାଆନ୍ତି ତାଙ୍କ ସହିତ ଭୂଦେବୀ ଓ ଶ୍ରୀଦେବୀ ସ୍ୱର୍ଗ ଏବଂ ମର୍ତ୍ତ୍ୟର ଅଧିଷ୍ଠାତ୍ରୀ ଦେବୀ । ଭୂମିକୁ ସାର୍ଥକ କରିବା ନିମିତ୍ତ ତ ମହାପ୍ରଭୁଙ୍କର ମର୍ତ୍ତ୍ୟାଗମନ । ଅତଏବ ଭୂମି (ଭୂଦେବୀ ଏଠି ସର୍ବମାନ୍ୟା ଭୂଦେବୀଙ୍କ ଆନନ୍ଦ ପ୍ରଦାନ କରିବା ତ ପରଂବ୍ରହ୍ମଙ୍କର ପ୍ରଧାନ ଉଦ୍ଦେଶ୍ୟ । ଏହି ପୀଠରେ ସର୍ବପୂଜନୀୟା ସପ୍ତମାତୃକାଙ୍କର ଉପସ୍ଥିତି ମଧ ପ୍ରଣିଧାନଯୋଗ୍ୟ ।

ବୀର ବିକ୍ରମ ଓ ବୀର୍ଯ୍ୟର ପ୍ରତୀକ ହନୁମାନଙ୍କର ଉପସ୍ଥିତି ଏ କ୍ଷେତ୍ରକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାରେ ଭୂଷିତ କରେ । ସିଦ୍ଧ ମହାବୀର, କାନପାତା ମହାବୀର, ବର୍ଗୀ ହନୁମାନ, ମଶାଣି ମହାବୀର, ପଂଚମୁଖୀ ମହାବୀର ଫତେ ହନୁମାନ, ଶିରୁଳି ମହାବୀରଙ୍କ ବ୍ୟତୀତ ଚାରି ଦ୍ୱାରରେ ବାରଭାଇ, ଫତେ, ବୀର ବିକ୍ରମ ଓ ତପସ୍ୱୀ ହନୁମାନଙ୍କର ଉପସ୍ଥିତି ଏକ ନୂତନ ସଂକେତ ପ୍ରଦାନ କରିଥାଏ। ବଳବୀର୍ଯ୍ୟର ପ୍ରତୀକ ହନୁମାନ ଏଠି ତପସ୍ୱୀ ହନୁମାନ । ବିନା ତପସ୍ୟାରେ କେହି ସିଦ୍ଧ ହୋଇପାରନ୍ତି ନାହିଁ । ନିଜର ଅମିତ ବୀର ବିକ୍ରମ ସତ୍ୱେ ବି ଚାରି ଯୁଗ ଅତିବାହିତ ହୋଇଗଲେ ମଧ ସେ ଏହି କ୍ଷେତ୍ରରେ ଶ୍ରୀମନ୍ଦିରର ପଶ୍ଚିମ ଦ୍ୱାରରେ ତପସ୍ୟାରତ ।

ସ୍ୱୟଂ ଜଗତପତି ଜଗନ୍ନାଥ ଭକ୍ତର ମନୋବାଞ୍ଛାପୂର୍ଣ୍ଣ କରିବାକୁ ଯେପରି ବିଭିନ୍ନ ସମୟରେ ବିଭିନ୍ନ ବେଶ ଧାରଣ କରି ଭକ୍ତକୁ କୃତାର୍ଥ କରିଥାନ୍ତି, ସେହିପରି ବିଭିନ୍ନ ଦେବ ଦେବୀଙ୍କୁ ନିଜର ସେବା ପୂଜାର ଅବସର ପ୍ରଦାନ କରି ସେମାନଙ୍କୁ ମଧ ଧନ୍ୟ କରିଥାନ୍ତି। ପ୍ରଭୁଙ୍କର ପ୍ରଧାନ ଭକ୍ତ ସ୍ୱୟଂ ଦେବ ଦେବ ମହାଦେବ ତାଙ୍କ ବାଇଶି ପାବଚ୍ଛରେ ଅବସ୍ଥାନ କରନ୍ତି । ଏହା ବ୍ୟତୀତ ନୀଳକଣ୍ଠ, ମାର୍କଣ୍ଡେଶ୍ୱର, କପାଳମୋଚନ, ଲୋକନାଥ, ଯମେଶ୍ୱର ପ୍ରଭୃତି ପଂଚ ମହାଦେବ ତାଙ୍କର ଚନ୍ଦନ ଯାତ୍ରାର ସହଯୋଗୀ ଅଟନ୍ତି । ଏହା ବ୍ୟତୀତ ଏହି ପୀଠରେ ଶ୍ରୀଲୋକନାଥ ମହାପ୍ରଭୁଙ୍କର ଭଣ୍ଡାର ରକ୍ଷକ କାର୍ଯ୍ୟ ତୁଲାଇବା ସ୍ଥଳେ, ହରି ସହଦେବ ଶ୍ରୀଜଗନ୍ନାଥଙ୍କର ଗୋଧନ ରକ୍ଷକ ଅଟନ୍ତି । ଶ୍ରୀମନ୍ଦିରରେ ହରି ସହଦେବଙ୍କ ଉପସ୍ଥିତି ଯେତେ ଧାର୍ମିକ ନୁହେଁ ସେତେ ସାଂସ୍କୃତିକ । ସୃଷ୍ଟିର ପ୍ରାରମ୍ଭରେ ମନୁଷ୍ୟ ପାଖରେ ଦୁଇଟି ସଂପତ୍ତି ଥିଲା - ଭୂସଂପଦ ଓ ପଶୁ ସଂପଦ । ସୃଷ୍ଟିର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏହା ହିଁ ମଣିଷର ଶ୍ରେଷ୍ଠ ସଂପତ୍ତି ହୋଇ ରହିବ ।

ମହାତପସ୍ୱୀ ଅଙ୍ଗିରା, ଭୃଗୁ, ମାର୍କଣ୍ଡ ଓ ପଣ୍ଡୁ ନିଜ ନିଜ ଆଶ୍ରମ ପ୍ରତିଷ୍ଠା କରି ଏଠାରେ ଯୋଗମଗ୍ନ ହୋଇ ସେ ସ୍ଥାନକୁ ପବିତ୍ର କରିଛନ୍ତି । ମହୋଦଧିକୁ ସଂଲଗ୍ନ କରି ପଂଚ ମହାତୀର୍ଥ, ପୁଷ୍କରିଣୀ, ଇନ୍ଦ୍ରଦ୍ୟୁମ୍ନ, ମାର୍କଣ୍ଡ, ଶ୍ୱେତଗଙ୍ଗା, ରୋହିଣୀକୁଣ୍ଡ ଏଠାରେ ବିଦ୍ୟମାନ । ସବୁ ସଂପ୍ରଦାୟର (ଶୈବ, ଶାକ୍ତ, ସୌର, ଗାଣପତ୍ୟ, ବୈଷ୍ଣବ) ଭକ୍ତଗଣ ସେଠାକୁ ଆସି ପରଂବ୍ରହ୍ମଙ୍କର ସାନ୍ନିଧ ଲାଭରେ ନିଜର ସୀମା ଭୁଲିଯାଇ ଅଚିନ୍ତ୍ୟଙ୍କର ପ୍ରସାରିତ ବାହୁ ମଧରେ ନିଜକୁ ଲୀନ କରି ଦେଇଛନ୍ତି । ଶ୍ରୀକ୍ଷେତ୍ରରେ ଥିବା ଅସଂଖ୍ୟା ମଠ ଏହାର ପ୍ରତୀକ । ସେହି ମଠସବୁ ଶ୍ରୀଜୀଉଙ୍କର





କୌଣସି ନା କୌଣସି ସେବା କାର୍ଯ୍ୟରେ ସ୍ୱତଃ ପ୍ରବୃତ୍ତ ଭାବରେ ନିୟୋଜିତ । ରାଘବ ଦାସ ମଠ, ବଡ ଓଡିଆ ମଠ, ଜଗନ୍ନାଥ ବଲ୍ଲଭ ମଠ, ଛାଉଣୀ ମଠ, ଉତ୍ତରପାର୍ଶ୍ୱ ମଠ, ଏମାର ମଠ, ବଡ଼ଛତା ମଠ, ଝାଞ୍ଜପିଟା ମଠ, ରାଧାବଲ୍ଲଭ ମଠ, ସାନଛତା ମଠ, ଦର୍ପ ନାରାୟଣ ମଠ, ଦକ୍ଷିଣପାର୍ଶ୍ୱ ମଠ, ଗୋପାଳତୀର୍ଥ ମଠ, ଗୋବର୍ଦ୍ଧନ ମଠ, ରାମଜୀ ମଠ, ମଙ୍ଗୁ ମଠ, ରାଧାକାନ୍ତ ମଠ, ଜଟିଆ ବାବାଜୀ ମଠ, ପାପୁଡ଼ିଆ ମଠ, ରେବେସା ମଠ, ତ୍ରିମାଳି ମଠ, ଗଙ୍ଗାମାତା ମଠ, ଶଙ୍କରାନନ୍ଦ ମଠ, ବଡ଼ ସନ୍ତ ମଠ, ଖଜୁରିଆ ମଠ, ଗୋସ୍ୱାମୀ ମଠ, ବଡ଼ଝାଡୁ ମଠ, ରାମଦାସ ମଠ ଓ ହରିଦାସ ମଠ ପ୍ରଭୃତି ଅସଂଖ୍ୟ ମଠ ରହିଛି । ଯେଉଁ ସାଧୁ ପୁରୁଷମାନେ ଦିନେ ପରିବ୍ରାଜକ ଭାବରେ ଶ୍ରୀକ୍ଷେତ୍ର ଦର୍ଶନ କରିବାକୁ ଆସିଛନ୍ତି, କିନ୍ତୁ କାଳକ୍ରମେ ପରଂବ୍ରହ୍ମଙ୍କର ମୋହରେ ଛନ୍ଦି ହୋଇ ସେହି କ୍ଷେତ୍ରକୁ ନିଜର ସାଧନା କ୍ଷେତ୍ର ଭାବରେ ବାଛି ନେଇଛନ୍ତି, ସେମାନଙ୍କର ତପସ୍ୟା ଓ ପଦରଜ ପାଇ ସେହି ଦୈବ ତୀର୍ଥ ପୁନଶ୍ଚ ଅର୍ଷ ତୀର୍ଥରେ ପରିଣତ ହୋଇଛି ।

ସେହିପରି ପ୍ରେମ, ଭକ୍ତି, ତପସ୍ୟା ଓ ପରୀକ୍ଷାନିରୀକ୍ଷା ମାଧ୍ୟମରେ ଏହି କ୍ଷେତ୍ରରେ ମାହାତ୍ମ୍ୟ ଅଧିକ ପ୍ରକଟିତ । ତାହା ଭକ୍ତ ପ୍ରବର ହନୁମାନ ହୁଅନ୍ତୁ ବା ଜଗନ୍ନାଥ, ବଳରାମ, ସାଲବେଗ ହୁଅନ୍ତୁ । ଅଷ୍ଟ ମହାବୀର, ଅଷ୍ଟ ଶମ୍ଭୁ, ଅଷ୍ଟ ଦୁର୍ଗା, ସପ୍ତ ମାତୃକା, ରାମଚଣ୍ଡୀ, ହରଚଣ୍ଡୀ, ବାସେଳି, ବରାହୀ, ଆଲାମଚଣ୍ଡୀ, ଝାଡ଼େଶ୍ୱରୀ, ବାଟ ମଙ୍ଗଳା, ସର୍ବମଙ୍ଗଳା, ଅର୍ଦ୍ଧାଶିନୀ, ମରୀଚିକା ପ୍ରଭୃତି ଦେବୀଙ୍କ ସହିତ ମହାଲକ୍ଷ୍ମୀ, ମହାସରସ୍ୱତୀଙ୍କର ଉପସ୍ଥିତି ସେହି କ୍ଷେତ୍ରକୁ ମହାସ୍ୱର୍ଗରେ ପରିଣତ କରିଛି । ବେଦର ଓଁକାର ଧ୍ୱନି, ମହୋଦଧିର କଲ୍ଲୋଳ, ବୈଷ୍ଣବାଗ୍ନିର ହୋମକୁଣ୍ଡ, ଅର୍କଙ୍କର ପ୍ରଥମ ଅରୁଣ କିରଣ ଶରଧାବଳିର ସ୍ୱର୍ଣ୍ଣ ଧୂଳିକା, ~~ମହାବାହୁଙ୍କର~~ ପ୍ରେମାଲିଙ୍ଗନ ସେହି କ୍ଷେତ୍ରକୁ ଯଥାର୍ଥରେ କ୍ଷେତ୍ରାଣାଂମପି କ୍ଷେତ୍ରରେ ପରିଣତ କରିଛି ।

ଅବସରପ୍ରାପ୍ତ ଅଧକ୍ଷା
ସରକାରୀ ମହିଳା ମହାବିଦ୍ୟାଳୟ, ପୁରୀ

---

# ଜଗତ ସ୍ୱାମୀଙ୍କୁ ଗୁହାରି କରେଁ

କଳ୍ପନା ଶତପଥୀ

ହେ ପୂଜ୍ୟ ଜଗତସ୍ୱାମୀ　　ସର୍ବଭୂତ ଅନ୍ତର୍ଯ୍ୟାମୀ
ଅନୁକମ୍ପାମୟ ପ୍ରେମଶୀଳ ଠାକୁର
ସର୍ବଜ୍ଞାତା ସର୍ବଦର୍ଶୀ　　ସର୍ବବ୍ୟାପୀ ସର୍ବଗ୍ରାସୀ
ସଚ୍ଚିଦାନନ୍ଦ ବିଗ୍ରହ ଖିଳ ବିଶ୍ୱର
ନମିତବ ପଦ ନଳୀନେ
ଜଣାଏ ଅଭିନନ୍ଦନ ବ୍ୟାକୁଳ ପ୍ରାଣେ ।

ଦିଅ ବୁଝିବାକୁ ବଳ　　ମନ ହେଉ ସୁନିର୍ମଳ
ନୟନ ପଟଳ ହେଉ ମମତାଭରା
ପରାଣେ ଭରି ବିଶ୍ୱାସ ଭକ୍ତିଜ୍ଞାନ ଅହର୍ନିଶ
ଦିଅ ଅନ୍ତରେ ସଞ୍ଚାରି ଅମୃତଧାରା
ନିରୋଧୁ ସେ ଇନ୍ଦ୍ରିୟ ଗତି
ପଲକେ ପଲକେ ଖେଳୁ ପୁଲକ ଅତି ।

କାମ, କ୍ରୋଧ, ଅହଙ୍କାର　　ଲୋଭାଦି ଘୃଣା ନିକର
ନିରତେ କରାଳକର ପ୍ରସାରି ସୁଖେ
ଗ୍ରାସିବା ଆସେ ଧାମନ୍ତି ହୃଦୟେ ଜନ୍ମାଇ ଭୀତି
ଏଣୁ ପଦ ପ୍ରାନ୍ତେ ଅତି ଆତୁର ମୁଖେ
କର ଯୋଡ଼ି କରେ ଗୁହାରି
ପୁଣ୍ୟ ଗୁଣେ ପୂର୍ଣ୍ଣ ହେଉ ହୃଦ ମୋହରି ।



ଦିଅ ଦିବ୍ୟଜ୍ଞାନଦୃଷ୍ଟି　　ଯେପେ୍ନ ତବ ରୂପ ଜ୍ୟୋତି
ସଦା ସକଳ ଘଟରେ ନିରେଖି ମୋଦେ
ପାନ କରି ନାମ ସୁଧା ନମାନି ସଂସାରବାଧା
ସେବିବି କଞ୍ଜ ଚରଣେ ପ୍ରଫୁଲ୍ଲ ହୃଦେ
ନିତି ଗୁଣ କୀର୍ତ୍ତି ବର୍ଣ୍ଣନେ
ଅନୁବ୍ରତୀ ଥିବ ମୁଖ କର୍ଣ୍ଣ ଶ୍ରବଣେ ।



ସଭାପତି, ଜନନୀ ସେବାସଦନ
କପିଳପ୍ରସାଦ, ଭୁବନେଶ୍ୱର

# ଶ୍ରୀଜଗନ୍ନାଥଙ୍କ ଭକ୍ତ ଜୟଦେବ

ଶ୍ରୀନିବାସ ଆଚାର୍ଯ୍ୟ

**ଜ**ୟଦେବ ଯେ କେବଳ ଗୀତଗୋବିନ୍ଦ କାବ୍ୟର ରଚୟିତା ଭାବରେ ସୁପରିଚିତ ତାହା ନୁହେଁ, ସେ ଥିଲେ ନୀଳାଚଳବାସୀ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ । ପୁରାଣରେ ବର୍ଣ୍ଣିତ ଅଛି ସ୍ୱୟଂ ବିଷ୍ଣୁଙ୍କର ସହସ୍ର ନାମ ମଧ୍ୟରେ ଶ୍ରୀକୃଷ୍ଣ, ମାଧବ ଓ ଜଗନ୍ନାଥଙ୍କ ନାମ ଅନ୍ୟତମ । ବହୁ କିମ୍ବଦନ୍ତୀ କହେ ଶ୍ରୀମାଧବ ପରୋକ୍ଷ ଭାବରେ ଜୟଦେବଙ୍କ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ ବିପଦଆପଦ ଓ ମାଙ୍ଗଳିକ କାର୍ଯ୍ୟରେ ଛାଇପରି ରହିଥିଲେ । ଜୟଦେବଙ୍କର ପ୍ରଗାଢ଼ ଉଦ୍ୟମ, ଅଟଳ ଆତ୍ମବିଶ୍ୱାସ ଓ ଦୃଢ଼ ଇଚ୍ଛାଶକ୍ତି ବଳରେ ସେ ହୋଇପାରିଛନ୍ତି ଏତେବଡ଼ ଆସନର ଅଧିକାରୀ । ତ୍ରେତୟା ଯୁଗରେ ଭକ୍ତ ହନୁମାନ ଓ ପ୍ରଭୁ ଶ୍ରୀରାମ, ଦ୍ୱାପର ଯୁଗରେ ସଖା ଅର୍ଜୁନ ଓ ଭଗବାନ ଶ୍ରୀକୃଷ୍ଣ ଯେପରି ପରମ ଭକ୍ତ ଓ ଭଗବାନ ହୋଇପାରିଥିଲେ, ଠିକ୍ ସେପରି ଜୟଦେବ ଓ ଶ୍ରୀଜଗନ୍ନାଥ ହୋଇପାରିଛନ୍ତି ଭକ୍ତ ଓ ଭଗବାନ ।



ଯେଉଁ ପବିତ୍ର ମାଟିରେ ଶତ ଶତ ଦେବାଦେବୀଙ୍କ ପ୍ରତିମାମାନ ମନ୍ଦିର, ଗାଦୀ ଆଶ୍ରମ, ମଠ ଇତ୍ୟାଦିରେ ରହି ପୂଜା ପାଉଛନ୍ତି, ସେହି ପୀଠଭୂମିରେ ଜୟଦେବଙ୍କ ଜନ୍ମସ୍ଥାନ । ତ୍ରିକ୍ଷେତ୍ର ତଥା ତ୍ରିବେଣୀ ଭୂମି ରୂପେ ପ୍ରତିଷ୍ଠିତ ଶ୍ରୀକ୍ଷେତ୍ର, ଅର୍କକ୍ଷେତ୍ର ଓ ଏକାମ୍ରନଗରୀ ମଧ୍ୟରେ ଅବସ୍ଥିତ ପବିତ୍ର ପ୍ରାଚୀନଦୀ କୂଳରେ ତ୍ରିବେଣୀ ବୁଢ଼ ଧର୍ମପୀଠଠାରୁ ଅନତି ଦୂରରେ କେନ୍ଦୁଲି ବା କେନ୍ଦୁବିଲ୍ୱ ଗ୍ରାମରେ ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ବୈଶାଖମାସ ଶୁକ୍ଳପକ୍ଷ ଅକ୍ଷୟ ତୃତୀୟା ତିଥିରେ କବି ଜୟଦେବ ଜନ୍ମଗ୍ରହଣ କରିଥିଲେ । ପିତା ଭୋଜଦେବ ମାତା ରାଧାଦେବୀଙ୍କ ଔରସରୁ ଏକ କୁଳିନ ବ୍ରାହ୍ମଣ ପରିବାରରେ ମାଧବଙ୍କ ଆଶୀର୍ବାଦରୁ ସେ ଭୂମିଷ୍ଠ ହୋଇଥିଲେ । ତାଙ୍କର ପତ୍ନୀ ଥିଲେ ପଦ୍ମାବତୀ । ସେ ଥିଲେ କର୍ଣ୍ଣାଟୀ ବ୍ରାହ୍ମଣ କନ୍ୟା । କଥିତ ଅଛି ପଦ୍ମାବତୀଙ୍କ ପିତା ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦରୁ ପଦ୍ମାବତୀଙ୍କୁ ପାଇଥିଲେ । ଜୟଦେବଙ୍କୁ ବିବାହ ପୂର୍ବରୁ ପଦ୍ମାବତୀ ଥିଲେ ଜଣେ ନୃତ୍ୟଶିଳ୍ପୀ । ପିତା ପଦ୍ମାବତୀଙ୍କୁ ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କ ପାଖରେ ଅର୍ପଣ କରି ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ତତ୍କାଳୀନ ସମୟରେ ଜୟଦେବ ସନ୍ୟାସୀ ଧର୍ମରେ ଦୀକ୍ଷିତ ହୋଇଥିଲେ । ପଦ୍ମାବତୀଙ୍କୁ ପତ୍ନୀ ରୂପେ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ଜଗନ୍ନାଥଙ୍କର ସ୍ୱପ୍ନାଦେଶ ମାଧ୍ୟମରେ ପଦ୍ମାବତୀଙ୍କୁ ବିବାହ କରି ସାଂସାରିକ ଜୀବନରେ ଦୀକ୍ଷିତ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କର ଆଶୀର୍ବାଦ ଓ ପଦ୍ମାବତୀଙ୍କର ଅନାବିଳ ପ୍ରେମ ଓ ସାହାଯ୍ୟ ବଳରେ ଜୟଦେବ ଏହି ଭାବପୂର୍ଣ୍ଣ କାବ୍ୟ ରଚନା କରିବାରେ ସମର୍ଥ ହୋଇଥିଲେ ।

ଏଗାରବର୍ଷ ବୟସରେ ଜୟଦେବ ପିତାମାତାଙ୍କୁ ହରାଇ ହୋଇଯାଇଥିଲେ ଏକ ଅସହାୟ ଓ ଅନାଥ ବାଳକ । ଏହି ଦାରୁଣ ଦୁଃଖ ଓ ବିଷାଦରେ ମ୍ରିୟମାଣ ହୋଇଥିଲେ ମଧ୍ୟ ସେ ଭାଙ୍ଗି ନପଡ଼ି ଭଗବତ୍ କୃପାକୁ ପାଥେୟ କରି, କର୍ତ୍ତବ୍ୟ ପଥରେ ଅଗ୍ରସର ହୋଇଥିଲେ । ତାଙ୍କ ଜୀବନର କେତେଗୁଡ଼ିଏ ଘଟଣାରୁ ସୂଚନା ମିଳେ ଯେ, ଭଗବତ୍ କୃପା ଯୋଗୁଁ ତାଙ୍କର ସମସ୍ତ ବିପଦ ପାଣି ଫୋଟକା ପରି ଅପସରି ଯାଇଥିଲା । କ୍ରମଶଃ ତାଙ୍କର ମାଧବଙ୍କ ପ୍ରତି ଅଟଳ ବିଶ୍ୱାସ ଭାବ ଜାଗ୍ରତ ହୋଇଥିଲା । ପିତାଙ୍କ ମୃତ୍ୟୁର ପରେ ପରେ ଘର ଦ୍ୱାର ଓ ସାହି ପଡ଼ିଶାଙ୍କ ମାୟାମମତାକୁ ଡୋରି ବାନ୍ଧି ତାଙ୍କ ଗ୍ରାମର ଏକ ବ୍ରାହ୍ମଣ ବାଳକକୁ ସଙ୍ଗରେ ଧରି ସେ ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା କରିଥିଲେ । ବାଟରେ ପାଦରେ




ଚାଲିଯିବା ଅବସରରେ ଭୋକ ଶୋଷର ତାଡ଼ନା ସହ୍ୟ କରି ନପାରି ମୂର୍ଚ୍ଛା ହୋଇଯାଇଥିଲେ । ପରମଭକ୍ତର ଦୁଃଖକୁ ସହ୍ୟ କରିନପାରି ଅନାଥବନ୍ଧୁ ଶ୍ରୀଜଗନ୍ନାଥ ପରୋକ୍ଷ ଭାବରେ ଜଣେ ବ୍ରାହ୍ମଣ ରୂପେ ଆବିର୍ଭୂତ ହୋଇଥିଲେ । ତାଙ୍କର ସମସ୍ତ ଦୁଃଖ ଓ ଯନ୍ତ୍ରଣା ଦୂର କରାଇ ଶ୍ରୀକ୍ଷେତ୍ର ପୀଠରେ ପହଞ୍ଚାଇ ଥିଲେ । ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କୁ ଦର୍ଶନ କରି ସେ ନିଜକୁ ଧନ୍ୟ ମଣିଥିଲେ ।

ପ୍ରଥମେ ସେ ଶ୍ରୀକ୍ଷେତ୍ରରେ ଏକ ବଟବୃକ୍ଷ ତଳେ ଏକ କୁଡ଼ିଆ ଘର କରି ରହିଥିଲେ । ଭିକ୍ଷା ମାଗି ଜୀବିକା ନିର୍ବାହ କରୁଥିଲେ ମଧ ତାଙ୍କର ମନ ରହିଥିଲା ଶ୍ରୀଜଗନ୍ନାଥଙ୍କ ପାଖରେ । ପ୍ରତ୍ୟହ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଥିଲା ତାଙ୍କର ଆଦ୍ୟ କାର୍ଯ୍ୟ । ସନ୍ନ୍ୟାସୀ ବେଶରେ ଭିକ୍ଷା କରି ଯାହା ଆଣୁଥିଲେ ରୋଷାଇ କରି ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରିବା ପରେ ସେ ଭକ୍ଷଣ କରୁଥିଲେ । ପ୍ରତ୍ୟହ ସନ୍ଧ୍ୟା ସମୟରେ ଜଗନ୍ନାଥଙ୍କୁ ଦର୍ଶନ କରି ନାମ ସଂକୀର୍ତ୍ତନରେ ମଜ୍ଜି ରହୁଥିଲେ ପହଡ଼ ପଡ଼ିବା ପର୍ଯ୍ୟନ୍ତ । ସେହି କୁଡ଼ିଆ ଘର ଆଜି ଶ୍ରୀକ୍ଷେତ୍ର ପୀଠରେ 'ଦଶଅବତାର' ମଠ ନାମରେ ପରିଚିତ । ଏକଦା ସେହି ବଟବୃକ୍ଷ ତଳେ ଥିବା କୁଡ଼ିଆ ଘରେ ଗଭୀର ଭାବରେ ଧ୍ୟାନମଗ୍ନ ଥିବାବେଳେ ଶ୍ରୀକୃଷ୍ଣଙ୍କ ବଂଶୀବାଦର ସ୍ୱର ନିସୃତ ହେବା ସଂଗେସଂଗେ ସ୍ୱୟଂ ଶ୍ରୀକୃଷ୍ଣ ଆବିର୍ଭାବ ହୋଇଥିଲେ । ପ୍ରଭୁଙ୍କୁ ଦର୍ଶନ କରି ସ୍ୱତଃ ଜୟଦେବଙ୍କ ମୁଖରୁ ଏକ ଶ୍ଳୋକ ନିସୃତ ହୋଇଥିଲା । ତାହା ଥିଲା-

ମେଘୈର୍ମେଦୁର ମୟୂରଂ ବନଭୁବଃ -- ଯମୁନା କୂଳେ ରହ କେଳୟଃ । ସେହିଦିନଠାରୁ ଜୟଦେବଙ୍କର କାବ୍ୟ ଲେଖିବାର ପ୍ରତିଭା ବିକଶିତ ହୋଇଥିଲା । ଶ୍ରୀଜଗନ୍ନାଥଙ୍କର ନାମ କୀର୍ତ୍ତନ ବ୍ୟତୀତ ଜୟଦେବଙ୍କର ଅନ୍ୟ କୌଣସି କାର୍ଯ୍ୟ ପ୍ରତି ମନ ନଥିଲା । ସେ ଧ୍ୟାନ ମଗ୍ନ ଥିବାବେଳେ ଦଶାବତାର ଦର୍ଶନର ସୌଭାଗ୍ୟ ଅର୍ଜନ କରିଥିଲେ । ତତ୍ପରେ 'ଗୀତଗୋବିନ୍ଦ' କବିତା ଲେଖିବାରେ ସମର୍ଥ ହୋଇଥିଲେ । ଏହି କବିତାର ରସ ଓ ଶୈଳୀ 'ଜୟଜଗଦୀଶ ହରେ' ଶବ୍ଦଟି ଲଗାଇ ପ୍ରତ୍ୟେକ ପଦ ଗଠନ ହୋଇଥିବାରୁ, ତାହା ସମାଜରେ ତଥା ସାହିତ୍ୟ ଜଗତରେ ସ୍ୱୀକୃତି ଲାଭ କରିଥିଲା ।

କଥିତ ଅଛି ଶ୍ରୀକୃଷ୍ଣ ଜୟଦେବଙ୍କୁ ଗୀତଗୋବିନ୍ଦ କାବ୍ୟ ରଚନାରେ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରିଥିଲେ । ପ୍ରତ୍ୟହ ଜୟଦେବ ଗୀତଗୋବିନ୍ଦ କାବ୍ୟ ରଚନା କରନ୍ତି । ଗୋଟିଏ ଦିନ ସକାଳେ ସେ ତାଳପତ୍ର ପୋଥିରେ ତାଙ୍କ ଆଶ୍ରମରେ କାବ୍ୟ ରଚନା ସମୟରେ ତଳ ପଦର ଶେଷ ଚରଣଟି ଆଦୌ ସ୍ମରଣ ହେଉନଥିଲା । ତେଣୁ ସେ ଗଭୀର ଚିନ୍ତାମଗ୍ନ ଅବସ୍ଥାରେ ମୁଣ୍ଡରେ ହାତ ଥୋଇ ତଳ ପଦ ଚରଣଟି ଭାବୁଥିଲେ । ଚାହୁଁ ଚାହୁଁ ସମୟ ଅତିବାହିତ ହୋଇଥିଲା ସିନା ପଦ୍ୟଟି ପୂରଣ ହେଲା ନାହିଁ ।

ସ୍ମର ସରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ ... । ଏହି ପଦରେ ଲେଖାଟି ବନ୍ଦ ହୋଇ ରହିଥାଏ । ବିଳମ୍ବ ଦେଖି ଓ ସ୍ୱାମୀଙ୍କ ଏପରି ଅବସ୍ଥା ବୁଝିପାରି ପତ୍ନୀ ପଦ୍ମାବତୀ କହିଲେ ଆପଣ ସ୍ନାନ ଓ ତର୍ପଣ ସାରି ଠାକୁରଙ୍କ ପ୍ରସାଦ ସେବନ ପରେ ଅନ୍ୟ ପଦଟି ମନେପଡ଼ିବ । ସ୍ନାନ ସମୟ ଗଡ଼ି ଗଲାଣି ଯାଆନ୍ତୁ ସ୍ନାନ କରିବା ପାଇଁ । ପଦ୍ମାବତୀଙ୍କ କଥା ମାନି ଜୟଦେବ ସ୍ନାନ କରିବା ପାଇଁ ଯିବା ଅବସରରେ ସ୍ୱୟଂ ଭଗବାନ ଜୟଦେବଙ୍କ ଅବିକଳ ରୂପ ଧାରଣ କରି ଆଶ୍ରମରେ ଉପସ୍ଥିତ ହୋଇଥିଲେ । ଏହା ଦେଖି ପତ୍ନୀ ଜୟଦେବ ବୋଲି ଭାବି ପୂର୍ବପରି ତାଙ୍କର ଭୋଜନ ପ୍ରସ୍ତୁତ କରିଥିଲେ । ବ୍ରାହ୍ମଣ ଜଣକ ଭୋଜନସାରି ଅସମ୍ପୂର୍ଣ୍ଣ ପଦକୁ ପୂରଣ କରି ଶୋଇବା କକ୍ଷରେ ବିଶ୍ରାମ ନେଲେ । ପଦ୍ମାବତୀ ସ୍ୱାମୀଙ୍କ ଥାଳିରେ ଖାଇ ବସିଲେ । କିଛି ସମୟ ପରେ ଜୟଦେବ ସ୍ନାନ ସାରି ଘରକୁ ଫେରିବା ଦେଖି ପଦ୍ମାବତୀ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ପତ୍ନୀଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଅସମ୍ପୂର୍ଣ୍ଣ ପଦଟି ତାଳପତ୍ର ପୋଥିରେ ଲେଖା ହୋଇଥିବା ଦେଖି ବିସ୍ମିତ ହୋଇଯାଇଥିଲେ । ଶୟନ କକ୍ଷକୁ ଯାଇ ଦେଖିଲେ କକ୍ଷରେ କେହି ନାହାନ୍ତି ଓ ସେହି କକ୍ଷଟି କସ୍ତୁରୀ ଚନ୍ଦନ ବାସନାରେ ମହକି ଉଠୁଛି । ଶେଷ ପଦ୍ୟଟି ହେଲା - 'ଦେହି ପଦ ପଲ୍ଲବ ମୁଦାରଂ ।' ସ୍ୱୟଂ କୃଷ୍ଣ ମୋ' ଅନୁପସ୍ଥିତିରେ ଏହି ପଦଟି ଲେଖିଛନ୍ତି ବୋଲି ଜୟଦେବଙ୍କ ମନରେ ବଦ୍ଧ ଧାରଣା ସୃଷ୍ଟି ହେଲା । ସ୍ୱୟଂ ଶ୍ରୀକୃଷ୍ଣଙ୍କର ତାଙ୍କ ଆଶ୍ରମରେ ଉପସ୍ଥିତ ଯେତିକି ଆନନ୍ଦ ଦେଲା କିନ୍ତୁ ସେ ଦର୍ଶନ କରିପାରିଲେ ନାହିଁ ବୋଲି ନିଜକୁ ତୁଚ୍ଛ ମନେକଲେ । କିନ୍ତୁ ପତ୍ନୀ ପଦ୍ମାବତୀ ଦର୍ଶନ କରିଥିବାରୁ ଅତ୍ୟନ୍ତ ପ୍ରୀତ ହୋଇ ଭାଗ୍ୟବତୀ ବୋଲି କହିଥିଲେ ।

ଏହି ଘଟଣାର ପ୍ରଭାବ ଜୟଦେବଙ୍କୁ ଗଭୀର ଭାବରେ ଆଘାତ ଦେବା ସଂଗେସଂଗେ ଦିନକୁ ଦିନ ଏହା ଭାବି ଭାବି ଦୁଃଖରେ ମ୍ରିୟମାଣ ହୋଇଗଲେ । ଭକ୍ତବତ୍ସଳ ଜୟଦେବଙ୍କ ଦୁଃଖକୁ ସହ୍ୟ କରି ନପାରି ରାତ୍ରିରେ ସ୍ୱପ୍ନାଦେଶ ମାଧ୍ୟମରେ ଶ୍ରୀକୃଷ୍ଣ ସମସ୍ତ ବିବରଣୀ ଜଣାଇଥିଲେ । ଏହି ଘଟଣାର ଅଳ୍ପଦିନ ପରେ ଜୟଦେବ ଗୀତଗୋବିନ୍ଦ କାବ୍ୟଟି ସମ୍ପୂର୍ଣ୍ଣ କରିବାରେ ସମର୍ଥ ହୋଇଥିଲେ । ପ୍ରତିଦିନ ଜୟଦେବ ଶ୍ରୀଜଗନ୍ନାଥଙ୍କ ପାଖରେ ଗୀତଗୋବିନ୍ଦ ଗାନ କରନ୍ତି ଓ ପଦ୍ମାବତୀ ଜୟଦେବଙ୍କ ଗୀତ ଗାନର ସ୍ୱରରେ ତାଳ ଦେଇ ନୃତ୍ୟ କରିଥାନ୍ତି । ଏହି ପୂର୍ଣ୍ଣାଙ୍ଗ




କାବ୍ୟକୁ ଶ୍ରୀଜଗନ୍ନାଥଙ୍କ ନିକଟରେ ଅର୍ପଣ କରି ନିଜକୁ ପରମ ସୌଭାଗ୍ୟ ଲାଭ କରିଥିଲେ ।

ଜୟଦେବଙ୍କର ମହତଗୁଣର ପ୍ରଶଂସାରେ ଅତିଷ୍ଠ ହୋଇ ତତ୍କାଳୀନ ଉତ୍କଳାଧୀଶ ଅନ୍ୟ ଗୋଟିଏ ଗୀତଗୋବିନ୍ଦ କାବ୍ୟ ରଚନା କରି ଜଗନ୍ନାଥଙ୍କ ସମ୍ମୁଖରେ ଗାନ କରିଥିଲେ । ଜୟଦେବଙ୍କଦ୍ୱାରା ରଚିତ ଗୀତଗୋବିନ୍ଦକୁ ଶ୍ରୀଜଗନ୍ନାଥ ସମ୍ମୁଖରେ ଗାନ କରିବାକୁ ସୁଯୋଗ ଦିଆଯାଇନଥିଲା । ଦିନେ ରାଜା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମୟରେ ଜୟଦେବ ତାଙ୍କଦ୍ୱାରା ଲିଖିତ ଗୀତଗୋବିନ୍ଦ ଗାନ କରିବାର ଦେଖି କ୍ଷୁବ୍ଧ ହୋଇ ଭର୍ତ୍ସନା କରିଥିଲେ । ଜୟଦେବ ରାଜାଙ୍କ ପ୍ରଶ୍ନ ଉତ୍ତରରେ କହିଥିଲେ, ତାଙ୍କଦ୍ୱାରା ରଚିତ ଗୀତଗୋବିନ୍ଦଟି ଅଧିକ ସନ୍ତୋଷପ୍ରଦ ଓ ଉପାଦେୟ ଅଟେ । ଏହି ବିବାଦର ସମାଧାନ ପାଇଁ ୨ଟି ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ଗର୍ଭଗୃହ ଭିତରେ ଥୁଆ ହୋଇଥିଲା । କପାଟୋନ୍ମୋଚନ କରିବା ପରେ ଦେଖାଗଲା, ଜୟଦେବଙ୍କଦ୍ୱାରା ଲିଖିତ ଗୀତଗୋବିନ୍ଦଟି ରାଜାଙ୍କ ଗୀତଗୋବିନ୍ଦ ଉପରେ ରହିଥିଲା । ଏଥିରେ ରାଜା ଏକମତ ନ ହୋଇ ପୂର୍ବପରି ଜୟଦେବଙ୍କ ଉପରେ ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ । ଏହା ଦେଖି ଶ୍ରୀଜଗନ୍ନାଥ ସ୍ୱପ୍ନାଦେଶ ମାଧ୍ୟମରେ ରାଜାଙ୍କୁ କହିଥିଲେ ଜୟଦେବଙ୍କ ଗୀତଗୋବିନ୍ଦଟି ମୋ' ସେବାକାର୍ଯ୍ୟରେ ବ୍ୟବହାରରେ ଲାଗିବ। ସଂଗେସଂଗେ ଲୋକଲୋଚନରେ ଏହାର ପ୍ରସାର ଓ ପ୍ରଚାର କରାଇବା ପାଇଁ ସୂଚନା ଦେଇଥିଲେ । ପବନର ପ୍ରଖର ବେଗ ପରି ଏହି ଖବରଟି ସମଗ୍ର ଭାରତର ବୈଷ୍ଣବଧର୍ମାବଲମ୍ବୀ ଓ ଆଧ୍ୟାତ୍ମିକ ଜଗତରେ ପ୍ରସାର ଓ ପ୍ରଚାର ହୋଇଗଲା । ଆଉମଧ୍ୟ ଜୟଦେବ ହୋଇଗଲେ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ସମଗ୍ର ଜନତାଙ୍କ ଲୋକଲୋଚନରେ । ଏହି ଘଟଣାଟି ଯେଉଁ ଗଜପତି ରାଜାଙ୍କ ସମୟରେ ଘଟିଥିଲା, ସେ ଥିଲେ ମହାନ୍ ପରାକ୍ରମଶାଳୀ ପୁରୁଷୋତ୍ତମ ଦେବ ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କର 'ଗୀତଗୋବିନ୍ଦ' ଅତି ପ୍ରିୟ ଥିଲା ବୋଲି ବିଭିନ୍ନ କିମ୍ବଦନ୍ତୀ କହେ । ଏକଦା ଶ୍ରୀକ୍ଷେତ୍ରର ଅନତିଦୂରରେ ଥିବା ଏକ ଗ୍ରାମରେ ଶାକ ବିକ୍ରୟକାରିଣୀ ସ୍ୱକ୍ଷେତରୁ ବାଇଗଣ ତୋଳିବା ସମୟରେ ଅତି ଭାବବିହ୍ୱଳ ହୋଇ ଗୀତଗୋବିନ୍ଦ ପଦ୍ୟାବଳୀ ସୁମଧୁର ସ୍ୱରରେ ଆବୃତ୍ତି କରୁଥିଲେ । ଏହି ଗୀତଗୋବିନ୍ଦ ଗାନରେ ମୁଗ୍ଧ ହୋଇ ଶ୍ରୀଜଗନ୍ନାଥ ଅଦୃଶ୍ୟ ଭାବରେ ତାହାର ପଛପଟେ ବୁଲିବାକୁ ଲାଗିଲେ । ବାଇଗଣ ଗଛର କଣ୍ଟା ଶ୍ରୀଜଗନ୍ନାଥ ପିନ୍ଧିଥିବା ବସ୍ତ୍ରରେ ଲାଗିଗଲା । ବାଇଗଣ ତୋଳା ସରିବାପରେ ସ୍ତ୍ରୀ ଲୋକଟି ତାଙ୍କ ଘରକୁ ଓ ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ଏହି ଘଟଣାର ପରଦିନ ପ୍ରଭାତରେ ବଡ଼ପଣ୍ଡା ଶ୍ରୀଜଗନ୍ନାଥଙ୍କ ପରିଧାନ ବସ୍ତ୍ରରେ ବାଇଗଣ କଣ୍ଟା ଲାଗିଥିବାର ଦେଖି ବିସ୍ମିତ ହୋଇଯାଇଥିଲେ । ଗଜପତି ରାଜା ଏହା ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ଏହା ଦେଖି ରାଜା ଓ ବଡ଼ପଣ୍ଡାମାନେ ଅଶୁଭ ଆଶଙ୍କା କରି ଦୈନନ୍ଦିନ ପୂଜାପଦ୍ଧତି ବନ୍ଦ କରି ଏହାର ପ୍ରତିକାର ସ୍ୱରୂପ ହୋମ ଓ ପୂଜାପାଠ କରିଥିଲେ । ସେହିଦିନ ରାତ୍ରିରେ ଶ୍ରୀଜଗନ୍ନାଥ ଗଜପତିଙ୍କୁ ସ୍ୱପ୍ନାଦେଶ ମାଧ୍ୟମରେ ଜଣାଇଥିଲେ ଯେ, ସେ ଗୀତଗୋବିନ୍ଦ କାବ୍ୟକୁ ଭଲ ପାଇ ବାଇଗଣ କ୍ଷେତରେ ସ୍ତ୍ରୀଲୋକ ବୋଲୁଥିବାର ଦେଖି ସେ ତା'ପଛରେ ଛଦ୍ମ ବେଶରେ ଥାଇ ଶୁଣୁଥିଲେ । ତତ୍ପରେ ସେହି ଶାକ ବିକ୍ରୟକାରିଣୀକୁ ଡକାଇ ସମସ୍ତ ସତ୍ୟାସତ୍ୟ ବୁଝିବା ସଂଗେସଂଗେ ତାକୁ ପ୍ରତ୍ୟହ ମହାପ୍ରଭୁଙ୍କ ନିକଟରେ ଗୀତଗୋବିନ୍ଦ ଗାନ ପାଇଁ ଆଦେଶ ଦେଇଥିଲେ । ସେହିପରି ଗୀତଗୋବିନ୍ଦ ରଚୟିତା ଜୟଦେବଙ୍କୁ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ରୂପେ ସ୍ୱୀକୃତିପ୍ରଦାନ କରିଥିଲେ । ଶ୍ରୀଜଗନ୍ନାଥଙ୍କର ଆଦ୍ୟ ଓ ମୁଖ୍ୟ ସେବକ ଗଜପତି ରାଜା ଜୟଦେବଙ୍କୁ ଜଗନ୍ନାଥଙ୍କର ପରମ ଭକ୍ତ ରୂପେ ସମ୍ମାନିତ କରିଥିଲେ ଓ ତାଙ୍କ ଆଶ୍ରମକୁ ଯାଇଥିଲେ ।

ଅକ୍ଷୟ ତୃତୀୟା ଦିବସଟି ପବିତ୍ର ଓ ଧାର୍ମିକ ଦିବସ ରୂପେ ପୁରାଣରେ ବର୍ଣ୍ଣିତ ଅଛି । ସେହି ମହାନ୍ ଦିବସଟି ସହିତ ଘନିଷ୍ଠ ସମ୍ପର୍କ ନିହିତ ଅଛି ଆରାଧ୍ୟ ଠାକୁର ଶ୍ରୀଜଗନ୍ନାଥ ଓ ପରମ ଭକ୍ତ ଜୟଦେବଙ୍କର । ପ୍ରକାଶଥାଉକି ସେହି ଦିବସଟିରେ ଶ୍ରୀଜୀଉଙ୍କର ରଥ ନିର୍ମାଣର ପ୍ରଥମ ଦିବସ, ଚନ୍ଦନଯାତ୍ରାର ଉଦ୍‌ଘାଟନ ସମେତ କୃଷକ ସମାଜର ମୁଠି ଅନୁକୂଳ ଦିବସ ଅଟେ । ସେହିଦିନ କୃଷକଭାଇ ଶସ୍ୟକ୍ଷେତ ପୂଜା କରି ଧାନବୁଣା ଆରମ୍ଭ କରିଥାଏ । ସେହି ପବିତ୍ର ଦିବସରେ ଶ୍ରୀଜଗନ୍ନାଥଙ୍କର ପରମଭକ୍ତ କବି ଜୟଦେବଙ୍କର ଜନ୍ମଲାଭ କରି ଶ୍ରୀଜଗନ୍ନାଥଙ୍କର ପ୍ରେମ ଓ ଭକ୍ତି ରସବାଣୀ ସମଗ୍ର ମାନବ ସମାଜକୁ ପରିବେଷଣ କରିବାରେ ସମର୍ଥ ହୋଇଥିଲେ ।

ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥଙ୍କଠାରେ ବିଭିନ୍ନ ଧର୍ମ ଓ ସଂସ୍କୃତିର ସମନ୍ୱୟ ଘଟିଥିବାର କିମ୍ବଦନ୍ତୀମାନ ବିଭିନ୍ନ ପୁରାଣ ଓ ଶାସ୍ତ୍ରମାନଙ୍କରେ ଲିପିବଦ୍ଧ ହୋଇଛି । କବି ଜୟଦେବ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ନିମ୍ବାର୍କ ପ୍ରଥା ଅନୁସରଣ କରିଥିଲେ । ସେ ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁ ରୂପରେ ଆରାଧନା କରିବା ସଂଗେସଂଗେ ରାଧାକୃଷ୍ଣଙ୍କ ପରକୀୟା ପ୍ରୀତି ଓ ବସନ୍ତକାଳୀନ ରାସଲୀଳାକୁ ଆଧାର କରି ସେ ଲେଖିବାକୁ ସମର୍ଥ ହୋଇଥିଲେ ଲଳିତ ମଧୁର ଗୀତଗୋବିନ୍ଦ କାବ୍ୟ ।

ଘ.ନଂ.- ଟୁ.ଆର୍.ଏ.
୩୫/୭, ୮ ନମ୍ବର, ଭୁବନେଶ୍ୱର







# ପାନରସିକ ଶ୍ରୀଜଗନ୍ନାଥ ଓ ଶ୍ରୀମନ୍ଦିରରେ ହଡ଼ପ ସେବା

ରମେଶ ପ୍ରସାଦ ସିଂହ

**ଆ**ଜିକୁ ଶହ ଶହ ବର୍ଷ ତଳର କଥା, ସବୁଦିନ ପରି ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରରେ ସେଦିନ ସକାଳୁ ଖୁବ୍ ଭିଡ଼ ଥାଏ । ଯାତ୍ରୀମାନେ ନିଜ ନିଜର ତୀର୍ଥଗୁରୁ ବା ପଣ୍ଡାମାନଙ୍କ ଗହଣରେ ଶ୍ରୀମନ୍ଦିର ମଧ୍ୟରେ ଦର୍ଶନ ତଥା ଅନ୍ୟାନ୍ୟ ପୂର୍ଣ୍ଣକାର୍ଯ୍ୟରେ ବ୍ୟସ୍ତ ଥା'ନ୍ତି । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ମଙ୍ଗଳ ଆରତୀ ପରେ ବେଶ ଉଲାଗି ବା ମଇଲମ ପରେ ଅବକାଶ ନୀତି ସମାପନ ହୋଇସାରିଥାଏ । ହଜାର ହଜାର ଲୋକ ଅପେକ୍ଷା କରିଥାନ୍ତି ମହାପ୍ରଭୁଙ୍କୁ ନିଜର ସକ୍ଷମ ମୁତାବକ ନୈବେଦ୍ୟ ଅର୍ପଣ କରିବା ପାଇଁ । ଏହି ସମୟରେ ନିଜର ତୀର୍ଥଗୁରୁଙ୍କ ସହ ମନ୍ଦିରରେ ପ୍ରବେଶ କଲେ ସାରା ଭାରତବର୍ଷରେ ସୁନାମ ଥିବା ଜଣେ ବିଖ୍ୟାତ ସେଠ । ଶ୍ରୀମନ୍ଦିର ଆଗମନ ସମୟରେ ତାଙ୍କର ସାଜସଜା, ପରିପାଟୀ, ବସନଭୂଷଣ ତଥା ସାଙ୍ଗରେ ଥିବା ଥାଟ ବାଟରୁ ସେ ଜଣେ ଅତ୍ୟନ୍ତ ବିତ୍ତଶାଳୀ ସେଠ, ତାହା ଜଣାପଡ଼ିଯାଉଥିଲା । ଶ୍ରୀମନ୍ଦିରକୁ ମହାପ୍ରଭୁଙ୍କ ଦର୍ଶନ ନିମନ୍ତେ ଭାରତର ଜଣେ ବିଖ୍ୟାତ ଧନୀ ସେଠ ଆସିଛନ୍ତି, ଏକଥା ଚାହୁଁ ଚାହୁଁ ଶ୍ରୀମନ୍ଦିର ଭିତରେ ତଥା ଛୋଟିଆ ତୀର୍ଥ ପୀଠ ପୁରୀରେ ଚହଳ ପଡ଼ିଗଲା । ଏକଥା ପୁରୀ ଗଜପତିଙ୍କ ଦରବାରରେ ମଧ୍ୟ ପହଞ୍ଚିଗଲା । ତୀର୍ଥଗୁରୁ ବା ପଣ୍ଡା ସେଠ ଓ ତାଙ୍କର ପରିବାରଙ୍କୁ ଶ୍ରୀଜଗନ୍ନାଥ ମନ୍ଦିରରେ ବେଢ଼ା ପରିକ୍ରମା କରାଇବା ପରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଦାନ, ଦର୍ଶନୀ ତଥା ନୈବେଦ୍ୟ ଅର୍ପଣ ବିଷୟରେ ପ୍ରଶ୍ନକଲେ । ସେଠ୍ ସଂଗେସଂଗେ ମନସ୍କାମନା ଜଣାଇ କହିଲେ ଯେ ସେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଲକ୍ଷାଧିକ ସ୍ୱର୍ଣ୍ଣମୁଦ୍ରାରେ ପ୍ରସ୍ତୁତ ଭୋଗ ଅର୍ପଣ କରିବାକୁ ଚାହାନ୍ତି, ଏକଥା ଶୁଣି ତୀର୍ଥପଣ୍ଡା କିଂକର୍ତ୍ତବ୍ୟମୂଢ଼ ହୋଇଗଲେ । ସେ ସେଠଙ୍କ କଥାକୁ ବିଶ୍ୱାସ କରିପାରିଲେ ନାହିଁ । ଶସ୍ତା ଯୁଗରେ ଲକ୍ଷାଧିକ ସ୍ୱର୍ଣ୍ଣମୁଦ୍ରାରେ ନୈବେଦ୍ୟ ପ୍ରସ୍ତୁତ କରିବା ସୁପକାରମାନଙ୍କର ଚିନ୍ତାଧାରାର ବହୁଉର୍ଦ୍ଧ୍ୱରେ ଥିଲା । ସାଙ୍ଗରେ ଥିବା ଅନ୍ୟ ସେବକମାନେ ମଧ୍ୟ ହତଚକିତ ହୋଇଗଲେ । ନିଜର ମାନସିକ କଥା ପ୍ରକାଶ କରିଦେଇ ଉକ୍ତ ସେଠ ଜଣକ ମନ୍ଦିରରେ ତାଙ୍କୁ ଘେରି ରହିଥିବା ସମସ୍ତ ସେବକ ଓ ତୀର୍ଥଗୁରୁଙ୍କୁ ଅନାଇ ମୁରୁକି ମୁରୁକି ହସୁଥାନ୍ତି ଓ ସେମାନଙ୍କର ଲକ୍ଷାଧିକ ସ୍ୱର୍ଣ୍ଣମୁଦ୍ରା ମୂଲ୍ୟର ଭୋଗ ସମ୍ପର୍କରେ ହତାଶା ଭାବ ଦେଖି ଅର୍ଥର ଅଭିମାନରେ ଉଦ୍‌ଫୁଲିତ ହୋଇ ପଡୁଥାନ୍ତି । ଶ୍ରୀମନ୍ଦିରର ସେବାୟତ ନିଯୋଗମାନଙ୍କ ବରିଷ୍ଠ ସେବାୟତମାନେ ନିଜ ନିଜ ମଧ୍ୟରେ ବିଚାରବିମର୍ଷ କରି ଭୋଗ ସମ୍ବନ୍ଧରେ ଯେତେବେଳେ କୌଣସି ନିର୍ଦ୍ଦିଷ୍ଟ ନିଷ୍ପତ୍ତିରେ ପହଞ୍ଚି ପାରିଲେ ନାହିଁ, ସେତେବେଳେ ଏ ବିଷୟରେ ସେମାନେ ବାଧ୍ୟ ହୋଇ ଗଜପତି ମହାରାଜାଙ୍କୁ ସେଠଙ୍କର ଯାଚଜ୍ଞାଭୋଗ ସମ୍ପର୍କରେ ଜଣାଇଲେ । ଗଜପତି ମହାରାଜା ନିଜର ଦରବାର ଡାକି ଶ୍ରୀମନ୍ଦିର ସେବାୟତ, ମନ୍ତ୍ରିପରିଷଦ ତଥା ରାଜଗୁରୁଙ୍କ ସହ ଅନେକ ପ୍ରକାର ବିଚାରବିମର୍ଷ କରି ସେଠଙ୍କୁ ସମୟ ମାଗିଲେ ମହାପ୍ରଭୁଙ୍କର ସେହି ଦାମିକା ଭୋଗ ପ୍ରସ୍ତୁତି ସମ୍ପର୍କରେ ନିଷ୍ପତ୍ତି ନେବା ପାଇଁ । ସେଠ ଶୁଣିଥିଲେ ଶ୍ରୀଜଗନ୍ନାଥ ପୀଠ ଭୋଗପୀଠ । ଏଠାରେ ଭଗବାନ ମହାବିଷ୍ଣୁ ବିରାଜିତ । ସକାଳଠାରୁ ରାତି ପର୍ଯ୍ୟନ୍ତ ଅନ୍ନ ବ୍ୟଞ୍ଜନଠାରୁ ଆରମ୍ଭ କରି ଛପନ ପ୍ରକାରର ଷାଠିଏ ପଉଟି ଭୋଗ ଏଠାରେ ଲାଗେ । ଲକ୍ଷ ଲକ୍ଷ ଭକ୍ତ ଆଚାଣ୍ଡାଳ ବ୍ରାହ୍ମଣ ଶ୍ରୀମନ୍ଦିରରେ ଶ୍ରୀମହାପ୍ରସାଦକୁ ଏକାଠି ବସି ଭୋଜନ କରନ୍ତି । କିନ୍ତୁ ଏ କ'ଣ ? ସେ ଶୁଣିଥିବା କଥା କ'ଣ ମିଛ ? ଯଦି ମହାବିଷ୍ଣୁ ଏହି ମର୍ତ୍ତ୍ୟବୈକୁଣ୍ଠରେ ବିରାଜିତ, ତେବେ ତାଙ୍କର ମାନସିକ ଯାଚଜ୍ଞା ଅନୁସାରେ ଭୋଗ ସତରେ କ'ଣ ସେବକମାନେ ପ୍ରସ୍ତୁତ କରିବାକୁ ଅକ୍ଷମ ? ତାଙ୍କର ମନରେ ଯେତିକି ଆଶଙ୍କା ହେଉଥାଏ ସେତିକି ମଧ୍ୟ ଅଭିମାନ ଓ ଗର୍ବ ଜାତ ହେଉଥାଏ । ଯାହାହେଉ ତାଙ୍କର ମାନସିକ ପୂରଣ ପାଇଁ ମନ୍ଦିରର ଗଜପତି ମଧ୍ୟ ଚିନ୍ତିତ, ଏପରି ଚିନ୍ତା କରୁ କରୁ ଉକ୍ତ ସେଠ ଗଜପତିଙ୍କର ଜଣେ ଧନୀ ଅତିଥି ଭାବରେ ନିମନ୍ତ୍ରଣ ପାଇ ରାଜକୀୟ ବିଶ୍ରାମଗାରରେ ନିଦ୍ରା ଗଲେ ।

ଏପଟେ ଗଜପତି ମହାରାଜା ମନରେ ନାନା ପ୍ରଶ୍ନ ନେଇ ଶୟନକକ୍ଷରେ ରତ୍ନପଲଙ୍କ ଉପରେ ଶୟନ ମୁଦ୍ରାରେ ଛଟପଟ





ହେଉଥାନ୍ତି । ସତରେ କ'ଣ ସେଠଙ୍କର ମାନସିକ ଭୋଗପୀଠାଧିଶ୍ୱର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନିକଟରେ ଅପୂରଣୀୟ ହୋଇ ରହିଯିବ ? ଶ୍ରୀକ୍ଷେତ୍ର ତଥା ଶ୍ରୀମନ୍ଦିରର ସ୍ୱାଭିମାନ କ'ଣ ସତରେ କ୍ଷୁର୍ଣ୍ଣ ହେବ ? ନାନା ଚିନ୍ତା ଦୁର୍ଶ୍ଚିନ୍ତା ମଧ୍ୟରେ ଗଜପତି ମହାରାଜା ନିଦ୍ରା ଯାଇଥାନ୍ତି । ହଠାତ୍ ଗଜପତିଙ୍କ ଶୟନ କକ୍ଷ ନୀଳାଭ ଆଲୋକରେ ଉଦ୍ଭାସିତ ହୋଇଉଠିଲା । ଶ୍ରୀଜଗନ୍ନାଥ ମହାପ୍ରଭୁ ସ୍ୱୟଂ ଗଜପତିଙ୍କ ନିକଟରେ ହସ ହସ ବଦନରେ ଆର୍ବିଭୂତ ହୋଇ ସାମାନ୍ୟ କାରଣରୁ ବ୍ୟଥିତ ଗଜପତିଙ୍କ ନିମନ୍ତେ ଅବଶୋଷ ପ୍ରକାଶ କଲେ ଓ କହିଲେ- 'ଏ ସାମାନ୍ୟ କାରଣ ପାଇଁ ଉତ୍କଳର ଗଜପତି, ପ୍ରଭୁଙ୍କର ପ୍ରତିନିଧି ଚିନ୍ତିତ କାହିଁକି ? ଯଦି ଉକ୍ତ ସେଠ ପ୍ରକୃତରେ ପ୍ରସାଦ ଅର୍ପଣ କରିବାକୁ ଚାହୁଁଛନ୍ତି ତେବେ ତାଙ୍କୁ କୁହ ନୈବେଦ୍ୟ ବଦଳରେ ଯଦି ଦେଇପାରିବ, ତେବେ ଖଣ୍ଡେ ପାନ ଦେଉ । ଅବଶ୍ୟ ବିଡ଼ିଆ ପାନ ଖାଇ ଖାଇ ଆଉ ଭଲ ଲାଗୁନି, ତେଣୁ ଖଣ୍ଡେ ଗଜମୋତି ଚୂନ ଲଗା ପାନ ଦେବାକୁ ସେଠକୁ କୁହ ।' ଏତିକି କହି ପ୍ରଭୁ ଉଭେଇଗଲେ । ହଠାତ୍ ଗଜପତିଙ୍କ ନିଦ୍ରାଭଙ୍ଗ ହେଲା । ଗଜପତି ଅନୁଭବ କଲେ ସତେ ଯେପରି ସେ ଶ୍ରୀମନ୍ଦିର ରତ୍ନସିଂହାସନ ନିକଟରେ ପହଞ୍ଚି ଯାଇଛନ୍ତି । ଶୟନକକ୍ଷ କସ୍ତୁରୀ ଚନ୍ଦନ, ତୁଳସୀ ଓ ନାନାପ୍ରକାର ସୁବାସିତ ଫୁଲର ସୁଗନ୍ଧରେ ମହକି ଯାଉଥାଏ । ସତରେ କ'ଣ ମହାପ୍ରଭୁ ତାଙ୍କୁ ଚିନ୍ତାମୁକ୍ତ କରିବାକୁ ଶ୍ରୀମନ୍ଦିରରୁ କଷ୍ଟ କରି ଶ୍ରୀନଅରରେ ପଦାର୍ପଣ କରିଥିଲେ । ଧନ୍ୟ ମହାପ୍ରଭୁ ଧନ୍ୟ ତୁମ ସେବକ ପ୍ରୀତି ।

ଠିକ୍ ସେହି ସମୟରେ ନିଦ୍ରାଗତ ଭକ୍ତ ସେଠ ଓ ତୀର୍ଥପଣ୍ଡାଙ୍କୁ ମଧ୍ୟ ମହାପ୍ରଭୁଙ୍କ ସେହି ଏକାପ୍ରକାରର ନିର୍ଦ୍ଦେଶ ମିଳି ସାରିଥିଲା । ସକାଳ ହେବା ସଂଗେସଂଗେ ଗଜପତି ମହାରାଜା ଭକ୍ତ ସେଠଙ୍କୁ ଡକାଇ ମହାପ୍ରଭୁଙ୍କ ନିର୍ଦ୍ଦେଶ ସମ୍ପର୍କରେ ଅବଗତ କରାଇଲେ । ଗତ ରାତ୍ରୀରେ ସେଠଙ୍କୁ ମଧ୍ୟ ଠିକ୍ ସେହି ନିର୍ଦ୍ଦେଶ ମିଳି ସାରିଥିଲା । ସେଠ ସଂଗେସଂଗେ ଗଜପତିଙ୍କ ସହିତ ବିଚାରବିମର୍ଷ କଲେ । ପାନ ବଡ଼ କଥା ନୁହେଁ, କିନ୍ତୁ ଗଜମୋତି ... ଗଜମୋତି କେଉଁଠୁ ମିଳିବ ? ଦରବାରର ପଣ୍ଡିତମାନେ ଶାସ୍ତ୍ରାନୁସାରେ ମତ ଦେଲେ ଯେ ଗଜମୋତି ସବୁ ଗଜର ମୁଣ୍ଡରେ ନଥାଏ । ତେବେ ଗଜମୋତି ନିମନ୍ତେ ଅନେକ ଗଜଙ୍କୁ ହତ୍ୟା କରିବାକୁ ପଡ଼ିବ । ଏପରିକି ଲକ୍ଷେ ଗଜଙ୍କ ମଧ୍ୟରେ ଗୋଟିଏ ଗଜ ମୁଣ୍ଡରେ ମଧ୍ୟ ଗଜମୋତି ନଥାଇପାରେ । ଏକ ନିର୍ଦ୍ଦିଷ୍ଟ ଗ୍ରହ ନକ୍ଷତ୍ର ଚଳନ ସମୟରେ ଯଦି ସଂପୃକ୍ତ ହାତୀ କାନରେ କାକରର ବିନ୍ଦୁ ପଡ଼େ ତାହା ଗଜମୋତିରେ ପରିଣତ ହୁଏ, ଯାହା ଏକ ବିରଳ ମହାଜାଗତିକ ଘଟଣା ଏବଂ ଗଜମୋତି ମଧ୍ୟ ବିରଳ ଓ ଦୁର୍ମୂଲ୍ୟ ପଦାର୍ଥ ଯାହା ସଂଗ୍ରହ କରିବା ଅସମ୍ଭବ । ଏପରିକି ପଚାଶ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ଖର୍ଚ୍ଚ କରି ଯଦି ଗଜମୋତି ସନ୍ଧାନ କରାଯାଏ, ତାହା ହେଲେ ଦୁର୍ମୂଲ୍ୟ ଗଜମୋତି ମିଳିବାରେ ସନ୍ଦେହ ଓ ଆଶଙ୍କା ରହିବ । ତା'ଛଡ଼ା ଗୋଟିଏ ଗଜମୋତି ମିଳିଗଲେ ଯେ ସେଥିରୁ ଚୂନ ତିଆରି ହୋଇଯିବ ତାହା ମଧ୍ୟ ସମ୍ଭବ ନୁହେଁ । ଚୂନ ନିମନ୍ତେ ଅନେକ ଗଜମୋତି ଦରକାର, ଯାହା ଏକରକମ ଅସମ୍ଭବ ବ୍ୟାପାର । ଗଜମୋତିର ଗୂଢ଼ ରହସ୍ୟ ବିଷୟରେ ଅବଗତ ହେବାପରେ ସେଠ ଜଣଙ୍କ ହତାଶ ହୋଇଗଲେ । ତାଙ୍କର ଧନର ଅଭିମାନ ଭାଙ୍ଗିଗଲା । ତାଙ୍କ ଆଖିରୁ ଧାର ଧାର ଲୁହ ଓ ଦେହରୁ ଝାଳ ବୋହିବାରେ ଲାଗିଲା । କଣ୍ଠ ତାଙ୍କର ବାଷ୍ପରୁଦ୍ଧ ହୋଇଗଲା, ସେ ପାଗଳଙ୍କ ପରି ଜଗନ୍ନାଥ ମହାପ୍ରଭୁ କ୍ଷମା କର ..., ଜଗନ୍ନାଥ ମହାପ୍ରଭୁ କ୍ଷମା କର ... ପ୍ରଳାପ କରି କରି ନିଜର ବସନ ଭୂଷଣକୁ ଖାତିର ନକରି ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନିକଟରେ ଦୌଡ଼ିଲେ । ସିଧା ଯାଇ ଗରୁଡ଼ ସ୍ତମ୍ଭକୁ କୁଣ୍ଢାଇ ମୁଣ୍ଡ ବାଡ଼େଇ ପିଲାଙ୍କ ଭଳି କାନ୍ଦିବାକୁ ଲାଗିଲେ ଓ ସାଷ୍ଟାଙ୍ଗ ପ୍ରଣିପାତ କରି ପ୍ରଭୁଙ୍କ ଆଗରେ ମୁଣ୍ଡ ବାଡ଼େଇ କ୍ଷମାଭିକ୍ଷା କଲେ ଓ କହିଲେ- 'ମହାପ୍ରଭୁ ଆପଣଙ୍କୁ ମୋର ସାମାନ୍ୟ ଖଣ୍ଡେ ପାନ ଦେବାର କ୍ଷମତା ନାହିଁ । ଭୋଗ କ'ଣ ଦେବି । ମୋତେ କ୍ଷମା କରି ଦିଅ ... ମୋର ଗର୍ବ ଅହଙ୍କାର ପାଇଁ ମୋତେ କ୍ଷମା କରିଦିଅ ପ୍ରଭୁ ।' ଛୋଟ ପିଲାଙ୍କ ପରି ସେଠ ଶ୍ରୀଜଗନ୍ନାଥଙ୍କ ନିକଟରେ କାନ୍ଦି କାନ୍ଦି ମୁଣ୍ଡ ପିଟିବାକୁ ଲାଗିଲେ । ହଠାତ୍ କାହାର ହାତର କୋମଳ ସ୍ପର୍ଶ ପାଇ ସେଠ ମୁଣ୍ଡ ଉଠାଇ ଦେଖିଲେ ଶ୍ରୀମନ୍ଦିରର ପୂଜାପଣ୍ଡା ସାମନ୍ତ ଓ ସେବକ ତୀର୍ଥପଣ୍ଡା ପାଖରେ ଠିଆ ହୋଇଛନ୍ତି । ଆଗରେ ରତ୍ନସିଂହାସନରେ ପ୍ରଭୁ ଶ୍ରୀଜଗନ୍ନାଥ, ମା' ସୁଭଦ୍ରା ଓ ପ୍ରଭୁ ବଳଭଦ୍ର ମୁରୁକି ମୁରୁକି ହସୁଛନ୍ତି, ସତେ ଯେପରି କହୁଛନ୍ତି- 'ଭକ୍ତ ଦୁଃଖ କର ନାହିଁ, ମୋର ଭକ୍ତର ଭକ୍ତି ଦରକାର ଗର୍ବ ଅଭିମାନର ଅର୍ଥ ନୁହେଁ । ଆସ ଭକ୍ତ ମୋର ଆଶୀର୍ବାଦ ଗ୍ରହଣ କର, ସବୁ ତ ମୋର, ତୁ ମତେ ଦେବୁ କ'ଣ ?' ସେଠ ପ୍ରକୃତିସ୍ଥ ହେଲେ, ଧନ ଗର୍ବରେ ନିଜ ମଧ୍ୟରେ ସୃଷ୍ଟି ହୋଇଥିବା ଗର୍ବ ଅହଙ୍କାର ପ୍ରଭୁଙ୍କ ଆଶୀର୍ବାଦରେ ଆଖି ପିଛୁଳାକେ ମିଳାଇଗଲା । ସେ ଅପରାଧୀ ଭଳି ହାତଯୋଡ଼ି ଲୋତକପୂର୍ଣ୍ଣ ନୟନରେ ଅନାଇ ରହିଲେ ପ୍ରଭୁଙ୍କର ପାନଖିଆ ହସ ହସ ନାଲି ଅଧରକୁ ।

ମହାପ୍ରଭୁ ଦେଖାଇ ଦେଲେ ଯେ ତାଙ୍କ ନିକଟରେ ଧନବାନ ଓ ଦରିଦ୍ର ମଧ୍ୟରେ ତାରତମ୍ୟ ନାହିଁ । ଧନବାନ ସେଠର ଅର୍ଜିତ ସମସ୍ତ ସମ୍ବଳ ମହାପ୍ରଭୁଙ୍କ ଖଣ୍ଡେ ପାନକୁ ନିଅଣ୍ଟ । ଆଉମଧ୍ୟ

ଜଣାଇ ଦେଲେ ଯେ ଅର୍ଥର ପ୍ରାଚୁର୍ଯ୍ୟ ଯୋଗୁଁ ଜାତ ଗର୍ବ ଓ ଅଭିମାନ ଭକ୍ତଠାରେ ଶୋଭାପାଏ ନାହିଁ । ସମର୍ପଣ ଭାବ ହିଁ ଶ୍ରେଷ୍ଠ ଯାଚଞ୍ଚା । ଏହାଥିଲା ପାନଖିଆ ରସିକ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଭକ୍ତର ଗର୍ବ ଚୂର୍ଣ୍ଣ କରିବାର ଗୋଟିଏ ବିରଳ ଦୃଷ୍ଟାନ୍ତ ।

ମହାପ୍ରଭୁ ଦେଖାଇ ଦେଲେ ଯେ ତାଙ୍କ ନିକଟରେ ଧନବାନ ଓ ଦରିଦ୍ର ମଧ୍ୟରେ ତାରତମ୍ୟ ନାହିଁ । ଧନବାନ ସେଠର ଅର୍ଜିତ ସମସ୍ତ ସମ୍ପଳ ମହାପ୍ରଭୁଙ୍କ ଖଣ୍ଡେ ପାନକୁ ନିଅଣ୍ଟ ।

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ପାନ ବା ବିଡ଼ିଆ ଖିଆ ଅଭ୍ୟାସ କାହିଁ କେତେ ଦିନର । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ବିଭିନ୍ନ ସେବା ପାଇଁ ନିୟୋଜିତ ନିଯୋଗମାନଙ୍କ ମଧ୍ୟରେ ମହାପ୍ରଭୁଙ୍କୁ ବିଡ଼ିଆପାନ ସେବା ହଡ଼ପ ନିଯୋଗ ଭାବରେ ପରିଚିତ । ହଡ଼ପ ନିଯୋଗରେ ୮୮ ଜଣ ସେବକ ନିଯୁକ୍ତ ହୋଇଥାନ୍ତି । ଗୋଟିଏ ପାଳି ବେଢ଼ରେ ୨୨ ଜଣ କରି ଚାରିଗୋଟି ପାଳି ବେଢ଼ରେ ୮୮ ଜଣ ହଡ଼ପ ନାୟକ ନିଯୁକ୍ତ ହୋଇଥାନ୍ତି । ହଡ଼ପ ନାୟକଙ୍କର ଦୈନନ୍ଦିନ ସେବା ମଧ୍ୟରେ ଦୈନିକ ଚନ୍ଦନଲାଗି ଓ ଗ୍ରୀଷ୍ମ ଦିନେ ଆଲଟ ଲାଗି ପରେ ବିଡ଼ିଆ ଅର୍ପଣ ସେବା ପ୍ରମୁଖ ସେବା ଭାବରେ ଗଣାଯାଏ । ନୀତି ଆରମ୍ଭ ହେବା ସଂଗେସଂଗେ ହଡ଼ପ ସେବକ ବା ହଡ଼ପ ସୁଆର ଲାଗି ପଡ଼ନ୍ତି, ମହାପ୍ରଭୁଙ୍କ ନିମନ୍ତେ ବିଡ଼ିଆପାନ ପ୍ରସ୍ତୁତ କରିବାରେ । ମହାପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା' ସୁଭଦ୍ରାଙ୍କ ପ୍ରତ୍ୟେକ ମଣୋହି ବା ଧୂପ ଭୋଗ ପରେ ବିଡ଼ିଆପାନ ଅର୍ପଣ ସେବା ବା ହଡ଼ପ ସେବାର ସ୍ୱତନ୍ତ୍ରତା ରହିଛି । ପ୍ରତ୍ୟେକ ବାଡ଼ରେ ଯଥା- ମହାପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା' ସୁଭଦ୍ରାଙ୍କ ସକାଳ ଧୂପରେ ଦୁଇ ଦୁଇଟି କରି ଛଅଗୋଟି ବିଡ଼ିଆ ଓ ରତ୍ନ ସିଂହାସନ ଉପରେ ଥିବା ପ୍ରଭୁ ମାଧବଙ୍କୁ ଗୋଟିଏ କରି, ସେହିପରି ଦ୍ୱିପହର ଧୂପରେ ୭ ଗୋଟି କରି ବିଡ଼ିଆ, ସନ୍ଧ୍ୟା ଧୂପରେ ୭ ଗୋଟି କରି ବିଡ଼ିଆ ଓ ବଡ଼ ସିଂହାର ବା ଶୃଙ୍ଗାର ବେଶ ଭୋଗ ପରେ ଛଅଗୋଟି କରି ବିଡ଼ିଆ ପାନ ଲାଗି କରାଯାଏ । ଶୟନ ସମୟରେ ରୂପା ପିଙ୍ଗଣରେ ୬୦ ଗୋଟି ପାନ ରତ୍ନ ସିଂହାସନ ଉପରେ ରଖାଯାଏ । ବଡ଼ସିଂହାର ବେଶ ପରେ ମହାପ୍ରଭୁଙ୍କ ପହଡ଼ ପୂର୍ବରୁ ଯେତେବେଳେ ଶୟନ ଦେବତା ଜୟ ବିଜୟ ଦ୍ୱାର ନିକଟରେ ଡମ୍ବରୁ ଉପରେ ବିଜେ କରନ୍ତି ସେତେବେଳେ ଆରତି ପୂର୍ବରୁ ଦୁଇ ଗୋଟି ବିଡ଼ିଆପାନ ଅର୍ପଣ କରାଯାଏ । ଦୈନିକ ଚନ୍ଦନଲାଗି ସମୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ୪ ଗୋଟି, ଶ୍ରୀବଳଭଦ୍ର ମହାପ୍ରଭୁଙ୍କୁ ୪ ଗୋଟି, ଓ ମା' ସୁଭଦ୍ରାଙ୍କୁ ୪ ଗୋଟି, ପ୍ରଭୁ ସୁଦର୍ଶନଙ୍କୁ ୧ ଗୋଟି, ମା' ଶ୍ରୀଦେବୀ ଓ ମା' ଭୂଦେବୀଙ୍କୁ ୧ ଗୋଟି କରି, ଏହିଭଳି ୧୬ ଗୋଟି ବିଡ଼ିଆପାନ ଅର୍ପଣ କରାଯାଏ । ଚନ୍ଦନଲାଗି ପରେ ଦକ୍ଷିଣ ଘରେ ଦୁଇ ଗୋଟି, ଶ୍ରୀମନ୍ଦିର ବେଢ଼ାସ୍ଥିତ ମା' ବିମଳାଙ୍କ ନିକଟରେ ଦୁଇଗୋଟି, ମା' ଲକ୍ଷ୍ମୀଙ୍କ ନିକଟରେ ଦୁଇଗୋଟି ବିଡ଼ିଆ ପାନ ଅର୍ପଣ କରାଯିବାର ପରମ୍ପରା ରହିଛି । ଏହାଛଡ଼ା ଗ୍ରୀଷ୍ମ କାଳରେ ଶ୍ରୀମନ୍ଦିରରେ ମହାପ୍ରଭୁମାନଙ୍କୁ ଶୀତଳ ହାୱା ପ୍ରଦାନ ପାଇଁ ଖଞ୍ଜା ଯାଇଥିବା ଆଲଟ ଲାଗି ସେବାବେଳେ ମହାପ୍ରଭୁ ବିନା ବସ୍ତ୍ରରେ ସମ୍ପୂର୍ଣ୍ଣ ଅନ୍ଧକାରରେ ବସିଥିବାବେଳେ ବିଡ଼ିଆଲାଗି ସେବା କରାଯାଏ । ଏହି ସମୟରେ ବିନା ଦୀପ ଆଲୋକରେ ହଡ଼ପ ସେବକ ଅନ୍ଧକାର ଭିତରେ ଠାକୁରଙ୍କୁ ୪ ଗୋଟି କରି ୧୬ ଗୋଟି ବିଡ଼ିଆ ଫୁରୁସତବିହୀନ ଭାବେ ଲାଗି କରନ୍ତି । ମହାପ୍ରଭୁଙ୍କ ସଂପୃକ୍ତ ନୀତିକୁ ହଡ଼ପ ସୁଆର ବା ହଡ଼ପ ନାୟକ ସମ୍ପାଦନ କରନ୍ତି । କେବଳ ବଲ୍ଲଭ ଭୋଗ ପରେ ଏହି ନୀତି ପାଳନ କରାଯାଏ ନାହିଁ । ଏହାଛଡ଼ା ମହାପ୍ରଭୁଙ୍କ ବିଭିନ୍ନ ଯାନିଯାତ୍ରା ସମୟରେ ବିଜେ ପ୍ରତିମାକୁ ମଧ୍ୟ ବିଡ଼ିଆପାନ ଲାଗି କରାଯାଏ । ବିଶେଷ କରି ଚନ୍ଦନଯାତ୍ରା ସମୟରେ ଚନ୍ଦନ ଚକଡ଼ା ତଥା ପୁଷ୍କରିଣିରେ ଚାପ ଉପରେ ଜଳକେଳି ବେଳେ ପ୍ରତ୍ୟେକ ମୁହୂର୍ତ୍ତରେ ବିଡ଼ିଆପାନ ଲାଗି ହେଉଥିବାରୁ ଏହି ସମୟରେ ହଡ଼ପ ନାୟକଙ୍କୁ ବିଡ଼ିଆ ଅର୍ପଣ କରିବାକୁ ଫୁରୁସତ୍ ମିଳେ ନାହିଁ । ଏହି ସମୟରେ ସେବକମାନେ ନୀତି ମୁତାବକ ଶ୍ରୀମନ୍ଦିର ଯୋଗାଉଥିବା ୬୦ ଗୋଟି ବିଡ଼ିଆ ଅର୍ପଣ କରିବା ସହ ସେତିକିରେ ପ୍ରଭୁଙ୍କ ଚାହିଦା ମେଣ୍ଟୁ ନଥିବାରୁ ନିଜ ତରଫରୁ ପ୍ରାୟ ୯୦ ଗୋଟି ଅଧିକ ବିଡ଼ିଆ ପାନ ଯୋଗାଇ ଥାଆନ୍ତି । ମହାପ୍ରଭୁଙ୍କ ରଥଯାତ୍ରାରେ ମଧ୍ୟ ନିର୍ଦ୍ଦିଷ୍ଟ ଭୋଗ ସମାପନ ପରେ ବିଡ଼ିଆ ଅର୍ପଣ ସେବା କରାଯାଏ ।

ଏହି ବିଡ଼ିଆପାନ ପ୍ରସ୍ତୁତି ମଧ୍ୟ ନିଆରା । ସୁଗନ୍ଧିତ ଅକ୍ଷତ ପାନରେ ସୁବାସିତ ଚନ୍ଦନର ଲେପ ଦେବାପରେ ଅଳେଇଚ ଓ ଗୁଆ ଦେଇ ବିଡ଼ିଆ ପ୍ରସ୍ତୁତ କରାଯାଏ ଏବଂ ଏହାକୁ ଚାରି ଚଉତ କରି ଭାଙ୍ଗି ଗୋଟିଏ ଲବଙ୍ଗ ତା' ଉପରେ ଫୋଡ଼ି ଦିଆଯାଏ । ଏହା ପ୍ରସ୍ତୁତ କରିବା ମଧ୍ୟ ଏକ କଳା । ଏହାକୁ ଶ୍ରୀମନ୍ଦିର ପ୍ରଶାସନଦ୍ୱାରା ନିଯୁକ୍ତ ହଡ଼ପ ସେବକ ପ୍ରସ୍ତୁତ କରିଥାନ୍ତି । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କୁ ବିଡ଼ିଆ ଅର୍ପଣ ହେଲାପରେ ଶ୍ରୀକ୍ଷେତ୍ର ତଥା ଓଡ଼ିଶାର ବିଭିନ୍ନ ଦେବାଦେବୀ ପୀଠରେ ଏହି ଲାଗି ବିଡ଼ିଆକୁ ସମର୍ପଣ କରିବାର ପ୍ରଥା ରହିଛି । ଶ୍ରୀମନ୍ଦିରରେ ଅନ୍ୟସବୁ ସେବାପରି ବିଡ଼ିଆ ପାନ ସେବା ବା ହଡ଼ପ ସେବା ଅତ୍ୟନ୍ତ ପ୍ରାଚୀନ । ଏହି ସ୍ୱତନ୍ତ୍ର ସେବା ଶ୍ରୀମନ୍ଦିରରେ ଏବେବି ପ୍ରଚଳିତ ।

ଆଡ଼ଭୋକେଟ
ଦାଣ୍ଡିମାଳସାହି, ପୁରୀ






# ମହାନ୍ ସଂସ୍କୃତିର ଭିନ୍ନ ଭାବଧାରାରେ ଶ୍ରୀଜଗନ୍ନାଥ

ଦିଲ୍ଲୀପ କୁମାର ସାମନ୍ତରାୟ

**ଭା**ରତୀୟ ସଂସ୍କୃତି ତଥା ପରମ୍ପରା ଆଦର୍ଶର ଊର୍ଦ୍ଧ୍ୱରେ ରହିଛି ଶ୍ରୀଜଗନ୍ନାଥ ସଂସ୍କୃତି ଯେଉଁ ସଂସ୍କୃତି ସହ ଏହି ବିଶାଳ ସମାଜ ଅଙ୍ଗାଅଙ୍ଗୀ ଭାବରେ ସଂଶ୍ଳିଷ୍ଟ, ସେହି ମହାନ୍ ସଂସ୍କୃତି ସାରା ବିଶ୍ୱରେ ବିରଳ । ଯୁଗ ଯୁଗର ଅବସାନ ହେବା ସଂଗେସଂଗେ ଶ୍ରୀଜଗନ୍ନାଥ ଯୁଗସ୍ରଷ୍ଟା ତଥା ଯୁଗ ପ୍ରବର୍ତ୍ତକ ଭାବରେ ଖ୍ୟାତ । ସେ, ବର୍ତ୍ତମାନ ଅତୀତ ଓ ଭବିଷ୍ୟତ ତିନି କାଳରେ ସମାନ । ତାଙ୍କରି ଇଙ୍ଗିତରେ ସୂର୍ଯ୍ୟ, ଚନ୍ଦ୍ର, ତାରକା ଓ ଅଗ୍ନି ପ୍ରଭୃତି ଜଗତକୁ ଆଲୋକ ପ୍ରଦାନ କରନ୍ତି ଏବଂ ସମଗ୍ର ବିଶ୍ୱ ତାଙ୍କ ଆଲୋକରେ ପ୍ରତିଫଳିତ ହୁଏ । ଯକ୍ଷ, ଗନ୍ଧର୍ବ, ଗ୍ରହ, ନକ୍ଷତ୍ର, ବେଦମନ୍ତ୍ର ତାହାଙ୍କଠାରୁ ଉତ୍ପତ୍ତି । ସେ ସୃଷ୍ଟିର ନିୟାମକ ତଥା ପରିଚାଳକ ଅଟନ୍ତି । ସେ ବ୍ୟକ୍ତ, ପୁନଃ ଅବ୍ୟକ୍ତ, ନିରାକାର ପରଂବ୍ରହ୍ମ, ମାତ୍ର ଭକ୍ତ ନିକଟରେ ତାଙ୍କର ସାକାର ରୂପ ପରିପ୍ରକାଶ ହୁଏ । ସେ ପ୍ରତ୍ୟେକ ଯୁଗରେ ଅଛନ୍ତି କେବଳ ଭିନ୍ନ ଭିନ୍ନ ରୂପନେଇ । ଯଥା- ସତ୍ୟ ଯୁଗରେ ଶ୍ରୀନୃସିଂହନାଥ, ତ୍ରେତୟାରେ ଶ୍ରୀରଘୁନାଥ, ଦ୍ୱାପରରେ ଶ୍ରୀଗୋପୀନାଥ ଏବଂ କଳିରେ ଶ୍ରୀଜଗନ୍ନାଥ । ଆଜି ସେହି ଦାରୁବ୍ରହ୍ମ ମହାପ୍ରଭୁ ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ରର ପବିତ୍ର ନୀଳାଚଳ ଧାମରେ ବିରାଜିତ । ସେଥିପାଇଁ ସେହି ମହାନ୍ ସ୍ଥାନ ହୋଇଛି ପବିତ୍ର ତଥା ସର୍ବମୋକ୍ଷର ନିତ୍ୟସ୍ଥଳୀ ।

ମହାପ୍ରଭୁଙ୍କର ସେହି କମନୀୟ ରୂପଦର୍ଶନ କରି ଭକ୍ତମାନେ ବିଭିନ୍ନ ପରିସ୍ଥିତିରେ ଥାଇ ମଧ୍ୟ ଭାବବିହ୍ୱଳିତ ହୋଇ ଆତ୍ମହରା ହୋଇଯାଇଛନ୍ତି । ଯିଏ ଯେଉଁ ଭାବର ଭକ୍ତ ହୋଇଥିଲେ ହେଁ, ସର୍ବେ ନିଜର ଭାବନା ଚରିତାର୍ଥ କରିବା ସଂଗେସଂଗେ ନିଜର ଇଷ୍ଟଦେବଙ୍କୁ ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ଦର୍ଶନ କରିଥାନ୍ତି । ସେଥିପାଇଁ ଗୀତାରେ ଉଲ୍ଲେଖ ଅଛି-

'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହମ୍ ।
ମମ ବର୍ତ୍ମାନୁ ବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ ।।'

ଭଗବାନଙ୍କ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି, ମୋତେ ଯେ, ଯେପରି ଭାବରେ ସକାମ ଅଥବା ନିଷ୍କାମ, ସଗୁଣ ବା ନିର୍ଗୁଣ, ସାକାର ବା ନିରାକାର, ଭାବଗ୍ରାହୀ ବା ଭାବାତୀତ ଭାବରେ ଭଜନ କରନ୍ତି, ମୁଁ ସେହି ଭାବରେ ସେମାନଙ୍କୁ ପ୍ରାର୍ଥିବ ଫଳ ପ୍ରଦାନ କରେ ଏବଂ ବିଭିନ୍ନ ଦେବାଦେବୀଙ୍କ ଉପାସକମାନଙ୍କୁ ମଧ୍ୟ ମୁଁ ଫଳ ପ୍ରାପ୍ତିରୁ ବଞ୍ଚିତ କରେ ନାହିଁ । କାରଣ ମନୁଷ୍ୟ ନାନା ଭାବରେ ମୋର ମାର୍ଗକୁ ହିଁ ଅନୁସରଣ କରିଥାନ୍ତି । ଆଉ ମଧ୍ୟ ସମସ୍ତ ଦେବାଦେବୀ ମୋର କଳାନେଇ ପ୍ରକାଶିତ ହୋଇଛନ୍ତି । ମୋ' ବ୍ୟତୀତ ଦ୍ୱିତୀୟ ଆଉ କିଛି ନାହିଁ । ମୁଁ ହିଁ ପୁରୁଷୋତ୍ତମ । ତେଣୁ ମନୁଷ୍ୟ ଯେକୌଣସି ମାର୍ଗ ଅନୁସରଣ କଲେ ମଧ୍ୟ ପ୍ରତ୍ୟେକ ମୋତେ ହିଁ ପ୍ରାପ୍ତ ହୋଇଥା'ନ୍ତି । ଭକ୍ତ ଯେଉଁ ପ୍ରକାର ଉପାସକ ହେଲେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ସର୍ବେ ନିଜର ଇଷ୍ଟଦେବଙ୍କୁ ଦର୍ଶନ କରିଥାନ୍ତି ।

କଥିତ ଅଛି ଯେ, ସନ୍ଥ ତୁଳସୀ ଦାସ ଥରେ ଏହି ପବିତ୍ର ଶ୍ରୀଜଗନ୍ନାଥ ଧାମରେ ପହଞ୍ଚି ପବିତ୍ର ଶ୍ରୀମନ୍ଦର ଭିତରେ ଇଷ୍ଟଦେବ ଶ୍ରୀରାମଚନ୍ଦ୍ରଙ୍କ ଦର୍ଶନ କରିନପାରି ଅଭିମାନରେ ଫେରି ଯାଉଥିଲେ, ମାତ୍ର ପ୍ରଭୁଙ୍କର ଇଙ୍ଗିତରେ ରତ୍ନସିଂହାସନରେ ତାଙ୍କୁ ଦେଖିବାକୁ ପାଇଲେ, ବଡ଼ ସିଂହାର ବେଶରେ ତାଙ୍କର ସୁନ୍ଦର କମନୀୟ କାନ୍ତି, ଶାନ୍ତ ସୁନ୍ଦର ତନୁ ପ୍ରଭୁ ଶ୍ରୀରାମଙ୍କ ରାଜବେଶରେ ବିରାଜମାନ । ପାର୍ଶ୍ୱରେ ମାତା ଜାନକୀ ସୀତା, ଅନୁଜ ଲକ୍ଷ୍ମଣ ଏବଂ ଚରଣ ପଙ୍କଜରେ ସେବାରତ ପରମଭକ୍ତ ହନୁମାନ ରୂପରେ ସୁଦର୍ଶନ ମହାରାଜ । ସେହି ପବିତ୍ର ସ୍ମରଣୀୟ ଦିବସଟି ଥିଲା ମାଘମାସ ଶୁକ୍ଳପକ୍ଷ ଗୁରୁବାର ଏକାଦଶୀ । ତୁଳସୀଦାସଙ୍କ ଭାଷାରେ-

'ଯୋହି ରାମ ସୋହି ଜଗଦୀଶା
ଦୀନ ହୀନେ ଅନନ୍ତ ପର୍ବତ ଶେଷା
ଶେଷ ଭୟେ ଲଛମନ ଅନୁଚାରୀ
ଭଦ୍ରାସେ ସିୟ ଜନକ କୁମାରୀ ।
ବନ୍ଦଇ ଖଦସ ବ୍ରହ୍ମ ଅବିନାଶୀ
ଜୟ ହନୁମାନ ରାମପଦ ଦାସୀ ।'





ସେହିପରି ମହାପ୍ରଭୁଙ୍କୁ ଶ୍ରୀଚୈତନ୍ୟ ନବଦ୍ୱୀପରୁ ପୁରୁଷୋତ୍ତମ କ୍ଷେତ୍ରକୁ ଆସି ଶ୍ରୀମନ୍ଦିର ରତ୍ନସିଂହାସନରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲାପରେ ତାଙ୍କର ମନେହେଲା ସତେ ଯେପରି, ଯମୁନା ତଟର ବୃନ୍ଦାବନ ବିହାରୀ, ନନ୍ଦନନ୍ଦନ ଶ୍ରୀକୃଷ୍ଣ ବିରାଜମାନ । ତାଙ୍କ ଚକ୍ଷୁରୁ ସ୍ୱତଃ ଝରି ପଡ଼ିଲା ଭକ୍ତି ରୂପକ ଆନନ୍ଦାଶ୍ରୁ, ସେ ତନ୍ମୟ ହୋଇ ସାଷ୍ଟାଙ୍ଗ ପ୍ରଣାମ କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର **ଏହି ଅପୂର୍ବ ରୂପ ଦର୍ଶନରେ ସେ ଏତେଦୂର ବିଭୋର ହୋଇଯାଇଥିଲେ ଯେ, ଶ୍ରୀଚୈତନ୍ୟ ମହାପ୍ରଭୁ ଜୀବନର ଶେଷ ପର୍ଯ୍ୟନ୍ତ ଶ୍ରୀକ୍ଷେତ୍ର ଛାଡ଼ି ଆଉ ନବଦ୍ୱୀପ ଫେରି ନଥିଲେ ।** ମହାପ୍ରଭୁ ବିଭିନ୍ନ ଭାବରେ ବିଭିନ୍ନ ଉପାସକମାନଙ୍କ ନିକଟରେ ତାଙ୍କର ସେହି ରୂପ ହିଁ ପ୍ରକାଶ କରିଛନ୍ତି । ତେଣୁ ସେ ବୈଦିକମାନଙ୍କ ମତରେ, ଭୂଃ, ଭୁର୍ବଃ, ସ୍ୱଃ । ବୌଦ୍ଧମାନଙ୍କ ମତରେ ବୁଦ୍ଧ, ଧର୍ମ, ସଂଘ, ଶୈବମାନଙ୍କ ମତରେ ଶିବ, ପାର୍ବତୀ ଓ ଗଣେଶ । ଗାଣପତ୍ୟଙ୍କ ମତରେ ଗଣେଶ ଶାକ୍ତମାନଙ୍କ ମତରେ ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ, ତାନ୍ତ୍ରିକମାନଙ୍କ ମତରେ ଭୈରବ, ମହାକାଳ ଓ ଉତ୍ତର ସାଧକ ଏବଂ ଜ୍ଞାନୀମାନଙ୍କ ମତରେ ସତ୍‌ଚିତ୍ ଓ ଆନନ୍ଦ ସ୍ୱରୂପ । ତେଣୁ ଶ୍ରୀଜଗନ୍ନାଥ ସାରାବିଶ୍ୱର ଦେବତା ଏବଂ ସମସ୍ତଙ୍କ ହୃଦୟ ଚିନ୍ତାମଣି । ଶ୍ରୀଜଗନ୍ନାଥ ସର୍ବଧର୍ମ ସମନ୍ୱୟର ପ୍ରତୀକ । ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସମସ୍ତେ ତାଙ୍କ ନିକଟରେ ସମାନ । ସେହି ଆଦର୍ଶ ଭାବନା ନେଇ ଆଚାଣ୍ଡଳ ବ୍ରାହ୍ମଣ ଆଜି ମଧ୍ୟ କୈବଲ୍ୟ ରୂପୀ ଦିବ୍ୟ ମହାପ୍ରସାଦ ଏକତ୍ର ଭୋଜନ କରିପାରିବେ । ଏହି ମହତ୍ ଆଦର୍ଶ ପବିତ୍ର ଶ୍ରୀକ୍ଷେତ୍ରରେ ଅଦ୍ୟାପି ପ୍ରଚଳିତ । ସେଥିପାଇଁ ବୌଦ୍ଧ ପୁରାଣ କହେ -

ଅଧରାମୃତ ନାମକ ଏ ଦିବ୍ୟ ପଦାର୍ଥ<br>
ନିରିମାଲ୍ୟ କଇବଲ୍ୟ ସର୍ବ ଅଧରାମୃତ ।<br>
ନିଜେ ନିଜ ଧରାମୃତ ନିଜର ପାଳିତ<br>
କେ କା ଉଚ୍ଛିଷ୍ଟ ସେବଇ ଏ ଉତ୍ତମ ମତ ।<br>
ଏହି ସର୍ବ, ସମଜ୍ଞାନେ ଯେ ପାଳନ ହୋଇ ॥<br>
ଏ ଅଟେ ବଉଦ୍ଧ ଧର୍ମ, ଭିନ୍ନ ନୁହେଁ କେହି ।

ପଣ୍ଡିତ ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ :

ଜଗତେ ସଳିଳ ଭାରତ-କମଳ ।<br>
ତା' ମଧ୍ୟେ କେଶର ପୁଣ୍ୟ-ନୀଳାଚଳ ॥<br>
ନାହିଁ ଜାତି ଭେଦ ନାହିଁ ଧର୍ମ-ଭେଦ ।<br>
ସାମ୍ୟ ମୈତ୍ରୀ ବାଣୀ ଗାଏ ଯାର ବେଦ ॥

ତେଣୁ ଏଇଥିରୁ ଅନୁମେୟ ହୁଏ, କି ମହାନ୍ ଆଦର୍ଶ ରହିଛି ଏହି ପବିତ୍ର ଶ୍ରୀଜଗନ୍ନାଥ ସଂସ୍କୃତି ମଧ୍ୟରେ । ଯାହା ସାମ୍ୟ ମୈତ୍ରୀ ଏବଂ ଭ୍ରାତୃତ୍ୱଭାବର ଆଦର୍ଶ ପ୍ରତିଫଳିତ । ଯେଉଁ ମହାପ୍ରଭୁ ସକଳ ତୀର୍ଥ ମଧ୍ୟରେ ପୁରୁଷୋତ୍ତମ, କ୍ଷେତ୍ର ତୀର୍ଥରାଜ ମଧ୍ୟରେ ରାଜା ଏବଂ ସକଳ ଦେବ ମଧ୍ୟରେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ଦେବରାଜ ଅଟନ୍ତି ।

ମହାନ୍ ସଂସ୍କୃତି ପରମ୍ପରାକୁ ନେଇ ମହାପ୍ରଭୁଙ୍କର ବିଭିନ୍ନ ଯାତ୍ରା ଏବଂ ପର୍ବଗୁଡ଼ିକର ସୃଷ୍ଟି । ଏହି ଯାତ୍ରା ଦ୍ୱାଦଶଯାତ୍ରା ଭାବରେ ଖ୍ୟାତ ଅଟେ । ସେଥିପାଇଁ କୁହାଯାଇଛି -

୧) ଦେବସ୍ନାନ, ୨) ରଥଯାତ୍ରା, ୩) ହରିଶୟନ, ୪) ଦକ୍ଷିଣାୟନ, ୫) ପାର୍ଶ୍ୱପରିବର୍ତ୍ତନ, ୬) ଉତ୍ଥାପନ, ୭) ପାର୍ବଣ ଷଷ୍ଠୀ, ୮) ପୌଷାଭିଷେକ, ୯) ମକରସଂକ୍ରାନ୍ତି, ୧୦) ଦୋଳଯାତ୍ରା, ୧୧) ଦମନକ ଚତୁର୍ଦ୍ଦଶୀ, ୧୨) ଅକ୍ଷୟତୃତୀୟା । ଏଇ ଦ୍ୱାଦଶ ଯାତ୍ରା ମଧ୍ୟରେ ରଥଯାତ୍ରା ବହୁ ପ୍ରାଚୀନ ଏବଂ ପୃଥିବୀ ପ୍ରସିଦ୍ଧଯାତ୍ରା । ପାରମ୍ପରିକ ଏବଂ ତାତ୍ତ୍ୱିକ ଦୃଷ୍ଟିରୁ ଏହା ବିଭିନ୍ନ ନାମରେ ନାମିତ । ଯଥା- ଏହାକୁ ଘୋଷଯାତ୍ରା, ଗୁଣ୍ଡିଚାଯାତ୍ରା, ନବଦିନ ଯାତ୍ରା, ମହାବେଦୀ ଯାତ୍ରା, ଦଶାବତାର ଯାତ୍ରା, ପତିତପାବନ ଯାତ୍ରା, ଅନ୍ତର୍ବେଦୀ ଯାତ୍ରା ଓ ଆଡ଼ପଯାତ୍ରା ବୋଲି କୁହାଯାଏ । ଏହି ଯାତ୍ରା ପବିତ୍ର ଆଷାଢ଼ମାସ ଶୁକ୍ଳପକ୍ଷ ଦ୍ୱିତୀୟ ତିଥିରେ ପୁଷ୍ୟା ନକ୍ଷତ୍ରରେ ଅନୁଷ୍ଠିତ ହୋଇଥାଏ । ଏହି ତିଥି ପବିତ୍ର ରଥଯାତ୍ରା ପାଇଁ ପ୍ରକୃଷ୍ଟ ସମୟ । ତେଣୁ କୁହାଯାଇଛି -

ଆଷାଢ଼ ଶ୍ୟାମଳେ ପକ୍ଷେ ଦ୍ୱିତୀୟା ପୂଷ୍ୟା ସଂଯୁତେ ।<br>
ଚରାଚର ହିତାର୍ଥାୟ ଘୋଷଯାତ୍ରା ବିଧିୟତେ ॥

ପବିତ୍ର ରଥଯାତ୍ରା ପାଇଁ ଶ୍ରୀଜୀଉଙ୍କ ଉଦ୍ଦେଶ୍ୟରେ ତିନୋଟି ସୁସଜ୍ଜିତ ରଥ ନିର୍ମିତ ହୋଇଥାଏ ।

**ରଥତ୍ରୟର ବର୍ଣ୍ଣନା**

ଶ୍ରୀବଳଭଦ୍ର ଦେବଙ୍କ ରଥର ନାମ ତାଳଧ୍ୱଜ, ଏହାର ଉଚ୍ଚତା ୩୨ ହାତ ୧୦ ଆଙ୍ଗୁଳି । ଏହା ୧୪ ଚକ ବିଶିଷ୍ଟ । ଉକ୍ତ ରଥର ରକ୍ଷକ ସ୍ୱୟଂ ବାସୁଦେବ । ରଥର ଆଭରଣ ରକ୍ତନୀଳ । ରଥର ଶୀରରେ ଅନନ୍ତ ନାଗ ବିଦ୍ୟମାନ । ରଥର ପାର୍ଶ୍ୱ ଦେବତାମାନେ ହେଲେ, ପ୍ରଣମ୍ଭାରୀ, ଗଦାନ୍ତକାରୀ, ହରିହର, ତୈମୁକ, ବାସୁଦେବ, ନାତାମ୍ବର, ଅଘୋର, ତ୍ରିପୁରାରୀ ଶିବ, ରଥର ସାରଥୀ ମାତଳୀ । ଅଶ୍ୱମାନେ ହେଲେ ତୀବ୍ର, ଘୋର, ଦୀର୍ଘ ଓ ସ୍ୱର୍ଣ୍ଣନାଗ । ବାସୁକୀ ଏହାର ରଜ୍ଜୁ ରୂପରେ ବିରାଜିତ । ଋଷି ପଟାରେ ଅଙ୍ଗିରା, ପୌଲସ୍ତ୍ୟ, ପୁଲହ, ଅଗସ୍ତି, କୃଷ୍ଣ ମୁଜଗଲ, ଆତ୍ରେୟ ଓ କାଶ୍ୟପାଦି ଅଷ୍ଟଋଷି ବିରାଜମାନ । ରଥର ଅଧୀଶ୍ୱର ସ୍ୱୟଂ ଶ୍ରୀ ଶ୍ରୀବଳଭଦ୍ର ଶ୍ରୀବଡ଼ଠାକୁର ।





ଶ୍ରୀସୁଭଦ୍ରାଙ୍କ ରଥ ଦେବଦଳନ ବା ଦର୍ପଦଳନ ନାମରେ ପରିଚିତ । ଏହାର ଉଚ୍ଚତା ୩୧ ହାତ ଏବଂ ଏହା ୧୨ ଚକ ବିଶିଷ୍ଟ । ଉକ୍ତ ରଥର ରକ୍ଷକ ଜୟଦୁର୍ଗା । ଧ୍ୱଜାରେ ତ୍ରିପୁରାସୁନ୍ଦରୀ ବିରାଜମାନ । ରଥର ଅଭରଣ କୃଷ୍ଣ ଲୋହିତ । ଏହାର ପାର୍ଶ୍ୱଦେବତାମାନେ ହେଲେ ବିମଳା, ଚାମୁଣ୍ଡା, ଭଦ୍ରକାଳୀ, ହରଚଣ୍ଡୀ, ମଙ୍ଗଳା, ବାରାହୀ, କାତ୍ୟାୟିନୀ, ଜୟଦୁର୍ଗା ଓ କାଳୀ । ସ୍ୱୟଂ ଅର୍ଜୁନ ଉକ୍ତ ରଥର ସାରଥୀ । ରଥର ରକ୍ଷକ ଉଗ୍ରଚଣ୍ଡୀ । ଅଶ୍ୱମାନେ ହେଲେ ରୋଚିକା, ମୋଚିକା, ଜିତା ଓ ଅପରାଜିତା । ସ୍ୱର୍ଣ୍ଣଚୂଡ଼ ନାମକ ନାଗ ଉକ୍ତ ରଥର ରଜ୍ଜୁ ଅଟନ୍ତି । ଋଷି ପଟାରେ ଧ୍ରୁବ, ଉଲୁକ ଆଦି ଷଷ୍ଠ ଋଷି ବିରାଜମାନ । ନେତର ନାମ ନଦାମ୍ୱିକା । ଏହି ଦେବଦଳନ ରଥର ଅଧିଶ୍ୱରୀ ସ୍ୱୟଂ ମା' ସୁଭଦ୍ରା ଦେବୀ ।

ଶ୍ରୀଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ । ଏହାର ଉଚ୍ଚତା ୩୩ ହାତ ୫ ଆଙ୍ଗୁଳି ଏବଂ ଏହା ୧୬ ଚକ ବିଶିଷ୍ଟ । ଏହାର ରକ୍ଷକ ସ୍ୱୟଂ ଗରୁଡ଼ । ଧ୍ୱଜାରେ ବୀର ହନୁମାନ ବିରାଜିତ । ରଥର ଅଭରଣ ରକ୍ତପୀତ । ରଥର ଶକ୍ତି, ଯୋଗମାୟା ବିମଳା । ରଥର ଚତୁଃପାର୍ଶ୍ୱରେ ହନୁମାନ, ରାମ, ଲକ୍ଷ୍ମଣ, ନାରାୟଣ, କୃଷ୍ଣ, ଗୋବର୍ଦ୍ଧନ ଧାରଣ, ଚିନ୍ତାମଣି, ରାଘବ ଓ ନୃସିଂହ ଆଦି ନବଦେବତା ବିଦ୍ୟମାନ । ଅଶ୍ୱମାନେ ହେଲେ ଶଙ୍ଖ, ବଳାହକ, ଶ୍ୱେତ ଓ ହରିତାଶ୍ୱ । ସାରଥୀଙ୍କ ନାମ ଦାରୁକ । ଶଙ୍ଖଚୂଡ଼ ନାମ୍ନୀ ନାଗୁଣୀ ଉକ୍ତ ରଥର ରଜ୍ଜୁ । ଋଷିପଟାରେ ନାରଦ, ଦେବଳ, ବ୍ୟାସ, ଶୁକ, ପରାଶର, ବଶିଷ୍ଠ, ବିଶ୍ୱାମିତ୍ର, ରୁଦ୍ର ଆଦି ଅଷ୍ଟଋଷି ବିଦ୍ୟମାନ । ନେତର ନାମ ତ୍ରୈଲୋକ୍ୟ ମୋହିନୀ । ଉକ୍ତ ରଥର ଅଧିଶ୍ୱର ସ୍ୱୟଂ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ମହାପ୍ରଭୁ ।

ଏହି ପବିତ୍ର ଯାତ୍ରାର ତିନୋଟି ଅଙ୍ଗ :

ପ୍ରଥମ ଅଙ୍ଗ - ପୂର୍ବଯାତ୍ରା, ଅର୍ଥାତ୍ ସିଂହଦ୍ୱାରଠାରୁ ଗୁଣ୍ଡିଚାଘର ଅଭିମୁଖେ ଯାତ୍ରା, ଦ୍ୱିତୀୟ ଅଙ୍ଗ ଗୁଣ୍ଡିଚା ମଣ୍ଡପରେ ଅବସ୍ଥାନ ବା ଆଡ଼ପ, ତୃତୀୟ ଅଙ୍ଗ- ବାହୁଡ଼ା ଯାତ୍ରା । ଏହି ଯାତ୍ରାରେ ଶ୍ରୀମନ୍ଦିରର ରତ୍ନସିଂହାସନ ତ୍ୟାଗ କରି ଶ୍ରୀଜଗନ୍ନାଥ ମହାପ୍ରଭୁ ନନ୍ଦିଘୋଷ ରଥରେ ଶ୍ରୀବଳଭଦ୍ର ତାଳଧ୍ୱଜ ରଥରେ ଓ ଦେବୀ ସୁଭଦ୍ରା, ସୁଦର୍ଶନ ଦେବଦଳନ ରଥରେ ଉପବେଶନ କରି ଗୁଣ୍ଡିଚା ଗୃହ ଅଭିମୁଖେ ଯାତ୍ରା କରି ପୁନରାୟ ବାହୁଡ଼ା ଦଶମୀ ଦିନ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଏହି ପବିତ୍ର ଶ୍ରୀଗୁଣ୍ଡିଚା ଯାତ୍ରା ସମୟରେ ରଥାରୂଢ଼ ଶ୍ରୀଜୀଉଙ୍କୁ ଦର୍ଶନ କଲେ ବୈକୁଣ୍ଠ ପ୍ରାପ୍ତି ହୋଇଥାଏ ବୋଲି ବିଶ୍ୱାସ । ତେଣୁ ବ୍ରହ୍ମପୁରାଣ କହେ-

ଗୁଣ୍ଡିଚା ମଣ୍ଡପଂ ଯାନ୍ତଂ ଯେ ପଶ୍ୟନ୍ତି ରଥେ ସ୍ଥିତମ୍ ।
କୃଷ୍ଣଂ ବଳଂ ସୁଭଦ୍ରାଂ ଚ ଯେ ଯାନ୍ତି ଭବନଂ ହରେଃ ।।(ବ୍ରହ୍ମପୁରାଣ)

ଆଉ ମଧ ଭାଗବତରେ ବର୍ଣ୍ଣିତ-

'ରଥସ୍ଥଞ୍ଚ ଜଗନ୍ନାଥଂ ପ୍ରୟାନ୍ତଂ ଗୁଣ୍ଡିଚା ଗୃହମ୍ ।
ଯେ ପଶ୍ୟନ୍ତି ନରଶ୍ରେଷ୍ଠା ସ୍ତେ ଧନ୍ୟା ଭୁବନତ୍ରୟେ ।।'

ରଥଯାତ୍ରା ଅବସରରେ ତିନି ଠାକୁରଙ୍କ ଗୁଣ୍ଡିଚା ଗୃହକୁ ଯାତ୍ରା ସମୟରେ ଦର୍ଶନ କଲେ ଅଶେଷ ପୁଣ୍ୟ ଏବଂ ଅନ୍ତରରେ ଶାନ୍ତି ମିଳିଥାଏ ।

ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ପବିତ୍ର ବଡ଼ଦାଣ୍ଡରେ ଦର୍ଶନ କରି ଭକ୍ତଗଣ ନିଜକୁ କୃତ୍ୟକୃତ୍ୟ ହୋଇଛନ୍ତି । ଭକ୍ତ ସାଲବେଗ ଏହିଭଳି ଜଣେ ଅନନ୍ୟ ଭକ୍ତ ଥିଲେ, ସେ ସୁନ୍ଦର ଭାବରେ ଭକ୍ତିର ସହ ଗାଇ ଉଠିଥିଲେ-

'ଆଗେ ଚାଲେ ବଳଭଦ୍ର ମଧ୍ୟେ ସୁନାମୁହିଁ
ପଛରେ ଚାଲେ କାଳିଆ ଗହଳ ଲଗାଇ,
ଜଗବନ୍ଧୁ ହେ ଗୋସାଇଁ ।'

କେତେ ସୁନ୍ଦର ସଂସ୍କୃତି, ଭଗିନୀର ସୁରକ୍ଷା ପାଇଁ ବଡ଼ଭାଇ ବଳଭଦ୍ର, ଠିକ୍ ମଝିରେ ଭଉଣୀ ଏବଂ ପଛରେ ସାନଭାଇ ଶ୍ରୀଜଗନ୍ନାଥ ରଥାରୂଢ଼ ହୋଇ ଯାତ୍ରା କରିଥାନ୍ତି । ଆଜି ଏହି ଚେତନା ଆମ ସମାଜରେ ପ୍ରତ୍ୟେକ ପରିବାରରେ ଏଭଳି ଭାବନା ସୃଷ୍ଟି ହେବା ଉଚିତ୍ । ଯେଉଁ ପବିତ୍ର ବଡ଼ଦାଣ୍ଡରେ ପ୍ରଭୁ ଦାରୁବ୍ରହ୍ମ ସ୍ୱୟଂ ବିରାଜିତ ସେହି ସ୍ଥାନର ଧୂଳି ଏତେ ପବିତ୍ର, ଯାହାକୁ ଭକ୍ତ ମସ୍ତକରେ ବୋଳି ନିଜକୁ ଖୁବ୍ ଭାଗ୍ୟବାନ ତଥା ଧନ୍ୟ ମନେ କରେ, ତେଣୁ ଯଥାର୍ଥରେ କୁହାଯାଇଛି,

'ଏ ବଡ଼ଦାଣ୍ଡର ଧୂଳି
ଧନ୍ୟ ହେଲେ ଅଙ୍ଗେ ବୋଳି
ଶଙ୍କର ଶ୍ରୀଚୈତନ୍ୟ ଆଦି,
କେତେ, କେତେ ମହାଯତି ।'

ଏହି ପବିତ୍ର ବଡ଼ଦାଣ୍ଡରେ କେତେ ଭକ୍ତ ଆସି ରଥାରୂଢ଼ ମହାପ୍ରଭୁଙ୍କ ଦର୍ଶନ ଲାଭ କରି ନିଜକୁ ଧନ୍ୟ ମନେ କରିଛନ୍ତି । ତାଙ୍କ ନିକଟରେ କୌଣସି ଭେଦଭାବ ନାହିଁ, ସମସ୍ତେ ସମାନ । ଧନୀ, ନିର୍ଦ୍ଧନ, ଉଚ୍ଚ ନୀଚ ବିଭିନ୍ନ ସମ୍ପ୍ରଦାୟର ବ୍ୟକ୍ତିମାନଙ୍କର ଏକତ୍ରିକରଣ ଏହି ପବିତ୍ର ରଥଯାତ୍ରା ଅବସରରେ ହୋଇଥାଏ । ଧନ୍ୟ ମହାପ୍ରଭୁ, ଧନ୍ୟ ତୁମର ଅପୂର୍ବ ଲୀଳା । ତେଣୁ ଶ୍ୱେତାଶ୍ୱେତୋପନିଷଦ କହେ -

ଅପାଣି ପାଦୋ ଜବୋନଗ୍ରହିତା
ପଶ୍ୟତ ଚକ୍ଷୁଃ ସଶୃଣୋତ୍ୟ କର୍ଣ୍ଣଃ
ସ ବେତ୍ତି ବେଦ୍ୟମ୍ ନ ଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ରହମ୍ ପୁରୁଷମହାନ୍ତମ୍ ।

ହସ୍ତ ପଦ ବିଲୀନ ହେଲେ ମଧ୍ୟ ପ୍ରଭୁ ବିଶାଳ ବାହୁ ବିସ୍ତାରି ଭକ୍ତମାନଙ୍କୁ ଆହ୍ୱାନ କରନ୍ତି, ବିନା ହସ୍ତରେ ମଧ୍ୟ ଭକ୍ତ ପ୍ରଦତ୍ତ ଭକ୍ତି ରହିତ ନୈବେଦ୍ୟ ଗ୍ରହଣ କରନ୍ତି । ଯଥା- ଦାସିଆ ବାଉରୀଙ୍କ ପରି ମହାନ୍ ଭକ୍ତଙ୍କଠାରୁ ଅନତି ଦୂରରୁ ନାରିକେଳ ସିଂହାସନରେ ଥାଇ ବାହୁ ପ୍ରସାରି ଶୂନ୍ୟେ ଶୂନ୍ୟେ ଗ୍ରହଣ କରିଥିଲେ । ବଡ଼ ଭାବ ବିନୋଦିଆ ଠାକୁର । ଭାବକୁ ନିକଟ, ଅଭାବକୁ ଦୂର । ପାଦ ନଥିଲେ ମଧ୍ୟ ସାରା ବିଶ୍ୱ ଭ୍ରମଣ କରନ୍ତି । ପାଦ ନଥାଇ ମଧ୍ୟ ଶ୍ରୀମନ୍ଦିର ରତ୍ନସିଂହାସନ ପରିତ୍ୟାଗ କରି ରଥ ଉପରେ ଉପବେଶନ କରନ୍ତି । କର୍ଣ୍ଣ ନଥିଲେ ମଧ୍ୟ ବହୁ ଦୂରରୁ ଭକ୍ତର ଆକୁଳ ନିବେଦନ ଶୁଣିପାରନ୍ତି । ନାସା ନଥିଲେ ମଧ୍ୟ ସେ ଭଲ ଭାବରେ ଆଘ୍ରାଣ କରିପାରନ୍ତି । ଚକ୍ଷୁ ନଥିଲେ ମଧ୍ୟ ତାଙ୍କର ସେହି ଗୋଲାକାର ଆଖିରେ ସାରା ବିଶ୍ୱ ଦେଖିପାରନ୍ତି ଏବଂ ସାରା ବିଶ୍ୱ ତାଙ୍କର ସେହି ଚକା ଚକା ଆଖିରେ ପ୍ରତିଫଳିତ । ସେ ସମସ୍ତଙ୍କୁ ଜାଣନ୍ତି, ମାତ୍ର ତାଙ୍କୁ କେହି ଜାଣିପାରନ୍ତି ନାହିଁ । ଏପରିକି ଦେବତାମାନଙ୍କୁ ମଧ୍ୟ ଅଗୋଚର, ସେହିଁ ପୁରୁଷୋତ୍ତମ ।

ଆଉ ମଧ୍ୟ କୁହାଯାଇଛି ଯେ, ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ବାମନ ରୂପରେ ଦର୍ଶନ କଲେ ମନୁଷ୍ୟ ଜୀବନ ସାର୍ଥକ ହେବା ସଂଗେସଂଗେ ମୋକ୍ଷପ୍ରାପ୍ତି ହୋଇଥାଏ ।

ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।

ମହାପ୍ରଭୁ ଶ୍ରୀଜଗନ୍ନାଥ ସମଗ୍ର ବିଶ୍ୱର କର୍ତ୍ତା । ଯେତେବେଳେ ବାମନ ରୂପରେ ସେ ବଳି ମହାରାଜଙ୍କ ପାଖରେ ପହଞ୍ଚିଲେ ସେତେବେଳେ ବଳିରାଜା ନିଜର ଦାମ୍ଭିକତା ଅହଂଭାବ ପରିହାର କରି ଭକ୍ତିର ସହ ସ୍ୱାଗତ କରି ତାଙ୍କ ପାଖରେ ବିନୀତ ଭାବରେ ଆସିବାର ଅଭିପ୍ରାୟ ଜିଜ୍ଞାସା କରିଥିଲେ । ସେହି ମହାପ୍ରଭୁ ଏତେ ବଡ଼ ରଥରେ ବିରାଜିତ ହୋଇ ସେ ବାମନ ପରି ଭକ୍ତମାନଙ୍କୁ ଅନୁଭବ ହୁଅନ୍ତି । ସେହିପରି ଭାବରେ ନିର୍ମଳ, ମୁକ୍ତ ହୃଦୟ ନିଷ୍କାମ ଭାବନାରେ ଭକ୍ତିର ସହ ଯଦି ରଥାରୂଢ଼ ଶ୍ରୀଜଗନ୍ନାଥଙ୍କୁ ଭକ୍ତ ଦର୍ଶନ କରେ, ତେବେ ବିଶ୍ୱାସ ଯେ, ଆଉ ପୁନର୍ଜନ୍ମ ହୁଏ ନାହିଁ । ଏହି ବିଶ୍ୱାସ ସମସ୍ତଙ୍କ ମନ ମଧ୍ୟରେ ବିଦ୍ୟମାନ ହୋଇ ରହିଛି ।

ଆଜିର ପବିତ୍ର ରଥଯାତ୍ରା ଅବସରରେ ଆପଣଙ୍କର ଆଶୀର୍ବାଦ ଆମ ସମସ୍ତ ପାଇଁ ହେଉ କଲ୍ୟାଣକର, ଯାହା ସମସ୍ତଙ୍କର ଅନ୍ତରରେ ଦିବ୍ୟଚେତନା ଜାଗ୍ରତ ହେବା ସଂଗେସଂଗେ, ବାସ୍ତବକ୍ଷେତ୍ରରେ ସାମ୍ୟ, ମୈତ୍ରୀ ତଥା ଭ୍ରାତୃତ୍ୱର ଭାବନା ଓ ମାନବିକତାର ଆଦର୍ଶ ଉଦ୍ରେକ ହେଉ । ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ଆଡ଼ଭୋକେଟ୍
ସା:- ଗଙ୍ଗାରାମ ନୂଆସାହି, ବୁଢ଼ୀମା ମନ୍ଦିର ସାମ୍ନା
ପୋ: ପୁରୀ, ଜିଲ୍ଲା: ପୁରୀ



# କବି ଲେଖନୀରେ ତୁମ ରୂପଛବି

ଶରତ୍ ଚନ୍ଦ୍ର ମୂଳିଆ

କେତେ କେତେ କବି ଲେଖନୀ ମୁନରେ ଆଙ୍କିଗଲେ ତୁମ ଛବି,
ସତେକି ବିଚିତ୍ରବର୍ଣ୍ଣା ତୁମେ ପ୍ରଭୁ ତାହା ମୁଁ ପାରେନା ଭାବି ।
କବିସୂର୍ଯ୍ୟ ବଳଦେବ ଲେଖିଗଲେ କାଳସର୍ପ ଯେ ଆପଣ,
ସବୁରି ପ୍ରାଣୀର ପବନକୁ ଶୋଷି କବଳ କର ତା' ପ୍ରାଣ ।
ଉତ୍କଳର ଘଣ୍ଟ କବି ଯଦୁମଣି ଆଙ୍କିଲେ ଧରି ଲେଖନୀ,
ଭାଲୁଣୀ ପରାଏ ମୁହଁଟି ତୁମର ଆଖି ଦିଇଟା ଚାଲୁଣି ।
କୋଠପଦା କବି ବଇଷ୍ଣବ ପାଣି ଆଙ୍କିଲେ ଧରି କଲମ,
ହାତୀମୁହାଁ ତୁମେ ଅଟ ଜଗବନ୍ଧୁ ଭାତବିକା ତୁମ କାମ ।
ମାଡୁଆ ମୋହନ ମାଡ଼ବିନୁ ଆନ ଯୋଗ ତୁମ କର୍ମେ ନାହିଁ,
ବାଳୁତ କାଳରେ ଛାଟେ ପିଟି ନନ୍ଦ ଲଭିଲେ ବୈକୁଣ୍ଠ ଭୂଇଁ ।
କଂସ ବନ୍ଦୀଘରୁ ଗଭୀର ନିଶାର୍ଦ୍ଧେ ଲୁଚି ଛପି ଲକ୍ଷ୍ମୀସାଇଁ,
ପଳାଉଥିଲ ନନ୍ଦରାଣୀ କୋଳେ ଆଶ୍ରୟ ଲଭିବା ପାଇଁ ।
ଅଜା ଉଗ୍ରସେନ ହାତେ ଧରି ଠେଙ୍ଗା ଓଗାଳିଲେ ଯେଣୁ ବାଟ,
ପାଟ ବାନ୍ଧିଦେଲ ଶିରରେ ତାଙ୍କର ହେଲେ ସେ ମଥୁରା ରାଟ ।
ଗଉଡୁଣୀ ରାଧା ମାଡ଼ ମାରିବାରୁ ତା' ପାଦ ଯାଇଁ ଧରିଲ,
କାଳିନ୍ଦୀରେ କାଳୀ ଦଂଶନ୍ତେ ତା' ଶିରେ କଠଉର ଚିହ୍ନ ଦେଲ ।
ଶ୍ରୀବତ୍ସ ବ୍ରାହ୍ମଣ କାତରେ ଡାକିଲା ତା' ପାଇଁ ହେଲ ବଧିର,
କ୍ରୋଧରେ ଗୋଇଠା ମାରନ୍ତେ ଭକ୍ତର ଆଉଁସି ଦେଲ ପୟର ।
ତା' ନାମ ସହିତ ନିଜ ନାମ ଯୋଡ଼ି ହେଲ ଶ୍ରୀବତ୍ସଲାଞ୍ଛନ,
ଏ ଅପୂର୍ବ ଲୀଳା ପାରେ ନାହିଁ ବୁଝି ମୁଁ ଅଜ୍ଞାନ ଅକିଞ୍ଚନ ।
ହେଲେ ପ୍ରଭୁ ତୁମ ଚକାଡୋଳା ମତେ ଦିଶଇ ଅତି ସୁନ୍ଦର,
ସତେ ଯେହ୍ନେ ଶ୍ୱେତ ଶତଦଳ ପରେ ବସିଛି କଳା ଭ୍ରମର ।
ଦାତା ପଣେ ଯେଣୁ ପତାକା ବାନ୍ଧିଛ ମାଗୁଅଛି ଯୋଡ଼ି ପାଣି,
ଯନ୍ତ୍ରଣା ବିହୀନ ମରଣଟି ଦେବ ଏତିକି ପଦେ ମାଗୁଣି ।



ସାଆନ୍ତ ସାହି
କଟକ-୭୫୩୦୦୧



# ପରିସଂଖ୍ୟାନରେ ଶ୍ରୀକ୍ଷେତ୍ର

ଗନ୍ଧର୍ବ ସେନ ରଣା

୧. ଶ୍ରୀକ୍ଷେତ୍ରର ମୋଟ କ୍ଷେତ୍ରଫଳ କେତେ ?
- ୧୬.୮୪ ବର୍ଗ କି.ମି.

୨. ଶ୍ରୀକ୍ଷେତ୍ରର ଭୌଗୋଳିକ ଆୟତନ କେତେ ?
- ୧୯°୧୮'',୧୭'' ଲାଟିଟ୍ୟୁଡ଼ / ୮୫°୫୧'', ୩୯'' ଲଙ୍ଗିଟ୍ୟୁଡ଼

୩. ଶ୍ରୀକ୍ଷେତ୍ରର ମଠ ସଂଖ୍ୟା କେତେ ?
- ୫୨

୪. ଶ୍ରୀକ୍ଷେତ୍ରର ଅଠରନଳା ପୋଲର ଲମ୍ୱ କେତେ ?
- ୨୯୦ ଫୁଟ

୫. ଶ୍ରୀକ୍ଷେତ୍ରରେ ଥିବା ଗୁଣ୍ଡିଚା ମନ୍ଦିରରେ କେତୋଟି ଦ୍ୱାର ଅଛି ?
- ଦୁଇ ଗୋଟି

୬. ଶ୍ରୀକ୍ଷେତ୍ରର ନରେନ୍ଦ୍ର ପୁଷ୍କରିଣୀର ଆୟତନ କେତେ ?
- ୮୩୪ x ୮୭୩ ଫୁଟ

୭. ଶ୍ରୀକ୍ଷେତ୍ରର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀର ଆୟତନ କେତେ ?
- ୩୯୪ x ୪୮୫ ଫୁଟ

୮. ଶ୍ରୀକ୍ଷେତ୍ରରେ ଥିବା ସାହିମାନଙ୍କର ସଂଖ୍ୟା କେତେ ?
- ୭ ଗୋଟି

୯. ଶ୍ରୀକ୍ଷେତ୍ରରେ କେତୋଟି କନ୍ଦି(ଗଳି) ଦେଖାଯାଏ ?
- ୪୨ ଗୋଟି

୧୦. ଶ୍ରୀକ୍ଷେତ୍ରର କେତୋଟି ପଡ଼ା ଅଛି ?
- ୫

୧୧. ଶ୍ରୀକ୍ଷେତ୍ର ଅଧିକାର ତଥା ଶ୍ରୀମନ୍ଦିର ପରିଚାଳନା ଭାର ଇଷ୍ଟଇଣ୍ଡିଆ କମ୍ପାନୀ କେବେ ହାତକୁ ନେଇଥିଲେ ?
- ତା.୧୮.୯.୧୮୦୩ରିଖ

୧୨. ଶ୍ରୀକ୍ଷେତ୍ରରେ ଲାଗୁଥିବା ଯାତ୍ରୀ କର କେବେ ଉଠିଯାଇଥିଲା ?
- ୧୮୪୦ ମସିହା

୧୩. ଶ୍ରୀଜଗନ୍ନାଥଙ୍କ ପଦ୍ମବେଶ ପର୍ବ କେବେଠାରୁ ପ୍ରଚଳିତ ?
- ଦଶମ ଶତାବ୍ଦୀରୁ

୧୪. ଶ୍ରୀଜଗନ୍ନାଥଙ୍କ ସେବାପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନ କେତେ ସେବକ ଖଞ୍ଜି ଥିଲେ ?
- ୭

୧୫. ଶ୍ରୀକ୍ଷେତ୍ରର ନରେନ୍ଦ୍ର ପୁଷ୍କରିଣୀ କେତେ ଆକାର ବିଶିଷ୍ଟ ?
- ୧୪ ଏକର ୭୫୭ ଡିସିମିଲ୍

୧୬. ଶ୍ରୀକ୍ଷେତ୍ରର ନରେନ୍ଦ୍ର ପୁଷ୍କରିଣୀର ଚତୁର୍ପାର୍ଶ୍ୱର ଆକାର କେତେ ?
- ପୂର୍ବ-୭୭୯ ଫୁଟ, ପଶ୍ଚିମ-୭୧୩ ଫୁଟ, ଦକ୍ଷିଣ ଓ ଉତ୍ତର-୮୮୫ ଫୁଟ ଲେଖାଏଁ

୧୭. ଶ୍ରୀକ୍ଷେତ୍ରର ନରସିଂହ ମନ୍ଦିରର ଉଚ୍ଚତା କେତେ ?
- ୫୮ ଫୁଟ

୧୮. ଶ୍ରୀକ୍ଷେତ୍ରର ମା' ବିମଳାଙ୍କ ମନ୍ଦିରର ଉଚ୍ଚତା କେତେ ?
- ୬୦ ଫୁଟ

୧୯. ଶ୍ରୀକ୍ଷେତ୍ରର ସୂର୍ଯ୍ୟ ମନ୍ଦିରର ଉଚ୍ଚତା କେତେ ?
- ୬୩ ଫୁଟ

୨୦. ଶ୍ରୀଜଗନ୍ନାଥଙ୍କ ଯାତ୍ରାର ସଂଖ୍ୟା କେତେ ?
- ୧୩

୨୧. ଶ୍ରୀଜଗନ୍ନାଥଙ୍କ ରଥ ନନ୍ଦିଘୋଷର ଉଚ୍ଚତା କେତେ ?
- ୩୩ ହାତ ୫ ଆଙ୍ଗୁଳି

୨୨. ଶ୍ରୀବଳଭଦ୍ରଙ୍କ ରଥ ତାଳଧ୍ୱଜର ଉଚ୍ଚତା କେତେ ?
- ୩୨ ହାତ ୧୦ ଆଙ୍ଗୁଳି

୨୩. ଦେବୀ ସୁଭଦ୍ରାଙ୍କ ରଥ ଦେବଦଳନର ଉଚ୍ଚତା କେତେ ?
- ୩୧ ହାତ

୨୪. ତାଳଧ୍ୱଜ ରଥରେ ଲାଗୁଥିବା କାଠର ସଂଖ୍ୟା କେତେ ?
- ୭୬୩

୨୫. ନନ୍ଦିଘୋଷ ରଥରେ ଲାଗୁଥିବା କାଠର ସଂଖ୍ୟା କେତେ ?
- ୮୩୨

୨୬. ଦେବଦଳନ ରଥରେ ଲାଗୁଥିବା କାଠର ସଂଖ୍ୟା କେତେ ?
- ୫୯୩

୨୭. ଶାସ୍ତ୍ରୀୟ ପଦ୍ଧତିରେ ରଥଗଠନ ଶୈଳୀର ଅଂଶବିଶେଷର ସଂଖ୍ୟା କେତେ ?
- ୩୪

୨୮. ଶିଳ୍ପ ସାର ସଂଗ୍ରହ ପୋଥିମତେ ରଥ ଗଠନ କେତେ ଭାଗ ବିଶିଷ୍ଟ ?
- ୨୭





୨୯. ଶିଳ୍ପ ଶାସ୍ତ୍ର ଅନୁଯାୟୀ ରଥ କେତେ ଅଂଶ ବିଶିଷ୍ଟ ?
- ୧୩

୩୦. ରଥଯାତ୍ରାବେଳେ ରଥରେ ବ୍ୟବହୃତ ହେଉଥିବା ଦଉଡ଼ିର ଲମ୍ବ କେତେ ?
- ୨୦୦ ଫୁଟ ପ୍ରତ୍ୟେକ

୩୧. ରଥ ଟାଣିବା ପାଇଁ ପ୍ରଥମେ କେତେଜଣ ବେଠିଆ ନିଯୁକ୍ତ ହୋଇଥିଲେ ?
- ୪୨୦୦

୩୨. ଶ୍ରୀଜଗନ୍ନାଥଙ୍କ ରଥ ନନ୍ଦିଘୋଷର ଚକ ସଂଖ୍ୟା କେତେ ?
- ୧୬

୩୩. ଶ୍ରୀବଳଭଦ୍ରଙ୍କ ରଥ ତାଳଧ୍ୱଜର ଚକ ସଂଖ୍ୟା କେତେ ?
- ୧୪

୩୪. ଦେବୀ ସୁଭଦ୍ରାଙ୍କ ରଥ ଦେବଦଳନର ଚକ ସଂଖ୍ୟା କେତେ ?
- ୧୨

୩୫. ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥର ପାର୍ଶ୍ୱ ଦେବତାଙ୍କ ସଂଖ୍ୟା କେତେ ?
- ୯

୩୬. ଶ୍ରୀବଳଭଦ୍ରଙ୍କ ତାଳଧ୍ୱଜ ରଥର ପାର୍ଶ୍ୱ ଦେବତାଙ୍କ ସଂଖ୍ୟା କେତେ ?
- ୮

୩୭. ଦେବୀ ସୁଭଦ୍ରାଙ୍କ ଦେବଦଳନ ରଥର ପାର୍ଶ୍ୱ ଦେବତାଙ୍କ ସଂଖ୍ୟା କେତେ ?
- ୯

୩୮. ରାଜା ଯଯାତି କେଶରୀଙ୍କ ସମୟରେ ହେଉଥିବା ଛଅଗୋଟି ରଥର ଉଚ୍ଚତା କେତେ ଥିଲା ?
- ୧୮ ହାତ ପ୍ରତ୍ୟେକ

୩୯. ରାଜା ଚୋଡ଼ଗଙ୍ଗ ଦେବଙ୍କ ସମୟରେ ହେଉଥିବା ଛଅଗୋଟି ରଥର ଉଚ୍ଚତା କେତେ ଥିଲା ?
- ୩୨ ହାତ ପ୍ରତ୍ୟେକ

୪୦. ଜଗନ୍ନାଥ ନାମ ଥାଇ ଓଡ଼ିଶାରେ ଥିବା ଗ୍ରାମ ସ୍ଥାନର ସଂଖ୍ୟା କେତେ ?
- ୧୫୬

୪୧. ପ୍ରଭୁ ଜଗନ୍ନାଥଙ୍କ ବିଗ୍ରହର ଉଚ୍ଚତା କେତେ ?
- ୮୪ ପବ (ଇଞ୍ଚ)

୪୨. ପ୍ରଭୁ ବଳଭଦ୍ରଙ୍କ ବିଗ୍ରହର ଉଚ୍ଚତା କେତେ ?
- ୮୫ ପବ (ଇଞ୍ଚ)

୪୩. ଦେବୀ ସୁଭଦ୍ରାଙ୍କ ବିଗ୍ରହର ଉଚ୍ଚତା କେତେ ?
- ୫୨ ପବ (ଇଞ୍ଚ)

୪୪. ଶ୍ରୀସୁଦର୍ଶନଙ୍କ ଦାରୁର ଲମ୍ବ କେତେ ?
- ୮୪ ପବ (ଇଞ୍ଚ)

୪୫. ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ନୀତି ପାଇଁ ଥିବା ସେବାର ସଂଖ୍ୟା କେତେ ?
- ୮୦

୪୬. ଶ୍ରୀଜୀଉମାନଙ୍କୁ ଶ୍ରୀମନ୍ଦିରରେ କେତେ ପ୍ରକାରର ଅନ୍ନ ନୈବେଦ୍ୟ ଦିଆଯାଏ ?
- ୮

୪୭. ଶ୍ରୀମନ୍ଦିରର ଛତ୍ରଭୋଗ କେତେ ପ୍ରକାରର ଉପଚାରରେ ହୋଇଥାଏ ?
- ୫

୪୮. ଶ୍ରୀଜଗନ୍ନାଥ କେତେଥର ନବକଳେବର ହୋଇଛନ୍ତି ?
- ୮

୪୯. ଶ୍ରୀଜଗନ୍ନାଥଙ୍କ ପ୍ରଥମ ନବକଳେବରର ସମୟ କ'ଣ ?
- ଜୁଲାଇ ୧୬, ୧୫୦୯

୫୦. ଶ୍ରୀଜଗନ୍ନାଥଙ୍କ ଅନ୍ତିମ ନବକଳେବରର ସମୟ କ'ଣ ?
- ଜୁଲାଇ ୧୭, ୧୯୯୬

୫୧. ଶ୍ରୀଜଗନ୍ନାଥଙ୍କ ନବକଳେବର କେତେବର୍ଷର ବ୍ୟବଧାନରେ ପଡ଼ିଥାଏ ?
- ୮ରୁ ୧୯ ବର୍ଷ

୫୨. ଶ୍ରୀଜଗନ୍ନାଥଙ୍କ ନବକଳେବର ଅବସରରେ ପୁରାତନ ବିଗ୍ରହକୁ କେତେ ପରିମିତ ଅଞ୍ଚଳରେ ବିସର୍ଜନ କରାଯାଏ ?
- ୯ ହାତ ଗଭୀର ୬ ହାତ ବ୍ୟାସ

୫୩. ପ୍ରଭୁଙ୍କ ନବକଳେବର ପରେ ତେରୋଇ ଭୋଗରେ କେତେଜଣ ମହାପ୍ରସାଦ ପାଆନ୍ତି ?
- ପ୍ରାୟ ପଚିଶ ହଜାର

୫୪. ଶ୍ରୀଜଗନ୍ନାଥଙ୍କର ଇଂରେଜ ସମୟରେ କେତେ ପ୍ରକାରର ସେବାକାରୀ ଥିଲେ ?
- ୨୫୦

୫୫. ଶ୍ରୀଜଗନ୍ନାଥ ନାମରେ ପ୍ରଭୁ କେବେଠାରୁ ପୂଜା ପାଇବାରେ ଲାଗିଲେ ?
- ଚତୁର୍ଦ୍ଦଶ ଶତାବ୍ଦୀ (ଶିଳାଲିପି ମତେ)

୫୬. ଶ୍ରୀଜଗନ୍ନାଥଙ୍କ ବସନ୍ତ ଗୁଣ୍ଡିଚା ଯାତ୍ରା କେବେ ଆରମ୍ଭ ହୋଇଥିଲା ?
- ୧୬୩୬ ମସିହା

୫୭. ଶ୍ରୀଜଗନ୍ନାଥଙ୍କ କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀରେ ପାଳନ କରାଯାଉଥିବା ନୃସିଂହ ବେଶର ଅନ୍ୟ ନାମ କ'ଣ ?
- ଡାଳିକିଆ

୫୮. ମୋଗଲ ସେନାପତି ଅହମ୍ମଦ ବେଗଙ୍କ ଦୌରାମ୍ୟ ନେଇ ଜଗନ୍ନାଥଙ୍କ ବ୍ରହ୍ମକୁ କେବେ ଗଡ଼ମାଣିତ୍ରୀରେ ରଖାଯାଇଥିଲା ?
- ୧୬୨୦ ମସିହା

୫୯. ଶ୍ରୀଜଗନ୍ନାଥଙ୍କ ବନପ୍ରକଳ୍ପ କେତେ ଅଞ୍ଚଳ ପରିମିତ ?
- ୨୬୮୬ ହେକ୍ଟର

୬୦. ଶ୍ରୀଜଗନ୍ନାଥଙ୍କ ଇନ୍ଦ୍ରଦ୍ୟୁମ୍ନ ପୋଖରୀର ଆକାର କେତେ ?
- ୪୮୫.୩୯୬ ଫୁଟ

୬୧. ଶ୍ରୀଜଗନ୍ନାଥ ସଡ଼କ (ପୁରୀ-ଜଳେଶ୍ୱର)କୁ ଇଂରେଜମାନେ କେବେ ନିର୍ମାଣ କରିଥିଲେ ?
- ୧୮୧୨ରୁ ୧୮୨୬ ଭିତରେ

୬୨. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ଗଡ଼ଜାତ ରାଜାମାନେ କେବେ ବନ୍ଦୋବସ୍ତ କରିଥିଲେ ?
- ୧୮୮୫

୬୩. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ତାଳଚେର ରାଜା ବାର୍ଷିକ କେତେ ରାଶି ମଞ୍ଜୁର କରିଥିଲେ ?
- ୧୬୩ଟ. ୨ଅଣା ୯ ପାହୁଲା

୬୪. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ଦଶପଲ୍ଲା ରାଜା ବାର୍ଷିକ କେତେ ରାଶି ମଞ୍ଜୁର କରିଥିଲେ ?
- ୨୦ଟ.

୬୫. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ହିନ୍ଦୋଳ ରାଜା ବାର୍ଷିକ କେତେ ରାଶି ମଞ୍ଜୁର କରିଥିଲେ ?
- ୨୩୩ ଟଙ୍କା ୨୨ ଅଣା

୬୬. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ବୌଦ ରାଜା ବାର୍ଷିକ କେତେ ରାଶି ମଞ୍ଜୁର କରିଥିଲେ ?
- ୫୦ ଟ.

୬୭. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ମୟୂରଭଞ୍ଜ ରାଜା ବାର୍ଷିକ କେତେ ରାଶି ମଞ୍ଜୁର କରିଥିଲେ ?
- ୩୩୫ ଟ. ୯ ଅଣା ୧୫ ପାହୁଲା

୬୮. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ଢେଙ୍କାନାଳ ରାଜା ବାର୍ଷିକ କେତେ ରାଶି ମଞ୍ଜୁର କରିଥିଲେ ?
- ୬୧୪ ଟ. ୭ ଅଣା ୬ ପାହୁଲା

୬୯. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ଢେଙ୍କାନାଳ ରାଜା କେତେ ପରିମାଣର ଜମି ଖଞ୍ଜି ଥିଲେ ?
- ୭୩ ବାଟି ୧୮ ଗୁଣ୍ଠ

୭୦. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ନୀଳଗିରି ରାଜା କେତେ ପରିମାଣର ଜମି ଖଞ୍ଜି ଥିଲେ ?
- ୧ ବାଟି ୧୦ ଗୁଣ୍ଠ

୭୧. ପ୍ରଭୁ ଜଗନ୍ନାଥଙ୍କ ଅମୃତ ମଣୋହି ପାଇଁ ଅନୁଗୋଳ ଅଞ୍ଚଳରେ କେତେ ପରିମାଣର ଜମି ଖଞ୍ଜି ଥିଲେ ?
- ୧୧୩ ବାଟି ୪ ମାଣ ୧ ଗୁଣ୍ଠ

**ତଥ୍ୟ :**

୧. ଉତ୍କଳ ପ୍ରସଙ୍ଗର ବିଭିନ୍ନ ସଂଖ୍ୟା
୨. ଓଡ଼ିଶା ଗେଜେଟିୟର, ପୁରୀ ଜିଲ୍ଲା
୩. ଶ୍ରୀକ୍ଷେତ୍ର ସମାଚାର

କ୍ୱା.ନଂ.: ଇ-୧୪୯
ୟୁନିଟ୍-୮, ଭୁବନେଶ୍ୱର-୧୨

---

# ଦୂରେ ଥାଇ ଡାକୁ ଥାଏଁ

ଭିକାରୀ ଧଳ



କାହିଁକି କେଉଁ କଥାରେ ତୁମକୁ
ନିବେଦିବି ଦୁଃଖ
ଅର୍ଘ୍ୟକରି ଯେତେସବୁ
ଶୋଚନା, ଅନୁଶୋଚନା ଆଉ କଳ୍ପନାର
ହତାଶା ପଣକୁ !
ଯାହା ଜଣେ ଦୀନହୀନର ପ୍ରାପ୍ୟ
ତୁମେତ ଦେଇସାରିଛ
ଭାବ ଅଭାବର ନାଆରେ ନଦି
ପାରି ହେବା ପାଇଁ ଯେତେସବୁ
ଝିନ୍‌ଝଟ୍‌ର ନଦୀକୁ ।

ହେ ମହାମହିମ !
କେଉଁ କଥାରେ କାହିଁକି କହିବି
ତୁମେ ଖାଲି ଧନୀର
ଗରିବର ନୁହଁ ବୋଲି !
ତୁମେତ ସଚରାଚର ଜୀବର,
ପିଣ୍ଡ ବ୍ରହ୍ମାଣ୍ଡ ସବୁ ତୁମରି
ଆତଯାତ ଭିତରେ
ଅହରହ କର୍ମର ଫଳ ବାଣ୍ଟି ନିଅନ୍ତି
ଯିଏ ଯାହା ମତେ
ପୂର୍ବ ଓ ପର ଜନ୍ମକୁ ପ୍ରାରବ୍ଧ ମନେକରି ।

ତୁମେତ ଅଜାଡ଼ି ଦେଇସାରିଛ ସବୁ ମୋ ଥାଳରେ
ଅଙ୍ଗୁଳି ନଥିବା ତୁମର ସେଇ ହାତ ଦୁଇଟିର
ସଦା ଆଶ୍ରିତ ମୋର ପାଇବା ପଣ
ଯେମିତି ତୁମ ବିନା କିଛି ଅନୁଭବିନି ଏ ଜନ୍ମରେ
ଯାହା ପୂର୍ବ ଜନ୍ମର ସୁକୃତ ଫଳ
ତୁମ କୃପା ଓ କରୁଣାରୁ ।

ହେ ମହାମହିମ !
କାହିଁ କାହାକୁ କହିବି
ତୁମ ମୋ' ସଂପର୍କର କଥା
କେତେ ଦୂରେ ଅଛି ବୋଲି ?
ଆରମ୍ଭରୁ ତ ତୁମରି ପାଖରେ ଅଛି
ଏବଂ ରହିଥିବି ତୁମରି ପାଖରେ
ପ୍ରତିଟି ଆରମ୍ଭରୁ ଶେଷଯାଏଁ ।

ନିଜିଗଡ଼ କୁରୁଖି
ହରିରାଜପୁର
ଜଟଣୀ-୭୫୨୦୫୦